HEY VIDHATA HEY BASUDHA
A Novel
By Prof. Manmath Nath Das
Published by Vidyapuri, Cuttack 753002



ISBN 81-7411-410-6

ପ୍ରଥମ ପ୍ରକାଶ  ସେପ୍ଟେମ୍ବର ୨୦୦୨

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ଲିପିସଂଯୋଜନ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦ ବଜାର, କଟକ ୭୫୩୦୦୨

ପ୍ରଚ୍ଛଦ
ବିଜୟ କୁମାର ପ୍ରଧାନ

ମୁଦ୍ରଣ
ରୟାଲ୍‌ହାଫ୍‌ଟୋନ୍ କୋ, କଟକ

ମୂଲ୍ୟ ଟ ୧୨୦.୦୦

# ପ୍ରସ୍ତାବନା

ଅଧ୍ୟୟନ-ପ୍ରସୂତ କୌଣସି ପ୍ରକାର ଐତିହାସିକ ଘଟଣା ବର୍ଣ୍ଣନା ଉଦ୍ଦେଶ୍ୟରେ ଏହି ପୁସ୍ତକ ରଚନା କରାଯାଇ ନାହିଁ । ଅପରପକ୍ଷରେ, ସମକାଳୀନ ପରିବେଶ ଓ ପାରିପାର୍ଶ୍ୱିକ ପରିସ୍ଥିତିର ପରିପ୍ରେକ୍ଷୀରେ ଲିଖିତ ଏହା ହେଉଛି ଏକ ରାଜନୈତିକ ଓ ସାମାଜିକ ଉପନ୍ୟାସ । ବ୍ୟକ୍ତିଗତ ଉପଲବ୍ଧି ହେଉଛି ପୁସ୍ତକ ରଚନାର ମୂଳ ଆଧାର ।

ଉନ୍ନତ ସାହିତ୍ୟ ମାଧ୍ୟମରେ ଉଚ୍ଚତର ଦର୍ଶନ ଅଥବା ଭାବଧାରା ଉପସ୍ଥାପନ କରିବା ସାମର୍ଥ୍ୟ ଏହି ଲେଖକର ନାହିଁ । ବାସ୍ତବତା ପ୍ରତି ପାଠକ-ପାଠିକାମାନଙ୍କ ଧ୍ୟାନ ଆକର୍ଷଣ ହେଉଛି ଏକମାତ୍ର ଉଦ୍ଦେଶ୍ୟ ।

ବର୍ଣ୍ଣନାରେ ମାଧୁର୍ଯ୍ୟ ନାହିଁ ଏବଂ ବିଷୟବସ୍ତୁର କ୍ରମବିକାଶ ମାର୍ଜିତ ନୁହେଁ । ଗତାନୁଗତିକ ମାମୁଲି ଭାଷାରେ ଲେଖାଯାଇଛି ଯେଉଁ ପ୍ରକାର ଘଟଣାମାନ କିଛିକାଳ ପୂର୍ବେ ଘଟିଯାଇଥିଲା ଏବଂ ବର୍ତ୍ତମାନ ଘଟିଯାଉଛି ।

ନାୟକହୀନ ଉପନ୍ୟାସ । ଅବଶ୍ୟ, ପାର୍ଶ୍ୱନାୟକ ଓ ନାୟିକାଙ୍କ ସଂଖ୍ୟା ଅଳ୍ପ ନୁହେଁ । ମୁଖ୍ୟ ଭୂମିକାରେ ରହିଛନ୍ତି ଜଣେ ମାତ୍ର ନାୟିକା । ସାଙ୍କେତିକ ଅର୍ଥରେ ସେ ହେଉଛନ୍ତି ଦୁଇଟି ଯୁଗର ପ୍ରତ୍ୟକ୍ଷକାରୀ ସାକ୍ଷାଦ୍ଦର୍ଶିନୀ । ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ ନାୟିକାଙ୍କ ଜୀବନକାଳ ସମାପ୍ତ ହେବା ସ୍ୱାଭାବିକ । କାଳଚକ୍ରରେ ଯେଉଁ ପ୍ରକାର ତମିସ୍ରା ମଧ୍ୟରେ ସେ ଗତି କରୁଥିଲେ ସେହି ତମୋରାଶି ଘନୀଭୂତ ହେବାର ଦୃଶ୍ୟମାନ ସେ ସ୍ୱୟଂ ଦେଖିପାରିଲେ ନାହିଁ, ଏହା ହେଉଛି ଲେଖକଙ୍କର ଅନୁଶୋଚନା ।

ତଥାପି, ସ୍ୱଳ୍ପ ହେଲେ ସୁଦ୍ଧା ନାୟିକା ଯେତିକି ମନସ୍ତାପ ଅନୁଭବ କରିପାରିଲେ, ତାହା ଆଗାମୀ ଦିବସ ପ୍ରତି ଅଶୁଭ ସୂଚନା ବହନ କରୁଛି ।

ଚିରଦୁଃଖିନୀ ନାୟିକାଙ୍କ ଅନ୍ତିମ ଆହ୍ୱାନ 'ହେ ବସୁଧା' ଧ୍ୱନିଟି ପୁନର୍ବାର ଯେପରି ଭାରତଭୂମିରେ ପ୍ରତିଧ୍ୱନିତ ନ ହୁଏ, ସେହି ଆଶା ଏହି ଅଧୋଗତ ସମୟର ଆଶ୍ୱାସ ରୂପେ ଦେଶବାସୀଙ୍କର ସାମୂହିକ ସାଧନାରେ ରୂପାନ୍ତରିତ ହୋଇପାରିବ, ଏହି ଅବଜ୍ଞେୟ ବିଶ୍ୱାସ ହେଉଛି ଉପନ୍ୟାସର ଅର୍ଘ୍ୟ ।

୧୭ ସତ୍ୟନଗର,
ଭୁବନେଶ୍ୱର - ୭୫୧୦୦୭

ମନ୍ମଥ ନାଥ ଦାସ
୨୦ ଅଗଷ୍ଟ ୨୦୦୨

## ।। ୧ ।।

ରାତି ପାହି ନ ଥାଏ । ପ୍ରତିଦିନ ପରି ସେ ଦିନ ମଧ୍ୟ ଗାଁ ମୁଣ୍ଡର ଭଙ୍ଗା କୁଡ଼ିଆରେ ବାସ କରୁଥିବା ଭିକାରି ବୁଢ଼ା କେନ୍ଦରା ବଜାଇ ବଜାଇ ବାହାରି ଚାଲିଲା ଦୂରବର୍ତ୍ତୀ ଗାଁକୁ ଭିକ ମାଗିବା ଲାଗି । ତା' କଣ୍ଠରୁ ବାହାରୁଥାଏ ସୁଲଳିତ ସ୍ୱରରେ ଉଷା କାଳର ଆଗମ ସଂଗୀତ-

''ମଙ୍ଗଳେ ଅଇଲା ଉଷା ବିକଚ ରାଜୀବ ଦୃଶା
ଜାନକୀ ଦର୍ଶନ ତୃଷା ହୃଦୟେ ବହି
କର ପଲ୍ଲବେ ନୀହାର ମୁକ୍ତା ଧରି ଉପହାର
ସତୀଙ୍କ ବାସ ବାହାର ପ୍ରାଙ୍ଗଣେ ରହି
କଳକଣ୍ଠ କଣ୍ଠେ କହିଲା
ଉଠ ସତୀ ରାଜରାଣୀ ରାତି ପାହିଲା ।''

ସେହି ଶୁଭକ୍ଷଣରେ ମମତା ତାଙ୍କର ଚାରିଟା ପିଲାକୁ ନିଦରୁ ଉଠାଇ ଓ ଛୋଟ ଝିଅଟିକୁ କାଖରେ ଧରି ଭିକାରିର ସ୍ୱରରେ ପୁଅମାନଙ୍କୁ ଗାଇବାକୁ କହନ୍ତି-

''ତୁହି ମା ଜନମ ଭୂମି ପବିତ୍ର ଭାରତ ଭୂମି,
ତୋହରି ସନ୍ତାନ ଆମେ ଅଟୁଁ ସରବେ,
ତୋର ଶ୍ରୀ ଚରଣ ସେବା ପାଇଁ ମନ ପ୍ରାଣ ଦେବା,
ଗାଇବା ତୋହରି ନାମ ଆନନ୍ଦ ରବେ । ''

ଭିକାରିଟି ଘର ଆଗ ରାସ୍ତାରେ ଚାଲିଗଲାବେଳକୁ ମମତାଙ୍କ ବାପା ନିଦରୁ ଉଠିଲେ । ପ୍ରତିଦିନ ପରି ସେଦିନ ମଧ୍ୟ ବାରଣ୍ଡାରେ ଥିବା ଚୌକିଟି ଉପରେ ଯାଇ ବସିଲେ । ସେ ଥିଲେ ଗାଁ ପ୍ରାଥମିକ ବିଦ୍ୟାଳୟର ପ୍ରଧାନ ଶିକ୍ଷକ । ଦୁଇଦିନ ପୂର୍ବେ ଅବସର ନେଇଥାନ୍ତି । ମନ ଭଲ ନ ଥାଏ । ଘରର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନୁହେଁ । ନିଜର ଦେହ ମଧ୍ୟ ସୁସ୍ଥ ରହୁ ନାହିଁ ।

ଆସନ୍ନପ୍ରାୟ ସୂର୍ଯ୍ୟୋଦୟ ସମୟରେ ଦୁଆରକୁ ଉଠିଲେ ତାଙ୍କର ବନ୍ଧୁ ଶ୍ୟାମାନନ୍ଦ ବାବୁ । ପ୍ରାୟ ପ୍ରତିଦିନ ଆସନ୍ତି । ଅଳ୍ପ ସମୟ ଭଲମନ୍ଦ କଥାବାର୍ତ୍ତା ପରେ ଚାଲିଯାଆନ୍ତି । ଦୁହିଁଙ୍କ ଘର ପାଖକୁ ପାଖ ଲାଗିଥାଏ ।

''ଶିବ, ସକାଳେ ବସି କ'ଣ ଭାବୁଛ ? ଚାକିରି ଚାଲିଗଲା ବୋଲି ଦୁଃଖ କରୁଛ କି ? ଗତକାଲି କବିରାଜ ପାଖକୁ ଯାଇଥିଲ ବୋଲି ଶୁଣିଲି । ଦେହ ପରୀକ୍ଷା କରି ସେ କ'ଣ କହିଲେ ?''

ଶିବବାବୁ ଉତ୍ତର ଦେଲେ, ''ଚାକିରି ଗଲା ବୋଲି ଦୁଃଖ ନାହିଁ । ବରଂ ଭଲ ହେଲା । ଘରେ ବସି ବିଶ୍ରାମ ନେବି । କବିରାଜ କଥା ପଚାରିଲ । ସେ ବାତ, ପିତ୍ତ ଓ ଶ୍ଳେଷ୍ମା ପ୍ରଭୃତି କେତେକ ଶବ୍ଦ ଉଚ୍ଚାରଣ କରି ଶେଷରେ ଉପଦେଶ ଦେଲେ ସଦର ହାଁସପାତାଳରେ ଡାକ୍ତର ଦେଖାଇବାକୁ । ଆଚ୍ଛା, କହିଲ ଶ୍ୟାମ, ସଦର ମହକୁମା ଯିବା କ'ଣ ଗୋଟିଏ ସହଜ ବ୍ୟାପାର ? ଚାଳିଶ ମାଇଲ ବାଟ ଚାଲି ଚାଲି ଗଲେ ରେଳଷ୍ଟେସନରେ ପହଞ୍ଚିବି । ସେଠାରୁ ପାଞ୍ଚଟା ଷ୍ଟେସନ ପରେ ସଦର ମହକୁମା । ଡାକ୍ତର ପୁଣି କ'ଣ କହିବେ ସେ କଥା ତାଙ୍କୁ ଏବଂ ଭଗବାନ୍‌ଙ୍କୁ ଜଣା । ମୁଁ ଯିବି ନାହିଁ ବୋଲି ଠିକ୍ କରିଛି ।''

''କଷ୍ଟ କରି ଯାଇଥିଲେ ଗୋଟିଏ ଚିନ୍ତା ଯାଇଥାନ୍ତା । ଦେହ ଭଲ ରହିଲେ ସିନା ସବୁ ଭଲ ରହିବ ।''

''ଦେହ ପାଇଁ ମୋର ଭୟ ନାହିଁ । ଭୟ ଅନ୍ୟ ଦିଗରୁ ।''

''ଅନ୍ୟ ଦିଗରୁ ଭୟ ! ଅର୍ଥ ବୁଝିପାରୁ ନାହିଁ । ତୁମେ ହେଉଛ ଅଜାତଶତ୍ରୁ ପରି ଜଣେ ମଣିଷ । ତୁମର ପୁଣି କ୍ଷତି କରିବ କିଏ ?''

ଶିବବାବୁ ଦୀର୍ଘଶ୍ୱାସ ତ୍ୟାଗ କରି କହିଲେ, ''କଥାରେ ଅଛି, ଚିତା ପୋଡ଼ିଥାଏ ମୃତମାନଙ୍କୁ, ଚିନ୍ତା ପୋଡ଼ିଦିଏ ଜୀବିତମାନଙ୍କୁ । ମୋର ଚିନ୍ତା ମୋ ଜୋଇଁ ତପସ୍ୱୀ ପାଇଁ । ତୁମେ ତ ଜାଣ, ପିଲାଟି ମେଟ୍ରିକ ପରୀକ୍ଷାରେ ଫାଷ୍ଟ ହେଲାବୋଲି ଜମିଦାରଙ୍କ ପାଖରୁ ଋଣ କରି ତା'କୁ କଲେଜରେ ଭର୍ତ୍ତି କରାଇଲି । ଗରିବ ହେଲେ ବି ପିଲାଟିର ସ୍ୱଭାବ ଭଲ ଦେଖି ଝିଅଟିକୁ ତା' ହାତରେ ବାନ୍ଧିଦେଲି । ତାଙ୍କ ବାପା ଅତି ଦରିଦ୍ର ଜାଣି ଜୁଆଁଇକୁ ନିଜ ଘରେ ଆଣି ରଖିଲି । ପୈତୃକ ଜମି ବିକ୍ରି କରି ଆଇ.ଏ. ଓ ବି.ଏ. ପଢ଼ାଇଲି । ଭଗବାନ୍ ମୋତେ ପୁଅ ଦେଇ ନାହାନ୍ତି । ଝିଅଟିର ଜନ୍ମ ବେଳେ ମୋ ସ୍ତ୍ରୀ ଜୀବନ ଛାଡ଼ିଲେ । ଏକମାତ୍ର ଝିଅକୁ ଶିକ୍ଷିତ ବର ହାତରେ ଧରାଇ ଦେଇ ନିଶ୍ଚିନ୍ତ ହେଲି । ଭଲ ଚାକିରି ମିଳିବ ବୋଲି ଜାଣିଥିଲି । କିନ୍ତୁ ସେ ଏବେ ଗାନ୍ଧିଙ୍କ ଆନ୍ଦୋଳନରେ ଯୋଗ ଦେଇଛି । ଚାକିରି କରିବ ନାହିଁ । ଦେଶପାଇଁ କାମ କରିବ । ମୋତେ କହିଲ, ତା ସ୍ତ୍ରୀ ଓ ପିଲାପିଲିଗୁଡ଼ିକୁ ପାଳିବ କିଏ ?''

ଶ୍ୟାମାନନ୍ଦ ମନଦେଇ ସବୁ କଥା ଶୁଣିଲେ । ସହାନୁଭୂତି ପ୍ରକାଶ କରି କହିଲେ, ''ଦେଶଲାଗି କାମ କରିବା ଅବଶ୍ୟ ଭଲ । କିନ୍ତୁ ତାହାହିଁ ଯଦି ଉଦ୍ଦେଶ୍ୟ ଥିଲା ତେବେ ବିବାହର ଏଗାର ବର୍ଷ ମଧ୍ୟରେ ଚାରିଗୋଟି ପୁଅ ଝିଅ ଜନ୍ମ କଲ କାହିଁକି ? ଗାନ୍ଧିଙ୍କ ଆନ୍ଦୋଳନର ଅର୍ଥ ହେଉଛି ସତ୍ୟାଗ୍ରହ କରିବା, ଲାଠି ମାଡ଼ ଖାଇବା ଏବଂ ଜେଲ ଯିବା । ଯିଏ ଜେଲ ଯିବାପାଇଁ ପ୍ରସ୍ତୁତ, ତା ପିଲାମାନଙ୍କୁ ପାଳିବ କିଏ ?''

''ଠିକ୍ କହିଛ ଶ୍ୟାମ, ଠିକ୍ କଥା କହିଛ । ମୋର ସେହି ଗୋଟିଏ ମାତ୍ର ଚିନ୍ତା । ଝିଅ ମମତାର ସ୍ୱାସ୍ଥ୍ୟ ଦେଖୁଛ ! ତେର ବର୍ଷ ବୟସରେ ବିବାହ ଦେଇଥିଲି । ଚବିଶ ବର୍ଷ ବେଳକୁ ଚାରିଟା ଛୁଆ । କୁଆଡ଼େ ଗଲା ମୋ ଝିଅର ସ୍ୱାସ୍ଥ୍ୟ ଓ ରୂପ ?''

କବାଟ ପଛରେ ଛିଡ଼ା ରହି ବାପାଙ୍କ ଚିନ୍ତା ବିଷୟ ଶୁଣୁଥାନ୍ତି ମମତା । ଚାରିଟି ପିଲା । ସ୍ୱାମୀ ଜଣେ ସ୍ୱାଧୀନତା ସଂଗ୍ରାମୀ । ବାପା ବୁଢ଼ା ହେଲେଣି । ସେଥିସଙ୍ଗେ ଅସୁସ୍ଥ ମଧ୍ୟ । ନିଜ ଭବିଷ୍ୟତ ଚିନ୍ତା କଲାବେଳେ ଦେହ ଥରିଉଠିଲା । ସେତିକିବେଳେ ବଡ଼ପୁଅ ତେଜସ୍ୱୀ ପାଟି କଲା, ''ମା, ଆମର ଦାନ୍ତ ଘଷା ସରିଲାଣି । ଖାଇବାକୁ ଦିଅ ।''

ବାପା ବାହାର ପିଣ୍ଡାରେ ବସି ଦାନ୍ତ ଘଷିଲେ । ଶ୍ୟାମାନନ୍ଦବାବୁ ଚାଲିଯାଇଥାନ୍ତି । ପିଲାମାନଙ୍କୁ ଖାଇବାକୁ ଦେଇସାରି ମମତା ବାପାଙ୍କ ଲାଗି ଲୋଟାଏ ପାଣି ଆଣିଲେ । ଶିବବାବୁ ମୁହଁ ଧୋଇଲେ । ଝିଅକୁ ପଚାରିଲେ, ''ତପସ୍ୱୀ କୁଆଡ଼େ ଯାଇଛନ୍ତି ? ଦୁଇଦିନ ହେଲା ଘରେ ଦେଖା ନାହିଁ ।''

ଡରି ଡରି ମମତା ଉତ୍ତର ଦେଲେ, ''ବାପା, ସେ ଆପଣଙ୍କୁ ଭୀଷଣ ଭୟ କରନ୍ତି ବୋଲି କୌଣସି ବିଷୟ ଜଣାନ୍ତି ନାହିଁ । ସୁବର୍ଣ୍ଣପୁର ଗାଁ ପାଖ-ସମୁଦ୍ର କୂଳରେ ଲବଣ ସତ୍ୟାଗ୍ରହ ଚାଲିଛି । ସେଠାରେ ସେ ଲୋକଙ୍କୁ ଏକତ୍ରିତ କରି ଦରିଆ ଜଳରୁ ଲୁଣ ମାରି ସରକାରୀ ଆଇନ ଭଙ୍ଗ କରୁଛନ୍ତି ।''

ଶିବବାବୁ ନିରବ ରହିଲେ । ବଡ଼ ନାତି ତେଜସ୍ୱୀକୁ ଡାକିଲେ ବହି ଧରି ବାରଣ୍ଡାରେ ବସିବାପାଇଁ । ପିଲାଟିର ବୟସ ହେଲାଣି ଦଶ ବର୍ଷ । ପଞ୍ଚମ ଶ୍ରେଣୀରେ ପଢୁଛି । ଅଜା ଶିବବାବୁ ପାଖରେ ବସାଇ ଇଂରାଜୀ ଫାଷ୍ଟ ବୁକ୍ ପଢ଼ାନ୍ତି । ଝିଅକୁ କହିଲେ, ''ମାମି, ଆଉ ତିନିଟାକୁ ବି ଏଠାରେ ବସାଇ ଦେ । ଚୁଲି ପାଖରେ ଦୁଷ୍ଟାମି କରିବେ ।''

ଆଉ ତିନିଟା ଥିଲେ, ମମତାର ଦ୍ୱିତୀୟ ପୁତ୍ର ଆଠ ବର୍ଷ ବୟସର ସ୍ୱରାଜ, ତୃତୀୟ ପୁତ୍ର ପାଞ୍ଚ ବର୍ଷ ବୟସର ସ୍ୱାଧୀନ ଏବଂ ସାନଝିଅଟି କରୁଣା, ବୟସରେ ଦୁଇ । ମମତାଙ୍କୁ ଲାଜ ଲାଗୁଥାଏ । ସକାଳେ ବାବାଙ୍କ ସହିତ ଶ୍ୟାମାନନ୍ଦବାବୁଙ୍କ କଥାବାର୍ତ୍ତା ସେ ଶୁଣିପାରିଥିଲେ । ଅଳ୍ପ ବୟସରେ ଚାରିଟା ପିଲାଙ୍କୁ ଜନ୍ମ ଦେଇଥିବା ଚିନ୍ତା ତା'ଙ୍କ ମନକୁ ଘାରି ରଖିଥାଏ ।

ହଠାତ୍ ଗାଁ ବାହାରେ କୋଳାହଳ ଶୁଭିଲା । ଅନେକ ଲୋକଙ୍କ ମିଳିତ କଣ୍ଠସ୍ୱର । ଘଟଣା କ'ଣ ଜାଣିବାଲାଗି ଶିବବାବୁ ତୁରନ୍ତ ଚାଲିଗଲେ । ମମତାଙ୍କ ମନରେ ଆତଙ୍କ ଖେଳିଗଲା । ତା'ଙ୍କୁ ଜଣାଥାଏ ଚାରିଆଡ଼େ ପୁଲିସର ଦମନଲୀଳା ଚାଲିଛି । ସତ୍ୟାଗ୍ରହୀମାନଙ୍କ ଉପରେ ନିର୍ଦ୍ଧୂମ ଲାଠି ପ୍ରହାର କରାଯିବା ସହିତ ହଜାର ହଜାର ଲୋକଙ୍କୁ ଜେଲଖାନା ନିଆଯାଉଛି । ଭୟ ଆସିଲା, ସ୍ୱାମୀ ତପସ୍ୱୀବାବୁ ରକ୍ଷା ପାଇ ଯାଇଥିବେ କିମ୍ବା ଧରାପଡ଼ି ବନ୍ଦୀ ହୋଇଥିବେ ! କାରଣ, ସେ ଥିଲେ ସୁବର୍ଣ୍ଣପୁର ଲବଣ ସତ୍ୟାଗ୍ରହର ଉଦ୍ୟୋକ୍ତା ଓ ନେତା ।

ବଡ଼ପୁଅ ତେଜସ୍ୱୀ ବହି ଖଣ୍ଡିକ ଫୋପାଡ଼ି ଦେଇ ପିଣ୍ଡା ଉପରୁ ତଳକୁ ଡେଇଁପଡ଼ି ଦୌଡ଼ି ଚାଲିଗଲା । ବାଟରୁ ପାଟିକରି ଜଣାଇ ଦେଲା, ''ମା, ମୁଁ ମୋ ବାବାଙ୍କ ପାଖକୁ ଯାଉଛି ।'' ବାରଣ କରିବା ପୂର୍ବରୁ ସେ ରାସ୍ତା ଉପରେ ଅଦୃଶ୍ୟ ହୋଇ ଯାଇଥାଏ ।

ପ୍ରାୟ ଏକ ଘଣ୍ଟା ପରେ ଅଣନିଶ୍ୱାସୀ ଭାବରେ ଦୌଡ଼ି ଦୌଡ଼ି ଫେରିଆସି ତେଜସ୍ୱୀ ପାଟି କଲା, ''ମା, ମା, ଗାଁଲୋକ କହୁଛନ୍ତି ପୁଲିସମାନେ ବାବାଙ୍କୁ ଦରିଆ କୂଳରୁ ଧରିନେଇ ଯାଇଛନ୍ତି । ଆମ ଘର ଉପରେ ଚଢ଼ାଉ କରି ଜିନିଷପତ୍ର ଲୁଟ୍‌ପାଟ୍ କରିବାକୁ ଆସୁଥିଲେ । ଅନେକ ଲୋକ ବାଧା ଦେବାରୁ ଧମକ ଚମକ ଦେଇ ଫେରିଗଲେ । ମୁଁ ଗାଁ ମୁଣ୍ଡରୁ ଫେରିଲି । ଅଜା ଦରିଆ କୂଳକୁ ଦୌଡ଼ିଛନ୍ତି । ଶ୍ୟାମ ଅଜାଙ୍କୁ କହୁଥିଲେ ଥାନା ପର୍ଯ୍ୟନ୍ତ ଯିବେ । ସେଠାରୁ ମୋ ବାବାଙ୍କୁ ଖଲାସ କରି ଆଣିବାପାଇଁ ଦାରୋଗାର ଗୋଡ଼ ଧରିବେ ।''

ଧୀରସ୍ଥିର ଭାବରେ ଛିଡ଼ା ରହି ମମତା ପୁଅର ବର୍ଣ୍ଣନାମାନ ଶୁଣିଲେ । ଅଧିକ ଶୁଣିବା ବା ଭାବିବା ଲାଗି ଅବକାଶ ନ ଥାଏ । ବାପା ଫେରିଆସି ଭାତ ଖାଇବେ । ପିଲାମାନେ ଖାଇବେ । ହାଣ୍ଡିଶାଳ ହିଁ ଥାଏ ତାଙ୍କର କର୍ମଶାଳା ।

ଦିନ ଦୁଇ ପ୍ରହର ବିତିଗଲା । ଶିବବାବୁ ଫେରିଲେ ନାହିଁ । ପିଲାମାନେ ଅଖିଆ ଅପିଆ ବସି ରହିଲେ । ବାବାଙ୍କୁ ପୁଲିସ୍ ମାଡ଼ ମାରୁଥିବ ଭାବି ସ୍ୱରାଜ ଓ ସ୍ୱାଧୀନ

କାନ୍ଦିବାକୁ ଲାଗିଲେ । ଭାଇମାନଙ୍କୁ କାନ୍ଦୁଥିବା ଦେଖି ଛୋଟ କରୁଣା ମଧ୍ୟ କିଛି ବୁଝି ନ ପାରି ବିକଳ ଭାବରେ କାନ୍ଦିଲା । ସମସ୍ତଙ୍କୁ କୋଳରେ ବସାଇ ମମତା ବୁଝାଇବାକୁ ଚେଷ୍ଟା କଲେ,

''ତୁମ ବାବା ଦେଶ ଲାଗି ମାଡ଼ ଖାଇବେ । ତାଙ୍କର ସେହି କଷ୍ଟପାଇଁ ଗାନ୍ଧି ଦିନେ ନା ଦିନେ ସ୍ୱରାଜ ଆଣିବେ । ଦେଶ ସ୍ୱାଧୀନ ହେବ । ତୁମମାନଙ୍କ ବାବା ଜଣେ ବୀରପରି ଲଢ଼ୁଛନ୍ତି । ସେଥିପାଇଁ ତୁମମାନଙ୍କର ହସିବା କଥା, କାନ୍ଦୁଛ କାହିଁକି ?''

ତେଜସ୍ୱୀ ଉତ୍ତେଜିତ ସ୍ୱରରେ କହିଲା, ''ହଁ, ହସିବି, ବଡ଼ ପାଟିରେ ହସିବି । କିନ୍ତୁ ଆଜି ନୁହେଁ । ଯେଉଁଦିନ ସେହି ଦାରୋଗାର ମୁଣ୍ଡକୁ ଢେଲାମାରି ଫଟାଇ ଦେବି, ସେହିଦିନ ଗଳା ଫଟାଇ ହସିବି ।''

''ଛିଃ, ସେପରି କାମ କରିବୁ ନାହିଁ । ମହାତ୍ମାଗାନ୍ଧିଙ୍କ କଥା ସମସ୍ତଙ୍କୁ ମାନିବାକୁ ହେବ । ସେ ହେଉଛନ୍ତି ସ୍ୱାଧୀନତା ସଂଗ୍ରାମର ସେନାପତି । ସେ କହିଛନ୍ତି, ଲାଠିମାଡ଼ ଖାଇବ, ଗୁଳିଖାଇ ମରିବ, ଫାଶି କାଠରେ ଝୁଲିବ, କିନ୍ତୁ ଶତ୍ରୁ ପ୍ରତି ହିଂସା ଆଚରଣ କରିବ ନାହିଁ,'' ବୁଝାଇଲେ ମମତା । ବାପାଙ୍କ ଫେରିବା ବିଳମ୍ବ ହେବ ଜାଣି ପିଲାମାନଙ୍କୁ ଖାଇବାକୁ ବସାଇଲେ ।

''ମା, ତୁମେ ଖାଇବ ନାହିଁ,'' ପଚାରିଲା ବଡ଼ପୁଅ ।

''ନାରେ ବାବା, ତୋ ଅଜା ନ ଫେରିଲା ପର୍ଯ୍ୟନ୍ତ ମୁଁ ଖାଇବି ନାହିଁ । ଶୀଘ୍ର ଆସିଯିବେ ।''

କିନ୍ତୁ ବେଳ ଗଡ଼ିଚାଲିଲା । ଯେତିକି ବିଳମ୍ବ ହେଉଥାଏ, ସେହି ଅନୁପାତରେ ମମତାଙ୍କ ଭୟ ବଢ଼ି ଚାଲିଥାଏ । ପିଲାମାନଙ୍କୁ ଶୁଆଇଦେଇ ସେ ବାରଣ୍ଡାରେ ବସି ରହିଲେ ।

ସନ୍ଧ୍ୟା ଆସନ୍ନପ୍ରାୟ । ଶ୍ୟାମାନନ୍ଦବାବୁ ଓ ଅନ୍ୟ ଚାରିଜଣ ଗ୍ରାମବାସୀ ଶିବବାବୁଙ୍କୁ ଟେକି ଧରି ପିଣ୍ଡା ଉପରକୁ ଆଣିଲେ । ଖଣ୍ଡିଏ ଶତରଞ୍ଜି ମେଲାଇ ତା'ଙ୍କୁ ଶୁଆଇ ଦିଆଗଲା । ତକିଆଟିଏ ଆଣି ମମତା ତା'ଙ୍କ ମୁଣ୍ଡତଳେ ରଖିଲେ । ବୁଢ଼ା କଥା କହିପାରୁ ନ ଥାନ୍ତି । ପିଠି ଉପରେ ନାଲି ନାଲି ଦାଗ । ମାଂସ ଫୁଲି ଯାଇଥାଏ । ପିଲାମାନେ ଅଜାଙ୍କ ଅବସ୍ଥା ଦେଖି କରୁଣ ଭାବରେ କାନ୍ଦିବାକୁ ଲାଗିଲେ । ପୁରୁଣା ଡବାଟାଏ ଫିଟାଇ ସେଥିରୁ ମଲମ କାଢ଼ି ମମତା ପିଠିରେ ମାଲିସ କରିବାକୁ ବସିପଡ଼ିଲେ ।

ଶ୍ୟାମାନନ୍ଦବାବୁ ବର୍ଣ୍ଣନା କଲେ, ''ଶିବ ଦରିଆ ପାଖରେ ପହଞ୍ଚିଲାବେଳକୁ ସେଠାରେ ସବୁ ଶୂନ୍‌ଶାନ୍ । ପୁଲିସ ତପସ୍ୱୀବାବୁଙ୍କୁ ବାନ୍ଧିନେଇ ଗଲାଣି । ଲୋକମାନଙ୍କୁ ମାଡ଼ ଦେଇ ତଡ଼ି ଦେଲାଣି । ମୋ ବାରଣ ସତ୍ତ୍ୱେ ଶିବ ଦୌଡ଼ିଲେ ଥାନାକୁ । କୋଶେ ବାଟ । ମୁଁ ବି ସାଙ୍ଗରେ ଗଲି । ଥାନାବାବୁ ତାଙ୍କର ପରିଚୟ ପାଇଲାମାତ୍ରେ କାଠର ରୋଳ ବାଡ଼ିଟାରେ ପିଠିରେ ମାଡ଼ ବସାଇଗଲା । ପାଟିକରି କହୁଥାଏ, ସରକାରଙ୍କ ଆଇନ ଭାଙ୍ଗିବାପାଇଁ ବେଧ ବୁଢ଼ା ଜୁଆଇଁଟାକୁ ପଠାଇଦେଲା । ଏବେ କାନ୍ଦି କାନ୍ଦି କହୁଛି, ଛାଡ଼ିଦିଅ । କିଛି ଉତ୍ତମ ମଧ୍ୟମ ପାଇଲେ ବୁଝିପାରିବ ଅପରାଧଟା କେତେ ଗୁରୁତର । ଏହିପରି କହୁ କହୁ ବସାଇଗଲା ପାହାର ପରେ ପାହାର । କୌଣସି ପ୍ରକାରେ ଶିବକୁ ଥାନା ଭିତରୁ ଟାଣି ଆଣି ପଳାଇ ଆସିଛି । ତାଙ୍କର ଚାଲିବା ଶକ୍ତି ନ ଥାଏ । ଆମେ ଚାରିଜଣ ସାଙ୍ଗରେ ଥିଲୁଁ ବୋଲି ଘର ପର୍ଯ୍ୟନ୍ତ ଧରି ଧରି ଆଣିପାରିଲୁଁ ।''

ଶିବବାବୁ ପାଣି ମାଗିଲେ । ମମତା ଚୁଲି ପାଖରୁ ଗରମ ଦୁଧ ଗିଲାସେ ନେଇ ଆସିଲେ । ସେତକ ପିଇସାରିଲା ପରେ ତାଙ୍କ ବାକ୍‌ଶକ୍ତି ଫେରିଲା ।

ବଡ଼ ନାତି ଗୋଡ଼ ପାଖରେ ବସି କ୍ରୋଧରେ ସାନ୍ତ୍ୱନା ଦେଲା, ''ଅଜା, ସେହି ଥାନାବାବୁ ମୁନ୍‌ସିଟାକୁ ଦେଖିପାରିଲେ, ତା ମୁଣ୍ଡକୁ ଢେଲାମାରି ଫଟାଇ ଦେବି । ତୁମକୁ ଯିଏ ମାଡ଼ ମାରିଛି, ତା'କୁ କଦାପି ଛାଡ଼ିବି ନାହିଁ ।''

ଅସହ୍ୟ ଯନ୍ତ୍ରଣା ମଧ୍ୟରେ ଶିବବାବୁ ବୁଝାଇଲେ, ''ଦେଖ, ସେହି ମୁନ୍‌ସି ପାଖରେ ରହିଛି ଖୋଦ୍ ଭାରତ ସମ୍ରାଟ୍‌ଙ୍କର ବଳ । ତା'ଙ୍କୁ ଢେଲା ମାରିଲେ, ସେଇଟା ବାଜିବ ସମ୍ରାଟ୍‌ଙ୍କ ମୁକୁଟରେ । ସେଥିପାଇଁ ତୋ ବାବାଙ୍କୁ ପୁଲିସବାଲା ପିଟି ପିଟି ମାରିଦେବେ । ମହାତ୍ମା କ'ଣ ବିନା କାରଣରେ ଅହିଂସ ସଂଗ୍ରାମ ଚଳାଇଛନ୍ତି ? କୌଣସିପ୍ରକାର ହିଂସା କରିବା ଚିନ୍ତା ମନକୁ ଆଣିବୁ ନାହିଁ ।''

ଶିବବାବୁ ମମତା ମୁହଁକୁ କରୁଣ ଦୃଷ୍ଟିରେ ଚାହିଁରହି କହିଲେ, ''ତପସ୍ୱୀଙ୍କୁ ବିଚାର ଲାଗି ଅଦାଲତକୁ ନିଆଗଲାଣି । କଠୋର ଦଣ୍ଡ ବା ନରମ ଦଣ୍ଡ ମିଳିବ, ସେ ବିଷୟ କିଏ କହିପାରିବ !''

ଝିଅର ହାତଧରି ଧୀରେ ଧୀରେ ଶିବବାବୁ ନିଜର ଶୟନ କକ୍ଷରେ ପ୍ରବେଶ କରି ବିଛଣା ଉପରେ ଶୋଇପଡ଼ିଲେ । ଅନ୍ୟମାନେ ବିଦାୟ ନେଲେ । ନାତିମାନେ ଅଜାଙ୍କ ଗୋଡ଼ ଘଷିବାପାଇଁ ଦୁଇ ପାଖରେ ବସିଗଲେ ।

ଆକାଶରେ ଦେଖାଗଲା ବୈଶାଖର ପ୍ରଥମ ଅଦିନ ମେଘମାଳା । ସଙ୍ଗେ ସଙ୍ଗେ ଆସିଗଲା ବର୍ଷା ସହିତ ଝଡ଼ । ଚାଳର କୁଟା ଉଡ଼ିଯାଉଥାଏ । ମାଡ଼ି ଆସିଲା ଗଭୀର ଅନ୍ଧକାର ।

ଚୁଲି ପାଖରେ ବସି ମମତା ଭାବୁଥାନ୍ତି, ଯଦି ଜଣେ କ୍ଳାନ୍ତ ପରିଶ୍ରାନ୍ତ ବୃଦ୍ଧ ବ୍ୟକ୍ତିଙ୍କୁ ପୁଲିସ ନିର୍ଦ୍ଦୟ ଭାବରେ ପ୍ରହାର କରିପାରିଲା, ଜଣେ ସ୍ୱାସ୍ଥ୍ୟବାନ୍ ଓ ବଳବାନ୍ ଯୁବକଙ୍କ ପ୍ରତି ସେମାନେ କେଉଁ ପ୍ରକାର ଶାସ୍ତି ଦେଉ ନ ଥିବେ ! ସେହି କାଳରାତ୍ରିରେ ସେ ତା'ଙ୍କ ମନକୁ ପଥର କରି ରଖିଲେ । ଅନିଦ୍ରା ମଧ୍ୟରେ ପ୍ରାର୍ଥନା ହିଁ ହେଲା ଏକମାତ୍ର ସାନ୍ତ୍ୱନା ।

କିଛିଦିନ ପରେ ସମ୍ବାଦ ମିଳିଲା, ଆଇନ ଭଙ୍ଗ ଅପରାଧ ଯୋଗୁଁ ତପସ୍ୱୀବାବୁଙ୍କୁ ସରକାର ଦୁଇବର୍ଷ ସଶ୍ରମ କାରାଦଣ୍ଡ ଦେଇଛନ୍ତି ।

## ॥ ୨ ॥

ତିନି ସପ୍ତାହ ବିତିଗଲେ ମଧ୍ୟ ଶିବବାବୁଙ୍କ ସ୍ୱାସ୍ଥ୍ୟ ପୂର୍ବାବସ୍ଥାକୁ ଫେରିଲା ନାହିଁ । କିଏ କହିଲା, ପୁଲିସ ମାଡ଼ରେ ପିଞ୍ଜରା ହାଡ଼ ଜଖମ ହୋଇଯାଇଛି । ଆଉ କେହି କେହି ମତ ଦେଲେ, ଥାନାବାବୁଙ୍କ ଧକ୍କା ଖାଇ କଚାଡ଼ି ପଡ଼ିଗଲା ପରେ ଛାତିରେ ଆଘାତ ଲାଗିଛି । କବିରାଜଙ୍କୁ ଡକାଗଲା । କିନ୍ତୁ ହାଡ଼ ବିଷୟରେ ସେ କିଛି କହିପାରିଲେ ନାହିଁ । କେବଳ ଉତ୍ତାପ ଉପଶମ ନିମନ୍ତେ ଔଷଧ ଦେଲେ । ମମତା ବାରମ୍ବାର ବାପାଙ୍କୁ ଅନୁରୋଧ କରୁଥିଲେ, ଥରେ ସହର ଯାଇ ଏକ୍ସ-ରେ କରି ଦେଖିଲେ ସବୁ ସନ୍ଦେହ ଦୂର ହୋଇଯିବ । ବାପା କିନ୍ତୁ ଝିଅର କଥାରେ ରାଜି ହେଲେ ନାହିଁ । ତାଙ୍କର ବିଶ୍ୱାସ ଥାଏ, ଆପେ ଆପେ ସବୁ ଭଲ ହୋଇଯିବ । ଶ୍ୟାମାନନ୍ଦ ପ୍ରତିଦିନ ଆସି ଦେହର ଅବସ୍ଥା ବୁଝିଯାଉଥାନ୍ତି । ଗ୍ରାମବାସୀଙ୍କ ଯିବାଆସିବା ଲାଗି ରହିଥାଏ । ଶିବବାବୁ ସେମାନଙ୍କୁ ଚିନ୍ତା କରିବା ଲାଗି ମନା କରୁଥାନ୍ତି । ଜଣେ ବଦାନ୍ୟ ବ୍ୟକ୍ତି କୌଣସି ଦୂରବର୍ତ୍ତୀ ହାଟରୁ ଗୋଟିଏ ଆୟୁର୍ବେଦ ତେଲ ମାଲିସ କରିବାପାଇଁ ଆଣି ଦେଇଥାନ୍ତି ।

ଦିନେ ସକାଳବେଳା ପରେ ବାହାର ଲୋକ କେହି ନ ଥାନ୍ତି । ମମତା ସେତେବେଳେ ଦୁଆର ପିଣ୍ଡା ପରିଷ୍କାର କରୁଥାନ୍ତି । ତେଜସ୍ୱୀ ପଢୁଥାଏ । ତଳ ଦୁଇଭାଇ ଖେଳୁଥାନ୍ତି । ଘର ଭିତରେ ଦୋଳିରେ ଶୋଇଥାଏ କରୁଣା ।

ଅକସ୍ମାତ୍ ଆସି ପହଞ୍ଚିଗଲେ ଜମିଦାରବାବୁଙ୍କ ପିଆଦା । ତା'ଙ୍କ ମିଜାଜ୍ କିଛି କମ୍ ନ ଥାଏ । ହୁକୁମ୍ ଦେଲେ, ''ଶିବ ମାଷ୍ଟ୍ରଙ୍କୁ ଡାକ ।'' ମମତା ଉତ୍ତର ଦେଲେ, ''ସେ ବିଛଣାରୁ ଉଠିପାରୁ ନାହାନ୍ତି । ଦେହରେ ଉତ୍ତାପ ଅଛି । ପିଠି ଓ ଛାତିରେ ଦରଜ କମି ନାହିଁ । ଶୋଇଛନ୍ତି ।''

''ଜମିଦାରବାବୁ ତା'ଙ୍କ କଚେରିକୁ ଡାକି ପଠାଇଛନ୍ତି । ଏହି ଗାଁ ପାଖକୁ ସେ ଦୁଇଦିନ ପାଇଁ ଆସିଛନ୍ତି । ଆଜି ଦେଖା କରିବାକୁ ପଡ଼ିବ । ନ ଗଲେ ବିପଦରେ ପଡ଼ିବେ ।''

''ତା'ଙ୍କ ବଦଳରେ ମୁଁ ଗଲେ ଚଳିବ ?'' ପଚାରିଲେ ମମତା ।

''ସେ କଥା ମୁଁ କିପରି ଜାଣିବି ? ଏହି ଅଞ୍ଚଳର ଖାତକମାନଙ୍କୁ ଡକାଇଛନ୍ତି । ତୁମ ବାପା ତାଙ୍କର ଜଣେ ଖାତକ । ସେ ନିଜେ ଦେଖାକଲେ ହିସାବ ନିକାଶ କରାଯିବ । ଏକଥା ତୁମ ବାପାଙ୍କୁ ଜଣାଇଦିଅ ।''

ପିଆଦାଙ୍କ ମୁଣ୍ଡରେ ଥାଏ ଟୋପି, ହାତରେ ଲାଠି । କଥାଗୁଡ଼ାକ ରୋକ୍ ଠୋକ୍ । ଜମିଦାରଙ୍କ ଆଦେଶ ଜଣାଇଦେଇ ସେ ଅନ୍ତର୍ଦ୍ଧାନ ହେଲେ ।

ମମତା ଦ୍ୱନ୍ଦ୍ୱରେ ପଡ଼ିଲେ । ଗାଁ ପାଖରୁ ମାଇଲିଏ ଦୂରରେ କଚେରି ଘର । ବାପାଙ୍କୁ ଜଣାଇଲେ ସେ ବାହାରି ପଡ଼ିବେ, କାରଣ ଜମିଦାରମାନଙ୍କ ଆଦେଶ ଶିରୋଧାର୍ଯ୍ୟ । ଅଥଚ, ସେତେ ବାଟ ସେ ଚାଲିପାରିବେ ନାହିଁ । ଶ୍ୟାମାନନ୍ଦବାବୁଙ୍କୁ ପଚାରିବେ ବୋଲି ଭାବିଲେ । କିନ୍ତୁ ସେ ତ ଖାତକ ନୁହଁନ୍ତି ! ତା'ଙ୍କୁ ଜଣାଇଲେ ସେ ନିଶ୍ଚୟ କଚେରିକୁ ଚାଲିଯିବେ । ସେଠାକୁ ଯାଇ ଜମିଦାରବାବୁଙ୍କ ସହିତ ଯୁକ୍ତିତର୍କ କରିବାକୁ ସେ ଡରିବେ ନାହିଁ । ଏହି ସବୁ ଚିନ୍ତା କରି ମମତା ନିଜେ କଚେରିକୁ ଯିବାଲାଗି ସାହସ ବାନ୍ଧିଲେ । ବିଶ୍ୱାସ ଆସିଲା, ବାପାଙ୍କ ଶାରୀରିକ ଅବସ୍ଥା ବିଷୟ ବର୍ଣ୍ଣନା କଲେ, ଜମିଦାର ନିଶ୍ଚୟ ଋଣ ପରିଶୋଧ ଲାଗି ଯଥେଷ୍ଟ ସମୟ ଦେବେ । ଟଙ୍କା ଋଣ କରାଯାଇଛି । ଫେରାଇବାକୁ ହେବ । କେବଳ କିଛି ସମୟ ପାଇଁ ପ୍ରାର୍ଥନା କରିବା ଆବଶ୍ୟକ ।

ମମତା ଘର ଭିତରକୁ ଗଲେ । ଶିବବାବୁ ଶୋଇଥାନ୍ତି । ଜମିଦାରଙ୍କ କଥା ତା'ଙ୍କୁ କହିବାକୁ ସାହସ କଲେ ନାହିଁ । ନିଜ କୋଠରିରେ ଶାଢ଼ି ପରିବର୍ତ୍ତନ ପରେ ବାହାରି ଆସି ପିଲାମାନଙ୍କୁ କହିଲେ, ''ଦୁଆରେ ଧୀରସ୍ଥିର ଭାବରେ ବସି ପାଠ ପଢୁଥାଅ । କରୁଣା କାନ୍ଦିଲେ ଜଣେ ଯାଇ ଦୋଳି ଝୁଲାଇଲେ ସେ ଶୋଇଯିବ । ମୁଁ ଦୋକାନକୁ ଯାଉଛି । ଘଣ୍ଟାଏ ପରେ ଫେରିବି ।'' ବିସ୍ମିତ ଦୃଷ୍ଟିରେ ବଡ଼ପୁଅ ଚାହିଁ ରହିଥାଏ ।

ମୁଣ୍ଡରେ ଓଢ଼ଣା ଦେଇ କ୍ଷିପ୍ର ଗତିରେ ମମତା ଆଗେଇ ଚାଲିଲେ ଜମିଦାରବାବୁଙ୍କ କଚେରି ଦିଗକୁ । ସ୍ଥାନଟି ପୂର୍ବରୁ ଦେଖିଥାନ୍ତି । ପରିଚିତ ରାସ୍ତା । ଗାଁଲୋକେ ହଳକାମ ଲାଗି ନିଜ ନିଜ କ୍ଷେତକୁ ଚାଲିଯାଇଥାନ୍ତି । ବାଟରେ କାହାରି ସହିତ ସାକ୍ଷାତ ହେବା ସମ୍ଭାବନା ନ ଥାଏ ।

କଚେରି ଗେଟ୍ ପାଖରେ ପହଞ୍ଚିଗଲେ । ସାହସ ସହ ଭିତରକୁ ପଶିଲେ । ପ୍ରଶସ୍ତ ବାରଣ୍ଡା ଉପରେ ଚେୟାର ଟେବୁଲ ପକାଇ ବସିଥାନ୍ତି ନାଏବବାବୁ । ପାଖରେ ଥାନ୍ତି ପଗଡ଼ିପିନ୍ଧା ଓ ଲାଠିଧାରୀ ପିଆଦାମାନେ । ଜଣକ ପରେ ଜଣେ ଖାତକ ଆସୁଥାନ୍ତି । ସୁଧ ଅସଲ ଦାଖଲ କରି କିମ୍ବା ଅକଥ୍ୟ ଭାଷାରେ ଗାଳି ଶୁଣି ଫେରିଯାଉଥାନ୍ତି ।

ଶେଷରେ ପଡ଼ିଲା ମମତାର ପାଳି । ସେତେବେଳକୁ ସ୍ୱୟଂ ଜମିଦାରବାବୁ ବାହାରକୁ ଆସି ବାରଣ୍ଡାର ଶେଷ ସୀମାରେ ଥିବା ତା'ଙ୍କ ଆରାମ ଚେୟାରରେ ବସିଯାଇଥାନ୍ତି । ମୁହଁରେ ଲାଗିଥାଏ ସୁଲମ୍ବିତ ରବର ନଳର ରୌପ୍ୟମଣ୍ଡିତ ଶେଷ ଭାଗ । ଅଳ୍ପ ଦୂରରେ ରହିଥାଏ ପିତଳ ନିର୍ମିତ ଓ କାରୁକାର୍ଯ୍ୟ ମଣ୍ଡିତ ହୁକ୍କା । ମୁହଁରୁ ବାହାରୁଥାଏ ସୁବାସିତ ତମାଖୁ ଧୂଆଁ ।

ମମତା ନାଏବବାବୁଙ୍କୁ ସଭକ୍ତି ପ୍ରଣାମ ଜଣାଇ ନିଜର ପରିଚୟ ଦେଲେ । ନାଏବ ବାବୁ ସଙ୍ଗେ ସଙ୍ଗେ ଛିଡ଼ା ହୋଇପଡ଼ି ଜମିଦାରବାବୁଙ୍କ ଦିଗକୁ ଅନାଇ ଜଣାଇଲେ, ''ହଜୁର, ଶିବ ମାଷ୍ଟ୍ରେଙ୍କ ଝିଅ ଆସିଛି । ତା' ବାପା ଅସୁସ୍ଥ । ପିଆଦାଠାରୁ ତାଗିଦ୍ ପାଇ ଦୌଡ଼ି ଦୌଡ଼ି ଆସିଛି ।'' ଦୟାସୂଚକ ଭାଷା ।

''ମୋ ଆଗକୁ ପଠାଇଦିଅ,'' ଗମ୍ଭୀର ସ୍ୱରରେ ଜମିଦାରବାବୁ ଆଦେଶ ଦେଲେ ।

ସଂକୋଚ, ଭୟ ଓ ଲଜ୍ଜାର ମିଶ୍ରିତ ମନୋଭାବ ସହ ମମତା ଧୀର ପଦକ୍ଷେପରେ ପହଞ୍ଚିଲେ ଜମିଦାରବାବୁଙ୍କ ସମ୍ମୁଖରେ । ଆଚମ୍ବିତ ହୋଇ ଦେଖିଲେ, ଜମିଦାରଙ୍କ ପାଦଦ୍ୱୟ ଦିଗକୁ ଦୁଇ ବାହୁ ଲମ୍ବାଇ ରଖି ମେଜିଆ ଉପରେ ଶୋଇ ରହିଛି ଛିନ୍ନବସ୍ତ୍ର ପରିହିତ ଜଣେ ଦରିଦ୍ର ପ୍ରଜା । କର୍କଶ ସ୍ୱରରେ ଜମିଦାର ପିଆଦାମାନଙ୍କୁ ଆଦେଶ ଦେଲେ, ''ଶଳାଟାକୁ ଏଠାରୁ ଘୋଷାରି ନେଇଯା । ବେଧ ଚାରିବର୍ଷ ଖଜଣା ଦେଇ ନାହିଁ । ତା' ଘର କୋରଖ କର ଓ ଜମିବାଡ଼ି ଛଡ଼ାଇ ନିଅ ।''

ଦୁଇଜଣ ପିଆଦା ଉଗ୍ର ରୂପ ଧାରଣ କରି ପ୍ରଭୁଙ୍କ ଆଦେଶ ପାଳନ ଲାଗି ଆସିଗଲେ । ଲୋକଟିକୁ ଟେକିନେଇ କଚେରି ଫାଟକ ଅପର ପାଖ ରାସ୍ତା ଉପରେ

କଚାଡ଼ି ଦେଲେ । ମମତା ଅବନତ ମସ୍ତକରେ ବିନମ୍ର ପ୍ରଣାମ ଜଣାଇ ଛିଡ଼ା ହେଲେ । ନିଜର ଆପତ୍ତି ଜଣାଇବା ପୂର୍ବରୁ ଜମିଦାରବାବୁଙ୍କ କଣ୍ଠରୁ ଅନର୍ଗଳ ନିଃସୃତ ହେଲା ତାଙ୍କ ବକ୍ତବ୍ୟ-

''ତୋ ବାପା ଶିବ ମାଷ୍ଟ୍ରେଙ୍କ ପରି ମୁଁ ମଧ ତୋ ବରଟାକୁ ଗୋଟିଏ ଧୀର ଶାନ୍ତ ଟୋକା ବୋଲି ଭାବିଥିଲି । ସେଥିପାଇଁ ତା ପଢ଼ିବା ଖର୍ଚ୍ଚର ଗୋଟିଏ ଭାଗ ମୁଁ ତୋ ବାପାଙ୍କୁ ଦେଉଥିଲି । କିନ୍ତୁ ସେହି ପାଠୁଆ ଟୋକାଟା ହେଲା କଂଗ୍ରେସିଆ ବଦ୍‌ମାସମାନଙ୍କ ସର୍ଦ୍ଦାର । ସେହି ଗାନ୍ଧି ବୁଢ଼ା କଥାରେ ଭାସିଯାଇ ମହାମାନ୍ୟ ସମ୍ରାଟ୍‌ଙ୍କ ବିପକ୍ଷରେ ଯୁଦ୍ଧ ଘୋଷଣା କରିଛି ! ରାଜାରାଜୁଡ଼ାମାନଙ୍କ ଅତ୍ୟାଚାର କଥା ବି ଲୋକଙ୍କୁ କହୁଛି । ଶେଷରେ ଆମପରି ଜମିଦାରମାନଙ୍କ ବିରୋଧରେ ମଧ ମେଳି ବାନ୍ଧିବାକୁ ପ୍ରଜାମାନଙ୍କୁ ଶିକ୍ଷା ଦେଉଛି । ଠିକ୍ ଅଛି, ତା ସ୍ତ୍ରୀ ହିସାବରେ ତୋତେ ଆଜି ତାଗିଦ୍ କରିଦେଉଛି, କଂଗ୍ରେସିଆ ତପସ୍ବୀ ଯଦି ମୋ ବିପକ୍ଷରେ କିଛି କରିବ, ଦୁଇବର୍ଷ ନୁହେଁ ଚଉଦ ବର୍ଷ ଜେଲରେ ରଖିଦେବି । ଏ କଥା ତା'କୁ କହିଦେବୁ । ଆଉ ତୋ ବାପାକୁ କହିଦେବୁ, ସେହି ଟୋକାଟାର ପଢ଼ିବା ଖର୍ଚ୍ଚ ପାଇଁ ମାସକୁ କୋଡ଼ିଏ ଟଙ୍କା ହିସାବରେ ବର୍ଷକୁ ୨୪୦ ଟଙ୍କା ଦେଇଥିଲି, ପୁଣି ପୂରା ଚାରିବର୍ଷ ପାଇଁ । ସୁଧ ଅସଲ ସବୁ ଟଙ୍କା ମାସକ ମଧରେ ଫେରାଇ ଦେବାକୁ କହିବୁ । ନଚେତ୍, ରୁପାଖଲା ଇଲାକାରେ ଥିବା ମୋ ଜମିଦାରୀରେ ଯେଉଁ ପାଞ୍ଚ ଏକର ଚାଷ ଜମି ତୋ ବାପାଙ୍କ ନାମରେ ପଟ୍ଟା ଦେଇଥିଲି, ସେ ଜମି ବାଜ୍ୟାପ୍ତ କରିନେବି । ଏକମାସ ସମୟ ଦେଲି । ତୁ ମୋ ଆଗରୁ ବାହାରି ଯା ।''

ଉତ୍ତର ଦେବାକୁ କିମ୍ବା ମିନତି କରିବାକୁ ମମତାର ସାହସ ହେଲା ନାହିଁ । ଅଭଦ୍ର ଭାଷା ଶୁଣିଥିବା ସତ୍ତ୍ୱେ ଜମିଦାରଙ୍କୁ ପ୍ରଣାମ ଜଣାଇ ସେ ଧୀରେ ଧୀରେ ରାସ୍ତା ଧରିଲେ । ଘରେ ପହଞ୍ଚିବା ବେଳକୁ ଦିନ ଦୁଇ ପ୍ରହର । ବାରଣ୍ଡାରେ ବସି ପିଲାମାନେ ଅଜାଙ୍କ ନିକଟରୁ କାହାଣୀ ଶୁଣୁଥାନ୍ତି । ଶିବବାବୁ ପଚାରିଦେଲେ, ''ମୋତେ ନ ଜଣାଇ କୁଆଡ଼େ ଯାଇଥିଲୁ ? ଏତେ ପର୍ଯ୍ୟନ୍ତ କେଉଁଠି ଥିଲୁ ?''

''ପରେ କହିବି'' ବୋଲି ଉତ୍ତର ଦେଇ ମମତା ହାଣ୍ଡିଶାଳକୁ ଚାଲିଗଲେ । ଶୀଘ୍ର ରନ୍ଧା କାମ ଶେଷ କରିବାକୁ ହେବ ।

ସନ୍ଧ୍ୟାବେଳକୁ ପୁଣି ଅଦିନିଆ ମେଘ ଘୋଟି ଆସିଲା । ଶିବବାବୁ ବିଛଣା ଉପରେ ଆଶ୍ରୟ ନେଲେ । ପିଲାମାନେ ତାଙ୍କ ଶେଯ ତଳେ ବସି ଗପ ଶୁଣିବେ ବୋଲି ଅଡ଼ି ଧରିଲେ । ମମତା ଲଣ୍ଠନଟିଏ ଜଳାଇ ଘର ଭିତରେ ଥୋଇଦେଲା ବେଳେ ଶିବବାବୁ

ପଚାରିଲେ, ''ସକାଳଓଳି କୁଆଡ଼େ ଯାଇଥିଲୁ ମୋତେ ଏ ପର୍ଯ୍ୟନ୍ତ କହିଲୁ ନାହିଁ କାହିଁକି ? କ'ଣ କବିରାଜଙ୍କ ପାଖକୁ ଯାଇଥିଲୁ କି ?''

''ନାହିଁ ବାବା, କବିରାଜଙ୍କ ଘରକୁ ନୁହେଁ । ବେଳ ଘଡ଼ିଏ ସମୟରେ ଜମିଦାର ବାବୁ ଆପଣଙ୍କୁ ଡାକିବା ଲାଗି ପିଆଦା ପଠାଇଥିଲେ । କଚେରି ପର୍ଯ୍ୟନ୍ତ ଆପଣ ଚାଲିପାରିବେ ନାହିଁ ଜାଣି ମୁଁ ଚାଲିଗଲି । ତାଙ୍କର ସବୁ ରାଗ ଆପଣଙ୍କ ଜୁଆଇଁଙ୍କ ଉପରେ । ତାଙ୍କ ପାଠ ପଢ଼ିବା ପାଇଁ ଯେତେ ଟଙ୍କା ଦେଇଥିଲେ, ସୁଧ ଅସଲ ମିଶାଇ ସବୁ ଟଙ୍କା ଏକମାସ ମଧ୍ୟରେ ଫେରାଇ ଦେବାକୁ କହିଛନ୍ତି । ଋଣ ପରିଶୋଧ ନ କଲେ ରୁପାଖଳାରେ ଥିବା ଆମର ପାଞ୍ଚ ଏକର ଜମି ବାଜ୍ୟାପ୍ତ କରିନେବେ ।''

ଶିବବାବୁ ଚମକି ଉଠିଲେ । ''ରୁପାଖଳାର ଚାଷ ଜମି ଛଡ଼ାଇ ନେବେ । ସେହି ଖଣ୍ଡିକ ଆମର ଭାତ ହାଣ୍ଡି । ନା, ମୁଁ ଆଗାମୀ କାଲି କଚେରି ଯାଇ ତା'ଙ୍କ ଗୋଡ଼ ଧରିବି ।''

''ଅଜା, ତୁମେ ଜମିଦାରର ଗୋଡ଼ ଧରିବ କହୁଛ ? ସେହି ଦୁଷ୍ଟଟାକୁ ସାବାଡ଼ କରିଦେବି,'' ଗର୍ଜନ କରି ଉଠିଲା ବଡ଼ନାତି ତେଜସ୍ୱୀ ।

''ଚୁପ୍ କର୍ । ଜମିଦାରମାନେ କିପରି ମଣିଷ ତୁ ଜାଣିଛୁ ?'' ଧମକ ଦେଲେ ଶିବବାବୁ ।

ଧୀର ଭାବରେ ମମତା କହିଲେ, ''ମୁଁ ଭାବିଥିଲି ଆମ ଜମିଦାରବାବୁ ଜଣେ ଭଦ୍ର ଓ ଦୟାବାନ୍ ବ୍ୟକ୍ତି । କିନ୍ତୁ ଆଜି ମୋ ଧାରଣା ବଦଳି ଗଲା । ତା'ଙ୍କ ଗୋଡ଼ଧରି ପଡ଼ି ରହିଥିବା ଦରିଦ୍ର ପ୍ରଜାଟିକୁ ପିଆଦାମାନେ ଶୂନ୍ୟରେ ଟେକିନେଇ ରାସ୍ତା ଉପରେ ଫୋପାଡ଼ି ଦେଲେ । ତା ଦୋଷ, ଖଜଣା ଦେଇ ନ ଥାଏ ।''

''ଅଜା, ଆପଣ ସେହିପରି ଚଣ୍ଡାଳର ଗୋଡ଼ ଧରିବାକୁ ଯିବେ କି ?'' ପଚାରିଲା ତେଜସ୍ୱୀ ।

ବ୍ୟଥିତ ମନରେ ଦୀର୍ଘଶ୍ୱାସ ଛାଡ଼ି ଶିବବାବୁ ଉତ୍ତର ଦେଲେ, ''ତୋ ବାବାଙ୍କ ପାଠପଢ଼ା ଲାଗି ଟଙ୍କା ଋଣ ନେଇଥିଲି । ଫେରାଇ ଦେବାକୁ ସମ୍ବଳ ନାହିଁ । ତେଣୁ ତା'ଙ୍କ ଗୋଡ଼ ଧରିବାକୁ ମୁଁ ବାଧ୍ୟ ।''

ବର୍ଷା ଆରମ୍ଭ ହେଉଥିବାବେଳେ ଶ୍ୟାମାନନ୍ଦବାବୁ ଘର ଭିତରକୁ ପଶି ଆସିଲେ । ପଚାରିଲେ, ''ଶିବ, ଆଜି କେମିତି ଅଛ ?''

''ଭଲ ଅଛି । ଦୁଇ ଚାରିଥର ଚଲାବୁଲା କଲିଣି । ତେଲ ମାଲିସଦ୍ୱାରା ଉପକାର ମିଳୁଛି । ଶ୍ୟାମ, ପୁଲିସର ଲାଠି ମାଡ଼ରୁ ସିନା ଭଲ ହୋଇଯାଇପାରେଁ, କିନ୍ତୁ ଜମିଦାର ବାବୁଙ୍କ ବଜ୍ରାଘାତରୁ ବଞ୍ଚିବା ସମ୍ଭବ ନୁହେଁ । ଜୋଇଁଙ୍କ ପଢ଼ିବା ଲାଗି ଯେଉଁ ଟଙ୍କା ଋଣ କରିଥିଲି ତାହା ମାସକ ମଧ୍ୟରେ ପରିଶୋଧ ନ କଲେ ମୋ ଜମି ଛଡ଼ାଇ ନେବେ ବୋଲି ଆଜି ସକାଳେ ମମତାକୁ ଜଣାଇ ଦେଇଛନ୍ତି ।''

ଶ୍ୟାମାନନ୍ଦବାବୁ କିଛି ସମୟ ପାଇଁ ଚିନ୍ତାଗ୍ରସ୍ତ ଅବସ୍ଥାରେ ବସି ରହିଲେ । ତାହାପରେ ବନ୍ଧୁଙ୍କୁ ଆଶ୍ୱାସନା ଦେବା ଉଦ୍ଦେଶ୍ୟରେ କହିଲେ, ''ମୋତେ ଯଦି କହିବ, ମୁଁ ଯାଇ ଦୁଇବର୍ଷ ସମୟ ମାଗିବି । ତପସ୍ୱୀ ଜେଲରୁ ବାହାରିଲେ ଯେକୌଣସି ଉପାୟରେ ଟଙ୍କା ପରିଶୋଧ କରିଦେଇପାରିବ । ସରକାରୀ ଚାକିରି ସିନା କରିବ ନାହିଁ କିମ୍ବା ଜେଲ ଫେରନ୍ତାମାନଙ୍କୁ ମଧ୍ୟ ଚାକିରି ମିଳିବ ନାହିଁ । ହେଲେ, କୌଣସି ଘରୋଇ ସ୍କୁଲରେ ମାଷ୍ଟର କାମତ କରିପାରିବ । ନଚେତ୍ କୌଣସି ବ୍ୟବସାୟ । କିଛି ନ ହେଲେ ବି ହାଟ ଉପରେ ଦୋକାନଟାଏ ବସାଇ ଦୁଇ ପଇସା ରୋଜଗାର କରିପାରିବ ।''

ଶିବବାବୁ ଉତ୍ତର ଦେଲେ, ''ଚେଷ୍ଟା କରିପାର । ମୋର କିନ୍ତୁ ବିଶ୍ୱାସ ହେଉ ନାହିଁ ଯେ ଜମିଦାର ତୁମ ଅନୁରୋଧ ରକ୍ଷା କରିବେ ।''

ବର୍ଷା ଛାଡ଼ି ଯାଇଥାଏ । ଶ୍ୟାମାନନ୍ଦବାବୁ ନିଜ ଘରକୁ ଚାଲିଗଲେ । ତେଜସ୍ୱୀ ଅଜାଙ୍କୁ ପ୍ରଶ୍ନ କଲା, ''ଜମିଦାର କ'ଣ ଆମ ଜମି ନିଜ ଇଚ୍ଛାରେ ଛଡ଼ାଇ ନେଇପାରିବ ? ଆମେ ହଳ କରିଛୁଁ । ବର୍ଷାଋତୁରେ ଧାନ ରୁଆ ହେବ । ଶୀତଦିନକୁ ଧାନ ପାଚିଲେ ଆମେ ଅମଳ କରିବୁଁ । ଜମିଦାର କିମିତି ଆମ ଚାଷ ଜମି ଦଖଲ କରିବ ?''

''ଏ ସବୁ ବିଷୟ ତୁ ବୁଝିପାରିବୁ ନାହିଁ । ପାଠ ପଢ଼ିଲେ, ବଡ଼ ହେଲେ, ଆମ ଦେଶର ଅବସ୍ଥା ଜାଣିବୁ । ବିଦେଶୀ ସରକାର ଏହି ଜମିଦାରମାନଙ୍କୁ ସୃଷ୍ଟି କରି ପ୍ରଜାମାନଙ୍କୁ ଡରାଇ ଥରାଇ ରଖିଛି । ଏମାନେ ଆମକୁ ଜମି ପଟା ଦେଇଛନ୍ତି । ଇଚ୍ଛାକଲେ, ଯେ କୌଣସି ବାହାନା ଦେଖାଇ ଜମି ଦଖଲ କରିନେଇ ପାରିବେ । ଏମାନଙ୍କ ପଛରେ ସରକାର ରହିଛି । ପ୍ରଜାମାନଙ୍କ ପାଖରେ କେହି ଛିଡ଼ା ହେବେ ନାହିଁ ।''

''ଅଜା, ମୋ ବାବା ତା ହେଲେ ଠିକ୍ କାମ କରୁଛନ୍ତି । ମହାତ୍ମା ଗାନ୍ଧି ଯଦି ବିଦେଶୀ ସରକାରକୁ ଡରାଇଦେଇ ପାରିବେ, ତେବେ ଏହି ଜମିଦାରଗୁଡ଼ାକ ମଧ୍ୟ ଡରିଯିବେ ।''

"ଜମିଦାର ଯିବେ, ରଜା ମହାରାଜାମାନେ ବି ଯିବେ, ସମ୍ରାଟ୍ ମଧ୍ୟ ସାମ୍ରାଜ୍ୟ ହରାଇବେ । ଦେଶ ଦିନେ ନା ଦିନେ ସ୍ୱାଧୀନ ହେବ । ତୋ ବାବାଙ୍କ ପରି ଦେଶଭକ୍ତମାନେ କଷ୍ଟ କରୁଛନ୍ତି ବୋଲି ତୁମେମାନେ ସ୍ୱାଧୀନତା ପରି ଅମୂଲ୍ୟ ସମ୍ପଦ ଭୋଗ କରିପାରିବ । ଆମେ ବୁଢ଼ାମାନେ ମରିଯାଇଥିବା । ତୁମେ ପିଲାମାନେ ସ୍ୱାଧୀନ ଭାରତର ମୁକ୍ତ ମଣିଷ ଭାବେ ସ୍ୱରାଜ ଶବ୍ଦର ମୂଲ୍ୟ ବୁଝିବ ।"

ପ୍ରଥମ ଶ୍ରେଣୀରେ ପାଠ ପଢୁଥିବା ସ୍ୱରାଜ ଆନନ୍ଦରେ ପାଟିକଲା, "ବାବା ମୋ ନାମ ସେଥିପାଇଁ ସ୍ୱରାଜ ରଖିଛନ୍ତି !"

ସ୍ୱାଧୀନ ହସି ହସି କହିଲା, "ବାବା ମୋ ନାମ ଦେଇଛନ୍ତି ସ୍ୱାଧୀନ । ମୁଁ ସ୍ୱାଧୀନ ଦେଶର ମଣିଷ ହେବି ।"

ଶିବବାବୁ ଝିଅ ମୁହଁକୁ ଚାହିଁଲେ । ମମତା ମୁହଁରେ ଫୁଟି ଉଠିଥାଏ ସ୍ମିତହାସ୍ୟର ରେଖା ।

## ।। ୩ ।।

ସକାଳ ହେଲା । ଆକାଶ ପରିଷ୍କାର ହୋଇଯାଇଥାଏ । ଶ୍ୟାମାନନ୍ଦବାବୁ ସଫା ଧୋତି ପଞ୍ଜାବି ପିନ୍ଧି ଓ କାନ୍ଧରେ ଉତ୍ତରୀୟ ପକାଇ ଦୁଆରେ ପହଞ୍ଚିଲେ । ଶିବବାବୁ ଜଳପାନ ଶେଷକରି ବାହାରକୁ ଆସିଲେ । ପାଖରେ ଥାଏ ବଡ଼ନାତି ।

"ଜମିଦାରଙ୍କ ନିକଟକୁ ଯିବା ପୂର୍ବରୁ ସାକ୍ଷାତ କରିବାକୁ ଆସିଲି । ସର୍ବମୋଟ କେତେ ଟଙ୍କା କରଜ କରିଥିଲ ମୋତେ କହିଦିଅ । ସେ ଯଦି ଚକ୍ରବୃଦ୍ଧି ହାରରେ ସୁଧ କଷିଥିବେ ତାହେଲେ ତୁମ ଅଙ୍କ ଏବଂ ତାଙ୍କ ଅଙ୍କ ମଧ୍ୟରେ ଆକାଶ-ପାତାଳ ତଫାତ୍ ଦେଖିବାକୁ ମିଳିବ," କହିଲେ ଶ୍ୟାମାନନ୍ଦବାବୁ ।

ଶିବବାବୁ ବୁଝାଇଲେ, "ଏ ସବୁ କଥା ଉଠାଇବା ଦରକାର ନାହିଁ । ଟଙ୍କା ଶୋଧ କରିବା ପାଇଁ କେବଳ ଦୁଇବର୍ଷ ସମୟ ମାଗିବ । ତପସ୍ୱୀ ଚାକିରି କରିବ ନାହିଁ । ଜେଲରୁ ବାହାରି ଦୋକାନରେ ବସି ବେପାରୀ ସାଜିବ ନାହିଁ । ତା' ଭବିଷ୍ୟତ ଅନ୍ୟମାନଙ୍କ ହାତରେ । ମୁଁ ଠିକ୍ କରିଛି, ଏଆଡ଼େ ସେଆଡ଼େ ଥିବା ଟୁକୁରା ଜମିଗୁଡ଼ାକ ବିକ୍ରି କରି ଜମିଦାରଙ୍କ ଋଣ ପରିଶୋଧ କରିଦେବି । ତୁମେ ସେତିକି ସମୟ ପାଇଁ କାକୁତି ମିନତି କରିବ । ଗୋଟିଏ ବର୍ଷ ସମୟ ପାଇଲେ ଯଥେଷ୍ଟ ।"

ଶ୍ୟାମାନନ୍ଦବାବୁ ପିଣ୍ଡାରୁ ଓହ୍ଲାଇଲାବେଳେ ତେଜସ୍ୱୀ ଆବେଦନ ଜଣାଇଲା, ''ଅଜା ମୁଁ କଚେରି ଦେଖି ନାହିଁ । ଜମିଦାର କିପରି ଦିଶନ୍ତି ଜାଣେ ନାହିଁ । ତା'ଙ୍କ ରୂପ ଦେଖିବାକୁ ଇଚ୍ଛା ହେଉଛି । ଶ୍ୟାମଅଜାଙ୍କ ସାଙ୍ଗରେ ଯିବି । ମୋତେ ନା କୁହ ନାହିଁ ।''

''ଯିବାକୁ ଇଚ୍ଛା ହେଉଛି ଯଦି ଯାଇପାରୁ । କିନ୍ତୁ କଚେରି ଘର ବାଡ଼ ବାହାରେ ଛିଡ଼ାହୋଇ ଦୂରରୁ ଜମିଦାରଙ୍କୁ ଦେଖିବୁ । ଶ୍ୟାମ ସାଙ୍ଗରେ ତା'ଙ୍କ ଆଗକୁ ଯିବୁ ନାହିଁ । ତୁ ତୋ ବାବାଙ୍କ ପୁଅ ବୋଲି ଜାଣିପାରିଲେ, ଜମିଦାରବାବୁ ତୋ ମୁଣ୍ଡ ଫଟାଇ ଦେବେ । ଜମିଦାରମାନେ ସତ୍ୟାଗ୍ରହୀମାନଙ୍କୁ ଶତ୍ରୁ ବୋଲି ଭାବନ୍ତି । ସେମାନଙ୍କ ବଂଶ ଉପରେ ମଧ୍ୟ ରାଗ ରଖନ୍ତି । ବୁଝିଲୁ !''

ତେଜସ୍ୱୀ ହସିଦେଇ ଶ୍ୟାମାନନ୍ଦବାବୁଙ୍କ ପଛେ ପଛେ ଚାଲିଲା । ବେଳ ପ୍ରାୟ ଏକ ପ୍ରହର ବେଳକୁ କଚେରି ଘର ଦିଶିଲା । ଚାରିପଟେ କଣ୍ଟା ବାଉଁଶର ଶକ୍ତ ବେଢ଼ା । ଭିତରେ ସୁନ୍ଦର ବଗିଚା । ନାନାପ୍ରକାର ଫୁଲ ଫୁଟିଥାଏ । ପକ୍କା ଘରର ବାରଣ୍ଡା ଉପରେ ନୂଆ ନୂଆ ଚେୟାର ଟେବୁଲ ସଜାଇ ରଖାଯାଉଥାଏ । ପିଆଦାମାନେ ଏପାଖ ସେପାଖ ହେଉଥାନ୍ତି । ଶ୍ୟାମବାବୁ ଆଶ୍ଚର୍ଯ୍ୟ ହେଲେ ଯେ କଚେରି ପ୍ରାଙ୍ଗଣରେ କିମ୍ବା ବାହାର ରାସ୍ତାରେ କୌଣସି ପ୍ରଜା ବା ଖାତକର ଦେଖା ନ ଥାଏ ।

ତେଜକୁ ଦୂରରେ ରଖି ଶ୍ୟାମାନନ୍ଦବାବୁ ଫାଟକ ପର୍ଯ୍ୟନ୍ତ ଅଗ୍ରସର ହେଲେ । ସେଠାରେ ନାଲି ପଗଡ଼ି ପିନ୍ଧିଥିବା ଦୁଇଜଣ କନଷ୍ଟେବଲ ଲାଠିଧରି ଛିଡ଼ା ରହିଥାନ୍ତି । ସେମାନଙ୍କୁ ପ୍ରଶ୍ନ କଲେ, ''ହଜୁର ଅଛନ୍ତି ?'' ପକେଟରୁ ବିଡ଼ି ବଣ୍ଡିଲଟିଏ ବାହାରକରି ଦୁଇଙ୍କ ହାତରେ ଗୋଟିଏ ଗୋଟିଏ ଚନ୍ଦନୀ ବିଡ଼ି ସହ ଦିଆସିଲି ଧରାଇଦେଲେ । ତା ପରେ ପୂରା ବଣ୍ଡିଲଟା ମଧ୍ୟ । କନଷ୍ଟେବଲ ବାବୁମାନଙ୍କ ମନ ତରଳି ଗଲାପରି ବୋଧ ହେଲା । ବିଡ଼ିରେ ନିଆଁ ଲଗାଇ ପ୍ରଥମେ ଧୂଆଁର ତାରିଫ୍ କଲେ । ତା'ପରେ ସତର୍କ ବାଣୀ । ''ଯେତେଶୀଘ୍ର ପାରିବୁ ଏଠାରୁ ଦୌଡ଼ି ପଳାଇଯା । ନାଏବବାବୁଙ୍କ ନଜର ପଡ଼ିଲେ ତୋର ପିଠି ଫାଟିବ ଓ ଆମର ଚାକିରି ଯିବ । ଆଜି ହଜୁରଙ୍କ ସାକ୍ଷାତ ଲାଗି କେହି ଆସିବା କଥା ନୁହେଁ । ଅଧମାଇଲ ଦୂରରେ ଚୌକିଦାର ଛିଡ଼ାରହିଛି ବୋଲି ଦେଖିପାରିଲୁ ନାହିଁ ? ତା'କୁ ଡେଇଁ ଆସିଲୁ କିପରି ?''

''ହଁ, ଚୌକିଦାର ଛିଡ଼ା ହୋଇଥିବା ଦେଖିଛି । ସେ ପଗଡ଼ି ବାନ୍ଧୁଥିବାବେଳେ ପଛପଟ କିଆ ବଣବାଟେ ଚାଲିଆସିଲି । ମୋତେ ସେ ଦେଖିପାରି ନାହାନ୍ତି । ମନା କରିଥିଲେ ଏତେଦୂର ଆସିଥାଆନ୍ତି କାହିଁକି ? ଯଦି ଆସିଯାଇଛି, କୃପା କରି

ନାଏବବାବୁଙ୍କୁ କହି ମୋତେ ଜମିଦାରବାବୁଙ୍କ ସହିତ ମାତ୍ର ଗୋଟିଏ ମିନିଟ ପାଇଁ ଦେଖା କରାଇ ଦିଅ ।''

''ଆବେ ତୁ ଗୋଟିଏ ଗଧ କିରେ ? ଆମେ କନଷ୍ଟେବଲମାନେ ବାହାରୁ ଆସିଛୁଁ । ଆଉ ଘଡ଼ିଏ ପରେ ଖୋଦ୍ କଲେକ୍ଟର ସାହେବ ଆସିବେ ପରା ! ଗୋରା କଲେକ୍ଟର ! ଆଗଆଡ଼ିଆ ସେ ପାଖରେ ଦରିଆ କୂଳରେ ସେଦିନ ଯେଉଁ ଲୁଣମରା ଆନ୍ଦୋଳନ ହୋଇଥିଲା ସେହି ଜାଗା ଦେଖିବାପାଇଁ ସେ ଆସିବେ । ସାଙ୍ଗରେ ଗୋରା ପୋଲିସ୍ ସାହେବ ବି ଆସିବେ । ଜମିଦାରଙ୍କ କଚେରିରେ ପହଞ୍ଚି ସେଠାରୁ ଦରିଆ ପାଖକୁ ଯିବେ । ଇନ୍‌କୁଆରି ଶେଷ କରି ଏଠାରେ ଖାଇବେ । ଘୋଡ଼ାରେ ଆସିବେ, ଘୋଡ଼ାରେ ଫେରିବେ । ପଳା, ପଳା, ଶୀଘ୍ର ପଳାଇ ଯା ।''

''ନାଏବବାବୁଙ୍କୁ ଭେଟିପାରିବି ନାହିଁ ?''

''ସାଇବମାନଙ୍କ ଖାଇବା ପାଇଁ ସେ ଏବେ କୁକୁଡ଼ା ଜବେଇ କରୁଥିବେ । ଯଦି ବାହାରି ପଡ଼ିବେ, ତୋ ଉପରେ ଆଖି ପଡ଼ିଗଲେ ସର୍ବନାଶ । ଆଗେ ପଳାଇଯା, ପଛେ କଥା କହିବୁ ।''

ଅଧିକ ସମୟ ଫାଟକ ପାଖରେ ଛିଡ଼ା ରହିବାକୁ ଶ୍ୟାମାନନ୍ଦବାବୁ ସାହସ କଲେ ନାହିଁ । ତରତରରେ ଆସି ଛକ ପାଖରେ ଛିଡ଼ା ହୋଇଥିବା ତେଜକୁ କଲେକ୍ଟରଙ୍କର ଆସିବା ଖବର ଜଣାଇ ଶୀଘ୍ର ଘରକୁ ଫେରିବା ଲାଗି ବ୍ୟଗ୍ର ହୋଇଉଠିଲେ ।

''ନାହିଁ, ନାହିଁ, ଅଜା, ମୁଁ ଏଠାରୁ ଯିବି ନାହିଁ । ଗୋରା ସାଇବମାନଙ୍କୁ ମୁଁ କେବେ ଦେଖି ନାହିଁ । ଆଡ଼ିଆ ପାଖରେ ରହି ସେଠାରୁ ଲୁଚି ଛପି ସେମାନଙ୍କୁ ଦେଖିବି ।''

ଏତକ କଥା କହିଦେଇ ଅତି ବେଗରେ ସେ ଦୌଡ଼ି ପଳାଇଗଲା । ପଛରୁ ପାଟିକରି ଶ୍ୟାମାନନ୍ଦବାବୁ ଯେତେ ଡାକିଲେ ସୁଦ୍ଧା ତେଜସ୍ୱୀ ଶୁଣିଲା ନାହିଁ କି ଫେରିଲା ନାହିଁ । ପିଲାଟି ଅଦୃଶ୍ୟ ହୋଇଯାଇଥାଏ । ଶ୍ୟାମାନନ୍ଦବାବୁ ଭାବିଲେ, ଛୁଆଟିକୁ ଏକାକୀ ଛାଡ଼ିଦେଇ ଗଲେ ତା ମା ମନରେ ଦୁଃଖ ହୋଇପାରେ । ଶିବ ମଧ ମନକଷ୍ଟ କରିପାରନ୍ତି । ବାଧହୋଇ ସେ ଚାଲିଲେ ଦରିଆ କୂଳ ପର୍ଯ୍ୟନ୍ତ ।

ବେଳାଭୂମିରେ ଛିଡ଼ା ରହିଥାନ୍ତି ଏକ ଦଳ ପୁଲିସ । ହାତରେ ଥାଏ ବନ୍ଧୁକ । ଚାହୁଁ ଚାହୁଁ ଅଶ୍ୱପୃଷ୍ଠରୁ ଅବତରଣ କଲେ ଜଣେ ସାହେବ । ପୋଷାକରୁ ଜଣାଯାଉଥାଏ ସେ ଉଚ୍ଚପଦସ୍ଥ ପୋଲିସ ଅଫିସର । ନିର୍ଜନ ବେଳାଭୂମିର ଚାରିଦିଗକୁ ଚାହିଁଲେ । ଅନେକ ଦୂରରେ ବସିଥାନ୍ତି କେତେଜଣ ଧୀବର । ଦରିଆରୁ ମାଛ ଧରିବା ଥାଏ

ସେମାନଙ୍କର ଜୀବିକା ଉପାର୍ଜନର ଏକମାତ୍ର ଉପାୟ । ସାହେବ କନଷ୍ଟେବଲମାନଙ୍କୁ ହୁକୁମ୍ ଦେଲେ, ''ଓ ସବ୍ ଆଦମୀକୋ ପକଡ଼କେ ଲେ ଆଓ ।''

ଦୌଡ଼ିଲେ ପୁଲିସବାଲା । କିଛି ସମୟ ପରେ ହାତରେ ଧରିଥିବା ଜାଲ ସହିତ ଘୋଷାରି ନେଇ ଆସିଲେ ଡଜନେ ପ୍ରାୟ ମତ୍ସ୍ୟଜୀବୀଙ୍କୁ । ସେମାନଙ୍କ ସଙ୍ଗେ ଧରିଆଣିଥାନ୍ତି ବାଲିଆଡ଼ିଆ ଉପରେ ଛିଡ଼ା ହୋଇଥିବା ଶ୍ୟାମାନନ୍ଦବାବୁଙ୍କୁ । ଦାରୋଗାବାବୁଙ୍କ ନଜର ପଡ଼ିଗଲା ତାଙ୍କ ଉପରେ । ମୁନିବଙ୍କ ଆଗରେ ନିଜର ଶକ୍ତି ଓ କର୍ତ୍ତବ୍ୟନିଷ୍ଠା ଦେଖାଇବା ଉଦ୍ଦେଶ୍ୟରେ ପ୍ରଥମେ ବସାଇଦେଲେ ଗୋଟିଏ ଶକ୍ତ ଥାପଡ଼ । ପଚାରିଲେ, ''ତୁ ବେଧ ଏଠାରେ କ'ଣ କରୁଥିଲୁ ? ଧଳା ଲୁଗା, ଧଳା ପଞ୍ଜାବି ଉପରେ ପକାଇଛୁ ଧଳା ଓଡା ! ଆଉ ଧଳା ଗାନ୍ଧି ଟୋପିଟା କେଉଁଠି ଲୁଚାଇ ଦେଲୁ ? ତୁ ଶଳା ଗୋଟିଏ କଂଗ୍ରେସିଆ । କଲେକ୍ଟର ସାହେବ ଏଠାକୁ ଆସିବେ ଜାଣି ଖବରକାଗଜକୁ ଲେଖିବାପାଇଁ ଏଠାରେ ଜଗି ବସିଥିଲୁ ?'' ବସାଇଦେଲେ ଆଉ ଗୋଟିଏ ଥାପଡ଼ । ଦୁଇଜଣ କନଷ୍ଟେବଲକୁ ଆଦେଶ ଦେଲେ, ''ଏହି ଲୋକଟାକୁ ବାନ୍ଧିକରି ନେଇଯାଅ କଚେରି ଘରକୁ । ସେଠାରୁ ଥାନାକୁ ।'' ଶ୍ୟାମାନନ୍ଦବାବୁଙ୍କ ହାତରେ ହାତକଡ଼ି ପଡ଼ିଗଲା । କନଷ୍ଟେବଲମାନେ ତାଙ୍କୁ ଟାଣିଟାଣି ନେଇଗଲେ କଚେରି ଆଡ଼କୁ ।

ଆଗରୁ ଆସୁଥାନ୍ତି ଦଳବଳ ସହ ଜମିଦାରବାବୁ ଏବଂ ତାଙ୍କର ନାଏବ । ସେମାନଙ୍କ ପଛରେ ଘୋଡ଼ା ଉପରେ ବସିଥାନ୍ତି ଇଂରେଜ କଲେକ୍ଟର ସାହେବ । ପିନ୍ଧିଥାନ୍ତି ହାଫ୍ ପେଣ୍ଟ ଓ ହାଫ୍ ସାର୍ଟ । ମୁଣ୍ଡରେ ଥାଏ ସୋଲ ଟୋପି । ଦୁଇ ଗୋଡ଼ରେ ବୁଟ୍ ଜୋତା ।

ବେଳାଭୂମି ଉପରେ ପିଆଦାମାନେ ଦୁଇଟା ବେତ ଚୌକି ପକାଇଲେ । ସେଥି ଉପରେ ବସିଗଲେ ଦୁଇ ସାହେବ । ସମ୍ମୁଖରେ ଓଦା ବାଲି ଉପରେ ଶୋଇ ରହିଥାନ୍ତି ଧୀବରମାନେ । ଭୟରେ ସେମାନଙ୍କ ଦେହ ଥରୁଥାଏ । ପାଖରେ ପଡ଼ିଥାଏ ସେମାନଙ୍କ ଜାଲ । ଭିତରେ ଛଟପଟ ହେଉଥାନ୍ତି କେତେଗୁଡ଼ିଏ ମାଛ । ''ଓ କ୍ୟା ହିଲସା ଫିସ୍ ହ୍ୟାୟ'' ପ୍ରଶ୍ନ କଲେ କଲେକ୍ଟର ମହୋଦୟ । ହାତଯୋଡ଼ି ଛିଡ଼ା ରହିଥିବା ଜମିଦାରବାବୁ ଭାବ ଗଦ୍‌ଗଦ ସ୍ୱରରେ ଉତ୍ତର ଦେଲେ, ''ଜି ହଜୁର, ଇଲିସି, ଇଲିସି ।'' ପୋଲିସ ସାହେବ କହିପକାଇଲେ, ''ମୁଝେ ହିଲ୍‌ସା ଆଚ୍ଛା ଲାଗ୍‌ତା ହ୍ୟାୟ ।''

ଜମିଦାର ପିଆଦାମାନଙ୍କୁ ଆଦେଶ ଦେଲେ,. ''ମାଛଗୁଡ଼ାକ ନେଇ ଯା । ଭଲ ଭାବରେ ଭାଜିବାକୁ କହିବୁ । ସାହେବମାନେ ଖାଇବେ ।''

ଧୀବରମାନଙ୍କୁ ଛିଡ଼ାହେବାକୁ ଆଦେଶ ଦିଆଗଲା । କଲେକ୍ଟର ପଚାରିଲେ, ''କ୍ୟା ତୁମ୍ ସବ୍ ଓ ରୋଜ୍ ଇଧାର ଥା ?'' ନାଏବବାବୁ ବୁଝାଇଦେଲେ, ''ହାକିମ ପଚାରୁଛନ୍ତି ଲୁଣମରା ଦିନ ତୁମେ ଏଠାରେ ଥିଲ ?''

''ମାଛ ଧରୁଥିଲେ,'' ଜଣେ ଆଣ୍ଠୁମାଡ଼ି ବସିପଡ଼ି ହାତ ଯୋଡ଼ିକରି ଉତ୍ତର ଦେଲେ । ପୁଣି ପ୍ରଶ୍ନ ହେଲା, ''ପୁଲିସ୍ କେତନା ଆଦମିକୋ ଲାଠି ମାର୍‌କେ ଜଖମ କରଦିଆ ? କ୍ୟା ଏ ବାତ୍ ସଚ୍ ହେ କମସେ କମ୍ ଏକ ଶ ଆଦମୀ ଜଖମ ହୁଆ ?''

ନାଏବବାବୁ ଭଙ୍ଗା ଭଙ୍ଗା ଭୁଲ୍ ହିନ୍ଦୀରେ କଲେକ୍ଟର ସାହେବଙ୍କୁ ବୁଝାଇବାକୁ ଚେଷ୍ଟା କଲେ ଯାହାର ଅର୍ଥ ଥିଲା, ଶହେ ପର୍ଯ୍ୟନ୍ତ ଲୋକ ଆସିଥିଲେ, ମାଡ଼ ଖାଇଥିଲେ ମାତ୍ର କୋଡ଼ିଏ ଜଣ ଏବଂ ଜେଲ ଯାଇଛନ୍ତି ଏକା ଜଣେ ନେତା ।

ଏନ୍‌କୁଆରି ଶେଷ ହେଲା । କଲେକ୍ଟର ଓ ପୋଲିସ୍ ସାହେବ ଘୋଡ଼ା ପିଠିକୁ ଉଠିଲେ । ବାଲୁକା ରାଶି ଉପରେ ବାଟ ଦେଖାଇ ଦେଖାଇ ଚାଲିଲେ ଜମିଦାରବାବୁ ଏବଂ ତାଙ୍କ ଅନୁଚରମାନେ । ଦାରୋଗାବାବୁ ଶୋଇ ପଡ଼ିଥିବା କେଉଟମାନଙ୍କ ଉପରକୁ ନଇଁପଡ଼ି ହୁକୁମ ଦେଲେ, ''ଆଗାମୀ କାଲି ଦୁଇଟା ବଡ଼ ବଡ଼ ଇଲିସି ମାଛ ଆମ ଘରେ ଦେଇଆସିବୁ । ନ ଦେଲେ ପିଠିରୁ ଛାଲ ଉତାରି ଦେବି । କାନକୁ ଶୁଭିଲା ?''

ଠିକ୍ ସେତିକିବେଳେ ତାଙ୍କ ମେରୁଦଣ୍ଡ ଉପରେ ଠକ୍ କରି ପଡ଼ିଲା ଗୋଟାଏ ବଡ଼ ଆକାରର ପଥର ଢେଲା । ତେଣେ ହଜୁରମାନଙ୍କ ପଛେ ପଛେ ଚାଲିବା ଏକାନ୍ତ ଆବଶ୍ୟକ ଜାଣି ଦାରୋଗା ଆଡ଼ିଆ ଉପରକୁ ଦୌଡ଼ିଲେ । ଚାରି ଦିଗକୁ ଆଖି ମେଲାଇ ଖୋଜୁଥାନ୍ତି, କିଏ ଢେଲା ମାରିଲା, କାହାର ଏତେ ସାହସ ! କିନ୍ତୁ ଦରିଆ କୂଳରେ କିମ୍ବା ବାଲିଆଡ଼ିଆ ଉପରେ ଜନମାନବତ ଦୂରର କଥା, କାଉ ବା ବଗଟିଏ ମଧ୍ୟ ଦେଖାଯାଉ ନ ଥାଏ । ପିଠି ଆଉଁଶି ଆଉଁଶି ସମସ୍ତଙ୍କ ପଛରେ ଦୌଡ଼ିଲେ ପୃଥୁଳକାୟ ଦାରୋଗା ମହାଶୟ ।

କଚେରି ବାରଣ୍ଡାର ତଳ ମାଟିରେ ହାତ କଡ଼ି ପିନ୍ଧି ବସିଥାନ୍ତି ଶ୍ୟାମାନନ୍ଦବାବୁ । ସେତେବେଳକୁ ପାଖରେ ପହଞ୍ଚିଯାଇଥାଏ ବାଳକ ତେଜସ୍ୱୀ । ସେମାନଙ୍କ ଉପରେ ସାହେବମାନଙ୍କ ଦୃଷ୍ଟି ପଡ଼ିଗଲା । ଦାରୋଗାବାବୁ ତତ୍‌କ୍ଷଣାତ୍ ସଫେଇ ଦେଲେ, ''ହଜୁର, ଏହି ଲୋକଟା ଖବରକାଗଜବାଲା । ଆଡ଼ିଆ ଉପରେ ଲୁଚି ଥିଲା । ସେଥିପାଇଁ ଏଠାରେ ଅଟକାଇ ରଖିଛି ।''

ତେଜସ୍ୱୀ ସଙ୍ଗେ ସଙ୍ଗେ ସାହେବମାନଙ୍କ ଆଗକୁ ବାହାରିପଡ଼ି ଉଚ୍ଚସ୍ୱରରେ ଇଂରାଜୀରେ କହିଲା, "No, Never. This Police officer is telling a lie. We came to meet the landlord."

କଲେକ୍ଟର ପିଲାଟିର ଆପାଦମସ୍ତକ ଅବଲୋକନପୂର୍ବକ ସ୍ମିତହାସ୍ୟ ସହ କହିଲେ, "You are speaking good english. Which class do you read in ?"

"In class six."

"What does your father do ?"

"He is a Satyagrahi. He broke the salt law. He is in jail."

"Do you know what is Satyagraha ? Explain it to me."

"It means passive resistance by peaceful and non-violent means."

"Very good. Would you like to serve the Government after your education ?"

"No. Not this Foreign Government. I will serve Gandhi's Government when freedom comes."

"Who is that man with you ?"

"He is our neighbour and like my grandfather."

"Why did you come to the landlord ?"

"My grandfather borrowed money from him to educate my father. We came to beg for time to pay back the money."

ବାଳକଟିର ଦୁଃଖ ବୁଝିବାପାଇଁ କଲେକ୍ଟର ସାହେବ ଜମିଦାରଙ୍କୁ ନିର୍ଦ୍ଦେଶ ଦେଲେ । ଭଙ୍ଗା ଭଙ୍ଗା ଭାଷାରେ ଜମିଦାର ବୁଝାଇବାକୁ ଚେଷ୍ଟାକଲେ ଯେ ପିଲାଟାର ବାପା ସତ୍ୟାଗ୍ରହରେ ମାତିଛି, ଆଇନ ଭଙ୍ଗ କରୁଛି, ପ୍ରଜାମାନଙ୍କୁ ମେଳି କରିବାକୁ ଶିଖାଉଛି । ତେଣୁ ଦୟା କରିବା ଉଚିତ ନୁହେଁ ।

"Both of you may now go," କଲେକ୍ଟର ତେଜସ୍ୱୀ ଓ ଶ୍ୟାମାନନ୍ଦବାବୁଙ୍କ ଆଡ଼କୁ ଅଙ୍ଗୁଳି ଦେଖାଇ ନିର୍ଦ୍ଦେଶ ଦେଲେ ।

ହାତରୁ ଶିକୁଳି ଫିଟାଇ ଦିଆଗଲା । ଶ୍ୟାମାନନ୍ଦବାବୁ ସମସ୍ତଙ୍କୁ ଜୁହାର କରି ବିଦାୟ ନେଲେ । କିନ୍ତୁ ତେଜସ୍ୱୀ କାହାରିଙ୍କୁ ନମସ୍କାର କଲା ନାହିଁ ।

ମଧ୍ୟାହ୍ନ ଭୋଜନ ପରେ କଚେରିର ଏକ ସୁସଜ୍ଜିତ ନିଭୃତ କକ୍ଷରେ ବିଶ୍ରାମ ନେବା ଅବସରରେ କଲେକ୍ଟର ସାହେବ ଜମିଦାରଙ୍କୁ ଡକାଇ ଗୋପନରେ ପରାମର୍ଶ ଦେଲେ, ''ଓ ଲଡ଼କା କୋ ଆପକା ମୁଲକ ସେ ନିକାଲ ଦେନା ଚାହିୟେ ।'' ନତମସ୍ତକରେ ଜମିଦାରବାବୁ ତାଙ୍କ ଆଦେଶ ଗ୍ରହଣ କରିନେଲେ ।

ଶ୍ୟାମାନନ୍ଦବାବୁ ବେଗି ବେଗି ଆଗେଇ ଚାଲିଲେ । କିଛିବାଟ ପଛରେ ଚାଲିଥାଏ ତେଜସ୍ୱୀ । ଫାଟକ ପାଖରୁ କିଛି ଦୂରରେ ଥିବା ଏକ ଛକ ଉପରେ ଛିଡ଼ା ରହିଥାନ୍ତି ଦାରୋଗାବାବୁ, ଏକାକୀ । ''ଏ ପିଲା, ରହିଥା,'' ବୋଲି ତାଙ୍କର ବାକ୍ୟ ଶୁଣି ତେଜସ୍ୱୀ ଅଟକି ଗଲା । ତା କାନ ପାଖରେ ମୁହଁ ଲଗାଇ ଦାରୋଗା ପଚାରିଲେ, ''ଯାହା ପଚାରିବି, ସତ କହିବୁ ?''

''ହଁ, କହିବି ।''

''ମୋତେ କେଉଁ ଲୋକଟା ଢେଲା ମାରିଲା କହିପାରିବୁ ?''

''ବଟ ଗଛର ଉପର ଡାଳରେ ବସି ଲକ୍ଷ୍ୟକରି ପିଠି ଉପରକୁ ଢେଲାଟି ଏମିତି ବଳଦେଇ ଫୋପାଡ଼ିଲି ଯେ ଘରକୁ ଯାଇ ଦେଖିବ ମାଂସ ଫାଟିଥିବ କିମ୍ୱା ହାଡ଼ ଭାଙ୍ଗିଥିବ । ମୋ ଅଜାଙ୍କୁ ତୁମେ ବାଡ଼େଇଥିଲ ବୋଲି ମୋ ହାତରୁ ଫଳ ପାଇଲ ।''

ଦାରୋଗାବାବୁଙ୍କ ଆଖି ଦୁଇଟା ନିଆଁହୁଳା ପରି ଦପ୍ ଦପ୍ କରି ଉଠିଲା । ତେଜର ହାତ ଦୁଇଟା ଧରି ପକାଇ ଗର୍ଜନ ଛାଡ଼ିଲେ, ''ଚାଲ୍, ପୋଲିସ ସାହେବଙ୍କ ଆଗକୁ । ତୋ ପିଠି ଫଟାଇଦେବି ।''

''ଦାରୋଗାବାବୁ, ଏତେ ଦିନ ପୁଲିସ ଚାକିରି କଲଣି । ଏ କଥା ଜାଣି ନାହଁ କି ଚୋର ହାତରୁ ମାଡ଼ ଖାଇ ପୁଲିସବାଲା ସେ କଥା ନିଜ ସ୍ତ୍ରୀଙ୍କୁ ମଧ କହିପାରନ୍ତି ନାହିଁ । ପୋଲିସ ସାହେବଙ୍କ ଆଗରେ ମାଡ଼ ଖାଇଥିବା କଥା ଜଣାଇଲେ ତୁମର ଚାକିରି ଖଣ୍ଡିକ ଚାଲିଯିବ କି ରହିବ ଅକ୍କଲ ଖଟାଇ ଭାବିନିଅ ।''

ଦାରୋଗା ପିଲାଟିର ହାତ ଛାଡ଼ିଦେଲେ । ସେ ଦୌଡ଼ିଚାଲିଲା ଆଗକୁ । ଶ୍ୟାମାନନ୍ଦବାବୁ ପଚାରିଲେ, ''ଦାରୋଗା କ'ଣ କହୁଥିଲା ?''

''ଗୋରାମାନଙ୍କ ଗୋଲାମ୍ । ସେ ପୁଣି ମୋତେ କ'ଣ କହିବ ? ଯାହା କହିଲା, ତା'ର ଉତ୍ତର ପାଇ ମନ ଘର ଧରି ଯାଇଥିବ ।''

## ॥ ୪ ॥

ସନ୍ଧ୍ୟା ପୂର୍ବରୁ ଶ୍ୟାମବାବୁ ଓ ତେଜସ୍ୱୀ ଶିବବାବୁଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ଉତ୍କଣ୍ଠା ସହିତ ସେ ଅପେକ୍ଷା କରିଥାନ୍ତି । କଚେରିକୁ କଲେକ୍ଟର ସାହେବ ଆସିଥିବା ବିଷୟ ଶ୍ୟାମବାବୁ ବର୍ଣ୍ଣନା କଲେ ଏବଂ ତେଜ ଇଂରାଜୀରେ ସାହେବମାନଙ୍କୁ କିପରି ଉତ୍ତର ଦେଇ ସମସ୍ତଙ୍କୁ ଆଚମ୍ବିତ କରିଦେଲା ତାହା ଉଲ୍ଲେଖ କଲେ । ‘‘ମୋର ଅନୁମାନ, ଜମିଦାର ବୋଧହୁଏ ଆପଣଙ୍କ ଜମି ବାଜ୍ୟାପ୍ତ କରିବାକୁ ସାହସ କରିବେ ନାହିଁ, କାରଣ ଗୋରାମାନଙ୍କ ସହିତ ତେଜ ଯେପରି କଥାବାର୍ତ୍ତା କଲା, ସେଥିରେ ସେମାନେ ସନ୍ତୁଷ୍ଟ ।’’ ଏହି ଆଶ୍ୱାସନା ଦେଇ ଶ୍ୟାମାନନ୍ଦବାବୁ ତାଙ୍କ ଘରକୁ ଚାଲିଗଲେ ।

ତେଜ କହିଲା, ‘‘ଅଜା, ଯେଉଁ ଦାରୋଗା ଆପଣଙ୍କୁ ଥାନାରେ ବାଡ଼େଇଥିଲା, ଆଜି ତା’କୁ ମୁଁ ଭଲ ଶିକ୍ଷା ଦେଇ ଦେଇଛି ।’’ ଦାରୋଗା ଦେହକୁ ଢେଲା ମାଡ଼ କରିଥିବା କଥା ଶୁଣି ଅଜା ଆତଙ୍କିତ ହୋଇପଡ଼ିଲେ । କହିଲେ, ‘‘ଛୁଆ, ତୋର ଜ୍ଞାନ ଆସି ନାହିଁ ବୋଲି ଏପରି କାମଟି କରି ପକାଇଲୁ । ପୁଲିସବାଲାଙ୍କୁ ତୁ ଜାଣି ନାହୁଁ । ସେମାନେ ଦିନକୁ ରାତି ଓ ରାତିକୁ ଦିନ କରିଦେଇପାରନ୍ତି । ଗୋଖର ସାପ ଲାଞ୍ଜରେ ହାତ ଲଗାଇବା ଠିକ୍ ହୋଇ ନାହିଁ ।’’

ଦେଖୁଁ ଦେଖୁଁ ସନ୍ଧ୍ୟା ଆସିଗଲା । ସେଥିସହିତ ଘଡ଼ଘଡ଼ି ସହ ମେଘ । ମମତା ଗାଈ ଦୁଇଟାକୁ ଗୁହାଳ ଭିତରେ କୁଣ୍ଡା ଖୁଆଇ ବାହାରି ଆସିଲେ । ଶିବବାବୁ ବିମର୍ଷ ମନରେ ବସିଥାନ୍ତି । ମେଘ ଉଡ଼ି ଚାଲିଗଲା । ବର୍ଷା ହେଲା ନାହିଁ । ଏତିକିବେଳେ, ବାଡ଼ ଡିଆଁ ଅତିକ୍ରମ କରି ପଶିଆସିଲେ ଜମିଦାରବାବୁଙ୍କ ପିଆଦା ।

‘‘ଶିବ ମାଷ୍ଟ୍ରେ, ମୋତେ ଜମିଦାରବାବୁ ପଠାଇଛନ୍ତି । ଆପଣଙ୍କ ଋଣ ଟଙ୍କା ହେଉଛି ମାସକୁ କୋଡ଼ିଏ ଟଙ୍କା ହିସାବରେ ବାର ମାସକୁ ଦୁଇଶହ ଚାଳିଶ ଟଙ୍କା । ସେହି ହିସାବରେ ଚାରିବର୍ଷରେ ନଅଶହ ଷାଠିଏ ଟଙ୍କା । ସେଥିସହ ସୁଧ ହେଉଛି ଆଉ ନଅଶହ ଷାଠିଏ । ସର୍ବମୋଟ ହେଲା ଊଣେଇଶ ଶହ କୋଡ଼ିଏ ଟଙ୍କା । ସେଥିରୁ ଜମିଦାରବାବୁ ଶହେ କୋଡ଼ିଏ ଟଙ୍କା ଛାଡ଼ି ଦେଇଛନ୍ତି । ବାକି ଅଠର ଶହ ଟଙ୍କା ଆଗାମୀ ଦୁଇମାସ ମଧ୍ୟରେ ପୈଠ କରିବାଲାଗି ଆଦେଶ କରିଛନ୍ତି । ଦେଇ ନ ପାରିଲେ, ରୁପାଖଳା ଜମି ଖଣ୍ଡିକରୁ ଆପଣଙ୍କ ସ୍ୱତ୍ୱ ଲୋପ ପାଇବ । ଟଙ୍କା ଦେଇଦେଲେ ଏ ବର୍ଷପାଇଁ ଚାଷ କରିବେ । ନ ଦେଲେ ଚାଷ କରିବେ ନାହିଁ ।’’

''ପିଆଦାବାବୁ, ଏତେ ଟଙ୍କା ମୁଁ ଦେଇପାରିବି ନାହିଁ । ତେଣୁ, ସେ ଜମି ପାଖକୁ ମୁଁ ଏଣିକି ଯିବି ନାହିଁ । ଜମିଦାରବାବୁଙ୍କୁ ଏହା ଜଣାଇଦେବେ । ଆହୁରି ମଧ୍ୟ କହିଦେବେ ଯେ ଟଙ୍କା ଦେବା ସମୟରେ ଏପରି ଉତ୍କଟ ସୁଧ ବିଷୟରେ ମୋତେ କିଛି କହି ନ ଥିଲେ,'' ଉତ୍ତର ଦେଲେ ଶିବବାବୁ ।

ଧରିଥିବା ହିସାବ କାଗଜ ଖଣ୍ଡିକ ସହିତ ଜମି ଉଚ୍ଛେଦର ନୋଟିସ୍‌ଟି ଶିବବାବୁଙ୍କ ହାତକୁ ବଢ଼ାଇଦେଇ ପିଆଦା ଚାଲିଗଲେ । ତେଜ ଲଣ୍ଠନ ଧରି ପିଣ୍ଡାକୁ ଆସିଲାବେଳକୁ ଅଜା କାନ୍ଦୁଥାଆନ୍ତି । କିଛି ନ କହି ସେ ପାଠ ପଢ଼ିବାକୁ ବସିଗଲା ।

ରାତି ପାହିଲାବେଳକୁ ଗାଁ ରାସ୍ତାରେ କେତେଜଣ ଯୁବକ ଦୌଡ଼ି ଦୌଡ଼ି ପ୍ରତ୍ୟେକ ଘର ଆଗରେ ଜଣାଉଥିବା ଦେଖାଗଲା ଯେ ନିକଟବର୍ତ୍ତୀ ରତନପୁର ଗାଁରେ ପ୍ରବଳ ହଇଜା ଲାଗିଯାଇଛି, ଗଣ୍ଡା ଗଣ୍ଡା ଲୋକ ମରିବାକୁ ଲାଗିଲେଣି ଏବଂ ସେଥିପାଇଁ ଏ ଗାଁର କେହି ଲୋକ ସେ ଗାଁ ପାଖକୁ ଯିବେ ନାହିଁ ।

ତଡ଼ିତ୍ ଗତିରେ ଖବର ପ୍ରଚାର ହୋଇଗଲା ରତନପୁରରେ ମହାମାରୀ ଲାଗିଯାଇଛି । ଗାଁର କେତେଜଣ ମୁଖିଆ ଅବିଳମ୍ବେ ରୁଣ୍ଡ ହେଲେ ଶିବବାବୁଙ୍କ ପିଣ୍ଡାରେ । ପାଖ ଗାଁରେ ଓଲାଉଠା ରୋଗ ଲାଗିଲା ମାନେ ଅନ୍ୟ ଗାଁଗୁଡ଼ିକୁ ମାଡ଼ିଯିବ । କେବେ କେବେ ଗାଁ ପରେ ଗାଁ ନିଶ୍ଚିହ୍ନ ହୋଇଯିବାର ଦୃଷ୍ଟାନ୍ତ ରହିଛି । ଜଣେ ବ୍ୟକ୍ତି ବଖାଣିବାକୁ ଲାଗିଲେ, ଅମୁକ ଘରେ ତିନିଜଣ, ତମୁକ ଘରେ ସାତଜଣ ଏବଂ ଆଉ କାହାଘରେ ସମସ୍ତେ ମରିଗଲେଣି । ବନ୍ୟାପରି କଲେରା ମାଡ଼ି ଚାଲିଛି ।

ଗାଁ ମଧ୍ୟରେ ଆତଙ୍କ ଖେଳିଗଲା । କଲେରା ପରି ରାକ୍ଷସୀ ମୁଖରୁ ନିସ୍ତାର ମିଳେ ନାହିଁ ବୋଲି ସମସ୍ତଙ୍କୁ ଜଣାଥାଏ । ସେପରି ବ୍ୟାଧିର ପ୍ରତିକାର ନ ଥାଏ । ରତନପୁର ଗାଁର ମଢ଼ାଗୁଡ଼ାକ ଏ ଗାଁର ମଶାଣିରେ ପକାଇ ଦିଆଯାଉଛି ବୋଲି ଖବର ମିଳିଲା । କେହି କେହି ଛୁଆପିଲା ସହ ଦୂରବର୍ତ୍ତୀ ଗାଁରେ ଥିବା ଆତ୍ମୀୟମାନଙ୍କ ଘରକୁ ପଳାଇଯିବେ ବୋଲି କୁହାକୁହି ହେଲେ । ଶିବବାବୁ ନିର୍ବାକ୍ ବସି ରହିଥାନ୍ତି । ଏପରି ବେଳେ ରତନପୁରର ଜଣେ ଶିକ୍ଷକ ସମସ୍ତଙ୍କ ଆଗରେ ହାଜର ହେଲେ । ସେ ପ୍ରାର୍ଥନା ଜଣାଇଲେ ଯେ ତାଙ୍କ ଗାଁର ମାଲିକ ଶ୍ରୀହରିବାବୁ ସ୍ୱେଚ୍ଛାସେବୀ ଦଳ ଗଠନ କରି ଲୋକମାନଙ୍କ ସେବା ଲାଗି ଉଦ୍ୟମ କରୁଛନ୍ତି ଏବଂ ଶିବବାବୁଙ୍କ ସହିତ ପରାମର୍ଶ ଲାଗି ତା'ଙ୍କୁ ପଠାଇଛନ୍ତି । ଶ୍ୟାମବାବୁ ଇତ୍ୟାଦି ପରସ୍ପରର ମୁହଁକୁ ଚାହିଁ ରହିଥାଆନ୍ତି । ଆଗନ୍ତୁକ ଶିକ୍ଷକ ପିଣ୍ଡାକୁ ଉଠିବା ପାଇଁ ମଧ୍ୟ ସାହସ କରୁ ନ ଥାନ୍ତି, କାରଣ ତା'ଙ୍କ ଦେହରୁ କଲେରା ଅନ୍ୟମାନଙ୍କ ନିକଟକୁ ଡେଇଁ ଯିବାର ଭୟ ଥାଏ ।

ଶ୍ରୀହରିବାବୁ ଥିଲେ ସେ ଅଞ୍ଚଳର ଜଣେ ଗଣ୍ୟମାନ୍ୟ ବିଖ୍ୟାତ ବ୍ୟକ୍ତି । ସେ ଜମିଦାର କିମ୍ବା ମହାଜନ ନ ଥାନ୍ତି । ନିଜର ସମ୍ପତ୍ତି ଲାଗି ଧନଶାଳୀ । ଶହ ଶହ ଏକର ଚାଷ ଜମି ଥାଏ । ନିଜ ଆୟରୁ ସେ ପୋଖରୀ ଖୋଳି ଦିଅନ୍ତି, ମନ୍ଦିର ତିଆରି କରନ୍ତି ଏବଂ ପ୍ରତିବର୍ଷ ଶହ ଶହ ଲୋକଙ୍କ ଲାଗି ମହୋତ୍ସବ ଆୟୋଜନ କରିଥାନ୍ତି । ବର୍ଷରେ ଦୁଇ ଚାରିଥର ନାମ ସଂକୀର୍ତ୍ତନ ମଧ୍ୟ ତାଙ୍କ ଘରେ ହୋଇଥାଏ । ଜଣେ ଦୟାବାନ୍ ଓ ଦାନୀ ମଣିଷ ଭାବରେ ତାଙ୍କର ଖ୍ୟାତି ଥାଏ । ତାଙ୍କ ବଂଶର ବୁନିଆଦି ବିଷୟ କାହାରିକୁ ଅଜ୍ଞାତ ନ ଥାଏ ।

ଶିକ୍ଷକ ମହାଶୟଙ୍କ ଅନୁନୟ ବିନୟ ସତ୍ତ୍ୱେ ସମସ୍ତେ ନିରୁତ୍ତର ବସି ରହିଥିବା ଦେଖି ତେଜସ୍ୱୀ ବାହାରକୁ ଆସି କହିଲା, ''ଅଜା, ମୁଁ ରତନପୁର ଗାଁକୁ ଯିବି । ସାଙ୍ଗମାନଙ୍କୁ ନେଇଯିବି । ସେଠାରେ ଲୋକଙ୍କ ସେବା କରିବି । ଶ୍ରୀହରିବାବୁଙ୍କ ଘରକୁ ଯିବାଲାଗି ମୋତେ ଛାଡ଼ିଦିଅ ।''

କବାଟ ପଛରୁ ମମତା'ମଧ୍ୟ ଆବେଦନ କଲେ, ''ବାବା, ତେଜକୁ ମନା କରନ୍ତୁ ନାହିଁ । ତା ବାବା ପିଲାବେଳେ ଏହିପରି କାମ କରୁଥିଲେ । ବସନ୍ତ ରୋଗୀ ଘରକୁ ମଧ୍ୟ ଯାଉଥିଲେ । ବିପଦ ଆପଦ, ଭଲ ମନ୍ଦ, ଜୀବନ ମରଣ, ସବୁ ରହିଛି ଭଗବାନ୍‌ଙ୍କ ହାତରେ । ବିପଦବେଳେ ଅନ୍ୟ ଲୋକଙ୍କ ପାଖରେ ଛିଡ଼ାହେଲେ ଜୀବନ ସାର୍ଥକ ହୁଏ ।''

ତେଜସ୍ୱୀ ପୁଣି କହିଗଲା, ''ଅଜା, କାହାରି କାହାରି ଘରେ ଚୁଲି ଜଳୁ ନ ଥିବ । କାହା କାହା ଘରେ ପାଣି ଟୋପାଏ ନ ଥିବ । ଶ୍ରୀହରିବାବୁ ସେମାନଙ୍କ ସେବାପାଇଁ ଆମ ଗାଁ ଲୋକଙ୍କ ସାହାଯ୍ୟ ଲୋଡ଼ିଛନ୍ତି । କାରଣ, ସେ ଗାଁରେ ଏପରି ଆତଙ୍କ ଖେଳିଯାଇଥିବ ଯେ, କେହି ଘର ଭିତରୁ ବାହାରୁ ନ ଥିବେ ।''

ବାର୍ତ୍ତାବହ ବିକଳ ସ୍ୱରରେ ଜଣାଇଲେ, ''ଗାଁର ପ୍ରାୟ ଶହେରୁ ବେଶି ମଣିଷ ମଶାଣିକୁ ଗଲେଣି । ଆଉ କେତେ ଯେ ମରିବେ ତାହା ଈଶ୍ୱରଙ୍କୁ ଜଣା । ଶ୍ରୀହରିବାବୁ ହତାଶ ହୋଇ ପଡ଼ିଲେଣି । ତାଙ୍କ ନିକଟରେ ଆପଣଙ୍କ ଗାଁର କେହି କେହି ଛିଡ଼ା ହେଲେ ତା'ଙ୍କ ମନକୁ ଦମ୍ଭ ଆସିବ ।'' ଶ୍ୟାମାନନ୍ଦବାବୁ ଇଚ୍ଛା ଜଣାଇଲେ, ''ମୁଁ ତେଜ ସାଙ୍ଗରେ ଯିବି ।''

ଅଜାଙ୍କ ମୌନ ସମ୍ମତି ଓ ମା'ଙ୍କ ଆଶୀର୍ବାଦ ଥିବା ଦେଖି ତେଜସ୍ୱୀ ଦୌଡ଼ିଲା ଗାଁ ଭିତରକୁ । ନିଜର କେତେଜଣ ସାଙ୍ଗକୁ ସଂଗ୍ରହ କରି ପହଞ୍ଚିଲା ଗାଁର ବିଷ୍ଣୁ ମନ୍ଦିରରେ । ସେଠାରେ ଭକ୍ତମାନେ ସଂକୀର୍ତ୍ତନ କରୁଥାନ୍ତି । ଓଜସ୍ୱିନୀ ଭାଷାରେ ତେଜ ସେମାନଙ୍କୁ

ତତ୍ତ୍ୱବାଣୀ ଶୁଣାଇଲା, ''ଆପଣମାନେ ଏଠାରେ ହରିଙ୍କୁ ପ୍ରାର୍ଥନା ନ କରି ମୋ ସହିତ ଚାଲନ୍ତୁ କଲେରାରେ ମରୁଥିବା ଲୋକଙ୍କ ଆଗରେ ହରିନାମ ସଂକୀର୍ତ୍ତନ କରିବେ । ଭଗବାନ୍ ଜାଣିବେ, ଯେଉଁମାନେ ମଣିଷ ସେବା କରନ୍ତି ସେହିମାନେ ହିଁ ପ୍ରକୃତ ଈଶ୍ୱର ଭକ୍ତ । ଆପଣମାନଙ୍କ ମୁଖରୁ ହରିନାମ ଉଚ୍ଚାରଣ ଶୁଣିଲେ ଯମ ଭୟରେ ପଳାୟନ କରିବ । ଉଠନ୍ତୁ, ଖୋଳ କରତାଳ ବଜାଇ ବଜାଇ ମୋ ସାଙ୍ଗରେ ଚାଲନ୍ତୁ ।''

ପ୍ରାୟ ଏକ ଘଣ୍ଟା ପରେ ଦଳେ ବାଳକ, ଆଠଜଣ କୀର୍ତ୍ତନ ଗାୟକ ଏବଂ ଶ୍ୟାମାନନ୍ଦବାବୁଙ୍କ ସହିତ ତେଜସ୍ୱୀ ପହଞ୍ଚିଲା ଶ୍ରୀହରିବାବୁଙ୍କ ଘରେ । ଗାଁର ସେ ମାଲିକ । ବଡ଼ ଗାଁ । ଅନେକ ଲୋକ । ଗାଁ ବାଟରେ ଗଲାବେଳେ ଜଣାପଡୁଥାଏ ସମଗ୍ର ଗ୍ରାମଟି ସତେ ଯେପରି ଶ୍ମଶାନ ପାଲଟି ଯାଇଛି । ଦ୍ୱାର ବନ୍ଦ କରି ଲୋକେ ନିଜ ନିଜ ଘରେ ମୃତ୍ୟୁକୁ ଅପେକ୍ଷା କରିଥାନ୍ତି । ପ୍ରଥମ ଘରଟି ଆଗରେ ଛିଡ଼ାହୋଇ ତେଜ ଯେତେବେଳେ ପାଟିକରି ଘରବାଲାକୁ ବାହାରିବାକୁ କହିଲା, ଭିତରୁ କୌଣସି ଶବ୍ଦ ଶୁଭିଲା ନାହିଁ । ଝରକା ଠେଲି ଚାହିଁଲାକ୍ଷଣି ଦେଖିବାକୁ ମିଳିଲା ମା ସହିତ ଦୁଇଟା ପିଲାର ମଡ଼ା ପଡ଼ିରହିଥାଏ । ପୁରୁଷମାନେ ପଳାଇ ଯାଇଥାନ୍ତି । କୌଣସି କୌଣସି ଘର ଭିତରୁ ମୁମୂର୍ଷୁର ଆର୍ତ୍ତନାଦ ଶୁଭୁଥାଏ ।

ଶ୍ରୀହରିବାବୁଙ୍କୁ ତେଜସ୍ୱୀ ନିଜର ପରିଚୟ ଦେଲା, ''ଅଜା ! ମୁଁ ଶିବବାବୁଙ୍କ ନାତି, ତପସ୍ୱୀବାବୁଙ୍କ ପୁଅ । ଆପଣ ଚିନ୍ତା କରନ୍ତୁ ନାହିଁ । ଆମେ ପ୍ରଥମେ ଘରକୁ ଘର କୀର୍ତ୍ତନ ଗାଇ ଗାଇ ଯିବା । ତଦ୍ୱାରା ଲୋକଙ୍କ ମନରେ ସାହସ ଆସିବ । ସେମାନେ ନିର୍ଭୟରେ ବାହାରକୁ ବାହାରିବେ । ଯେଉଁ ଘରେ ମୁର୍ଦ୍ଦାର ପଡ଼ିଥିବ ଆମେ ନେଇ ପୋଡ଼ିଦେବା କିମ୍ୱା ପୋତିଦେବା ।''

ଏତିକି କହି ତେଜ ନିଜେ ଦୁଇଧାଡ଼ି ଗୀତ ରଚନା କରି ଗାଇବାକୁ ଆରମ୍ଭ କରିଦେଲା । ତା' ସାଙ୍ଗମାନେ ତାଳଦେଇ ଗାଇଲେ । ବୈଷ୍ଣବମାନେ ଖୋଳ କରତାଳ ବଜାଇଲେ । ଶ୍ରୀହରିବାବୁ ଆଶ୍ଚର୍ଯ୍ୟ ହୋଇ ଦେଖୁଥାନ୍ତି । ସଂକୀର୍ତ୍ତନ ଆରମ୍ଭ ହେବାକ୍ଷଣି ନିଜ ଭାଇମାନଙ୍କ ସହିତ ତଳକୁ ଆସିଗଲେ ।

ତେଜସ୍ୱୀ ଉଚ୍ଚ କଣ୍ଠରେ ଗାଉଥାଏ- ''ପଳା ପଳାରେ ଯମ, ଶୁଣି ହରି ହରି ନାମ ।'' କୀର୍ତ୍ତନ ଦଳ ଆଗେଇ ଚାଲିଲେ । ଗୀତର ସ୍ୱର ଓ ବାଦ୍ୟର ଶବ୍ଦରେ ଗାଁର ବାୟୁମଣ୍ଡଳ ମୁଖରିତ ହୋଇଉଠିଲା । ଗଳି ପ୍ରଗଳି ମଧ୍ୟରେ ସଂକୀର୍ତ୍ତନ ଦଳ ଖୋଳ କରତାଳ ବଜାଇ ହରିନାମ ଗାଇଲେ ଓ ଭାବବିହ୍ୱଳ ଅବସ୍ଥାରେ ନୃତ୍ୟ କଲେ ।

ହରିନାମର କୁହୁକ ମନ୍ତ୍ର କାମ କଲା । ପ୍ରତ୍ୟେକ ଘରୁ ଲୋକମାନେ ବାହାରିଆସି ଶୋଭାଯାତ୍ରାରେ ଯୋଗଦେଲେ । ଶ୍ରୀହରିବାବୁ ଆଶ୍ଚର୍ଯ୍ୟାନ୍ୱିତ ହେଲେ । ଅନୁଭବ କରିପାରିଲେ ଯେ ଗ୍ରାମବାସୀଙ୍କ ମନରୁ ମହାମାରୀର ଭୟ ଉଭେଇ ଯାଉଛି । ସେ ତାଙ୍କ ଭାଇମାନଙ୍କୁ ଘରେ ଘରେ ପଥ୍ୟ ଓ ଖାଦ୍ୟ ବିତରଣ ଲାଗି ଆଦେଶ ଦେଲେ ଏବଂ ସଂକୀର୍ତ୍ତନ ଦଳ ଲାଗି ଭୋଜନ ବ୍ୟବସ୍ଥା କରିବାକୁ କହିଲେ ।

ଦିନ ଦୁଇ ପ୍ରହର ପର୍ଯ୍ୟନ୍ତ ସଂକୀର୍ତ୍ତନ ଓ ହରିନାମ ଦ୍ୱାରା ରତନପୁର ଗ୍ରାମବାସୀଙ୍କ ପ୍ରାଣରେ ଅପୂର୍ବ ଉତ୍ସାହ ସୃଷ୍ଟି କରି ଦଳବଳ ସହ ତେଜସ୍ୱୀ ଶ୍ରୀହରିବାବୁଙ୍କ ଘରେ ପହଞ୍ଚିଲାବେଳକୁ ତାକୁ ଦେଖିବାଲାଗି ଜନସମାଗମ ଲାଗିଗଲା । ସେତେବେଳେ ତେଜ ହାତ ଯୋଡ଼କରି ସମସ୍ତଙ୍କୁ ଆବେଦନ ଜଣାଇଲା, ''ସନ୍ଧ୍ୟା ପରେ ଆମେ ସମସ୍ତେ ମିଳିମିଶି ମଶାଣିରେ ଗାତ ଖୋଳି ମଲାମଣିଷମାନଙ୍କୁ ପୋତି ଦେବୁଁ । ସେଥିପାଇଁ ଆପଣମାନେ ପ୍ରସ୍ତୁତ ହୁଅନ୍ତୁ ।''

''ଏଇ ପିଲା ସାଇବ ହାକିମମାନଙ୍କୁ ଇଂରାଜୀରେ ଗାଳିଦେଇ ଥଣ୍ଡା କରି ଦେଇଛି,'' କହିଲେ ଜଣେ ବୃଦ୍ଧ ବ୍ୟକ୍ତି ।

ଅନ୍ୟଜଣେ କହୁଥାନ୍ତି, ''ଯେମିତି ବାପ, ସେମିତି ପୁଅ ।''

ଶ୍ରୀହରିବାବୁ ପାଖରେ ବସାଇ ତେଜକୁ ଭାତ ଖୁଆଇବାବେଳେ ସେ କହିଲା, ''ମାଲିକେ, ହରିନାମ ସିନା ଆତ୍ମବିଶ୍ୱାସ ଓ ମାନସିକ ସାହସ ଆଣିଥାଏ । କିନ୍ତୁ ସେଥିରେ କଲେରା ବନ୍ଦ ହେବ ନାହିଁ । ମୋତେ ଯଦି ଆଦେଶ ଦେବେ, ମୁଁ ସଦର ମହକୁମା ଯାଇ କଲେକ୍ଟରଙ୍କୁ କହି ଡାକ୍ତର ଓ କମ୍ପାଉଣ୍ଡରମାନଙ୍କୁ ନେଇ ଆସିପାରିବି । ଆଖ ପାଖ ଗାଁଗୁଡ଼ିକରେ ହଇଜା ଲାଗିଗଲାଣି । ଯଥାସମୟରେ ଇଞ୍ଜେକ୍ସନ ନ ଦେଲେ ଅନେକ ଲୋକ ମରିବେ ।''

''ବାବା ତେଜ, ତୁ ଯାହା କହିଲୁ, ତାହା କ'ଣ ସମ୍ଭବ ?'' ପ୍ରଶ୍ନ କଲେ ଶ୍ରୀହରିବାବୁ ।

''କୌଣସି କାମ ଅସମ୍ଭବ ନୁହେଁ । ସିଧା ଯାଇ ସାଇବ କଲେକ୍ଟରଙ୍କ ଆଗରେ ଛିଡ଼ା ହୋଇ ପଚାରିବି, ଗାଁ ଗଣ୍ଡାରେ ଲୋକେ ମଶା ମାଛି ପରି ମରୁଛନ୍ତି । ଏତେବେଳେ ସରକାର କ'ଣ କରୁଛି ? ଡାକ୍ତରମାନେ ଅଛନ୍ତି କାହିଁକି ? ସେମାନେ କ'ଣ ସହରାଞ୍ଚଳ ଛାଡ଼ି ଗ୍ରାମାଞ୍ଚଳକୁ ଯାଇପାରିବେ ନାହିଁ ? ହୁକୁମ ପାଉ ନାହାନ୍ତି ବୋଲି ଯାଉ ନାହାନ୍ତି । କଲେରା ଇଞ୍ଜେକ୍ସନ୍ ଉଦ୍‌ଭାବନ କରାଯାଇଛି କାହିଁକି ଓ କାହାପାଇଁ ?''

''ତୋ କଥା ଶୁଣି ମୋ ପିଳେହି ପାଣି ହୋଇଗଲାଣି । ସାଇବ କଲେକ୍ଟର ଆଗରେ ଯଦି ଏମିତି କଥା କହିବୁ, ଏକାଥରକେ ମାମୁ ଘରକୁ ପଠାଇଦେବେ । ମୋ ମୁଣ୍ଡରେ ବାବା, ସଦର ମହକୁମା, କଲେକ୍ଟର, ଡାକ୍ତର, ଇଞ୍ଜେକ୍ସନ ପ୍ରଭୃତି ବଡ଼ ବଡ଼ ଶବ୍ଦ ପଶିପାରୁ ନାହିଁ । ଏହି ନିପଟ ମଫସଲ ଅଞ୍ଚଳରେ ଏପରି ଶବ୍ଦ କହିଲେ ସମସ୍ତେ 'ଆଁ' କରି ଚାହିଁ ରହିବେ । ମହାମାରୀରେ ଅନେକ ଲୋକ ମରନ୍ତି । ଆଗ କାଳରେ ମରୁଥିଲେ, ଏବେ ବି ମରୁଛନ୍ତି, ଭବିଷ୍ୟତରେ ମଧ ମରିବେ । କେତେ ଗାଁ ନିଶ୍ଚିହ୍ନ ହୋଇଯାଇଛି, ଏବେ ବି ହେଉଛି । ଠାକୁରାଣୀଙ୍କ ଅଭିଶାପରୁ ରକ୍ଷା ପାଇବ କିଏ ?''

ତେଜ ତୁନି ପଡ଼ିଲା । ଅପରାହ୍ଣରେ ପୁଣି ଆରମ୍ଭ ହେଲା ପରିକ୍ରମା । ସନ୍ଧ୍ୟାପୂର୍ବରୁ ସମସ୍ତେ ରୁଣ୍ଡ ହେଲେ ମଶାଣିରେ । ହାତରେ କୋଦାଳ । ଖାତ ପରେ ଖାତ ଖୋଳା ଚାଲିଲା । ଯେଉଁ ପୁରୁଷମାନେ ଘର ଛାଡ଼ି ପଳାଇଯାଇଥିଲେ, ସେମାନେ ମଧ ଗଭୀର ଗାତରେ ନିଜ ନିଜ ସ୍ତ୍ରୀ ପିଲାଙ୍କ ମଡ଼ା ଶୁଆଇ ମାଟି ଭର୍ତ୍ତି କଲେ । 'ହରିବୋଲ' ଧ୍ୱନିରେ ମଶାଣି ପ୍ରକମ୍ପିତ ହେଲା ।

ତହିଁ ପରଦିନ ସକାଳ ବେଳକୁ ତେଜର ଦେଖା ନ ଥାଏ । କିନ୍ତୁ, ତା ସହିତ ଆସିଥିବା ଲୋକମାନେ ପୂର୍ବଦିନ ପରି କାର୍ଯ୍ୟ କରି ଚାଲିଲେ । ରତନପୁର ଗାଁ ବାହାରେ ଅନ୍ୟ ଏକ ଗ୍ରାମରେ ହଇଜା ବ୍ୟାପି ଯାଇଥାଏ । କୀର୍ତ୍ତନ ଦଳ ଓ ସ୍ୱେଚ୍ଛାସେବୀ ବାଳକମାନେ ସେଠାରେ ମଧ ପହଞ୍ଚିଲେ ।

ଚାରିଦିନ ପରେ ସନ୍ଧ୍ୟାବେଳେ ଶ୍ରୀହରିବାବୁ ଆଶ୍ଚର୍ଯ୍ୟ ହୋଇ ଦେଖିଲେ ତେଜ ଆସି ଦୁଆରେ ହାଜର । ସାଙ୍ଗରେ ଦୁଇଜଣ ସରକାରୀ ଡାକ୍ତର, ଦୁଇଜଣ କମ୍ପାଉଣ୍ଡର ଓ ଜଣେ ଚପରାସୀ । ଆଣିଥାନ୍ତି ଦୁଇଟି ବାକ୍ସ ଭର୍ତ୍ତିକରି ଇଞ୍ଜେକ୍ସନ ଶିଶି ଓ ଛୁଞ୍ଚି ।

ସକାଳେ ଗାଁ ଲୋକଙ୍କୁ ବୁଝାଇ ଓ ଧମକ ଦେଇ ଚକ୍ରାକାରରେ ଛିଡ଼ା କରାଗଲା । କେହି କେହି ମହିଳା କହୁଥାନ୍ତି, ଛୁଞ୍ଚି ଫୁଡ଼ା କଷ୍ଟ ଅପେକ୍ଷା ହଇଜାରେ ମରିବା ବରଂ ଭଲ । ସମବେତ ନରନାରୀ ଓ ବାଳକବାଳିକାଙ୍କ ଆଗରେ ଛିଡ଼ାହୋଇ ତେଜସ୍ୱୀ ନିଜ ବାହୁଟିକୁ ଡାକ୍ତରବାବୁଙ୍କ ଦିଗକୁ ବଢ଼ାଇଦେଇ ଅନୁରୋଧ କଲା, ''ମୋତେ ସର୍ବପ୍ରଥମେ ଇଞ୍ଜେକ୍ସନ ଦିଅନ୍ତୁ ।'' ସେଥିସଙ୍ଗେ ଭୟଭୀତ ଗ୍ରାମବାସୀଙ୍କୁ ସମ୍ବୋଧନ କଲା, ''ସମସ୍ତେ ମୋ ମୁହଁ ପ୍ରତି ଚାହିଁ ଦେଖ । ଛୁଞ୍ଚି ଫୋଡ଼ିଲାବେଳେ ଯଦି ମୋ ମୁହଁରେ ଟିକିଏ ମାତ୍ର କଷ୍ଟପାଉଥିବା ଲକ୍ଷଣ ଦେଖିପାରିବ, ତେବେ ଘରକୁ ଫେରିଯିବ । କିନ୍ତୁ ମୁଁ ଯଦି ହସୁଥିବି, ଆପଣମାନେ ସମସ୍ତେ ହସି ହସି ଇଞ୍ଜେକ୍ସନ୍ ନେବେ ।

ଗୋଟିଏ କଥା ମନେରଖ । ପୁରୁଷମାନେ ଡରିଲେ, ମହିଳାମାନେ ଡରିବେ । ମହିଳାମାନେ ଡରିଗଲେ, ପିଲାପିଲିମାନେ ଡରିବେ ଓ କାନ୍ଦିବେ । ଇଞ୍ଜେକ୍‌ସନ ନ ନେଲେ, କଲେରା ରାକ୍ଷସୀ ସମସ୍ତଙ୍କୁ ଗିଳିଦେବ ।''

ସମସ୍ତଙ୍କ ଦୃଷ୍ଟି ନିବଦ୍ଧ ହେଲା ତେଜର ବାହୁ ଓ ଡାକ୍ତରବାବୁଙ୍କ ମୋଟା ସିରିଞ୍ଜ ଛୁଞ୍ଚି ଉପରେ । ଫୋଡ଼ିଲାବେଳେ ତେଜସ୍ୱୀ ହସୁଥାଏ । ଯନ୍ତ୍ରଣାର ଲେଶମାତ୍ର ଚିହ୍ନ ତା ମୁହଁରେ ନ ଥାଏ ।

ଡାକ୍ତରମାନେ ଚାରିଖଣ୍ଡି ଗାଁରେ ଶହ ଶହ ଲୋକଙ୍କୁ ଇଞ୍ଜେକ୍‌ସନ ଦେଇ ସାତଦିନ ପରେ ସଦର ମହକୁମାକୁ ଫେରିଲେ । ତେଜ ସେମାନଙ୍କୁ ଷ୍ଟେସନରେ ଛାଡ଼ିଦେଇ ଆସିଲା, ଚାଳିଶ ମାଇଲ ଦୂରରେ ।

କିଛିଦିନ ପରେ ଶିବବାବୁଙ୍କ ପିଣ୍ଡାରେ ପହଞ୍ଚିଲେ ଶ୍ରୀହରିବାବୁ । କହିଲେ, ''ଶିବ ବାବୁ, ଆପଣଙ୍କ ଝିଅଙ୍କୁ ଦେଖିବାକୁ ଆସିଛି ।'' ସଂକୋଚ ସହ ମମତା ବାହାରି ଆସି ପ୍ରଣାମ କଲେ । ''ମା, ତୁମେ ପ୍ରକୃତପକ୍ଷେ ଜଣେ ରତ୍ନଗର୍ଭା । ତୁମ ପୁଅ ଆମମାନଙ୍କୁ ମୃତ୍ୟୁମୁଖରୁ ରକ୍ଷା କରିଦେଲା । ଏପରି ଅଳ୍ପ ବୟସରୁ ସେ ଯେପରି କରିତ୍‌କର୍ମା ହେଲାଣି, ବଢ଼ିଗଲେ ମଣିଷ ପରି ମଣିଷଟିଏ ହେବ ।''

ତେଜ ସ୍କୁଲ ଯାଇଥାଏ । ଶିବବାବୁଙ୍କ ସହିତ ଅନେକ ସମୟ ଶ୍ରୀହରିବାବୁ କଥାବାର୍ତ୍ତା କଲେ । ଜମିଦାରଙ୍କ ନୋଟିସ୍‌ଟି ଦେଖିଲେ । ଋଣର ସୁଧ ପରିମାଣ ଦେଖି ସ୍ତମ୍ଭିତ ହେଲେ ।

''କିଛି ଚିନ୍ତା ନାହିଁ ଶିବବାବୁ । ମୋ ଜମିରୁ ପାଞ୍ଚ ନୁହେଁ, ପନ୍ଦର ଏକର ଚାଷ କର । ଆଉ ଗୋଟିଏ କଥା । ତେଜସ୍ୱୀ ମାଇନର ପାସ୍ କଲା ପରେ ମୁଁ ତାହାକୁ ମେଟ୍ରିକ ପଢ଼ାଇବି । ଯେତେ ଆଗକୁ ପଢ଼ିଲେ ବି ମୁଁ ଖର୍ଚ୍ଚ ବହନ କରିବି । ଭଗବାନ୍ ମୋତେ, ମୋ ଭାଇମାନଙ୍କୁ ଓ ପୁଅ ଦୁଇଟାକୁ ପାଠ ଦେଲେ ନାହିଁ । ନ ଦିଅନ୍ତୁ । ତେଜସ୍ୱୀ ପରି ପିଲାଟିକୁ ପାଠ ପଢ଼ାଇପାରିଲେ ମୋର ମନସ୍ତାପ ରହିବ ନାହିଁ ।

ମମତାକୁ ଆଶୀର୍ବାଦ ପ୍ରଦାନ କରି ଶ୍ରୀହରିବାବୁ ବିଦାୟ ନେଲେ ।

## ॥ ୫ ॥

ଶିବବାବୁ ଓ ମମତା ଦିନ ଗଣୁଥାନ୍ତି, କେବେ କାରାବାସ ଶେଷ ହେବ । ଦିନେ ମଧ୍ୟ ରାତ୍ରରେ ଅକସ୍ମାତ୍ ଭାବେ ଘରେ ଆସି ପହଞ୍ଚିଲେ ତପସ୍ୱୀବାବୁ । ଦୂରବର୍ତ୍ତୀ

ଗୋଟିଏ ପ୍ରଦେଶର ଜେଲଖାନାରୁ ଦୁଇବର୍ଷ ପରେ ମୁକ୍ତିଲାଭ କରି ସେ ନିଜ ପ୍ରଦେଶକୁ ଫେରିଥାନ୍ତି । ରେଳ ଷ୍ଟେସନରୁ ଚାଲି ଚାଲି ଆସି ଘରେ ପହଞ୍ଚିଲାବେଳକୁ ଅନେକ ରାତି । ବାଟରେ ପୁଲିସ୍‌ବାଲା କୌଣସି ପ୍ରକାର ଆକ୍ରୋଶମୂଳକ କାର୍ଯ୍ୟାନୁଷ୍ଠାନ କରିପାରନ୍ତି ଭାବି ଲୁଚି ଲୁଚି ଆସିବାକୁ ପଡ଼ିଛି । କଂଗ୍ରେସିଆମାନେ ଜେଲରେ ଥିଲାବେଳେ କିମ୍ବା ବାହାରେ ରହିଲାବେଳେ ପୁଲିସ ଆଖିରେ ସେମାନେ ଥା'ନ୍ତି ରାଜଦ୍ରୋହୀ । ତେଣୁ ସଦାବେଳେ ଓ ସବୁସ୍ଥାନରେ ସେମାନଙ୍କ ଉପରେ ସତର୍କ ଦୃଷ୍ଟି ରଖିବା ଥାଏ ପୁଲିସର ପ୍ରଧାନ କର୍ତ୍ତବ୍ୟ ।

ଶିବବାବୁଙ୍କ ପାଦ ସ୍ପର୍ଶ ପରେ ପିଲାମାନଙ୍କୁ ଚୁମ୍ବନ ଦେଲେ । ମମତା ପଖାଳ ଗଣ୍ଡିଏ ଖାଇବାପାଇଁ ଭିତରକୁ ଡାକିନେଲେ । ସେଥି ସହିତ ଲଙ୍କା ଓ ଲୁଣ । ''ଜେଲରେ ଦୀର୍ଘଦିନ ଅଖାଦ୍ୟ ଖାଇଲା ପରେ ଘରେ ଯାହା ମିଳିଲେ ମଧ ତାହା ଅମୃତ,'' ମମତା ଦିଗକୁ ଚାହିଁ ସଶ୍ରଦ୍ଧ ଭାଷାରେ କହିଲେ ସ୍ୱାମୀ ତପସ୍ୱୀ ।

''ତୁମ ଦେହ ଶୁଖିଯାଇଛି । ପୂର୍ବ ସ୍ୱାସ୍ଥ୍ୟ ଭାଙ୍ଗିପଡ଼ିଛି । ଅନେକ କଷ୍ଟ ପାଇଥିବ । ଆମେ ସେ ସବୁ ଦୁଃଖ ଅନୁମାନ କରିପାରିବୁଁ ନାହିଁ,'' ସଜଳ ଆଖିରେ କହିଲେ ମମତା ।

''ଆଗାମୀ ଦିନମାନଙ୍କରେ ପୁଣି ଅନେକ ଦୁଃଖ ଯନ୍ତ୍ରଣା ଭୋଗ କରିବାକୁ ହେବ । ସେଥିପାଇଁ ମାନସିକ ସ୍ତରରେ ତୁମକୁ ଓ ମୋତେ ପ୍ରସ୍ତୁତ ରହିବାକୁ ପଡ଼ିବ ।''

''ମୁଁ ପ୍ରସ୍ତୁତ ଅଛି । କେବଳ ବାବାଙ୍କ ବୟସ ଦୃଷ୍ଟିରୁ ଏବଂ ପିଲାମାନଙ୍କ ପଢ଼ାପଢ଼ି ଲାଗି ମୋ ମନରେ ଚିନ୍ତା । ଅନେକ ମହିଳା ଆଇନ ଅମାନ୍ୟ ଆନ୍ଦୋଳନରେ ଜେଲ ଯାଇଥିଲେ, ମୁଁ ମଧ ଯାଇପାରିଥାନ୍ତି ।''

ଖାଇସାରି ତପସ୍ୱୀବାବୁ ବିଛଣା ଧରିଲେ । ରାତି ପାହିବା ଆଗରୁ ଗାଁ ଗଣ୍ଡାରେ ଖବର ବ୍ୟାପିଗଲା, ତପସ୍ୱୀବାବୁ ଜେଲରୁ ଫେରି ଆସିଛନ୍ତି । ସକାଳ ସମୟରୁ ତା'ଙ୍କ ପିଣ୍ଡାରେ ଜନ ସମାଗମ ଦେଖିବାକୁ ମିଳିଲା । କିନ୍ତୁ ସେ ଅଞ୍ଚଳର ଦଫାଦାର ନୀଳ ପୋଷାକ ଓ ପଗଡ଼ି ପିନ୍ଧି ଶିବବାବୁଙ୍କୁ ସତର୍କ କରିଦେବା ପାଇଁ ପହଞ୍ଚିଗଲେ । ତାଙ୍କର କଡ଼ା ନିର୍ଦ୍ଦେଶ ଥିଲା, ''ଦାରୋଗାବାବୁଙ୍କର ଆଦେଶ, ତପସ୍ୱୀବାବୁ ଗାଁରେ କିମ୍ବା ବାହାରେ, ଦରିଆ କୂଳରେ ଅଥବା ହାଟ ଉପରେ, କୌଣସିଠାରେ ସଭା ସମିତି ଡକାଇ ପାରିବେ ନାହିଁ ଏବଂ ଭାଷଣ ଟାଷଣ, ବକ୍ତୃତା ଫକ୍ତୃତା ଦେବେ ନାହିଁ ।''

ସେତେବେଳକୁ ରାସ୍ତା ଉପରେ ଲୋକେ ଜମା ହୋଇଯାଇଥାନ୍ତି । ପାଖ ଗାଁରୁ ଶ୍ରୀହରିବାବୁ ମଧ ଦଳବଳ ସହ ପିଣ୍ଡା ପାଖରେ ପହଞ୍ଚି ଯାଇଥାନ୍ତି । ତପସ୍ୱୀବାବୁ

ବାହାରକୁ ଆସିବାବେଳକୁ ନାଲି ପଗଡ଼ିଧାରୀ ଦୁଇଜଣ କନଷ୍ଟେବଲ୍ ଦୁଆର ଉପରକୁ ଉଠିପଡ଼ିଲେ । ଲୋକମାନଙ୍କୁ ଲାଠି ହଲାଇ ହୁକୁମ ଦେଲେ, ''ତମେ ସବୁ ଏଠାରେ କାହିଁକି ରୁଣ୍ଡ ହୋଇଛ ? କ'ଣ ଦିଅଁ ଦେଖିବାକୁ ଆସିଛ ? ଘରକୁ ଫେରିଯାଅ । ନଚେତ୍.....''

ଗମ୍ଭୀର ସ୍ୱରରେ ତପସ୍ୱୀବାବୁ ପ୍ରଶ୍ନ କଲେ, ''ସଭାସମିତି ନ କରିବାପାଇଁ ସରକାରଙ୍କଠାରୁ ଆଦେଶନାମା ଆସିଛି କି ? ଲୋକମାନେ କ'ଣ ମୋ ସହିତ ସାକ୍ଷାତ କରିପାରିବେ ନାହିଁ ?''

ହେଡ୍ କନଷ୍ଟେବଲ ଜଣାଇଲେ, ''ଆଖ ପାଖ ଗାଁ ହାଟଗୁଡ଼ିକରେ କଡ଼ା ଆଇନ ଘୋଷଣା କରାଗଲାଣି, ସଭାସମିତି ହୋଇପାରିବ ନାହିଁ । ଆପଣ ମଧ୍ୟ ଦଳବଳ ସହ କୁଆଡ଼େ ଯାଇପାରିବେ ନାହିଁ ।''

ତପସ୍ୱୀବାବୁ ପ୍ରତିବାଦ ଜଣାଇବା ପୂର୍ବରୁ ରାସ୍ତାରେ ଛିଡ଼ା ହୋଇଥିବା କେତେଜଣ ଯୁବକ ପାଟିକରି ଘୋଷଣା କଲେ, ''ଆମେ ଆମ ନେତାଙ୍କୁ ଶୋଭାଯାତ୍ରାରେ ହାଟକୁ ନେଇଯିବୁଁ । ତାଙ୍କ ମୁହଁରୁ ଜେଲ କଥା ଶୁଣିବୁଁ । ପୁଲିସ ବାଧା ଦେବାକୁ କିଏ ? ଆମେ ସରକାରୀ ଆଦେଶ ମାନିବୁଁ ନାହିଁ ।''

ଅନ୍ୟମାନେ ସମବେତ କଣ୍ଠରେ ଜୟଧ୍ୱନି ଦେଲେ, ''ମହାତ୍ମା ଗାନ୍ଧି କି ଜୟ'', ''ଭାରତ ମାତା କି ଜୟ'', ''ତପସ୍ୱୀବାବୁ ଜିନ୍ଦାବାଦ୍'' ।

ଏତେଗୁଡ଼ାଏ ଲୋକଙ୍କୁ ଧମକ ଦେବା ଉଚିତ ହେବ ନାହିଁ ଜାଣି କନଷ୍ଟେବଲ ଦୁଇଜଣ ଓ ଦଫାଦାର ତୁରନ୍ତ ସେଠାରୁ ବିଦାୟ ନେଲେ । ପଛରେ ଥାଇ କେହି କେହି ବିଦ୍ରୂପ କରୁଥିଲେ ମଧ୍ୟ ସେମାନେ ପଳାଇଗଲେ ।

ଲୋକସଂଖ୍ୟା ବୃଦ୍ଧି ପାଇବା ଦେଖି ତପସ୍ୱୀବାବୁ ସମସ୍ତଙ୍କୁ ନିବେଦନ ଜଣାଇଲେ, ''ସନ୍ଧ୍ୟାବେଳକୁ ହାଟ ଭାଙ୍ଗିବା ପରେ ଆପଣମାନେ ସଭାଟିଏ ଆୟୋଜନ କରନ୍ତୁ । ମୁଁ ମୋର ଜେଲ ଅଭିଜ୍ଞତା ବିଷୟ ବର୍ଣ୍ଣନା କରିବି । ଯେଉଁ ମହାନ୍ ଓ ବରେଣ୍ୟ ବ୍ୟକ୍ତିମାନଙ୍କ ସହିତ ଦୁଇବର୍ଷ କଟାଇଥିଲି, ସେମାନଙ୍କ ନୀତି, ଆଦର୍ଶ ଓ ବ୍ୟକ୍ତିଗତ ଆଚରଣ ବିଷୟ ସମସ୍ତେ ଶୁଣିବେ । ମୋ ପାଇଁ ଜେଲଖାନା ଥିଲା ଗୋଟିଏ ପବିତ୍ର ତୀର୍ଥସ୍ଥାନ ।''

ପ୍ରଣାମ ଜଣାଇ ସମସ୍ତେ ଧୀରସ୍ଥିର ଭାବରେ ବିଦାୟ ନେଲେ । ଶ୍ରୀହରିବାବୁ ତପସ୍ୱୀବାବୁଙ୍କୁ ବୁଝାଇଲେ, ''ବାବା, ଦୁଇବର୍ଷ ଜେଲ ଦଣ୍ଡ ଭୋଗିଛ । ପ୍ରଥମେ. କିଛିଦିନ ପାଇଁ ବିଶ୍ରାମ ଦରକାର । ନଚେତ୍ ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିବ । ତୁମେ ଜେଲରୁ

ବାହାରି କ'ଣ କରିବ ବା ନ କରିବ, ସେ କଥା ସରକାର ଆଗରୁ ଅନୁମାନ କରିପାରିଛନ୍ତି । ସେଥିପାଇଁ ସଭାସମିତି ଉପରେ କଟକଣା ଜାରି ହେଲାଣି । ସରକାରଙ୍କ ଇଚ୍ଛା ହିଁ ହେଉଛି ଆଇନ୍ । ମୁଁ ତୁମକୁ ଅନୁରୋଧ କରୁଛି, କିଛିଦିନ ପାଇଁ ସଭାସମିତି ବନ୍ଦ ଥାଉ ।''

''ମଉସା, ଆପଣ ଯାହା କହୁଛନ୍ତି ତାହା ଠିକ୍ । କିନ୍ତୁ ଆମ ସଂଗ୍ରାମୀମାନଙ୍କ କର୍ତ୍ତବ୍ୟ ହେଲା, ଯେ କୌଣସି ଅନ୍ୟାୟ ଆଇନ ବିପକ୍ଷରେ ସତ୍ୟାଗ୍ରହ କରିବା । ପୁଲିସ୍ ମୋତେ ସଭା କରିବାକୁ ବାଧା ଦେଲେ, ମୁଁ ହାଟ ଉପରେ ଅନଶନରେ ବସିବି ।'' ଉତ୍ତର ଦେଲେ ତପସ୍ୱୀବାବୁ ।

ଶିବବାବୁ ଧୈର୍ଯ୍ୟଧରି ପାରିଲେ ନାହିଁ । ବିରକ୍ତିସୂଚକ ଅଥଚ ଶ୍ରଦ୍ଧାପୂର୍ଣ୍ଣ ସ୍ୱରରେ କହିଲେ, ''ବାପା, କାଲି ରାତିରେ ଘରକୁ ଫେରିଆସି ଆଜି ପୁଣି ସେହି ପୁଲିସ ହାତରେ ଧରା ପଡ଼ିବାକୁ ଇଚ୍ଛା କରିବା ପୂର୍ବରୁ ଥରେ ଏହି ବୁଢ଼ାଟା କଥା ଓ ପିଲାମାନଙ୍କ ବିଷୟ ଚିନ୍ତା କର ।''

ତପସ୍ୱୀବାବୁ ଉତ୍ତର ଦେବା ପୂର୍ବରୁ ଶ୍ରୀହରିବାବୁ ମତ ଦେଲେ, ''ମୁଁ ଜାଣେ, ମୁକ୍ତି ସଂଗ୍ରାମରେ ଝାସ ଦେଇଥିବା ଯୁବକମାନେ ଦେଶ ଚିନ୍ତା ଛଡ଼ା ଘର ସଂସାର କଥା ଚିନ୍ତା କରନ୍ତି ନାହିଁ । ସୁତରାଂ, ପିଲାପିଲିମାନେ ଭାସିଯାଆନ୍ତୁ କିମ୍ବା ବୁଢ଼ା ବାପା ମା ରୋଗ ଶଯ୍ୟାରେ ପଡ଼ିଥାନ୍ତୁ, ସେମାନେ କଂଗ୍ରେସ ଆନ୍ଦୋଳନ ଛାଡ଼ିପାରିବେ ନାହିଁ । ମୁଁ କେବଳ ଗୋଟିଏ ଅନୁରୋଧ କରିବି । ତେଜସ୍ୱୀ ପିଲାଟିର ମାଇନର ପରୀକ୍ଷା ଆଉ ଅଳ୍ପ ସମୟ ରହିଲା । ଏ ଘରେ ରହି ସେ ପାଠ ପଢ଼ିପାରିବ ନାହିଁ । ଦଳଦଳ କର୍ମୀ ଆସିବେ, ନେତାମାନେ ବି ଆସିବେ ଏବଂ ପୁଲିସ୍ ମଧ୍ୟ ଆସିବାକୁ ଭୁଲିବେ ନାହିଁ । ତେଣୁ ତେଜସ୍ୱୀକୁ ମୋ ଘରକୁ ନେଇଯିବି । ମୋ ଘରେ ରହି ପଢ଼ିବ ଓ ପରୀକ୍ଷା ଦେବ ।''

ଏତିକି କହି ସେ କବାଟ ଠେଲି ଭିତରକୁ ପଶିଗଲେ ଓ ମମତାଙ୍କୁ ତାଙ୍କ ଅଭିପ୍ରାୟ ଜଣାଇଲେ । ''ମଉସା, ଆପଣ ଯାହା ଭଲ ଭାବିବେ ସେଥିରେ ଆପତ୍ତି କରିବା ଅଧିକାର ମୋର ନାହିଁ । ତେଜସ୍ୱୀକୁ ବର୍ତ୍ତମାନ ଆପଣଙ୍କ ସହିତ ପଠାଇ ଦେବି । ବାବା ମନା କରିବେ ନାହିଁ ।''

ସନ୍ଧ୍ୟା ଆସିଗଲା । ଗାଁର ଯୁବକମାନେ ତପସ୍ୱୀବାବୁଙ୍କ ଗଳାରେ ଫୁଲମାଳ ଦେଇ ତାଙ୍କୁ ଶୋଭାଯାତ୍ରାରେ ହାଟ ପାଖ ପ୍ରାଙ୍ଗଣକୁ ପାଛୋଟି ନେଲେ । ଲୋକମାନେ ପଡ଼ିଆ ଉପରେ ବସିଗଲେ । ତପସ୍ୱୀ ଆରମ୍ଭ କଲେ ଭାଷଣ-

''ପ୍ରଥମେ ମହାତ୍ମା ଗାନ୍ଧିଙ୍କ ବିଷୟ ଉଲ୍ଲେଖ କରୁଛି । ଆଇନ ଅମାନ୍ୟ ଆନ୍ଦୋଳନ ପ୍ରଖର ଆକାର ଧାରଣ କରିବା ସଙ୍ଗେ ଲକ୍ଷାଧିକ ନରନାରୀ କାରାବରଣ କରିବା ଦେଖି ଆତଙ୍କିତ ବଡ଼ଲାଟ୍ ଆପୋସ ଆଲୋଚନା ନିମନ୍ତେ ମହାତ୍ମା ଗାନ୍ଧିଙ୍କୁ ନିମନ୍ତ୍ରଣ କଲେ । ଗାନ୍ଧି ବଡ଼ଲାଟ୍‌ଙ୍କ ପ୍ରାସାଦରେ ପହଞ୍ଚିଲେ । ସେହି ସଂବାଦ ପାଇ ଚର୍ଚ୍ଚିଲ ନାମକ ଜଣେ ଇଂରେଜ ନେତା ଗାନ୍ଧିଙ୍କ ପ୍ରତି ଅଭଦ୍ର ଭାଷା ବ୍ୟବହାର କରି ତାଙ୍କୁ ରାଜଦ୍ରୋହୀ, ଅର୍ଦ୍ଧନଗ୍ନ ଫକୀର ବୋଲି ବର୍ଣ୍ଣନା କରିବାକୁ ପଶ୍ଚାତ୍‌ପଦ ହେଲା ନାହିଁ । ସେ ବୋଧହୁଏ ଜାଣେ ନାହିଁ ଯେ ସେହି ଫକୀର ହେଉଛନ୍ତି ଭାରତର ମୁକୁଟ ବିହୀନ ସମ୍ରାଟ୍, ଦେଶବାସୀଙ୍କର ପରମ ପୂଜ୍ୟ ନେତା ଏବଂ ସ୍ୱାଧୀନତା ସଂଗ୍ରାମର ଅଗ୍ର ସାରଥୀ ।''.....

ଏହି ସମୟରେ ଘନ ଘନ ହୁଇସିଲ ଶବ୍ଦ ଶୁଣି ଅନେକ ଲୋକ ଉଠିପଡ଼ିଲେ । ପୁଲିସ ହାବିଲଦାର ଓ କନଷ୍ଟେବଲମାନେ ଉଲ୍‌କା ବେଗରେ ସଭାସ୍ଥଳକୁ ମାଡ଼ିଆସି ସମସ୍ତଙ୍କୁ ସେଠାରୁ ପଳାଇଯିବାଲାଗି ଆଦେଶ ଦେଲେ । ହାଟ ଉପରେ ଖୋଲାଥିବା ଛୋଟ ଛୋଟ ଦୋକାନଗୁଡ଼ିକ ସଙ୍ଗେ ସଙ୍ଗେ ବନ୍ଦ ହୋଇଗଲା । ସଭାସ୍ଥାନରେ ଜଳୁଥିବା ହାରିକିନି ଲାଇଟ୍ ଦୁଇଟା ଲାଠି ମାଡ଼ରେ ଚୂର୍ଣ୍ଣ ବିଚୂର୍ଣ୍ଣ ହେଲା । କେତେଜଣ ଉତ୍ତ୍ୟକ୍ତ ଲୋକ ପୁଲିସ ଉପରେ ଆକ୍ରମଣ ଲାଗି ଉଦ୍ୟତ ହେବା ଦେଖି ତପସ୍ୱୀବାବୁ ଉଚ୍ଚ କଣ୍ଠରେ ନିର୍ଦ୍ଦେଶ ଦେଲେ,

''ଭାଇମାନେ, ଆମେ ଗାନ୍ଧିବାଦୀ । ଅହିଂସା ଉପାୟରେ ଓ ଶାନ୍ତିପୂର୍ଣ୍ଣ ଭାବରେ ଅନ୍ୟାୟ ବିରୋଧରେ ଲଢ଼ିବା । ଉତ୍ତେଜିତ ବା କ୍ରୋଧାନ୍ୱିତ ହେବା ଆମ ପକ୍ଷରେ ଉଚିତ ନୁହେଁ । ଆପଣମାନେ ନିଜ ନିଜ ଘରକୁ ଫେରିଯାଆନ୍ତୁ । ମୁଁ ଏହିଠାରେ ବସି ଅନଶନ କରିବି ।''

ନିମିଷ ମଧ୍ୟରେ କନଷ୍ଟେବଲମାନେ ବନ୍ଧୁକ ଦେଖାଇ ତପସ୍ୱୀବାବୁଙ୍କୁ ଶୂନ୍ୟେ ଶୂନ୍ୟେ ଟେକିନେଲେ । ହାବିଲଦାରର କର୍କଶ ଭାଷା ଶୁଭିଲା, ''ଚାଲ୍, ଥାନାରେ ବସି ଅନଶନ କରିବୁ ।''

ଅନେକ ଦୂରରେ ଥାନା । କ୍ରୋଧ ସମ୍ଭାଳି ରଖି ଥାନାବାବୁ ଅନେକ ରାତି ପର୍ଯ୍ୟନ୍ତ ଅପେକ୍ଷା କରିଥାନ୍ତି । ଆସାମୀ ହାଜର ହେଲା ପରେ ତାଙ୍କୁ ସାରାରାତି ପାଇଁ ପୁଲିସ୍ ଗାରଦରେ ଭର୍ତ୍ତିକରି ରଖିବାଲାଗି ଆଦେଶ ଦେଲେ । ଭାଗ୍ୟବଶତଃ, ପୂର୍ବତନ ଦାରୋଗାଙ୍କର ବଦଳି ହୋଇଯାଇଥାଏ । କନଷ୍ଟେବଲମାନଙ୍କର ଗୋପନ କଥାବାର୍ତ୍ତା ତପସ୍ୱୀବାବୁଙ୍କର କର୍ଣ୍ଣଗୋଚର ହେଉଥାଏ ଯେ ସେ ଯଦି ଥାଆନ୍ତେ ତେବେ ଏହି

କଂଗ୍ରେସିଆଙ୍କୁ ଖୁବ୍ ପାନେ ଦେଇଥାଆନ୍ତେ । ନୂଆ ଦାରୋଗା ନରମ ପ୍ରକୃତିର ଲୋକ ବୋଲି ନେତାଟା ରକ୍ଷା ପାଇଗଲା ।

ଦୁଇଖଣ୍ଡି ଶୁଖିଲା ରୋଟି ଓ ଅଳ୍ପ ଟିକିଏ ଆଳୁ ତରକାରି ଖାଇସାରି ତପସ୍ୱୀବାବୁ ମେଜିଆ ଉପରେ ଶୋଇପଡ଼ିଲେ । ମଶାଗୁଡ଼ାକ ଆପାଦମସ୍ତକ ଦଂଶନ କରୁଥାନ୍ତି । କୋଠରିଟିର ଆକାର ଥାଏ ୭ ଫୁଟ ଲମ୍ବ ଓ ୫ ଫୁଟ ଓସାର । କାନ୍ଥରେ ଥାଏ ଗୋଟିଏ ଛୋଟ ଝରକା । ପୁରୁଣା ଲୁହା ହୁକ୍ ଦ୍ୱାରା ଭିତରୁ ବନ୍ଦ ଥାଏ । ମଧ୍ୟରାତ୍ରର ନିସ୍ତବ୍ଧତା ମଧ୍ୟରେ ତପସ୍ୱୀବାବୁଙ୍କ ଅନୁମାନ ହେଲା ଝରକାଟିର ଅପର ପଟରୁ କୌଣସି ବ୍ୟକ୍ତିର କିଛି ସଂକେତ ମିଳୁଛି । ସେ ଉଠିଲେ । ଅନେକ କଷ୍ଟରେ ଝରକାଟି ଅଧାଅଧି ଫିଟାଇ ପାରିଲେ । ଦେଖିଲେ, ଗଭୀର ଅନ୍ଧକାର ମଧ୍ୟରେ କଙ୍କାଳସାର କେତେଜଣ ମଣିଷ ଭୂତ ଅବା ପ୍ରେତ ପରି ଛିଡ଼ା ରହିଛନ୍ତି । ସେମାନଙ୍କ ମଧ୍ୟରୁ ଜଣେ ବ୍ୟକ୍ତି ଝରକା ପାଖକୁ ଆସି କିଛି କହିବା ଲାଗି ଛିଡ଼ା ହେଲା । ତା' ଆଖିରୁ ଲୁହ ଝରି ପଡୁଥାଏ । ଅସ୍ପଷ୍ଟ ଭାଷାରେ କହିଲା, "ବାବୁ, ଆପଣଙ୍କୁ ଏଠାରେ ରଖାଯାଇଛି ଶୁଣି ଆମମାନଙ୍କର ସାହସ ଆସିଛି । ଆପଣ ହିଁ ଆମକୁ ରକ୍ଷା କରିପାରିବେ । ଜମିଦାରବାବୁଙ୍କ ଖଜଣା ଆଦାୟକାରୀମାନଙ୍କୁ ପାଉଣା ଦେଲା ପରେ ସେମାନେ ସଲାମୀ ମାଗିଲେ । ବାବୁ, ଆମେ ସମସ୍ତେ ଦିନ ମଜୁରିଆ । ଜମିବାଡ଼ି କିଛି ନାହିଁ । କେବଳ ଖଣ୍ଡିଏ ଖଣ୍ଡିଏ ଘର ଡିହ । ସଲାମୀ ଦେଇ ନ ପାରିବାରୁ ଜମିଦାରବାବୁ ଆମ ନାମରେ ଥାନାରେ ଏତାଲା ଦେଇଛନ୍ତି ଯେ ଆମେ ତାଙ୍କର ପିଆଦାମାନଙ୍କୁ ମାଡ଼ ମାରିଛୁଁ । ପୁଲିସ ଆମକୁ ଧରି ଆଣି ଏଠାରେ ରଖିଛି । ଘରେ ଦୁଇଦିନ ଚୁଲି ଜଳି ନ ଥିବ । ପିଲାଗୁଡ଼ାକ ଅଖିଆ ଅପିଆ କଲବଲ ହେଉଥିବେ । ବାବୁ, ଭଗବାନ୍ ଆପଣଙ୍କୁ ଏଠାକୁ ପଠାଇଛନ୍ତି । ଆମମାନଙ୍କୁ ଉଦ୍ଧାର କରନ୍ତୁ ।"

ତପସ୍ୱୀବାବୁଙ୍କ ଚକ୍ଷୁରେ ଲୋତକ ଭରିଗଲା । ଭାବିଲେ, ଧନ୍ୟ ଏ ଦେଶର ସରକାର, ଧନ୍ୟ ଜମିଦାର ଗୋଷ୍ଠୀ, ଧନ୍ୟ ପୁଲିସ୍, ଧନ୍ୟ ଦେଶବାସୀଙ୍କ ଦୁଃଖ ! ଆଶ୍ୱାସନା ଦେଇ କହିଲେ, "ରାତି ପାହିଲେ ଦାରୋଗାଙ୍କ ହାତଗୋଡ଼ ଧରି ତୁମମାନଙ୍କୁ ଛାଡ଼ିଦେବାକୁ କହିବି । ମୋ କଥା ନ ଶୁଣିଲେ, ଏହିଠାରେ ଆମରଣ ଅନଶନ କରିବି । ଚାରିଆଡୁ କଂଗ୍ରେସକର୍ମୀ ଓ ନେତାମାନେ ଆସିଯିବେ । ଦେଖିବା ପୁଲିସ୍ ଓ ଜମିଦାର କ'ଣ କରିପାରିବେ ।"

ଝରକା ବନ୍ଦ ହେଲା । ମଶାଙ୍କ ଦାଉ ସତ୍ତ୍ୱେ ତପସ୍ୱୀବାବୁ ଶୋଇ ପଡ଼ିଲେ ।

ସକାଳେ ଦାରୋଗାବାବୁ ନିଜ ଅଫିସ କକ୍ଷରେ ବସିଲେ । ତପସ୍ୱୀବାବୁଙ୍କୁ ତାଙ୍କ ସମ୍ମୁଖକୁ ଅଣାଗଲା । ଯୁବକ ଦାରୋଗା ତା'ଙ୍କ ନାମ ଓ ଶିକ୍ଷା ଦୀକ୍ଷା ବିଷୟରେ ଅବଗତ ଥାଆନ୍ତି । ତେଣୁ ଚେୟାରରେ ବସିବାକୁ ଇଙ୍ଗିତ ଦେଲେ । ତପସ୍ୱୀବାବୁ ଆରମ୍ଭ କଲେ :

''ମୁଁ ବି.ଏ. ପାସ୍ କଲାପରେ ଡିପୋଟି ଚାକିରି ପାଇପାରିଥାନ୍ତି । କିନ୍ତୁ ବିଦେଶୀ ସରକାରର ଗୋଲାମ୍ ହେବା ପରିବର୍ତ୍ତେ ମହାତ୍ମା ଗାନ୍ଧିଙ୍କ ଆନ୍ଦୋଳନରେ ଯୋଗ ଦେଲି । ଆପଣ ଜଣେ ଶିକ୍ଷିତ ବ୍ୟକ୍ତି । ସମ୍ବାଦପତ୍ର ପଢୁଥିବେ । ଜାଣି ସାରିଥିବେ, ବିଲାତରେ ଗୋଲ ଟେବୁଲ ବୈଠକ ବସିଥିଲା । ଶୁଣିଥିବେ, ବ୍ରିଟିଶ ସରକାର ଭାରତ ପାଇଁ ଏକ ନୂତନ ଶାସନ ଖସଡ଼ା ପ୍ରସ୍ତୁତ କରୁଛନ୍ତି । ମୁଁ ଖବର ପାଇଲି ଯେ ପ୍ରତ୍ୟେକ ପ୍ରଦେଶରେ ଲୋକ ନିର୍ବାଚିତ ପ୍ରତିନିଧିମାନେ ସରକାର ଗଠନ କରିବେ । ତାହା ପରେ, ନିଷ୍ଠୁର ଶାସନର ଦିନ ଆଉ ରହିବ ନାହିଁ । ଜମିଦାରମାନଙ୍କ ଅତ୍ୟାଚାର ମଧ୍ୟ ଚଳିବ ନାହିଁ । ମୋ କଥାର ଅର୍ଥ ବୁଝିପାରୁଥିବେ ବୋଲି ମୋର ବିଶ୍ୱାସ ।''

''ତପସ୍ୱୀବାବୁ, ମୁଁ ମଧ୍ୟ ଆପଣଙ୍କ ପରି ଜଣେ ଭାରତବାସୀ । ଦେଶର ଅବସ୍ଥା ଦେଖିପାରୁଛି । କିନ୍ତୁ ନାଚାର । ଆପଣ ଜଣେ ସଂଗ୍ରାମୀ, ମୁଁ ଜଣେ ଚାକିରିଆ । ସରକାରୀ ଚାକିରିରେ ଥିଲା ପର୍ଯ୍ୟନ୍ତ ସରକାରଙ୍କ ଆଦେଶ ପାଳନ କରିବାକୁ ବାଧ୍ୟ,'' କହିଲେ ଦାରୋଗା ।

ତପସ୍ୱୀବାବୁ ପଚାରିଲେ, ''ସରକାରଙ୍କ କେଉଁ ଆଦେଶ ବଳରେ ମୋତେ ଧରିଆଣି ଥାନାରେ ଅଟକ ରଖିଛନ୍ତି ? କେଉଁ ଆଦେଶ ବଳରେ କେତେଗୁଡ଼ାଏ ନିରୀହ ଭୂମିହୀନ ଦିନ ମଜୁରିଆଙ୍କୁ ବାନ୍ଧି ରଖିଛନ୍ତି ? ମୁଁ ଯଦି ଅନ୍ୟାୟ ବିରୋଧରେ ଏଠାରେ ଆମରଣ ଅନଶନ ଆରମ୍ଭ କରିବି, ଆପଣ କିମ୍ବା ଜମିଦାର କିମ୍ବା ସରକାର ଅବସ୍ଥା ସମ୍ଭାଳି ପାରିବେ ? ଶେଷରେ ଆପଣ ହିଁ ବିପଦରେ ପଡ଼ିବେ । ମୁଁ ମରିବା ଲାଗି ପ୍ରସ୍ତୁତ ଅଛି । କିନ୍ତୁ ଆପଣ କାହିଁକି ଅକାରଣେ ହଇରାଣ ହେବେ ?''

ବିଜ୍ଞତାସୂଚକ ଭଙ୍ଗୀରେ କିଛି ସମୟ ଚିନ୍ତାଗ୍ରସ୍ତ ରହିଲା ପରେ ଦାରୋଗାବାବୁ ଲଘୁ ସ୍ୱରରେ କହିଗଲେ, ''ସତ୍ୟାଗ୍ରହୀମାନଙ୍କ ବିଷୟ ମୋତେ ଜଣାଅଛି । ସେମାନେ ଯାହା କହନ୍ତି, ତାହାହିଁ କରନ୍ତି । ଆପଣ ଆମରଣ ଅନଶନ କରିବେ ବୋଲି ଧମକ ଦେଉଛନ୍ତି । ତାହା ଆପଣଙ୍କ ପକ୍ଷରେ ନିଶ୍ଚୟ ସମ୍ଭବ । କିନ୍ତୁ, ମହାତ୍ମା ଗାନ୍ଧି ସିନା ସପ୍ତାହ ସପ୍ତାହ ବ୍ୟାପୀ ଅନଶନ କଲେ ମଧ୍ୟ ମରନ୍ତି ନାହିଁ । ଅପରପକ୍ଷରେ ଆପଣ ଖୁବ୍ ବେଶିରେ ଚାରି ପାଞ୍ଚଦିନ ବଞ୍ଚିଯାଇପାରନ୍ତି । ତାପରେ କିନ୍ତୁ କେହି ଆପଣଙ୍କୁ ବଞ୍ଚାଇ ପାରିବେ ନାହିଁ ।''

"ଦାରୋଗାବାବୁ, ମୁଁ ମରିଗଲା ପରେ ଆପଣ ଓ ଆପଣଙ୍କ ଥାନାର ଅବସ୍ଥା କ'ଣ ହେବ, ସେ ବିଷୟ ଚିନ୍ତା କରିପାରୁଛନ୍ତି ?"

ହଠାତ୍ ଗଭୀର ଆଶଙ୍କାରେ ଆକ୍ରାନ୍ତ ହୋଇପଡ଼ିଲେ ଦାରୋଗାବାବୁ । ବିଚକ୍ଷଣତାର ପରିଚୟ ଦେଇ କନଷ୍ଟେବଲମାନଙ୍କୁ ଆଦେଶ ଦେଲେ, "ତପସ୍ୱୀବାବୁଙ୍କୁ ଛାଡ଼ି ଦିଅ । ଜମିଦାରଙ୍କ ପ୍ରଜାଗୁଡ଼ାକୁ ମଧ୍ୟ ଖଲାସ କରିଦିଅ ।"

ଆଦେଶ କାର୍ଯ୍ୟକାରୀ ହେବା ସଙ୍ଗେ ସଙ୍ଗେ ଦାରୋଗାବାବୁ ତପସ୍ୱୀବାବୁଙ୍କୁ ଅନୁରୋଧ ଜଣାଇଲେ, "ଆଜ୍ଞା, ଏହି ଲୋକଗୁଡ଼ାକ ଉପରେ ଜମିଦାରବାବୁ ଭୀଷଣ ଖପା । ମୁଁ ସେମାନଙ୍କୁ ଛାଡ଼ି ଦେଇଛି ବୋଲି ଜାଣିଲା ପରେ ସେ ମୋ ବିରୋଧରେ କଲେକ୍ଟର ସାହେବଙ୍କ ପାଖକୁ ଲେଖିବେ । ଆପଣ ଯଦି ଜମିଦାରଙ୍କ ନିକଟକୁ ଏମାନଙ୍କୁ ନେଇଯାଇ ସମସ୍ତଙ୍କୁ ମାଫ୍ କରିଦେବା ଲାଗି ପ୍ରାର୍ଥନା କରନ୍ତେ, ତେବେ ମୋ ଚାକିରି ଖଣ୍ଡିକ ରହିଯିବ । ମୋର ବିଶ୍ୱାସ, ସେ ଆପଣଙ୍କ ପରି ନେତାଙ୍କ ଅନୁରୋଧ ରକ୍ଷା କରିବେ ।"

"ଆପଣଙ୍କ ଉପଦେଶ ନିଶ୍ଚୟ ରକ୍ଷା କରିବି । ଜମିଦାରବାବୁଙ୍କ ଉଆସକୁ ଏମାନଙ୍କୁ ନେଇଯିବି । ଯାହା କହିବା ଆବଶ୍ୟକ, ତାହା କହିବି," ଉତ୍ତର ଦେଲେ ତପସ୍ୱୀବାବୁ ।

## ॥ ୬ ॥

ପାଞ୍ଚଜଣ ନିଃସ୍ୱ, ନିରକ୍ଷର ଓ ବୁଭୁକ୍ଷୁ ଦିନ ମଜୁରିଆଙ୍କୁ ଥାନାରୁ ମୁକୁଳାଇ ଆଣି ତପସ୍ୱୀବାବୁ ଯେତେବେଳେ ରାସ୍ତାରେ ଚାଲିବାକୁ ଲାଗିଲେ ସେତେବେଳେ ସେ ଆଚମ୍ବିତ ହୋଇ ଦେଖିଲେ ଗୋଟିଏ ନିଛାଟିଆ ସ୍ଥାନରେ ଜଗି ରହିଛନ୍ତି ତିନିଜଣ ଗୁଣ୍ଡାଶ୍ରେଣୀୟ ଦୁର୍ଦ୍ଦାନ୍ତ ବ୍ୟକ୍ତି । ସେମାନଙ୍କ ଦାଢ଼ି, ନିଶ ଓ ବଳିଷ୍ଠ ବପୁ ସୂଚନା ଦେଉଥାଏ ଯେ ସେମାନେ ସାଧାରଣ ଗ୍ରାମବାସୀ ନୁହଁନ୍ତି । ରାସ୍ତାର ଦୁଇ ପାଖରେ ଥାଏ ବଣବୁଦା ଓ କଣ୍ଟା ବାଉଁଶ ଝାଡ଼ । ନିକଟରେ ଜନବସତି ନ ଥାଏ କିମ୍ବା କୌଣସି ଲୋକର ଘରଟିଏ ମଧ୍ୟ ଦେଖାଯାଉ ନ ଥାଏ । ଜଣେ ମଜୁରିଆ ତାଙ୍କ କାନ ପାଖରେ କହିଲା, "ବାବୁ, ଏମାନେ ଆମମାନଙ୍କୁ ମାରି ପକାଇବେ । ଅଣ୍ଟାରେ ଛୁରି ରଖିଛନ୍ତି ।" "ଚିନ୍ତା କର ନାହିଁ," ବୋଲି କହି ତପସ୍ୱୀବାବୁ ଶତ୍ରୁପକ୍ଷ ପାଖକୁ ନିର୍ଭୟରେ ଆଗେଇଗଲେ ।

''ବାବୁମାନେ, ନମସ୍କାର । ଏହି ପାଞ୍ଚଟା ଅମାନିଆ ଲୋକଙ୍କୁ ନେଇ ଜମିଦାରବାବୁଙ୍କ ପାଦତଳେ ଶୁଆଇବି । ଜମିଦାରବାବୁଙ୍କ ଟଙ୍କାରେ ପାଠ ପଢ଼ିଥିଲି । ତାଙ୍କର ଉପକାର କରିବା ମୋର କର୍ତ୍ତବ୍ୟ । ଉଆସରେ ପନ୍ଦର ଦିନ ବେଠି ଖଟିଲା ପରେ ଏମାନେ ଘରକୁ ଫେରିବେ । ଜମିଦାରବାବୁଙ୍କ କୋଠା ପର୍ଯ୍ୟନ୍ତ ଏଠାରୁ କେତେ ରାସ୍ତା ? ମୁଁ ବାଟ ଦେଖି ନାହିଁ । ଯିବି କିପରି ସେହି କଥା ଚିନ୍ତା କରୁଛି ।''

ଗୁଣ୍ଡାମାନେ ହଠାତ୍ ନରମି ଗଲେ । ଜଣେ ଉତ୍ତର ଦେଲା, ''ଆଜ୍ଞା, ଆପଣ ଗତକାଲି ସନ୍ଧ୍ୟାରେ ଥାନାକୁ ଆସିଛନ୍ତି ଜାଣି ଜମିଦାରବାବୁ ଆମକୁ ରାସ୍ତା ଜଗିବା ଲାଗି ପଠାଇଥିଲେ । ଏହି ଲୋକଗୁଡ଼ାକୁ ଧରି ନେଇଯିବାକୁ ଆଦେଶ ଦେଇଥିଲେ । ଆପଣ ଯଦି ନିଜେ ସେମାନଙ୍କୁ ନେଇଯିବେ ବୋଲି କହୁଛନ୍ତି, ଉଆସ ଯାଏ ଚାରିକୋଶ ବାଟ ଆମେ ଆପଣଙ୍କୁ କାନ୍ଧରେ ବସାଇ ନେଇଯିବୁଁ ।''

''ନା, ତୁମେମାନେ ବାଟ ଦେଖାଅ । ମୁଁ ଚାଲି ଚାଲି ଯିବି । ମଣିଷ କାନ୍ଧରେ ବସିବା ମଣିଷର ଅଧର୍ମ ।''

ତପସ୍ୱୀବାବୁ ଅଗ୍ରସର ହେଲେ । ତାଙ୍କ ପଛରେ ମଜୁରିଆ ଦଳ । ସେମାନଙ୍କ ପଛରେ ଜମିଦାରବାବୁଙ୍କ ଗୁଣ୍ଡାମାନେ । ଗନ୍ତବ୍ୟ ସ୍ଥାନରେ ପହଞ୍ଚିଲାବେଳକୁ ଦିନ ଦୁଇପ୍ରହର । ଭୋକରେ ମଜୁରିଆମାନେ ଅବଶ ହୋଇପଡ଼ିଥାନ୍ତି । ଭୟରେ ସେମାନଙ୍କ ଦେହ ଥରୁଥାଏ ।

ଉଆସ ଆଗରେ ପ୍ରାଚୀର ଘେରା ପ୍ରକାଣ୍ଡ ପଡ଼ିଆ । ଫାଟକ ନିକଟରେ ଗୋର୍ଖା ଦ୍ୱରୱାନ । ତପସ୍ୱୀବାବୁଙ୍କ ସହିତ ନିଜ ଲୋକମାନଙ୍କୁ ଦେଖି ଭିତରକୁ ଛାଡ଼ିଦେଲା । ପ୍ରଶସ୍ତ ବାରଣ୍ଡାରେ ବସିଥାନ୍ତି ନାଏବବାବୁ ଏବଂ କେତେଜଣ ଗୁମାସ୍ତା ।

''ନାଏବବାବୁ, ମୁଁ ଶିବବାବୁଙ୍କ ଜାମାତା, ତପସ୍ୱୀ । ଜମିଦାରବାବୁଙ୍କୁ ଭେଟିବାକୁ ଆସିଛି ।''

''ହଁ, ହଁ, ମୁଁ ବୁଝିପାରୁଛି ତୁ କାହିଁକି ଆସିଛୁ । ଜମି ଫେରସ୍ତ ମାଗିବୁ । କିନ୍ତୁ ସେ ଜମି ଅନ୍ୟଲୋକଙ୍କ ନାମରେ ପଟ୍ଟା ଦିଆସରିଲାଣି । ଶିବ ବୁଢ଼ାଟାକୁ ଋଣ ପରିଶୋଧ କଥା କହିଲାବେଳକୁ ଏକାଥରକେ କହିଦେଲା, ଟଙ୍କା ଦେବ ନାହିଁ, ଜମି ବାଜ୍ୟାପ୍ତ କରିନିଅ । ଲୋକଟାର ଏଡ଼େ ସାହସ ! ଆମେ ବି ସଙ୍ଗେ ସଙ୍ଗେ ଜମିଖଣ୍ଡିକ ଅନ୍ୟଲୋକଙ୍କୁ ଦଖଲ କରିବାକୁ ଦେଇଦେଲୁଁ ।''

''ଆପଣ କ'ଣ କହୁଛନ୍ତି, ମୁଁ ବୁଝିପାରୁ ନାହିଁ । ତେବେ ଟିକିଏ ଭଦ୍ରୋଚିତ ଭାଷାରେ କହିଥିଲେ ଭଲ ହୋଇଥାନ୍ତା ।''

''ମୋତେ ଭଦ୍ରାମୀ ଶିକ୍ଷା ଦେବାକୁ ଆସିଛୁ ? କ'ଣ ଖଦଡ଼ ଲୁଗା ପିନ୍ଧିଛୁ ବୋଲି ?'' ନାଏବବାବୁ ରାଗରେ ଥରହର ହୋଇ କାଗଜପତ୍ର ଉପରେ ଦୃଷ୍ଟି ନିବଦ୍ଧ କଲେ ।

ତପସ୍ୱୀବାବୁ ତୁରନ୍ତ ଜଣେ ଗୁମାସ୍ତା ନିକଟକୁ ଯାଇ ଆପତ୍ତି ଜଣାଇଲେ, ''ଏହି ପାଞ୍ଚଜଣ ଲୋକ ଭୋକରେ ମରିବାକୁ ବସିଲେଣି । ଜମିଦାର ହେଉଛନ୍ତି ପ୍ରଜାମାନଙ୍କର ମା' ବାପ । ତାଙ୍କ ଉଆସରେ କୌଣସି ମଣିଷର ଉପବାସରେ ଜୀବନ ଯିବା ଉଚିତ ନୁହେଁ । ତଦ୍ୱାରା ଜମିଦାର ବଂଶର ଅମଙ୍ଗଳ ହେବ । ମୁଠାଏ ମୁଠାଏ ଚୁଡ଼ା ସେମାନଙ୍କୁ ଖାଇବାକୁ ଦେଲେ, ସେମାନେ ବଞ୍ଚିଯିବେ ।''

ଗୁମାସ୍ତାଙ୍କ ମନରେ ଦୟା ଉଦ୍ରେକ ହେଉ ବା ନ ହେଉ, ଜମିଦାର ବଂଶର ମଙ୍ଗଳ ଅମଙ୍ଗଳ ପ୍ରସଙ୍ଗଟି ବାବୁଙ୍କ କାନକୁ ଚାଲିଯିବ ଜାଣି ସେ ସଙ୍ଗେ ସଙ୍ଗେ ଭିତରକୁ ଚାଲିଯାଇ ଗୋଟିଏ ପାତ୍ରରେ ଚୁଡ଼ା ଆଣି ସମସ୍ତଙ୍କ ହାତରେ ଦୁଇମୁଠା ହିସାବରେ ଧରାଇଦେଲେ । ସେତକ ଖାଦ୍ୟ ଚୋବାଇ ପକାଇ ସେମାନେ ପିଣ୍ଡାତଳ ମାଟି ଉପରେ ଚିତ୍ ହୋଇ ଶୋଇପଡ଼ିଲେ ।

ନାଏବବାବୁ ହୁଙ୍କାର ଦେଲେ, ''ଲୋକଗୁଡ଼ାକୁ ଗାରଦ ଭିତରକୁ ନେଇ ସେଠାରେ ପଡ଼ି ରହିବାକୁ କହ । ଏଠାରେ ନୁହେଁ ।''

ଜଣେ ପିଆଦା ଦୂରରେ ଥିବା ଗୋଟିଏ ଛାତ ନ ଥିବା ଖୁଆଡ଼ ଦିଗକୁ ନେଇଗଲା । ତପସ୍ୱୀବାବୁ ମଧ୍ୟ ବିଶ୍ରାମ ନେବାକୁ ସେଠାରେ ପହଞ୍ଚିଲେ । ଦେଖିଲେ ଅପୂର୍ବ ଏବଂ ଅମାନୁଷିକ ଦୃଶ୍ୟ । କେତେଜଣ ପ୍ରଜାଙ୍କୁ ଅଟକ ରଖାଯାଇଛି । ଜଣକ ମୁଣ୍ଡରେ ଲଦା ହୋଇଥାଏ ଓଦା କୁଟାବିଡ଼ା । ଆଉ ଜଣକ ମୁଣ୍ଡରେ ଖଣ୍ଡିଏ ଓଜନଦାର ମାଙ୍କଡ଼ା ପଥର । ଜଣକ ଦେହ ଉପରେ ଥାଏ ବେତ କଣ୍ଟାର ଝାଡ଼ ଏବଂ ଶେଷ ଲୋକଟିର ଦେହରେ ଛଡ଼ାଯାଇଥାଏ କାଠୁଆ ଜନ୍ଦା । ଖୁଆଡ଼ ଜଗିଥାନ୍ତି ଦୁଇଟି ବଡ଼ ବଡ଼ କୁକୁର । ସେପରି ଅସହ୍ୟ ଦୃଶ୍ୟ ଦେଖି ଚମକି ଉଠିଲେ ତପସ୍ୱୀବାବୁ । ଜଣକୁ ପଚାରିଲେ, ''ଏପରି ଦଣ୍ଡର କାରଣ କ'ଣ ?''

ବୁଢ଼ାଟି ଉତ୍ତର ଦେଲା, ''ମରୁଡ଼ି ପାଇଁ ଚାଷ ହେଲା ନାହିଁ । ଖଜଣା ଦେଇପାରିଲୁଁ ନାହିଁ । ପୁଅ ଯାଇଛି, ବାସନ କୁସନ ବିକ୍ରି କରି ଟଙ୍କା ଆଣିବ । ଖଜଣା ଦେଲେ, ଛାଡ଼ ମିଳିବ ।''

ଗମ୍ଭୀର ବଦନରେ ତପସ୍ୱୀବାବୁ ଖୁଆଡ଼ ଭିତରୁ ଫେରିଆସିଲେ । ଜଣେ ଗୁମାସ୍ତାଙ୍କୁ ପଚାରି ବୁଝିଲେ, ଜମିଦାରବାବୁ ଶୋଇଛନ୍ତି । ଦିନ ଚାରିଟା ବେଳକୁ ବାହାରିବେ ।

ପଡ଼ିଆ ଉପରେ ବସିରହି ତପସ୍ୱୀବାବୁ ଚିନ୍ତା କଲେ, ପ୍ରଜାମାନଙ୍କର ମା'ବାପ ଭାବରେ ପରିଚିତ ଏହି ଜମିଦାର ଗୋଷ୍ଠୀ କେତେ ଦୂର ନିଷ୍ଠୁର ଓ ଅତ୍ୟାଚାରୀ ହୋଇପାରନ୍ତି ! ବହିରେ ପଢ଼ିଥିବା ବିଷୟ ମନେପଡ଼ିଲା । ପୂର୍ବକାଳରେ ରୁଷ୍ ସାମ୍ରାଜ୍ୟର ଜାର୍ ବା ସମ୍ରାଟ୍‌ମାନେ ଲକ୍ଷ ଲକ୍ଷ କ୍ରୀତଦାସମାନଙ୍କୁ ଅଶେଷ ନିର୍ଯାତନା ଦେଉଥିଲେ । କ୍ରୀତଦାସ ପ୍ରଥା ଉଠିଗଲା ପରେ ମଧ୍ୟ ଜାରଙ୍କ ସମ୍ଭ୍ରାନ୍ତମାନେ କୃଷି ଭୃତ୍ୟମାନଙ୍କ ପ୍ରତି ପଶୁତୁଲ୍ୟ ବ୍ୟବହାର କରୁଥିଲେ । ଫଳସ୍ୱରୂପ ଦିନେ ଲେନିନ୍ ହିଂସାତ୍ମକ ବିପ୍ଳବ ବଳରେ ଜାରତନ୍ତ୍ରର ବିଲୋପ ସାଧନ କରିପାରିଥିଲେ । ମନକୁ ସାନ୍ତ୍ୱନା ଦେଲେ, ମହାତ୍ମାଗାନ୍ଧି ଅହିଂସ ଆନ୍ଦୋଳନ ବଳରେ ଦିନେ ନା ଦିନେ ବ୍ରିଟିଶ ସାମ୍ରାଜ୍ୟକୁ ଧ୍ୱଂସ କରିପାରିବେ । ଦେଶବାସୀ ଅନ୍ୟାୟ ଅତ୍ୟାଚାରରୁ ମୁକ୍ତି ପାଇବେ ।

ଅନେକ ସମୟ ପରେ ଜମିଦାରବାବୁ ବାରଣ୍ଡାକୁ ବାହାରିଲେ । ସାଙ୍ଗରେ ଥାଆନ୍ତି ତାଙ୍କର ଯୁବକ ପୁତ୍ର । ବୃଦ୍ଧ ପିତାଙ୍କ ପରି ପୁତ୍ର ମଧ୍ୟ ସୁଦୃଶ୍ୟ ନିଶ ରଖିଥାନ୍ତି । ଉଭୟେ ଦିଶୁଥାନ୍ତି ସ୍ୱାସ୍ଥ୍ୟବାନ୍ ଓ ବଳବାନ୍ । ଉଭୟଙ୍କ ବକ୍ଷଦେଶରେ ଶୋଭାପାଉଥାଏ ସୁନାର ହାର ଓ ବଡ଼ ବଡ଼ ଲକେଟ୍ ।

ଜମିଦାରବାବୁ ଆସନ ଗ୍ରହଣ କଲାପରେ ତପସ୍ୱୀବାବୁ ତା'ଙ୍କ ନିକଟକୁ ଯାଇ ପ୍ରଣାମ ଜଣାଇଲେ । ତା'ଙ୍କ ପୁତ୍ରଙ୍କୁ ମଧ୍ୟ । ବଡ଼ ବଡ଼ ଆଖିରେ ଚାହିଁରହି ଜମିଦାର ପ୍ରଶ୍ନ କଲେ, ''ଓଃ, ଚିହ୍ନିପାରିଲି, ସେହି ଜମି କଥା କହିବା ଲାଗି ଆସିଛ ?''

''ଆଜ୍ଞା, ନା, ଜମି ଫେରାଇ ଦେବାକୁ କହିବି ନାହିଁ । ଋଣ କରିଥିଲି । ପରିଶୋଧ କରିବା ଶକ୍ତି ନାହିଁ । ତେଣୁ ଜମି ଛଡ଼ାଇନେଲେ ବୋଲି ମୋର ତିଳେମାତ୍ର ଦୁଃଖ ନାହିଁ । ଆଜି ମୋର ପାଞ୍ଚଏକର ଜମି ଗଲା, କାଲି ସମ୍ରାଟ୍‌ଙ୍କର ପୃଥିବୀ ବିସ୍ତୃତ ସାମ୍ରାଜ୍ୟ ମଧ୍ୟ ଚାଲିଯିବ, ଏବଂ, ସେଥିସହ ଲୋପ ପାଇଯିବ ରାଜାମାନଙ୍କର ରାଜ୍ୟ ଓ ଜମିଦାରମାନଙ୍କର ଜମିଦାରୀ । ମୁଁ ଆସିଥିଲି, ଯେଉଁ ପାଞ୍ଚଜଣ ଦିନ ମଜୁରିଆ ପ୍ରଜାଙ୍କୁ ଥାନାରେ ପୂରାଇଥିଲେ ସେମାନଙ୍କୁ ମାଫ୍ କରିଦେବା ଲାଗି ପ୍ରାର୍ଥନା କରିବାପାଇଁ ।''

''ଅନେକ ବଡ଼ ବଡ଼ କଥା କହିଗଲ । ସମ୍ରାଟ୍‌ଙ୍କ ସାମ୍ରାଜ୍ୟ ଚାଲିଗଲା ପରେ ଖଦଡ଼ିଆ କଂଗ୍ରେସ୍‌ବାଲାମାନେ ଶାସନ କରିବେ, ଏହି କଥା କହୁଛ ତ ? ହେଉ ହେଲା, ମୋତେ କହିଲ, କଂଗ୍ରେସବାଲାଙ୍କ ଶାସନ କାଳରେ ଖଜଣା ଉଠିଯିବ କି ?''

''ଆଜ୍ଞା, ନା । ଖଜଣା ରହିବ, କିନ୍ତୁ ଖଜଣା ଆଦାୟ ଲାଗି ନିର୍ମମ ଅତ୍ୟାଚାର ରହିବ ନାହିଁ । ବିଦେଶୀ ସରକାର ଏବଂ ତା'ଙ୍କ ଅଧୀନସ୍ଥ ରାଜା ଜମିଦାରମାନେ ପ୍ରଜାଙ୍କ ପ୍ରତି ଯେଉଁ ପ୍ରକାର ବର୍ବରୋଚିତ ବ୍ୟବହାର କରୁଛନ୍ତି ସେହି ପ୍ରଥା ଚରିଦିନ

ପାଇଁ ଲୋପ ପାଇବ । ପ୍ରଜାମାନେ ହେବେ ରଜା । ସେମାନେ ନିଜ ନିଜକୁ ନିର୍ଯ୍ୟାତନା ଦେଇପାରିବେ ନାହିଁ । ଆପଣଙ୍କୁ ହାତଯୋଡ଼ି ଅନୁନୟ କରୁଛି, ଯେଉଁ ଚାରୋଟି ମଣିଷକୁ ଖୁଆଡ଼ ମଧ୍ୟରେ ଭର୍ତ୍ତିକରି ଯନ୍ତ୍ରଣା ଦେଉଛନ୍ତି, ସେମାନଙ୍କୁ ବର୍ତ୍ତମାନ ମୁକ୍ତ କରି ଦିଅନ୍ତୁ ।''

ଜମିଦାରବାବୁଙ୍କ ପୁତ୍ର ଗର୍ଜନ କରି ଉଠିଲେ, ''ସେମାନଙ୍କୁ ମୁକ୍ତି ନ ଦେଲେ କ'ଣ କରିବୁ ? ଆମକୁ ଧମକ ଦେବାକୁ ଆସିଛୁ ?''

ତାଙ୍କ ମୁଖମଣ୍ଡଳ ଦିଗକୁ କଠୋର ଦୃଷ୍ଟିରେ ଚାହିଁରହି ତପସ୍ୱୀବାବୁ ଉତ୍ତର ଦେଲେ, ''ଶେରଗଡ଼ ଜମିଦାରୀରେ କିପରି ଘଟଣା ଘଟିଲା ସେହିକଥା ମନେ ପକାଇଲେ ଆପଣଙ୍କ ପ୍ରଶ୍ନର ଉତ୍ତର ପାଇଯିବେ । ଜମିଦାରଙ୍କ ବିରୋଧରେ ପ୍ରଜାମାନଙ୍କ ମେଳିକୁ ବ୍ରିଟିଶ ସରକାର ମଧ୍ୟ ଦମନ କରିପାରିଲେ ନାହିଁ । ଶେଷରେ, ଜମିଦାର ଖଜଣା ଛାଡ଼ କରିବାକୁ ବାଧ୍ୟ ହେଲେ । ଏଠାରେ ସେପରି ଘଟଣା ଯେପରି ନ ଘଟିବ ସେଥିପାଇଁ ମୁଁ ନିବେଦନ ଜଣାଇବାକୁ ଆସିଛି । ଆପଣମାନେ ଯଦି ଖୁଆଡ଼ରେ ଥିବା ପ୍ରଜାମାନଙ୍କୁ ଏବଂ ଥାନାରୁ ମୁକୁଳାଇ ଆଣିଥିବା ଭୂମିହୀନ ମଜୁରିଆମାନଙ୍କୁ ଏହିକ୍ଷଣି ଛାଡ଼ି ନ ଦେବେ, ତେବେ ମୁଁ ବାଧ୍ୟହୋଇ ଉଆସ ଆଗ ରାସ୍ତାରେ ଆମରଣ ଅନଶନ ଆରମ୍ଭ କରିବି ।''

ତପସ୍ୱୀବାବୁଙ୍କ ବାକ୍ୟ ଶେଷ ହେବାପୂର୍ବରୁ କ୍ରୋଧ ଜର୍ଜରିତ ଅବସ୍ଥାରେ ଉଠିପଡ଼ିଲେ ଜମିଦାରବାବୁଙ୍କ ପୁତ୍ର । ''ମୋର ଡବଲ୍ ବ୍ୟାରେଲ ନୂଆ ବନ୍ଧୁକଟା ଉପର ମହଲାରୁ ନେଇ ଆସିଲୁ । ଏହି କଂଗ୍ରେସିଆଟାକୁ ଏହିଠାରେ ଖତମ କରିଦେବି । ଶିଆଳ କୁକୁରଂ ମଧ୍ୟ ଏ ଶଳାଟାର ଲାସ୍ ଖାଇବାପାଇଁ ଖୋଜି ଖୋଜି ପାଇବେ ନାହିଁ,'' ଆଦେଶ ଦେଲେ ଜଣେ ଭୃତ୍ୟକୁ ।

''ଜେଲରେ ଥିଲାବେଳେ ମୁଁ ରାଇଫଲ୍, ରିଭଲଭର ପ୍ରଭୃତି ଆଗ୍ନେୟାସ୍ତ୍ର ଦେଖିଛି । ଆପଣଙ୍କ ବନ୍ଧୁକ ଦେଖିଲେ ଡରିଯିବି ବୋଲି ଭାବନ୍ତୁ ନାହିଁ । ଗୁଳିଖାଇ ମରିଯିବାକୁ ପ୍ରସ୍ତୁତ ଅଛି । ଆଣନ୍ତୁ ବନ୍ଧୁକ,'' ଉତ୍ତ୍ୟକ୍ତ ଅବସ୍ଥାରେ କହିଲେ ତପସ୍ୱୀବାବୁ ।

ଇତସ୍ତତଃ ଜମିଦାରବାବୁ କୃତ୍ରିମ କ୍ରୋଧର ଅଭିନୟ ପୂର୍ବକ ନିଜ ପୁତ୍ରଙ୍କ ପ୍ରତି କଟାକ୍ଷପାତ କରି ଉଚ୍ଚ ସ୍ୱରରେ କହିଲେ, ''ମୋ ପୁଅ ହୋଇ ତୋ ବାବାଙ୍କ ଆଗରେ ଜଣେ ଭଦ୍ରବ୍ୟକ୍ତିଙ୍କୁ ଏପରି ଧମକ ଦେବାର ଅଧିକାର ତୋତେ କିଏ ଦେଲା ? ତପସ୍ୱୀ ବାବୁ ମୋ ସାହାଯ୍ୟ ବଳରେ ବିଦ୍ୱାନ ହୋଇଛନ୍ତି । ସଂଗ୍ରାମୀ ଭାବରେ ଜେଲ୍ ଯାଇ ପ୍ରସିଦ୍ଧ ହୋଇଛନ୍ତି । ତାଙ୍କପରି ନେତାଙ୍କ ସହିତ ଯେଉଁପ୍ରକାର ବ୍ୟବହାର କଲୁ ତାହା

ଜଣେ ଜମିଦାରର ପୁଅଙ୍କ ପକ୍ଷରେ ଶୋଭନୀୟ ନୁହେଁ । ସେ ଆସିଛନ୍ତି ଥାନାରେ ଥିବା ମଜୁରିଆମାନଙ୍କୁ ମାଫ୍ କରିଦେବାଲାଗି ମୋତେ କହିବେ । ଏଥିରେ ରାଗିବା ଅପେକ୍ଷା ବରଂ ତାଙ୍କୁ ପ୍ରଶଂସା କରିବା କଥା ।''

ଏତିକି କହି ଜମିଦାର ତାଙ୍କ ପିଆଦାମାନଙ୍କୁ ଆଦେଶ ଦେଲେ, ''ଏହି ମଜୁରିଆମାନଙ୍କ ସାଙ୍ଗରେ ଖୁଆଡ଼ରେ ଥିବା ପ୍ରଜାମାନଙ୍କୁ ମଧ୍ୟ ଛାଡ଼ିଦିଅ ।''

ସେତେବେଳକୁ ସନ୍ଧ୍ୟା ଆଗତପ୍ରାୟ । ବନ୍ଦୀମାନେ ସାଷ୍ଟାଙ୍ଗ ପ୍ରଣାମ ସହ ବିଦାୟ ନେଲେ । ଜମିଦାରବାବୁ ତପସ୍ୱୀବାବୁଙ୍କୁ କୋମଳ ସ୍ୱରରେ କହିଲେ, ''ତୁମ ଗାଁ ଏଠାରୁ ଅନେକ ଦୂରରେ । ଅନ୍ଧକାର ଆସିଯିବ । ରାତିଟା ଆମ ଘରେ ରହିଗଲେ ଖୁସି ହେବି । ଜେଲ ଅଭିଜ୍ଞତା ବିଷୟ ଶୁଣିବାପାଇଁ ଇଚ୍ଛା ହେଉଛି । ଆଗାମୀ ଦିନର ରାଜନୀତି କଥା ମଧ୍ୟ ଶୁଣିପାରିବି ।''

ତପସ୍ୱୀବାବୁ ଦ୍ୱିଧା ପ୍ରକାଶ କରିବା ଦେଖି ଜମିଦାରଙ୍କ ପୁତ୍ର ହସି ହସି ଶ୍ରଦ୍ଧାମିଶ୍ରିତ ଭାଷାରେ କହିଲେ, ''ଗୁଳି କରିଦେବି ବୋଲି ଭୟ କରୁଛନ୍ତି କି ? ଆମ ଜମିଦାର ବଂଶରେ ଅତିଥିମାନଙ୍କୁ ସମ୍ମାନ ଦେବା ପ୍ରଥା ଚିରଦିନ ରହିଆସିଛି ଏବଂ ରହିଥିବ । ଆପଣ ନିଜକୁ ଆମର ଆତ୍ମୀୟ ବୋଲି ଭାବିଲେ ବାବା ଆନନ୍ଦିତ ହେବେ ।''

''ଜମିଦାରବାବୁଙ୍କ ଅର୍ଥ ବଳରେ ମୁଁ ଆଇ.ଏ. ଓ ବି.ଏ. ପଢ଼ିଛି । ତେଣୁ ସେ ମୋର ପିତୃତୁଲ୍ୟ ବ୍ୟକ୍ତି । ତାଙ୍କ ଘରେ ଆତିଥ୍ୟଲାଭ କରିବା ମୋର ସୌଭାଗ୍ୟ,'' କହିଲେ ତପସ୍ୱୀବାବୁ ।

ଜଳଖିଆ ଆସିଗଲା । ଜମିଦାରବାବୁ ପାଖରେ ବସି କଥାବାର୍ତ୍ତା ଆରମ୍ଭ କଲେ । ତା'ଙ୍କ ପୁଅ ଉଠି ଚାଲିଗଲେ ରେଡ଼ିଓରେ ସିନେମା ସଂଗୀତ ଶୁଣିବାପାଇଁ ।

ଜମିଦାରବାବୁ ପ୍ରଶ୍ନ ଉତ୍‌ଥାପନ କଲେ, ''ବାବୁ, ତୁମେ ତ ବିଶ୍ୱାସ କରୁଛ ଯେ ମହାତ୍ମାଗାନ୍ଧି ସ୍ୱାଧୀନତା ଆଣିବେ । ମୋର କିନ୍ତୁ ବିଶ୍ୱାସ ଆସୁ ନାହିଁ । ପିଲାବେଳେ ଖଣ୍ଡିଏ ଛେଳିମାଂସ ଖାଇଦେଇ ଯେଉଁ ବ୍ୟକ୍ତି ଭୟ ପାଇଗଲେ ସେ ନିଶ୍ଚୟ ଜଣେ ଦୁର୍ବଳମନା ମଣିଷ । ତୁମେମାନେ ତାହାଙ୍କୁ ନିଜର ସେନାପତି ବୋଲି ଭାବୁଛ । ଫଳ କ'ଣ ହେଉଛି ଆମେ ଦେଖୁଛୁଁ । ଧରାଯାଉ, ଗାନ୍ଧି ଲବଣ ଆଇନ ଭାଙ୍ଗିଲେ । ତୁମପରି ହଜାର ହଜାର ଲୋକ ଜେଲ ଗଲେ । ଅନେକ ମହିଳା ମଧ୍ୟ । ଜେଲରେ ସମସ୍ତଙ୍କର ଦୁଇବର୍ଷ ସମୟ ଅକାରଣେ ନଷ୍ଟ ହେଲା । ଆମ ଦେଶବାସୀ ଦରିଦ୍ର ଓ ଦୁର୍ବଳ । ଇଂରେଜମାନେ ପୃଥିବୀର ଅଧେ ଅଂଶରେ ରାଜତ୍ୱ କରୁଛନ୍ତି । ସେମାନଙ୍କର ସୈନ୍ୟବଳ ସବୁଠାରୁ ବେଶି । ସେମାନେ କେବେହେଲେ ହାର ମାନିବେ ନାହିଁ ।''

''ପ୍ରଥମେ ଗାନ୍ଧିଙ୍କ ଛେଳିମାଂସ ଖାଇବା ବିଷୟ ଉଲ୍ଲେଖ କରୁଛି । ନିଜ ପିତାମାତାଙ୍କ ଅନୁମତି ବିନା ଜଣେ ନୈଷ୍ଠିକ ନିରାମିଷାସୀ ପରିବାରର ପିଲା ହୋଇ ମାଂସ ଖାଇଦେଇଥିବା ଯୋଗୁଁ ନିଜର ଅନ୍ୟାୟ କାର୍ଯ୍ୟ ବିରୋଧରେ ପ୍ରତିକ୍ରିୟାସ୍ୱରୂପ ଭୟଭୀତ ହୋଇପଡ଼ିଥିଲେ । ତାହା ତାଙ୍କର ଦୁର୍ବଳତା ନୁହେଁ । ସେହି ବ୍ୟକ୍ତି ତ ପୁଣି କିଛି ସମୟ ପୂର୍ବେ ଖୋଦ୍ ବ୍ରିଟିଶ ସମ୍ରାଟ୍‌ଙ୍କ ପ୍ରାସାଦରେ ତାଙ୍କ ସମ୍ମୁଖରେ ଛିଡ଼ାହୋଇ ତା'ଙ୍କ ଅନ୍ୟାୟ ବିରୋଧରେ ସ୍ୱର ଉତ୍ତୋଳନ କରିପାରିଲେ । ସମ୍ରାଟ୍ ଦେଖିଲେ ଗାନ୍ଧି ଆଣ୍ଠୁ ଉପରକୁ ଖଣ୍ଡିଏ ଖଦଡ଼ ଧୋତି ପିନ୍ଧି ଓ ଦେହରେ ଖଣ୍ଡିଏ ଖଦଡ଼ ଚଦର ପକାଇ ଶୀତରେ ଥରି ଥରି ରାଜପ୍ରାସାଦକୁ ଆସିଛନ୍ତି । କୌତୂହଳସହ ପଚାରିଦେଲେ, ଅଙ୍ଗରେ ଏତେ ସ୍ୱଳ୍ପ ପରିଧାନ କାହିଁକି ? ଗାନ୍ଧି ଉତ୍ତର ଦେଲେ, ଆପଣ ଯେତିକି ପୋଷାକ ପିନ୍ଧିଛନ୍ତି, ସେତିକି ଆମ ଦୁହିଁଙ୍କ ପ୍ରତି ଯଥେଷ୍ଟ ଜାଣି ମୁଁ ଅଳ୍ପ ବସ୍ତ୍ର ପିନ୍ଧିଛି । ସମ୍ରାଟ୍ ସମସ୍ତଙ୍କ ସମ୍ମୁଖରେ ଅପଦସ୍ଥ ହେଲେ । ଜାଣିପାରିଲେ ଯେ ଗାନ୍ଧି ହେଉଛନ୍ତି ଦରିଦ୍ର ଜନସାଧାରଣଙ୍କ ପ୍ରତିନିଧି, ଅଥଚ ସେ ହେଉଛନ୍ତି ଏକ ଶୋଷଣକାରୀ ଓ ସାମ୍ରାଜ୍ୟବାଦୀ ଜାତିର ସମ୍ରାଟ୍ । ଅନ୍ୟାୟ ବିରୋଧରେ ଏହିପରି ପ୍ରତିକ୍ରିୟା ହିଁ ହେଉଛି ମନୁଷ୍ୟର ପ୍ରକୃତ ସାହସ ଓ ସବଳତା । ଇଟାଲୀର ସ୍ୱୈର ଶାସକ ମୁସୋଲିନୀଙ୍କ ସହିତ ତାଙ୍କ ପ୍ରାସାଦରେ କରମର୍ଦ୍ଦନ କରୁଥିଲାବେଳେ ଗାନ୍ଧି କହିଦେଇପାରିଥିଲେ, ଆପଣଙ୍କ ଫାସିବାଦ ହିଂସା ମଧ୍ୟରୁ ଜନ୍ମିଛି ଏବଂ ସେହି ହିଂସା ମଧ୍ୟରେ ହିଁ ଧ୍ୱଂସ ପାଇଯିବ । ଆପଣଙ୍କ ଦ୍ୱିତୀୟ ପ୍ରସଙ୍ଗଟି ହେଲା ବ୍ରିଟିଶ ସାମ୍ରାଜ୍ୟର ସାମରିକ ଶକ୍ତି ଓ ଭାରତୀୟମାନଙ୍କର ଦାରିଦ୍ର୍ୟ ଓ ଦୁର୍ବଳତା । ମୁଁ ଏତିକି କହିବି ଯେ, ନୀତିବଳ ଆଗରେ ସୈନ୍ୟବଳ ମୂଲ୍ୟହୀନ । ଯେତେ ଶକ୍ତିଶାଳୀ ହେଲେ ମଧ୍ୟ କୌଣସି ବିଦେଶୀ ସାମ୍ରାଜ୍ୟ ଚିରସ୍ଥାୟୀ ରହିପାରେ ନାହିଁ । ଗାନ୍ଧି ଯେଉଁ ଉପାୟରେ ସଂଗ୍ରାମ କରୁଛନ୍ତି ତାହାର ପ୍ରକୃତ ତାତ୍ପର୍ଯ୍ୟ ହୃଦୟଙ୍ଗମ କରିବା ଉଚିତ । ଅହିଂସା ମନ୍ତ୍ରଦ୍ୱାରା ସେ ଏକ ଦରିଦ୍ର ଓ ଦୁର୍ବଳ ଜାତିର ପ୍ରାଣରେ ସାହସ ଓ ଶକ୍ତି ସଞ୍ଚାର କରିପାରିଛନ୍ତି । ସେଥିପାଇଁ ସହସ୍ର ସହସ୍ର ଭାରତୀୟ ଲାଠି ମାଡ଼ ଖାଇପାରିଲେ ଓ କାରାବରଣ କଲେ ଆନ୍ଦୋଳନ ବା ସଂଗ୍ରାମ ବ୍ୟର୍ଥ ହୁଏ ନାହିଁ । ଆପଣ ଦେଖିବେ, ଆଗାମୀ ଦିନଗୁଡ଼ିକରେ ବ୍ରିଟିଶ ଶାସିତ ପ୍ରଦେଶମାନଙ୍କରେ କଂଗ୍ରେସ ଦଳ ସରକାର ଗଠନ କରିବ । କୁଆଡ଼େ ଯିବ ବ୍ରିଟିଶ ସାମ୍ରାଜ୍ୟର ଶକ୍ତି ?''

ଚିନ୍ତିତ ମନରେ ଜମିଦାରବାବୁ ପଚାରିଲେ, ''କଂଗ୍ରେସ ସରକାର କ'ଣ ଆଁମମାନଙ୍କ ଜମିଦାରୀ ଛଡ଼ାଇନେବେ ?''

''ମୋର ଧାରଣା, ଜମିଦାରୀ ପ୍ରଥା ଉଚ୍ଛେଦ କରିବା ହେଉଛି ଜାତୀୟ କଂଗ୍ରେସର ଗୋଟିଏ ଲକ୍ଷ୍ୟ,'' ଉତ୍ତର ଦେଲେ ତପସ୍ୱୀବାବୁ ।

''ମୋତେ ଗୋଟିଏ ପ୍ରଶ୍ନର ଉତ୍ତର ଦେଲ । ଜମିଦାରମାନେ ବ୍ରିଟିଶ୍ ଇଲାକାରେ ରହିଥିବାଯୋଗୁଁ କଂଗ୍ରେସର ଆଖି ସେମାନଙ୍କ ଉପରେ ପଡ଼ିଗଲା । କିନ୍ତୁ ପ୍ରଦେଶଗୁଡ଼ିକ ବାହାରେ ଥିବା ଦେଶୀୟ ରାଜ୍ୟଗୁଡ଼ିକ ଉପରେ କଂଗ୍ରେସର ଆଖି ପଡୁ ନାହିଁ କାହିଁକି ? ଆମେ ଜମିଦାରମାନେ ପ୍ରଜାଙ୍କଠାରୁ ଖଜଣା ଆଦାୟ କରି ସରକାରଙ୍କୁ ଦେଉଛୁଁ । ଯଥାସମୟରେ ଦେଇ ନ ପାରିଲେ, ସୂର୍ଯ୍ୟାସ୍ତ ଆଇନ ବଳରେ ସରକାର ଆମର ଜମିଦାରୀ ଛଡ଼ାଇ ନେଉଛନ୍ତି । କିନ୍ତୁ, ରଜାମାନେ ଖଜଣା ଦିଅନ୍ତି ନାହିଁ । ସେମାନେ ପ୍ରଜାମାନଙ୍କୁ ବେଠି ଖଟାନ୍ତି । ନାନା କିସମର ଟିକସ ଆଦାୟ କରନ୍ତି । ସେମାନଙ୍କ ଅତ୍ୟାଚାର ବିଷୟ କଂଗ୍ରେସବାଲା କିମ୍ବା ଗାନ୍ଧି ଜାଣିପାରୁ ନାହାନ୍ତି କିପରି ?''

''ମହାତ୍ମାଗାନ୍ଧି ଏବଂ ନେହରୁ ପ୍ରଭୃତି ବଡ଼ ବଡ଼ ନେତାମାନେ ରାଜାମାନଙ୍କ କୁଶାସନ ବିଷୟ ଭଲଭାବରେ ଜାଣନ୍ତି । ତଥାପି, ଦେଶୀୟ ରାଜ୍ୟଗୁଡ଼ିକରେ କଂଗ୍ରେସ ଆନ୍ଦୋଳନ ଆରମ୍ଭ ନ କରିବାର କାରଣ ରହିଛି । ପ୍ରାୟ ଅଧିକାଂଶ ରାଜ୍ୟର ପ୍ରଜାମାନେ ଅତ୍ୟନ୍ତ ଅନୁନ୍ନତ ଅବସ୍ଥାରେ ଅଛନ୍ତି । ସେମାନେ ପୁଣି ପାହାଡ଼ ପର୍ବତ ଓ ବଣଜଙ୍ଗଲର ଅଧିବାସୀ । ସେମାନଙ୍କ ମଧ୍ୟରେ କଂଗ୍ରେସ ସଂଗଠନ ଗଠିତ ହୋଇ ନାହିଁ । ସେମାନଙ୍କୁ ଅହିଂସ ଉପାୟରେ ଆନ୍ଦୋଳନ ଲାଗି ଶିକ୍ଷା ଦିଆଯାଇ ନାହିଁ । ଅନେକ ରଜା ଅତ୍ୟନ୍ତ ନିଷ୍ଠୁର ପ୍ରକୃତିର ମନୁଷ୍ୟ । ପ୍ରଜାମାନଙ୍କର ଆନ୍ଦୋଳନ ବା ବିକ୍ଷୋଭ ଦେଖିଲେ ସେମାନେ ଇଂରେଜ ସୈନ୍ୟଙ୍କୁ ଡାକି ଆଣିବେ । ଦମନଲୀଳା ଚାଲିବ । ନିରୀହ ନରନାରୀ ଗୁଳିରେ ମରିବେ । ଏହି ସମସ୍ତ ବିଷୟ ବିଚାର କରି ଦେଶୀୟ ରାଜ୍ୟରେ କଂଗ୍ରେସ କିଛି କରୁ ନାହିଁ । କିନ୍ତୁ, ଆପଣ ଦେଖିବେ, କିଛି ସମୟ ପରେ ଦେଶୀୟ ରାଜାମାନଙ୍କ ବିପକ୍ଷରେ ନିଶ୍ଚୟ ସଂଗ୍ରାମ ଆରମ୍ଭ ହେବ । ସ୍ୱାଧୀନତା ଆନ୍ଦୋଳନରୁ ସେମାନେ କଦାପି ତ୍ରାହି ପାଇବେ ନାହିଁ ।''

ଜମିଦାରବାବୁ ମନଦେଇ ସବୁ କଥା ଶୁଣୁଥାନ୍ତି । କିଛି ସମୟ ନୀରବ ରହିଲାପରେ ତପସ୍ୱୀବାବୁଙ୍କ ଜେଲ ଅଭିଜ୍ଞତା ବିଷୟ ଉତ୍ଥାପନ କଲେ । କାରାଗାରରେ ଥିବା ବିଶିଷ୍ଟ ନେତାମାନଙ୍କ ଗୁଣାବଳି ଶୁଣିଲେ । ବଡ଼ ବଡ଼ ନେତା ହୋଇଥିବା ସତ୍ତ୍ୱେ ଦେଶଲାଗି ସେମାନଙ୍କ ସୁଖସ୍ୱାଚ୍ଛନ୍ଦ୍ୟ ବିସର୍ଜନ ଦେବା ବିଷୟ ଶୁଣି ସେମାନଙ୍କ ପ୍ରତି ସମ୍ମାନ ଜଣାଇବାକୁ କୁଣ୍ଠାବୋଧ କଲେ ନାହିଁ ।

ଗେଟ୍ ପାଖରୁ ଜଣେ ଦରୱାନ ଆସି ଖବର ଦେଲା ଯେ ଯେଉଁ ମଜୁରିଆ ଓ ପ୍ରଜାମାନେ ଖୁଆଡ଼ରୁ ଖଲାସ ହୋଇଛନ୍ତି, ସେମାନେ ସମସ୍ତେ ଏତେ ରାତି ପର୍ଯ୍ୟନ୍ତ ରାସ୍ତା ଉପରେ ବସିରହିଛନ୍ତି । କହୁଛନ୍ତି, ''ତପସ୍ୱୀବାବୁଙ୍କୁ ଏଠାରେ ଏକାକୀ ଛାଡ଼ିଦେଇ ଆମେ ଘରକୁ ଫେରିବୁ ନାହିଁ ।''

ଜମିଦାରବାବୁ ଅଟ୍ଟାହାସ୍ୟ ସହ କହିଲେ, ''ଓଃ, ବୁଝିଲି । ସେମାନେ ଭାବୁଛନ୍ତି ତପସ୍ୱୀବାବୁଙ୍କୁ ରାତି ଭିତରେ ଏଠାରେ ଖତମ କରିଦିଆଯାଇପାରେ ।''

ତପସ୍ୱୀବାବୁ ସହସା ଉଠି ପଡ଼ିଲେ । ରାତି ହେଲେ ସୁଦ୍ଧା ଘରକୁ ଫେରିବା ଲାଗି ଅନୁମତି ମାଗିଲେ । ''ତୁମର ଇଚ୍ଛା । ଅନ୍ଧକାର ସତ୍ତ୍ୱେ ଯାଇପାର,'' କହିଲେ ଜମିଦାର ।

ତପସ୍ୱୀବାବୁ ନମସ୍କାର ଜଣାଇ ବିଦାୟ ନେଲେ । ''ଆପଣଙ୍କୁ ଆମେ ଅନ୍ୟ ରାସ୍ତାରେ ନେଇ ନିରାପଦରେ ଘରେ ଛାଡ଼ିବୁଁ । ଗୁଣ୍ଡାମାନେ ଜାଣିପାରିବେ ନାହିଁ । ଜମିଦାରଙ୍କ ଉଆସରେ ଆପଣଙ୍କ ପରି ଲୋକ ଏକାକୀ ରହିବା ଠିକ୍ ନୁହେଁ । ଏମାନେ ମଣିଷ ନୁହନ୍ତି, ରାକ୍ଷସ । ଭାତରେ ବିଷ ମିଶାଇଦେବା ଲୋକ'' ଜଣାଇଲେ ଜଣେ ବୃଦ୍ଧ ପ୍ରଜା ।

## ॥ ୭ ॥

ଗୋଟିଏ ଅଜଣା ଓ ଦୁର୍ଗମ ପଥରେ ଅନ୍ଧକାର ଭେଦକରି ସାରା ରାତି ଚାଲିଲା ପରେ ପୂର୍ବାକାଶରେ ସୂର୍ଯ୍ୟୋଦୟର ପୂର୍ବାଭାସ ମିଳିଲା । ତପସ୍ୱୀବାବୁ ସାଥୀମାନଙ୍କୁ ନିଜ ନିଜ ଗାଁକୁ ଫେରିଯିବା ଲାଗି ଅନୁରୋଧ କଲେ । କୃତଜ୍ଞତାପୂର୍ଣ୍ଣ ପ୍ରଣାମ ସହ ସେମାନେ ଆଦେଶ ମାନିଲେ । ନିଜ ଗାଁ ମୁଣ୍ଡ ଧରିଲା ବେଳକୁ ରାତି ପାହି ଯାଇଥାଏ । ସେତେବେଳକୁ ସେହି ଅଞ୍ଚଳର ଜଣେ ବୃଦ୍ଧ କବିରାଜ ଗାଁ ମଧ୍ୟରୁ ଧୀର ଗତିରେ ବାହାରି ଆସୁଥିବା ଦେଖାଗଲା । ନିମିଷ ମଧ୍ୟରେ ଏକ ଅଜ୍ଞାତ ଆଶଙ୍କା ମନରେ ସ୍ଥାନ ପାଇବା ଦେଖି ତପସ୍ୱୀବାବୁ କ୍ଷିପ୍ର ପଦକ୍ଷେପରେ ଆଗେଇଯାଇ ପଚାରିଲେ, ''ଆଜ୍ଞା, କେଉଁ ରୋଗୀକୁ ଦେଖିବାକୁ ଯାଇଥିଲେ ?''

''ତୁମରି ଶ୍ୱଶୁର ଶିବବାବୁଙ୍କୁ । ଗତ ରାତିରେ ଯାହା ଖାଇଥିଲେ ପାଟିବାଟେ ସବୁ ବାହାରିଗଲା । ସେଥିସହ କିଛି ରକ୍ତ ମଧ୍ୟ ପଡ଼ିଲା । ଶ୍ୟାମାନନ୍ଦବାବୁ ନିଜେ ଆସି ମୋତେ ମଝି ରାତିରେ ନେଇଗଲେ । ପରୀକ୍ଷା କଲି ।''

''ବାବାଙ୍କର କ'ଣ ହୋଇଛି ? ବର୍ତ୍ତମାନ କିପରି ଅଛନ୍ତି ?''

''ଘରେ ପହଞ୍ଚି ଦେଖିବ ଓ ଜାଣିପାରିବ । ପୀଡ଼ାର କାରଣ ଜାଣିପାରିଲି ନାହିଁ । ମୋର ଉପଦେଶ, ବୁଢ଼ାଙ୍କୁ ଅତି ଶୀଘ୍ର କଲିକତାର କୌଣସି ବଡ଼ ହସ୍‌ପିଟାଲରେ ଭର୍ତ୍ତି କରାଇବା ଉଚିତ । ଡାକ୍ତରମାନେ ଯନ୍ତ୍ରପାତିଦ୍ୱାରା ଜାଣିପାରିବେ ଭିତରେ କୌଣସିଠାରେ କ୍ଷତ ହୋଇଛି କିମ୍ବା ଅନ୍ୟ କିଛି । କେବଳ ବଡ଼ ବଡ଼ ଡାକ୍ତରମାନେ ହିଁ ବଡ଼ ବଡ଼ ରୋଗର ଚିକିତ୍ସା କରିପାରିବେ । ନିପଟ ମଫସଲ ଗାଁରେ ଏପରି ରୋଗୀଙ୍କର ଚିକିତ୍ସା କରିବା ସମ୍ଭବପର ନୁହେଁ ।''

କବିରାଜ ମହାଶୟ ଅନ୍ୟ ଗାଁର ରୋଗୀ ଦେଖିବାଲାଗି ଅଗ୍ରସର ହେଲେ । ତପସ୍ୱୀବାବୁ ନିଜ ଘର ଦିଗରେ ଦୌଡ଼ିଲେ । ସେଠାରେ ପହଞ୍ଚି ଦେଖିଲେ, ପିଣ୍ଡା ଉପରେ ବସିଛନ୍ତି ଶ୍ୟାମାନନ୍ଦବାବୁ ଓ ଶ୍ରୀହରିବାବୁ । ଉଭୟେ ଚିନ୍ତିତ ।

''ବାବୁ, ଦୁଇଦିନ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲ ! ତୁମପାଇଁ ଆମମାନଙ୍କର ଚିନ୍ତାର ଶେଷ ନାହିଁ । ଭିତରକୁ ଯାଇ ମୁହଁ ଧୋଇ ବାହାରି ଆସ । କୌଣସି ଗୁରୁତ୍ୱପୂର୍ଣ୍ଣ ଆଲୋଚନା ଦରକାର,'' କହିଲେ ଶ୍ୟାମବାବୁ । ଶ୍ରୀହରିବାବୁ ତରତରରେ କହିପକାଇଲେ, ''ଶିବବାବୁଙ୍କ ଦେହ ଖରାପ କଥା ତେଜସ୍ୱୀକୁ ଜଣାଇ ନାହିଁ । ସେ ମନଦେଇ ପାଠ ପଢୁଛି । ପ୍ରତିଦିନ ନିଦରୁ ଉଠି ପ୍ରଥମେ ପଚାରିବ, ଅଜା କିପରି ଅଛନ୍ତି, ମା' କିପରି ଅଛନ୍ତି, ବାବା କିପରି ଅଛନ୍ତି । ତା' ପରେ ବହି ଧରି ପଢ଼ିବାକୁ ବସିଯିବ ।''

ତପସ୍ୱୀବାବୁ ଶିବବାବୁଙ୍କ ଶଯ୍ୟାକକ୍ଷରେ ପ୍ରବେଶ କରି ଦେଖିଲେ, ସେ ଶୋଇଛନ୍ତି । ମମତା ବିଛଣା ପାଖରେ ଛିଡ଼ା ରହିଥାନ୍ତି । ସ୍ୱାମୀଙ୍କୁ ନିକଟରେ ଦେଖି ସତେଯେପରି ତା'ଙ୍କ ଦେହକୁ ପ୍ରାଣ ଫେରିଲା । ଇଙ୍ଗିତଦ୍ୱାରା ବାହାରକୁ ଡାକି ନେଇଗଲେ । ନିଜ ଶଯ୍ୟାଘରେ ପଶିଲାକ୍ଷଣି ତପସ୍ୱୀବାବୁ ହଠାତ୍ ବିଛଣା ଉପରେ ଲୋଟି ପଡ଼ିଲେ । ଅନାହାର, ରାତ୍ରି ଅନିଦ୍ରା ଏବଂ ଦୀର୍ଘ ପଦଯାତ୍ରାଜନିତ କ୍ଳାନ୍ତି ଲାଗି ଛିଡ଼ା ରହିବାକୁ ତାଙ୍କ ଦେହରେ ବଳ ନ ଥାଏ ।

ମମତା ତତ୍‌କ୍ଷଣାତ୍ ଏକ ଗ୍ଲାସ ପାଣିରେ କିଛି ଚିନି ଓ ଲୁଣ ମିଶାଇ ପିଇବା ଲାଗି ସ୍ୱାମୀଙ୍କ ହାତରେ ଧରାଇ ଦେଇ ତା'ଙ୍କ ପାଦ ଧରି କାନ୍ଦି ପକାଇଲେ । ''ତୁମ ଗୋଡ଼ ଧରୁଛି । କିଛି ଦିନ ପାଇଁ କଂଗ୍ରେସ କାମ୍ ବନ୍ଦ ରଖ । ପ୍ରଥମେ ମୋ ବାବାଙ୍କ ଜୀବନ ରକ୍ଷା କର ।''

ଚିନିପାଣି ପିଉଥିବା ବେଳେ ତପସ୍ୱୀବାବୁ ପଚାରିଲେ, ''ବାବାଙ୍କୁ କେଉଁ ପ୍ରକାର ବ୍ୟାଧି ଆକ୍ରମଣ କରିଛି, ସେଥି ସମ୍ବନ୍ଧରେ କୌଣସି ସୂଚନା ପାଇଛ କି ? ଯଦି ଜାଣିଛ, ମୋତେ କୁହ । ସଙ୍ଗେ ସଙ୍ଗେ ପ୍ରତିକାର ଲାଗି ଚେଷ୍ଟା କରିବି ।''

''କାଲି ମଝି ରାତି ପାଖରୁ ଶ୍ୟାମାନନ୍ଦବାବୁ, ଶ୍ରୀହରିବାବୁ ଓ କବିରାଜଙ୍କ କଥାବାର୍ତ୍ତା କବାଟ ପଛରେ ଛପିରହି ଶୁଣିଛି । ସେମାନେ କର୍କଟ ରୋଗ ବୋଲି ସନ୍ଦେହ କରୁଛନ୍ତି । କେବଳ କଲିକତାରେ ଚିକିତ୍ସା କରାଯାଇପାରିବ । ବିଳମ୍ବ ହେଲେ ପ୍ରାଣରକ୍ଷା ସମ୍ଭବ ହୋଇପାରିବ ନାହିଁ ।''

କଥାଟି ଶେଷ କରି ମମତା ସ୍ୱାମୀଙ୍କ ପାଦତଳେ ମୁଣ୍ଡ କଚାଡ଼ି ଦେଲେ । ସେଥିସଙ୍ଗେ ଖଟତଳେ ଥିବା ଗୋଟିଏ ପୁରୁଣା କାଠବାକ୍ସ ଟାଣିଆଣି ସେଥିରୁ ବାହାର କଲେ ଦୁଇଖଣ୍ଡି ସୁନା ଚୁଡ଼ି ଓ ଗୋଟିଏ ସୁନାହାର । କାନ୍ଦି କାନ୍ଦି କହିଲେ, ''ଏଗୁଡ଼ିକ ମୋ ମା'ଙ୍କ ଅଳଙ୍କାର । ସାଇତି ରଖିଥିଲି । ଏତିକି ବିକ୍ରି କରି ବାବାଙ୍କୁ କଲିକତାରେ ଡାକ୍ତର ଦେଖାଇ ପାରିବ । ହାରଟାର ଓଜନ ଛ' ଭରି । ଶ୍ରୀହରିବାବୁ ମଧ୍ୟ ସାହାଯ୍ୟ କରିବେ ବୋଲି କହୁଛନ୍ତି । ତୁମେ ବିଳମ୍ବ ନ କରି ବାବାଙ୍କୁ ନେଇଯାଅ ।'' ମମତା ଛୋଟ ଝିଅଟି ପରି କାନ୍ଦିବାକୁ ଲାଗିଲେ ।

ସାନ୍ତ୍ୱନା ଦେଇ ତପସ୍ୱୀବାବୁ କହିଲେ, ''ବାବାଙ୍କ ଚିକିତ୍ସା ଲାଗି ସମସ୍ତ ପ୍ରକାର ବ୍ୟବସ୍ଥା କରିବି । ତୁମେ ବ୍ୟସ୍ତ ହୁଅ ନାହିଁ ।''

ବାହାରି ଆସିଲେ ପିଣ୍ଡାକୁ । ପଛେ ପଛେ ମମତା । ଶ୍ରୀହରିବାବୁ ଓ ଶ୍ୟାମାନନ୍ଦବାବୁ ବିମର୍ଷ ମନରେ ବସିଥାନ୍ତି । ନିଜର ମନୋବଳ ପ୍ରକାଶ କରି ତପସ୍ୱୀବାବୁ ଜଣାଇଲେ, ''ଆପଣମାନେ ଚିନ୍ତା କରନ୍ତୁ ନାହିଁ । ମୁଁ ଯେଉଁ ଜେଲରେ ଥିଲି ସେହି ଜେଲରେ ଜଣେ ବଙ୍ଗାଳୀ ସତ୍ୟାଗ୍ରହୀ ମଧ୍ୟ ଥାଆନ୍ତି । ଅତ୍ୟନ୍ତ ଅମାୟିକ ଓ ପରୋପକାରୀ ବ୍ୟକ୍ତି, ତାଙ୍କ ଠିକଣା ଦେଇଛନ୍ତି । ବାବାଙ୍କୁ କଲିକତା ମେଡ଼ିକାଲ କଲେଜ ହସପିଟାଲରେ ସେ ସହଜରେ ଭର୍ତ୍ତି କରାଇଦେଇପାରିବେ । ଦୁଇ ଦିନ ମଧ୍ୟରେ ବାବାଙ୍କୁ ନେଇ କଲିକତା ଚାଲିଯିବି ।''

''ରେଳଷ୍ଟେସନ ପର୍ଯ୍ୟନ୍ତ ରୋଗୀକୁ ନେଇଯିବାଲାଗି ବଳଦଗାଡ଼ି ବ୍ୟବସ୍ଥା ମୁଁ କରିଦେବି,'' କହିଲେ ଶ୍ୟାମାନନ୍ଦବାବୁ ।

ଶ୍ରୀହରିବାବୁ ମତ ଦେଲେ, ''ମମତା ମଧ୍ୟ ସାଙ୍ଗରେ ଯାଇଥାଉ । କାରଣ, ମୁଁ ଜାଣେ ହସପିଟାଲରେ ନିଜ ଝିଅ ବ୍ୟତୀତ ଅନ୍ୟ କୌଣସି ଲୋକ ରୋଗୀର ପ୍ରକୃତ ସେବା କରିପାରନ୍ତି ନାହିଁ ।''

ମମତା ତତ୍‌କ୍ଷଣାତ୍ କହି ପକାଇଲେ, ''ବାବାଙ୍କ ସହିତ ମୁଁ ନିଶ୍ଚୟ ଯିବି । ରକ୍ତ ଦେବାକୁ ହେଲେ ମୁଁ ଦେବି । ଦିନରାତି ତାଙ୍କ ବିଛଣା ପାଖରେ ରହିବି । ମୋ ତିନିଟା ପିଲାଙ୍କୁ ଘରଭଡ଼ା ନେଇ ରଖିବି । ସେଥିପାଇଁ ମୋ ପାଖରେ ଟଙ୍କା ଅଛି ।''

''ପିଲା ତିନିଜଣ ମୋ ଘରେ ରହିବେ,'' ଆଶ୍ୱାସନା ଦେଲେ ଶ୍ରୀହରିବାବୁ ।

ବିଚାର ବିମର୍ଷ ଚାଲିଥିଲା ସମୟରେ ଅପ୍ରତ୍ୟାଶିତ ଭାବେ ବାହାରି ଆସିଲେ ଶିବବାବୁ । ଚେୟାରଟିରେ ବସିପଡ଼ି ଚାହିଁରହିଲେ ନିଜ ଝିଅ ମୁହଁକୁ । ପିତୃତ୍ୱର ଅଧିକାର ଜାହିର କରି କଠୋର କଣ୍ଠରେ କହିଲେ, ''ମୋ ଚିକିତ୍ସା ଲାଗି ଯଦି ତୋ ମା'ଙ୍କର ଅଳଙ୍କାରଗୁଡ଼ିକ ବିକ୍ରି କରିଦେବୁ, ତୋ ଝିଅ ବିବାହ ପାଇଁ ଟଙ୍କା ଆଣିବୁ କେଉଁଠାରୁ ? ନା, ମୋର କଲିକତା ଯିବା ଦରକାର ନାହିଁ । ବୟସ ହେଲାଣି । ଯମ ନିଶ୍ଚୟ ନେବାକୁ ଆସିବେ । ଆସିଲେ ମୋ ନିଜ ଘର ଭିତରୁ ନେଇଯିବେ । କଲିକତାରେ ଖୋଜିବେ କାହିଁକି ?''

ବାବା ଯେ ଅଳଙ୍କାର ବିକ୍ରୟ ଅନୁମାନ କରିନେଇଛନ୍ତି ଏଥିରେ ମମତାର ସନ୍ଦେହ ରହିଲା ନାହିଁ । କାରଣ, ସେ ଥିଲେ ଜଣେ କପର୍ଦ୍ଦକହୀନ ବ୍ୟକ୍ତି । ଋଣଗ୍ରସ୍ତ ମଧ୍ୟ । ମଧ୍ୟେ ମଧ୍ୟେ ଶୋଚନୀୟ ଆର୍ଥିକ ଅବସ୍ଥା ବିଷୟ ଝିଅ ଆଗରେ ବର୍ଣ୍ଣନା କରିଥାନ୍ତି । ସ୍ତ୍ରୀଙ୍କ କେତୋଟି ଅଳଙ୍କାର ଥିଲା ଶେଷ ସମ୍ବଳ ।

ଅନେକ ସମୟ କଲିକତା ଯାତ୍ରା ଓ ଚିକିତ୍ସା ସମ୍ପର୍କରେ ଆଲୋଚନା ଚାଲିଲା । ସେଥିସହ ତର୍କ ବିତର୍କ । ଶେଷରେ ତପସ୍ୱୀବାବୁଙ୍କ ଯୁକ୍ତି ଆଗରେ ଶିବବାବୁ ହାର ମାନିଲେ । ଠିକ୍ ହେଲା, ଅତି ଶୀଘ୍ର ରୋଗୀଙ୍କୁ କଲିକତା ନିଆଯିବ । ଆବଶ୍ୟକ ହେଲେ, ମମତାକୁ ଯିବାକୁ ହେବ । ଦୁଇଦିନ ପରେ ଆରମ୍ଭ ହେଲା ଯାତ୍ରା । ଗାଁ ପାଖରୁ ଷ୍ଟେସନ ପର୍ଯ୍ୟନ୍ତ ଚାଳିଶ ମାଇଲ ବାଟ । ବଳଦଗାଡ଼ି ବିନା ଅନ୍ୟ କୌଣସି ଯାନବାହନର ପ୍ରଶ୍ନ ନ ଥାଏ । ସକାଳ ହେଲାକ୍ଷଣି ବିଛଣା ପ୍ରସ୍ତୁତ କରି ରୋଗୀଙ୍କୁ ଶୁଆଇ ଦିଆଗଲା । ମମତା ଓ ପିଲାମାନେ ବିକଳ ଭାବରେ ଚାହିଁ ରହିଥାନ୍ତି । ତପସ୍ୱୀବାବୁ ଗାଡ଼ି ଚାଳକ ପାଖରେ ବସିଲେ । ରାସ୍ତାର ଉଭୟ ପାଖରେ ଛିଡ଼ା ହୋଇ ଗ୍ରାମବାସୀମାନେ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ପ୍ରାର୍ଥନା କରୁଥାନ୍ତି । ଧୀର ଗତିରେ ଗାଡ଼ି ଚାଳନା ଲାଗି ଶ୍ରୀହରିବାବୁ ନିର୍ଦ୍ଦେଶ ଦେଲେ । ଆଗେଇ ଚାଲିଲା ବଳଦଗାଡ଼ି ।

ରାତ୍ରି ପ୍ରାୟ ଏକ ପ୍ରହର ବେଳକୁ ଷ୍ଟେସନ ବାହାରେ ବଳଦଗାଡ଼ି ଅଟକିଲା । ମଧ୍ୟ ରାତ୍ରି ହେଲା ପରେ ପ୍ଲାଟଫର୍ମରେ ପ୍ରବେଶ କଲା ପାସେଞ୍ଜର ଟ୍ରେନଟିଏ ।

ତହିଁ ପରଦିନ ଅପରାହ୍ନରେ ଆସିଗଲା ହାବଡ଼ା ଷ୍ଟେସନ । ହାତ୍‌ଟଣା ରିକ୍ସାରେ ରୋଗୀଙ୍କୁ ବସାଇ ପାଖେ ପାଖେ ଚାଲିଲେ ତପସ୍ୱୀବାବୁ । ଛାତି ପକେଟରୁ ସତ୍ୟାଗ୍ରହୀ ବନ୍ଧୁଙ୍କ ଠିକଣା ବାହାର କରି ସେହି ସ୍ଥାନକୁ ଯିବେ ବୋଲି ରିକ୍ସାବାଲାକୁ ଜଣାଇଲେ । ଆଠ ଅଣାରେ ଦର ଛିଡ଼ିଲା ।

ଗୋଟିଏ ଛକ ସ୍ଥାନ ପରେ ଆଗରେ ଦିଶିଲା ସଂକୀର୍ଣ୍ଣ ଗଳି ପଥ । ଉଭୟ ପାଖରେ ଗଦା ଗଦା ଆବର୍ଜନା । ନର୍ଦ୍ଦମାଗୁଡ଼ିକରେ ଭର୍ତ୍ତି ଥାଏ ସବୁପ୍ରକାର ଅପରିଷ୍କାର ପଦାର୍ଥ, ଯଥା, ପଚିଯାଇଥିବା ଜୀବଜନ୍ତୁଙ୍କ ଶବ । ସେହିପରି ଗଳିର ଗୋଟିଏ କୋଣରେ ଦେଖାଯାଉଥାଏ ଜରାଜୀର୍ଣ୍ଣ ଏକତାଲା ବିଶିଷ୍ଟ ଛୋଟ ପକ୍କାଘରଟିଏ । ଆଗରେ ଅଳ୍ପଟିକିଏ ବାରଣ୍ଡା । ଭିତରେ ବୋଧହୁଏ ଦୁଇ କିମ୍ବା ତିନୋଟି କୋଠରି ।

ତପସ୍ୱୀବାବୁ ଘରର ନମ୍ବର ଦେଖି ରିକ୍ସାଚାଳକକୁ ସେହିଠାରେ ଅଟକିବାକୁ କହିଲେ । ରାସ୍ତା ଉପରକୁ ଲାଗିଥାଏ ଘରର ପିଣ୍ଡା । ଉପରକୁ ଉଠିପଡ଼ି ଉଚ୍ଚ ସ୍ୱରରେ ଆହ୍ୱାନ କଲେ, ''ଦୀପ୍ତିମାନ ଦାଦା, ମୁଁ ତପସ୍ୱୀ ।''

ଅବିଳମ୍ବେ ବାହାରି ପଡ଼ିଲେ ଦୀପ୍ତିମାନ ସରକାର । ମହାନଗରୀର ଜଣେ ନାମଜାଦା କଂଗ୍ରେସ କର୍ମୀ । ''ତପସ୍ୱୀ ଦା, ଆସ, ଆସ, ଘର ଭିତରକୁ ଆସ ।''

''ମୋ ସାଙ୍ଗରେ ଅଛନ୍ତି ମୋ ବାବା । ରୋଗାକ୍ରାନ୍ତ । ତା'ଙ୍କୁ ହସପିଟାଲରେ ଭର୍ତ୍ତି କରାଇବାଲାଗି କଲିକତା ଆଣିଛି ।''

''ବୁଝିଲି । ଗୋଟିଏ ଦିନ ଆମ କୁଟୀରରେ ବିଶ୍ରାମ ନେଲା ପରେ ହସପିଟାଲ କଥା ଚିନ୍ତା କରିବା । ବାବାଙ୍କୁ ଶୀଘ୍ର ଭିତରକୁ ନେଇଆସ ।''

ସରକାର ମହାଶୟ ଭିତରକୁ ଯାଇ ତା'ଙ୍କ ସ୍ତ୍ରୀଙ୍କୁ ବିଛଣା ପ୍ରସ୍ତୁତ କରିବାଲାଗି ଆଦେଶ ଦେଲେ । ''ବାଥ୍‌ରୁମରେ ପାଣି ରଖିବ । ଜଳଖିଆ ତିଆରି କର । ମୋର ପରମବନ୍ଧୁ ତପସ୍ୱୀବାବୁ ତା'ଙ୍କ ବାବାଙ୍କ ସହିତ ଆସିଛନ୍ତି ।''

ଶିବବାବୁଙ୍କ ହାତଧରି ତପସ୍ୱୀ ଘର ଭିତରକୁ ପ୍ରବେଶ କଲେ । ଦୀପ୍ତିମାନବାବୁ ବୃଦ୍ଧ ରୋଗୀଙ୍କ ପାଦସ୍ପର୍ଶପୂର୍ବକ ବିଛଣା ଉପରେ ଶୁଆଇ ଦେଲେ । ପାଖରେ ଥିବା ଗୋଟିଏ ବେଞ୍ଚ ଉପରେ ପାଖକୁ ପାଖ ବସି ଦୁଇବନ୍ଧୁ କଥାବାର୍ତ୍ତା ଆରମ୍ଭ କଲେ । ତପସ୍ୱୀବାବୁ କହିଲେ, ''ଆପଣଙ୍କୁ ହଇରାଣରେ ପକାଇଲି । ବାବାଙ୍କୁ ଶୀଘ୍ର ହସ୍‌ପିଟାଲରେ ଭର୍ତ୍ତି କରିବାଲାଗି ଆପଣଙ୍କର ସାହାଯ୍ୟ ଦରକାର ।''

''ହସପିଟାଲକୁ ନେବା ପୂର୍ବରୁ ପ୍ରଥମେ ନେଇଯିବି ଆମ ଦେଶର ସବୁଠାରୁ ନାମଜାଦା ଡାକ୍ତରଙ୍କ ନିକଟକୁ । କେବଳ କଲିକତା ନୁହେଁ ସମଗ୍ର ବଙ୍ଗଦେଶରେ ସେ କଂଗ୍ରେସ ଦଳର ଅଦ୍ୱିତୀୟ ନେତା । ଅଥଚ ସୁପ୍ରସିଦ୍ଧ ଚିକିତ୍ସକ । ଭାରତବର୍ଷରେ କିଏ ତା'ଙ୍କ ନାମ ନ ଶୁଣିଛି ? ଆଜି ଦିନଟା ଏଠାରେ ବିଶ୍ରାମ ନିଅନ୍ତୁ । ସନ୍ଧ୍ୟାବେଳକୁ ମୁଁ ନିଜେ ଯାଇ ଡକ୍ଟର ରାୟଙ୍କ ସହିତ କଥାବାର୍ତ୍ତା କରିଆସିବି । ସେ ମୋତେ ଭଲ ଭାବରେ ଜାଣନ୍ତି । ଆପଣଙ୍କ ନାମ ମଧ୍ୟ ତା'ଙ୍କୁ ଜଣାଥାଇପାରେ । ଜେଲରେ ଥିଲାବେଳେ ଆପଣ ମୋର ପୀଡ଼ା ସମୟରେ ଯେଉଁପ୍ରକାର ସେବା ଶୁଶ୍ରୂଷା କରିଥିଲେ ସେ କଥା ତାଙ୍କୁ କହିଥିଲି । ରୋଗୀଙ୍କ ଉପରେ ତାଙ୍କର ଥରେ ମାତ୍ର ଦୃଷ୍ଟି ପଡ଼ିଗଲେ, ବ୍ୟାଧି ଆପେ ଆପେ ଛାଡ଼ି ପଳାଇବ ।''

ଶିବବାବୁ ଏପରି ଆଶାବାଣୀ ଶୁଣି ଆନନ୍ଦିତ ହେଲେ । ଦୀପ୍ତିମାନବାବୁଙ୍କ ସ୍ତ୍ରୀ ରୋଗୀଙ୍କ ପାଇଁ ପାଳୁଅ ଓ ତପସ୍ୱୀବାବୁଙ୍କ ଲାଗି ସୁଜି ତିଆରି କରି ଦୁଇଟି ପ୍ଲେଟରେ ଆଣି ଥୋଇ ଦେଲେ । ଶିବବାବୁ ଆଶୀର୍ବାଦ ଦେଲେ, ''ମା', ଭଗବାନ୍ ତୁମର ମଙ୍ଗଳ କରିବେ ।''

ଜଳଖିଆ ଶେଷ କରି ଶିବବାବୁ ଚଦର ଘୋଡ଼ି ଶୋଇଗଲେ । ବିଗତ ରାତିଟି ରେଳଗାଡ଼ିରେ କଟିଥାଏ । ରାତି ଅନିଦ୍ରାର ଅଭ୍ୟାସ ମଧ୍ୟ ନ ଥାଏ । ତା'ଙ୍କ ଗାଢ଼ ନିଦ ଦେଖି ଦୁଇ ସଂଗ୍ରାମୀବନ୍ଧୁ ଅନ୍ୟ ଏକ କୋଠରିରେ ବସି ରାଜନୈତିକ ପ୍ରସଙ୍ଗମାନ ଆଲୋଚନା କଲେ । ''ଆଗାମୀ ଦିନର ସଂଗ୍ରାମ ନିମନ୍ତେ ଆମକୁ ଏବେଠୁଁ ପ୍ରସ୍ତୁତ ରହିବାକୁ ହେବ । ଏକାସାଙ୍ଗରେ ଦୁହେଁ ମିଳିମିଶି କାର୍ଯ୍ୟ କରିବା,'' ଦୀପ୍ତିମାନବାବୁ ସତର୍କ କରାଇଦେଇ ଡକ୍ଟର ରାୟଙ୍କ ସହିତ ସାକ୍ଷାତ ଲାଗି ବାହାରିଗଲେ ।

ଗୋଟିଏ ରାତି ବନ୍ଧୁ ଦମ୍ପତିଙ୍କର ଅଗାଧ ସ୍ନେହ ଶ୍ରଦ୍ଧା ଉପଭୋଗ କରି ତହିଁ ପରଦିନ ସକାଳେ ତପସ୍ୱୀବାବୁ ଦୁଇଖଣ୍ଡି ହାତଟଣା ରିକ୍ସା ଡାକି ଆଣିଲେ । ପଛ ରିକ୍ସାରେ ଦୁର୍ବଳ ରୋଗୀଙ୍କୁ ବସାଇ ଆଗ ରିକ୍ସାଟିରେ ଉଭୟ ବନ୍ଧୁ ବସିଲେ । ରିକ୍ସା ଚାଲିଲା ଡକ୍ଟର ରାୟଙ୍କ ନିବାସସ୍ଥଳ ଦିଗକୁ । ଡାକ୍ତରବାବୁଙ୍କ ଗେଟ୍ ସାମ୍ନାରେ ପ୍ରଭାତ ସମୟରୁ ରୋଗୀମାନଙ୍କ ଧାଡ଼ି ଲାଗିଯାଏ । ଦରିଦ୍ର ଜନସାଧାରଣଙ୍କ ଦୃଷ୍ଟିରେ ସେ ଥିଲେ ସ୍ୱୟଂ ଧନ୍ୱନ୍ତରୀ । ବିନା ଫିରେ ରୋଗୀ ଦେଖନ୍ତି । ରାତି ଦୁଇପ୍ରହରରେ ଡାକ ପାଇଲେ ମଧ୍ୟ ରୋଗୀ ଦେଖିବାକୁ ଯାଆନ୍ତି । ସେଥିପାଇଁ କଲିକତା ସହରରେ ସେ ଥିଲେ ସର୍ବାଧିକ ଲୋକପ୍ରିୟ ନେତା । ଇଂରେଜ ଅଫିସରମାନେ ମଧ୍ୟ ତାଙ୍କୁ ସମ୍ମାନ ଦେଉଥିଲେ ।

ରିକ୍ସାରେ ବସିଥିବା ଅବସ୍ଥାରେ ଦୀପ୍ତିମାନବାବୁ ଦେଖିପାରିଲେ, ଡକ୍ଟର ରାୟ ତାଙ୍କ କୋଠାର ବାଲକୋନିରେ ଛିଡ଼ା ରହି ରାସ୍ତା ଉପରକୁ ଚାହିଁ ରହିଛନ୍ତି । ତାଙ୍କ ଦୃଷ୍ଟି ପଛ ରିକ୍ସାରେ ବସିଥିବା ରୋଗୀଙ୍କ ଉପରେ କିଛି ସମୟ ପାଇଁ ନିବଦ୍ଧ ରହିବା ଦେଖାଗଲା । ନିଜ ସ୍ଥାନରେ ଛିଡ଼ା ରହି ଡାକ୍ତରବାବୁ ଉଚ୍ଚସ୍ୱରରେ ନିର୍ଦ୍ଦେଶ ଦେଲେ,

''ଦୀପ୍ତି, ସେହିଠାରେ ରିକ୍ସା ରଖ । ମୁଁ ତଳକୁ ଯାଉଛି ।''

ତାଙ୍କ ଆଦେଶ ମାନି ସରକାର ମହାଶୟ ତଳକୁ ଓହ୍ଲାଇ ପଡ଼ିଲେ । ତାଙ୍କ ସହିତ ତପସ୍ୱୀ ମଧ । ରୋଗୀ ରିକ୍ସାରେ ବସିଥାନ୍ତି । ବିନା ସାହାଯ୍ୟରେ ତଳକୁ ଆସିବା ଶକ୍ତି ନ ଥାଏ ।

ଗେଟ୍ ଦୁଇ ପାଖରେ ରୁଣ୍ଡ ହୋଇଥିବା ରୋଗୀମାନେ ସସମ୍ଭ୍ରମେ ଡାକ୍ତରବାବୁଙ୍କୁ ରାସ୍ତା ଛାଡ଼ି ଦେଉଥାନ୍ତି । କେହି କେହି ନତଜାନୁ ହୋଇ ତାଙ୍କ ପାଦସ୍ପର୍ଶ କରୁଥାନ୍ତି ।

ଡାକ୍ତରବାବୁ ନିକଟକୁ ଆସି ଶିବବାବୁଙ୍କ ଦେହ ଓ ମୁହଁକୁ ଚାହିଁ ରହିଲେ । କିଛି ସମୟ ଦୃଷ୍ଟିପାତ ପରେ ସଂକ୍ଷିପ୍ତ ଆଶ୍ୱାସନା ଦେଲେ, ''ଭାଗ୍ୟ ବିଶ୍ୱାସ କରିବେ । ଅହରହ ଭଗବାନ୍‌ଙ୍କୁ ସ୍ମରଣ କରୁଥିବେ ।''

ଦୀପ୍ତିମାନ ଓ ତେଜସ୍ୱୀଙ୍କୁ ଅନୁସରଣ କରିବା ଲାଗି ଇଙ୍ଗିତ ଦେଇ ଡାକ୍ତରବାବୁ ତରତରରେ ଯାଇ ନିଜ ଚେମ୍ବର ମଧରେ ପ୍ରବେଶ କଲେ । ଦୁଇବନ୍ଧୁ ଆସନ ଗ୍ରହଣ କରିବାକ୍ଷଣି, ସେ ପ୍ରଥମେ ଚାହିଁଲେ ପୂର୍ବପରିଚିତ କଂଗ୍ରେସ କର୍ମୀ ସରକାରଙ୍କ ଦିଗକୁ । ପଚାରିଲେ, ''ରୋଗୀଙ୍କୁ ଆପଣଙ୍କ ଘରେ ରଖିଛନ୍ତି ?'' ''ଆଜ୍ଞା, ହଁ'' ବୋଲି ଉତ୍ତର ଦେଲେ ଦୀପ୍ତିମାନବାବୁ ।

''ଯେଉଁ ଘରେ ସେ ଶୋଇଥିଲେ, ସେ ଘରେ ଭଲ ଭାବରେ ନିଆଁ ଜାଳିବାକୁ ହେବ । ଯେଉଁ ଶଯ୍ୟାରେ ଶୋଇଥିଲେ, ତାହା ପୋଡ଼ିଦେବ । ଯେଉଁ ବାସନରେ ଖାଇଥିଲେ କିମ୍ବା ଯେଉଁ ପାତ୍ରଗୁଡ଼ିକ ବ୍ୟବହାର କରିଥିଲେ ସେଗୁଡ଼ିକ ମାଟିତଳେ ପୋତିଦେବେ । ଯେଉଁ ବାଥ୍‌ରୁମ୍ ବ୍ୟବହାର କରିଥିଲେ ତା' ଭିତରେ ନିଆଁ ଜାଳିବେ ଓ ଛ' ମାସ ପର୍ଯ୍ୟନ୍ତ ତାହା ବ୍ୟବହାର କରିବେ ନାହିଁ ।''

ଆଶ୍ଚର୍ଯ୍ୟ ହୋଇ ଦୀପ୍ତିମାନବାବୁ ପ୍ରଶ୍ନ କଲେ, ''ସାର୍, ଆପଣ ଯାହା କହୁଛନ୍ତି, ତାହା ଆମେ ବୁଝିପାରୁ ନାହୁଁ ! ମୋ ବନ୍ଧୁ ତପସ୍ୱୀଦାଦା ତଟସ୍ଥ ହୋଇ ଶୁଣୁଛନ୍ତି ।''

ଧୀର ସ୍ୱରରେ ଡକ୍ଟର ରାୟ ବୁଝାଇଲେ, ''ଈଶ୍ୱରଙ୍କର ଇଚ୍ଛା । ତପସ୍ୱୀବାବୁଙ୍କ ପିତାଙ୍କୁ ରାଜଯକ୍ଷ୍ମା ଆକ୍ରମଣ କରିଛି । ଏକ ମାରାତ୍ମକ ବ୍ୟାଧି । ଶେଷ ଅବସ୍ଥାରେ

ପହଞ୍ଚି ଗଲେଣି । ଖୁବ୍ ବେଶିରେ ଏକ ବର୍ଷ । ବୈଜ୍ଞାନିକମାନେ ଏତେ ପର୍ଯ୍ୟନ୍ତ ଏହି ରୋଗ ଲାଗି ଔଷଧ ଉଦ୍ଭାବନ କରିପାରି ନାହାନ୍ତି । ମୋର ବିଶ୍ୱାସ, କିଛି ବର୍ଷ ମଧ୍ୟରେ ସେମାନେ ସଫଳ ହେବେ । କିନ୍ତୁ ସେତେପର୍ଯ୍ୟନ୍ତ ରୋଗୀ ବଞ୍ଚିରହି ପାରିବେ ନାହିଁ । ତମେ ଜାଣ, ଯକ୍ଷ୍ମା ଏକ ଭୟଙ୍କର ସଂକ୍ରାମକ ରୋଗ । ତା'ଙ୍କ ବ୍ୟବହୃତ ବିଛଣା ଓ ବାସନ ପ୍ରଭୃତି ବ୍ୟବହାର କରିବା ନିଷେଧ ।''

ତପସ୍ୱୀ କାନ୍ଦି ପକାଇଲେ । ଦୀପ୍ତିମାନବାବୁ ମ୍ରିୟମାଣ ଅବସ୍ଥାରେ କହିଲେ, ''ସାର୍, ମୁଁ ସିନା ମୋ ଘର ବିଶୁଦ୍ଧ କରିବା ଲାଗି ନିଆଁ ଜାଳିବି ଏବଂ ଆପଣଙ୍କ ନିର୍ଦ୍ଦେଶ ମାନ ପାଳନ କରିବି । କିନ୍ତୁ ତପସ୍ୱୀବାବୁଙ୍କ ବାବା ତାଙ୍କ ଘରକୁ ଫେରିଯିବେ । ସେଠାରେ ତାଙ୍କ ଝିଅ ଓ ଚାରିଜଣ ନାତିନାତୁଣୀ ଅଛନ୍ତି ।''

''ଯକ୍ଷ୍ମା ରୋଗୀଙ୍କ କ୍ଷେତ୍ରରେ ତାହାହିଁ ହେଉଛି ସବୁଠାରୁ ବଡ଼ ସମସ୍ୟା,'' ଏହା କହି ଚିନ୍ତାଗ୍ରସ୍ତ ଅବସ୍ଥାରେ ଡାକ୍ତରବାବୁ କିଛି ସମୟ ନୀରବ ରହିଲା ପରେ ଖଣ୍ଡିଏ କାଗଜରେ କୌଣସି ବିଷୟ ଲେଖିସାରି ଦୁହିଁଙ୍କ ମୁହଁକୁ ଚାହିଁ କଠୋର ସ୍ୱରରେ ଜଣାଇଲେ,

''ଘରକୁ ଫେରିଯିବାର ପ୍ରଶ୍ନ ନାହିଁ । ଏଠାରେ ମଧ୍ୟ କାହାରି ଘରେ ଆଶ୍ରୟ ନେଇ ପାରିବେ ନାହିଁ । ମୁଁ ଲେଖି ଦେଉଛି, ରୋଗୀଙ୍କୁ ସହର ବାହାରେ ରାମକୃଷ୍ଣ ମିଶନ୍‌ଦ୍ୱାରା ସଦ୍ୟ ନିର୍ମିତ ଯକ୍ଷ୍ମାନିବାସରେ ଭର୍ତ୍ତି କରିଦେବ । ସେଠାରେ ସେବାଶୁଶ୍ରୂଷା ପାଇବେ । ଧର୍ମ ପ୍ରବଚନ ଶୁଣିବେ । ଭଜନ ଓ ସଂକୀର୍ତ୍ତନ ଶ୍ରବଣରେ ମନନିଯୋଗ କରିବେ । ଯଥାସମୟରେ ଅନ୍ତିମ ନିଃଶ୍ୱାସ ତ୍ୟାଗ କରିବେ । ଗଙ୍ଗାତୀରର ପବିତ୍ର ସ୍ଥାନରେ ଶାନ୍ତିଲାଭ କରିବେ । କିନ୍ତୁ ଗୋଟିଏ ବିଷୟରେ ସତର୍କ କରି ଦେଉଛି । ରୋଗୀଙ୍କୁ ଦେଖିବା ଲାଗି କୌଣସି ଆତ୍ମୀୟସ୍ୱଜନ, ପୁତ୍ର କନ୍ୟା କିମ୍ବା କୌଣସି ବ୍ୟକ୍ତି ଯାଇପାରିବେ ନାହିଁ । ଆଶ୍ରମ-ଚିକିତ୍ସାଳୟର ଆଇନ୍ ମାନିବାକୁ ସମସ୍ତେ ବାଧ୍ୟ ।''

ଡାକ୍ତରବାବୁ ତାଙ୍କ ଲିଖିତ କାଗଜ ଖଣ୍ଡିକ ଧରାଇ ଦେଇ ଅପେକ୍ଷାରତ ରୋଗୀମାନଙ୍କୁ ଦେଖିବା ନିମନ୍ତେ ବାହାରିଗଲେ । ତପସ୍ୱୀବାବୁଙ୍କ ଚିନ୍ତା ଶକ୍ତି ଲୋପ ପାଇ ଯାଇଥାଏ । ସେ ବିକଳ ଭାବରେ ଚାହିଁ ରହିଥାନ୍ତି ବନ୍ଧୁଙ୍କ ଦିଗକୁ ।

''ତପସ୍ୱୀଦାଦା, ଏହା ହେଉଛି ମନୁଷ୍ୟର ଜୀବନ । ବାବାଙ୍କର ନିଶ୍ଚିତ ମୃତ୍ୟୁ, ଆପଣଙ୍କର ଅସ୍ୱାଭାବିକ ସମସ୍ୟା ! ମୃତ୍ୟୁର ଗତିରୋଧ ସମ୍ଭବ ନୁହେଁ । କିନ୍ତୁ ସମସ୍ତ ପ୍ରକାର ଜଟିଳ ସମସ୍ୟାର ସମାଧାନ ସୂତ୍ର ବାହାର କରିବା ମନୁଷ୍ୟ ପକ୍ଷରେ ସମ୍ଭବ । ବାହାରକୁ ଚାଲ, ଆଲୋଚନା କରିବା,'' ବୁଝାଇଲେ ସରକାର ।

ଅବସନ୍ନ ଦେହ ଓ ଶୂନ୍ୟ ମସ୍ତିଷ୍କ ସହ ସରକାରବାବୁଙ୍କ ପଛେ ପଛେ ବାହାରି ଆସି ତପସ୍ୱୀ ଦୌଡ଼ିଗଲେ ରିକ୍ସାରେ ବସିଥିବା ରୋଗୀଙ୍କ ନିକଟକୁ । ଅର୍ଦ୍ଧନିମିଳିତ ନୟନରେ ଚିତ୍ ହୋଇ ବସି ରହିଥାନ୍ତି ଶିବବାବୁ । ପାଟିର ଗୋଟିଏ ପାଖରେ ଶୁଖି ରହିଥାଏ ଦୁଇଧାର ରକ୍ତ ।

''ତପସ୍ୱୀଦାଦା, ଏବେ ଆପଣଙ୍କର ଚିନ୍ତାଶକ୍ତି ଓ ବୁଦ୍ଧି ହଜିଯାଇଛି । ତେଣୁ, ମୁଁ ଯାହା କହିବି ଓ କରିବି ତାହା ଆପଣ ମାନି ଯାଉଥିବେ । ପ୍ରତିବାଦ କରିବାଲାଗି ଇଚ୍ଛା ହେଲେ ସୁଦ୍ଧା ନୀରବ ରହିବେ । ଏହି ମୁହୂର୍ତ୍ତରୁ ମୁଁ ହେଉଛି ଆପଣଙ୍କର ଅଭିଭାବକ ।''

ଦୀପ୍ତିମାନବାବୁ ଦୁଇ ରିକ୍ସାଚାଳକଙ୍କୁ ଯଥାର୍ଥ ପ୍ରାପ୍ୟ ଦେବେ କହି ଦୂରଦୂରାନ୍ତ ପଥରେ ଆଗେଇବାକୁ କହିଲେ । ଗଙ୍ଗା କୂଳେ କୂଳେ ସଂକୀର୍ଣ୍ଣ ପଥରେ ରିକ୍ସା ଚାଲିଲା । ଚାରି ଦିଗରେ ନିର୍ଜନତା । ନଦୀରେ ଭାସି ଚାଲିଥାଏ ନୌକା । ଖଣ୍ଡିଏ ନୌକାରୁ ଜଣେ ନାଉରୀର ଗୀତଟିଏ ଭାସି ଆସୁଥାଏ - ''ଫିରେ ଚଲୋ, ଫିରେ ଚଲୋ ସେଇ ଆପନା ଘରେ -''

## ।। ୮ ।।

ନିଭୃତ ନିର୍ଜନ ଏକ ଜଙ୍ଗଲମୟ ସ୍ଥାନରେ ଦେଖିବାକୁ ମିଳିଲା ଯକ୍ଷ୍ମା ସେବାସଦନ । ଦୀପ୍ତିମାନବାବୁ ଭିତରକୁ ଯାଇ ପରିଚାଳକ ମହୋଦୟଙ୍କ ହସ୍ତରେ ଡକ୍ଟର ରାୟଙ୍କ ପ୍ରେରିତ ଚିଠି ଖଣ୍ଡିକ ଅର୍ପଣ କଲେ । ଅନୁନୟ ଜଣାଇଲେ, ''ରୋଗୀଙ୍କୁ ସାଙ୍ଗରେ ନେଇ ଆସିଛି । ଆପଣଙ୍କ ଦୟା ହିଁ ଆମର ଭରସା ।''

''ଡକ୍ଟର ରାୟ ହେଉଛନ୍ତି ଆମ ସେବାସଦନର ପୃଷ୍ଠପୋଷକ । ତାଙ୍କରି ଉଦ୍ୟୋଗ, ପ୍ରେରଣା ଓ ଅର୍ଥଦାନ ବଳରେ ମିଶନ୍ ତରଫରୁ ଏପରି ଏକ ଅନୁଷ୍ଠାନ ସ୍ଥାପିତ ହୋଇପାରିଛି । ତାଙ୍କ ପ୍ରେରିତ ରୋଗୀଙ୍କୁ ଆମେ ସାଦରେ ଗ୍ରହଣ କରିବୁଁ ଏବଂ ତାଙ୍କର ଚିକିତ୍ସା ନିମନ୍ତେ ସମସ୍ତ ପ୍ରକାର ଉଦ୍ୟମ କରାଯିବ । କିନ୍ତୁ ଆମର ଏକ ମାତ୍ର ସର୍ତ୍ତ ହେଲା, ଆପଣମାନେ ଏଠାକୁ ଆଉ ଆସିପାରିବେ ନାହିଁ । ଆପଣ ମୋ କଥାର ଅର୍ଥ ବୁଝି ପାରୁଥିବେ । ରୋଗ ବିଷୟରେ ଡକ୍ଟର ରାୟ ଜଣାଇ ଦେଇଥିବେ,'' କହିଲେ ପରିଚାଳକ ।

ଶିବବାବୁଙ୍କୁ ରିକ୍ସାରୁ ନେଇ ଏକ ନିର୍ଦ୍ଦିଷ୍ଟ କୋଠରିରେ ଶୁଆଇ ଦିଆଗଲା ।

ଡାକ୍ତର ଓ ପରିଚାରିକା ମୁଖା ପିନ୍ଧିଥିବା ଦେଖି ଏବଂ ଅନ୍ୟ କୋଠରିଗୁଡ଼ିକରୁ ରୋଗୀମାନଙ୍କର ଘନ ଘନ କଷ୍ଟକର କାଶିବା ଶବ୍ଦ ଶୁଣି ଶିବବାବୁ ଅନୁମାନ କରିପାରିଲେ ନିଜର ରୋଗ ବିଷୟ । ତପସ୍ୱୀଙ୍କୁ ଆସିବାକୁ ହାତ ଠାରିଲେ । ଦୂରରେ ଛିଡ଼ାହେବାକୁ ଆଦେଶ ଦେଇ କହିଲେ, ''ବାବା, ଆଉ ଦେଖା ହେବ ନାହିଁ, ଏହି ପବିତ୍ର ସ୍ଥାନରେ ରହି ଈଶ୍ୱର ଚିନ୍ତା କରିବି । ମୋର ଗୋଟିଏ ଅନୁରୋଧ ପାଳନ କରିବ । ମମତା ଓ ପିଲାମାନଙ୍କୁ କୌଣସି ପ୍ରକାରେ ମୋତେ ଦେଖିବା ଲାଗି ଏଠାକୁ ଆଣିବ ନାହିଁ । ସେମାନଙ୍କୁ ଜଣାଇଦେବ  ଯେ ମୁଁ ମରିଯାଇଛି ଏବଂ ଗଙ୍ଗାକୂଳରେ ମୋତେ ପୋଡ଼ିଦେଇ ତୁମେ ଘରକୁ ଫେରିଛ । ତୁମ କଥା ସେମାନେ ବିଶ୍ୱାସ କରିବେ ।'' ଆଖି ଦୁଇଟିରୁ ଧାର ଧାର ଲୁହ ଝରି ଯାଉଥାଏ ।

ପରିଚାଳକ ମହୋଦୟ ତପସ୍ୱୀ ଓ ଦୀପ୍ତିମାନବାବୁଙ୍କୁ କାଳ ବିଳମ୍ବ ନ କରି ସେଠାରୁ ବିଦାୟ ନେବାକୁ ଅନୁରୋଧ କଲେ । ଉଭୟେ ନିର୍ବାକ ଭାବରେ ବାହାରିଆସିଲେ । ରିକ୍ସାଚାଳକମାନଙ୍କୁ ବିଦାୟ ଦେଇ ଘରକୁ ଚାଲି ଚାଲି ଫେରିବେ ବୋଲି ଠିକ୍ କଲେ ।

ଦୂର ରାସ୍ତା । ବେଳ ଗଡ଼ି ଯାଉଥାଏ । ନୀରବତା ଭଙ୍ଗ କରି ତପସ୍ୱୀବାବୁ ପଚାରିଲେ, ''ଦାଦା, ଉପଦେଶ ଦିଅନ୍ତୁ, ମୁଁ ବର୍ତ୍ତମାନ କ'ଣ କରିବି ?''

''ପ୍ରଥମେ ଘରକୁ ଚାଲନ୍ତୁ, ପରେ ଭବିଷ୍ୟତ ଚିନ୍ତା ।''

''ଡକ୍ଟର ରାୟ ଯେଉଁ ଉପଦେଶ ଦେଲେ, ତାହା ଶୁଣିଲା ପରେ ଆପଣଙ୍କ ଘରକୁ ଯିବା ମୋର ଉଚିତ ନୁହେଁ । ବିଛଣାପତ୍ର ପୋଡ଼ିଲାବେଳେ ବୌଦୀ ଯେ ନିଶ୍ଚୟ ବିରକ୍ତ ହେବେ, ସେଥିରେ ମୋର ସନ୍ଦେହ ନାହିଁ ।''

''ମୋ ସ୍ତ୍ରୀଙ୍କ ସ୍ୱଭାବ ଆପଣ ଜାଣନ୍ତି ନାହିଁ ବୋଲି ଏପରି କଥା ଶୁଣିବାକୁ ହେଲା । ସାମାନ୍ୟ ବିଛଣା ପୋଡ଼ିଦେଲେ କିମ୍ବା ବାସନ ପୋତିଦେଲେ ସେ ମନକଷ୍ଟ କରିବା ପ୍ରଶ୍ନ ଉଠୁ ନାହିଁ । ତଥାପି, ବାବାଙ୍କୁ ଯକ୍ଷ୍ମା ହୋଇଛି ବୋଲି ତାଙ୍କୁ ଆମେ ନ କହିଲେ ଭଲ ହେବ । ଆଉ, ଡାକ୍ତରଙ୍କ କଥା ଛାଡ଼ । ଘର ଭିତରେ ଗନ୍ଧକ ଓ ଝୁଣା ଜାଳିଦେଲେ, ଯକ୍ଷ୍ମା ବୀଜାଣୁ ମରିଯାନ୍ତି । କେବଳ ବିଛଣା ଚଦର ଖଣ୍ଡିକ ରାତିରେ ପୋଡ଼ିଦେବା । ଆପଣଙ୍କ ବୌଦୀ ବି କିଛି ଜାଣିପାରିବେ ନାହିଁ । ତା'ଙ୍କୁ କହିବା, ବାବାଙ୍କୁ ହସପିଟାଲରେ ଭର୍ତ୍ତି କରାଯାଇଛି ।''

ତପସ୍ୱୀବାବୁ ପ୍ରତିବାଦ୍ ନ କରି ସାଙ୍ଗରେ ଚାଲିଲେ । ଦୂର ବାଟ ଅତିକ୍ରମ କରି ଘରେ ପହଞ୍ଚିଲା ବେଳକୁ ଦୀପ୍ତିମାନବାବୁଙ୍କ ସ୍ତ୍ରୀ ଭାତ ରାନ୍ଧି ଅପେକ୍ଷା କରିଥାନ୍ତି ।

ଭୋଜନ ଶେଷ ହେଲା ପରେ ଦୁଇ ବନ୍ଧୁ ଗୋଟିଏ ଶେଯ ଉପରେ ଶୋଇପଡ଼ିଲେ । ଦୁଶ୍ଚିନ୍ତା ମଧ୍ୟରେ ନିଦ୍ରାହୀନ ତପସ୍ୱୀବାବୁ ଆଖି ବନ୍ଦ କରି ପଡ଼ି ରହିଲେ ।

ସନ୍ଧ୍ୟା ଆସିଗଲା । ସମ୍ମୁଖସ୍ଥ ଆବର୍ଜନାପୂର୍ଣ୍ଣ ପଡ଼ିଆ ଭିତରେ ଖଣ୍ଡିଏ ଭଙ୍ଗା ବେଞ୍ଚ ଉପରେ ଦୁଇ ସଂଗ୍ରାମୀ ଆରମ୍ଭ କଲେ ଆଲୋଚନା ।

''ବୁଝିଲେ ତପସ୍ୱୀଦା, ସଂସାର ବୋଲି ଯାହାକୁ କୁହାଯାଏ ତାହାର ଭିତ୍ତିଭୂମି ହେଉଛି ସ୍ୱାର୍ଥ । ଦେଖନ୍ତୁ, ମୋର ଅବସ୍ଥା । ଗାନ୍ଧି ଆନ୍ଦୋଳନରେ ଯୋଗ ଦେଲି ବୋଲି ମୋ ଭାଇମାନେ ମୋତେ ଘରୁ ବାହାର କରିଦେଲେ । କାରଣ, ସେମାନେ ଉଚ୍ଚ ପଦସ୍ଥ ସରକାରୀ କର୍ମଚାରୀ । ସରକାରଙ୍କ କୋପ ଦୃଷ୍ଟି ପଡ଼ିବ ବୋଲି ଅନୁମାନ କରି ଜଣେ ସାନଭାଇକୁ ଘରୁ ବିଦାୟ କରିଦେଇପାରିଲେ । ଆପଣ ବାଲ୍ୟବିବାହ କରିଥିଲେ । ମୁଁ କିନ୍ତୁ ବିଳମ୍ବରେ ବିବାହ କଲି । ଛୋଟ ଘରଟିଏ ଭଡ଼ା ନେଇ ଏହିପରି ଅପରିଷ୍କାର ଗଳିରେ ରହିଛି । ଭାଇମାନେ ଅଛନ୍ତି ପୈତୃକ କୋଠାଘରେ । ଭାଗ୍ୟବଶତଃ, ମୋ ସ୍ତ୍ରୀ ମାଷ୍ଟରାଣୀ ଚାକିରି କରିଛନ୍ତି । ତାଙ୍କରି ଆୟରେ କୌଣସି ପ୍ରକାରେ ଚଳିଯାଉଛି,'' ବର୍ଣ୍ଣନା କଲେ ଦୀପ୍ତିମାନବାବୁ ।

''ଦୀପ୍ତିଦା, ମୋର ସ୍ତ୍ରୀ ତାଙ୍କ ବାବାଙ୍କ ଘରେ ରହିଆସିଛନ୍ତି । ମୁଁ ମଧ୍ୟ ତାହାଙ୍କ ଆଶ୍ରିତ । ଚାରିଟି ପିଲା,'' ଦୀର୍ଘଶ୍ୱାସ ତ୍ୟାଗ କଲେ ତପସ୍ୱୀବାବୁ ।

''ଆମେ ସ୍ୱାମୀ ସ୍ତ୍ରୀ ବିବାହ ପୂର୍ବରୁ ଏକମତ ହେଲୁଁ ଯେ ସନ୍ତାନସନ୍ତତି ଜନ୍ମ କରିବା ନାହିଁ । ସୁତରାଂ, ପିଲାପିଲି ଲାଳନପାଳନ ସମସ୍ୟା ଆମର ନାହିଁ । ଇତିମଧ୍ୟରେ ମୁଁ ଆମ ନେତାମାନଙ୍କ ନିକଟରୁ ଗୋପନ ନିର୍ଦ୍ଦେଶ ପାଇସାରିଲିଣି, କଲିକତାର ଘରକୁ ଘର ଓ ବସ୍ତି ପରେ ବସ୍ତି ବୁଲି ବୁଲି ହିନ୍ଦୁ-ମୁସଲିମ୍ ଏକତା ପାଇଁ ପ୍ରଚାର କରିବି । ଆପଣ ଜାଣିଛନ୍ତି, ଏହି ମହାନଗରୀରେ ଲକ୍ଷ ଲକ୍ଷ ହିନ୍ଦୁ ଓ ମୁସଲମାନ ଏକା ସାଙ୍ଗରେ ବଂଶାନୁକ୍ରମେ ଗଳି ପ୍ରଗଳିରେ ରହି ଆସିଛନ୍ତି ଓ ରହିବେ । କିନ୍ତୁ ଇଂରେଜମାନେ ସଦାବେଳେ ସାମ୍ପ୍ରଦାୟିକ ଗଣ୍ଡଗୋଳ ସୃଷ୍ଟି କରିବାକୁ ଉଦ୍ୟମ ଚଳାଇଛନ୍ତି । ମଧ୍ୟେ ମଧ୍ୟେ ଦଙ୍ଗାହାଙ୍ଗାମା ଲାଗିଯାଉଛି, ଅଯଥା ରକ୍ତପାତ ସହିତ ସନ୍ଦେହର ବାତାବରଣ ବଢ଼ିଚାଲିଛି । ଶାନ୍ତିରକ୍ଷା ଓ ସଦ୍‌ଭାବ ସ୍ଥାପନ ଲାଗି ଆମକୁ ଅକ୍ଳାନ୍ତ ପରିଶ୍ରମ କରିବାକୁ ପଡ଼ିବ । ଆପଣ ମୋ ଘରେ ରହି ମୋତେ ସାହାଯ୍ୟ କରନ୍ତୁ ! ଆପଣଙ୍କ ପ୍ରଦେଶର ହଜାର ହଜାର ଲୋକ ଏହି ସହରରେ ଅଛନ୍ତି । ସେମାନଙ୍କୁ ଆପଣ ଭବିଷ୍ୟ ଆନ୍ଦୋଳନପାଇଁ ପ୍ରଭାବିତ କରିପାରିବେ । ସେଥିସଙ୍ଗେ ମୋ କାର୍ଯ୍ୟରେ ମୋତେ ସାହାଯ୍ୟ କରିବେ ।''

ତପସ୍ୱୀବାବୁ ଉତ୍ତର ଦେଲେ, ''ଯାହା କହିଲେ, ସବୁ ଶୁଣିଲି । ମୋ ଆଗରେ ବର୍ତ୍ତମାନ ଯେଉଁ ବିପଦ, ସେଥିରୁ କିପରି ରକ୍ଷା ପାଇବି ସେହି ପରାମର୍ଶ ଭିକ୍ଷା କରୁଛି । ମୋ ସ୍ତ୍ରୀ ମମତା ଆଗରେ ମିଥ୍ୟା କହିପାରିବି ନାହିଁ । ତାଙ୍କ ବାବାଙ୍କ ଆଦେଶ ପାଳନ କରି ଏକଥା କହିବା ଅସମ୍ଭବ ଯେ ସେ ପରଲୋକ ଗମନ କରିଛନ୍ତି । ରାଜଯକ୍ଷ୍ମାରେ ସେ ଆକ୍ରାନ୍ତ ବୋଲି ମୋତେ କହିବାକୁ ପଡ଼ିବ । ଶୁଣିଲାକ୍ଷଣି ସେ ସଙ୍ଗେ ସଙ୍ଗେ ବାବାଙ୍କ ନିକଟକୁ ଆସିବାଲାଗି ବାହାରି ପଡ଼ିବେ । ପିଲାମାନେ ମଧ୍ୟ ଅଜାଙ୍କୁ ଦେଖିବେ ବୋଲି ଅଡ଼ି ଧରି ବସିବେ । କ'ଣ କରିବି, ମୋତେ ବୁଦ୍ଧି ଦିଅନ୍ତୁ ।''

''ଯେକୌଣସି ସମୟରେ ପୁନର୍ବାର ମୁକ୍ତି-ଆନ୍ଦୋଳନ ଆରମ୍ଭ ହୋଇଯାଇପାରେ । ସେ ଦୃଷ୍ଟିରୁ ଆପଣଙ୍କ ଆଗରେ ଦୁଇଟି ପନ୍ଥା । ଏକେ, ଘରଦ୍ୱାର ଭୁଲିବେ, ନଚେତ୍ ଆନ୍ଦୋଳନ ଛାଡ଼ିବେ ।''

''ଘରସଂସାର ଭାସିଗଲେ ମଧ୍ୟ ଆନ୍ଦୋଳନରୁ ପଛଘୁଞ୍ଚା ଦେଇପାରିବି ନାହିଁ । କେବଳ ଏହି ପିଲାଗୁଡ଼ାଙ୍କ ପାଇଁ ଚିନ୍ତା । ସେମାନଙ୍କୁ ଥଇଥାନ କରିଦେଇ ପାରିଲେ, ମମତା ମଧ୍ୟ ମୋ ସହିତ ସତ୍ୟାଗ୍ରହ ଲାଗି ବାହାରି ପଡ଼ିବ,'' କହିଲେ ତପସ୍ୱୀ ।

ଦୀପ୍ତିମାନବାବୁ କିଛି ସମୟ ଆଖିବୁଜି ଚିନ୍ତାକଲେ । ତାହାପରେ ଧୀର ଗମ୍ଭୀର ସ୍ୱରରେ ବୁଝାଇଲେ,

''ଏଠାକାର କେତେଜଣ କଂଗ୍ରେସ ନେତା ସ୍ୱଦେଶୀ ଆନ୍ଦୋଳନ ସମୟରୁ ଗୋଟିଏ ଦୁଇଟି ଜାତୀୟ ବିଦ୍ୟାଳୟ ସ୍ଥାପନ କରିଛନ୍ତି । ପ୍ରାଥମିକ ସ୍ତରରୁ ହାଇସ୍କୁଲ ସ୍ତର ପର୍ଯ୍ୟନ୍ତ ଶିକ୍ଷାଦାନ କରାଯାଏ । ପିଲାମାନଙ୍କ ରହିବା ଲାଗି ବୋର୍ଡ଼ିଂ ଘର ଅଛି । ମୋର ଉପଦେଶ, ପିଲାମାନଙ୍କୁ ଆଣି ସେହି ସ୍କୁଲରେ ଭର୍ତ୍ତି କରି ଦିଅନ୍ତୁ । ଯଦି ରାଜି ହେବେ, ମମତାଦିଦୀଙ୍କ ପାଇଁ ମଧ୍ୟ ଛୋଟ ଧରଣର କାମଟିଏ ଯୋଗାଡ଼ କରିଦେଇ ପାରିବି, ଯଥା ବାଳିକା ବୋର୍ଡ଼ିଂର ତତ୍ତ୍ୱାବଧାରିକା । ଶିବବାବୁଙ୍କ ଦିନକାଳ ସରିଗଲା, ଜୀବନର ପରିଣତି ହେଉଛି ମରଣ । ଯାହା ସୁନିଶ୍ଚିତ ତାହାକୁ ସ୍ୱାଗତ କରିବା ଉଚିତ । ଆପଣଙ୍କ କର୍ତ୍ତବ୍ୟ ଆପଣ କରିଛନ୍ତି । ଯଥାସ୍ଥାନରେ ଚିକିତ୍ସାପାଇଁ ବନ୍ଦୋବସ୍ତ କରିଦେଇଛନ୍ତି, ଯକ୍ଷ୍ମା ସଦନରେ ବର୍ତ୍ତମାନ ଶିବବାବୁ ସୁମଧୁର ରବୀନ୍ଦ୍ର ସଙ୍ଗୀତ ଶୁଣୁଥିବେ - 'ମରନରେ ତୁ ହୁଁ ମମ ଶ୍ୟାମ ସମାନ' -''

ଏକ ଚରମ ହତାଶାମୟ ମୁହୂର୍ତ୍ତରେ ତପସ୍ୱୀବାବୁଙ୍କ ଦୃଷ୍ଟି ପଥରେ ଖେଳିଗଲା ନୂତନ ଆଶାର ଉଜ୍ଜ୍ୱଳ ଦିଗ୍‌ବଳୟ । ପିଲାମାନେ କଲିକତାର ଜାତୀୟ ବିଦ୍ୟାଳୟରେ ଅଧ୍ୟୟନ କରିବେ, ମମତା ସ୍ୱାବଲମ୍ବୀ ହୋଇପାରିବ ଏବଂ ସେ ନିଜେ ମନପ୍ରାଣ

ଦେଇ ଆଗାମୀ ଦିନର ସଂଗ୍ରାମ ନିମନ୍ତେ ପ୍ରସ୍ତୁତ ହେବେ । ବାବାଙ୍କ ମୁଖଟି ଦିଶିଯାଉଥାଏ । ଯିଏ ମଣିଷ କରାଇଥିଲେ, କନ୍ୟା ସମର୍ପଣ କରିଥିଲେ, ପିଲାମାନଙ୍କୁ ଲାଳନ ପାଳନ କରିଥିଲେ, ତାଙ୍କର ଅବଶ୍ୟମ୍ଭାବୀ ମୃତ୍ୟୁ ନିକଟବର୍ତ୍ତୀ । ବିଧିର ବିଧାନ ମାନିନେବା ବ୍ୟତୀତ ଅନ୍ୟ ଉପାୟ ନାହିଁ ।

ଗୋଟିଏ ଦିଗରୁ ଏକ ଆଶାପ୍ରଦ ଭବିଷ୍ୟତର ଆହ୍ୱାନ, ବିପରୀତ ଦିଗରୁ ଏକମାତ୍ର ପରମହିତୈଷୀ ବ୍ୟକ୍ତିଙ୍କର ଅନ୍ତିମ ମୁହୂର୍ତ୍ତ, ଉଭୟ ପରିସ୍ଥିତିର ଘାତପ୍ରତିଘାତ ମଧ୍ୟରେ ତପସ୍ୱୀବାବୁ ବ୍ୟତିବ୍ୟସ୍ତ ହୋଇ ହଠାତ୍ ଉଠିପଡ଼ି ବନ୍ଧୁଙ୍କୁ ଅନୁରୋଧ କଲେ, ‘‘ମୋତେ ବର୍ତ୍ତମାନ ବିଦାୟ ଦିଅନ୍ତୁ । ରାତି ୧୨ଟା ଗାଡ଼ିରେ କଲିକତା ଛାଡ଼ିବି । ମମତା ସହିତ ପରାମର୍ଶ ପରେ ଆପଣଙ୍କ ମତାମତ ଉପରେ ସିଦ୍ଧାନ୍ତ ନେବି । ବାବା ଶୋଇଥିବା ଚଦର ଖଣ୍ଡିକ ପୋଡ଼ିଦେବାକୁ ଭୁଲିବେ ନାହିଁ । ଗନ୍ଧକ ଓ ଝୁଣା ଆମେ ଏକା ସାଙ୍ଗରେ ଜାଳିଥାଆନ୍ତେ । କିନ୍ତୁ ଷ୍ଟେସନ ଧରିବାକୁ ଅନେକ ସମୟ ଲାଗିବ ।’’

ଦୀପ୍ତିମାନବାବୁ ଅନୁମାନ କରିପାରିଲେ ଯେ ତପସ୍ୱୀ ବାସ୍ତବିକ ଏକ ଦାରୁଣ ସଙ୍କଟରେ ମ୍ରିୟମାଣ ହୋଇ ପଡ଼ିଛନ୍ତି । ସେ ନିରୁତ୍ତର ଛିଡ଼ା ହୋଇ ରହିଲେ । ତପସ୍ୱୀବାବୁ ପଛକୁ ଚାହିଁଲେ ନାହିଁ । ଷ୍ଟେସନରେ ପହଞ୍ଚିବା ଲାଗି ଦ୍ରୁତ ଗତିରେ ଅନ୍ଧକାର ଭେଦ କରି ଆଗେଇ ଚାଲିଗଲେ ।

ତହିଁ ପରଦିନ ନିଜ ଜିଲ୍ଲାର ଷ୍ଟେସନରୁ ସାରାରାତି ଚାଲି ଚାଲି ପ୍ରଭାତ କାଳରେ ଗାଁ ମୁଣ୍ଡରେ ପହଞ୍ଚିଲାବେଳକୁ ଗୋଟିଏ ଗଛ ମୂଳରେ ବସିଥାଏ ପୁଅ ତେଜସ୍ୱୀ । ବାପାଙ୍କ ନିକଟକୁ ଦୌଡ଼ିଯାଇ ପାଟି କରି ଉଠିଲା, ‘‘ବାବା ଏକାକୀ କାହିଁକି ଫେରୁଛ ? ମୋ ଅଜାଙ୍କୁ କେଉଁଠାରେ ଛାଡ଼ିଦେଇ ଆସିଲ ?’’

‘‘ତେଜ, ତୋ ଅଜାଙ୍କୁ ଏକାକୀ ଛାଡ଼ିଦେଇ ଆସି ନାହିଁ । ଅତିଶୟ ସୁନ୍ଦର ସ୍ଥାନରେ ଚିକିତ୍ସା ଲାଗି ରଖିଦେଇ ଆସିଛି । ଅତି ଶୀଘ୍ର ସମ୍ପୂର୍ଣ୍ଣ ସୁସ୍ଥ ହେଲା ପରେ ତାଙ୍କୁ ଘରକୁ ନେଇଆସିବି । ତୁ କାହିଁକି ତାଙ୍କ ପାଇଁ ଚିନ୍ତା କରୁଛୁ ? ପରୀକ୍ଷା ଆଉ ଅଳ୍ପଦିନ ବାକି ରହିଲା !’’

‘‘ଅଜା ବାହାରିଯିବା ଦିନରୁ ମା’ କିଛି ଖାଇ ନାହାନ୍ତି । ସବୁବେଳେ କାନ୍ଦୁଛନ୍ତି । ଅଜାଙ୍କ ପାଖକୁ ଯିବେ ବୋଲି ବାହାରିଛନ୍ତି । ଶ୍ରୀହରି ମଉସା, ଶ୍ୟାମ କକା ଯେତେ ବୁଝାଇଲେ ସୁଦ୍ଧା ସେ କିଛି ବୁଝୁ ନାହାନ୍ତି ।’’

ବାପ ପୁଅ ଅବିଳମ୍ବେ ଘରେ ପହଞ୍ଚିଲେ । ତପସ୍ୱୀବାବୁ ମମତାଙ୍କ ଶଯ୍ୟା ପାଖରେ ଛିଡ଼ା ହୋଇ କହିଲେ, ‘‘ପ୍ରଥମେ ବିଛଣାରୁ ଉଠି ଖାଦ୍ୟ ଗ୍ରହଣ କଲା ପରେ ଶୁଭ

ସମ୍ବାଦ ଦେବି । ଭାରତବିଖ୍ୟାତ ଚିକିତ୍ସକ ଡକ୍ଟର ରାୟ ନିଜେ ବାବାଙ୍କ ଚିକିତ୍ସା ଦାୟିତ୍ୱ ନେଇଛନ୍ତି । ତାଙ୍କରି ତତ୍ତ୍ୱାବଧାନରେ ରୋଗୀଙ୍କୁ ଛାଡ଼ି ଦେଇ ଘରେ ସମ୍ବାଦ ଦେବାକୁ ଦୌଡ଼ିଆସିଲି । ବାବାଙ୍କ ଆଦେଶ ମାନି ଆସିଛି । ତୁମମାନଙ୍କୁ ଚିନ୍ତା କରିବା ଲାଗି ବାରଣ କରିଛନ୍ତି, ସେଠାକୁ ଯିବାଲାଗି ମଧ୍ୟ ମନା କରିଛନ୍ତି ।''

ସ୍ୱାମୀଙ୍କ ହସ ହସ ମୁଖ ଦେଖି ସେ ଯାହା କହୁଛନ୍ତି ସେଥିରେ ମମତା ବିଶ୍ୱାସ କଲେ । ତେଜ ଏକ ଗ୍ଲାସ ସରବତ ଧରି ମିନତି ଜଣାଇଲା, ''ମା', ଏତକ ପିଇ ଦିଅ । ଅଜା ଭଲ ଅଛନ୍ତି ଓ ଭଲ ହୋଇ ଫେରିବେ ।''

ତପସ୍ୱୀବାବୁ ମମତାର ହାତଧରି ଉଠାଇଲେ । ସରବତ୍ ପାନକରି ସେ ବିଛଣା ଉପରେ ବସିରହିଲେ । ପୁଅକୁ ଆଦେଶ ଦେଲେ, ''ତୋ ବାବାଙ୍କୁ ଜଳଖିଆ ଖାଇବାକୁ ଦେଇ ଦେ । ଦେଖିପାରୁଛୁ ତାଙ୍କର ଅବସ୍ଥା କିପରି ହୋଇଛି !''

''ନା, ମୋର କିଛି ହୋଇ ନାହିଁ । ସାରା ରାତି ଚାଲି ଚାଲି ଆସିଛି ବୋଲି ଅବସନ୍ନ ଦେଖାଯାଉଥିବି,'' ହସି ହସି କହିଲେ ତପସ୍ୱୀ ।

''ବାବାଙ୍କର କ'ଣ ହୋଇଛି କୁହ ? କିଛି ଖରାପ ରୋଗ ନୁହେଁ ତ ?'' ପଚାରିଲେ ମମତା ।

''କୌଣସି ପ୍ରକାର ଖରାପ ରୋଗ ହୋଇଥିଲେ ମୁଁ କ'ଣ ତାଙ୍କୁ ଛାଡ଼ିଦେଇ ଘରକୁ ଆସିପାରିଥାଆନ୍ତି ? ଡାକ୍ତରବାବୁ ନିଜେ ପରା ଆସିବାକୁ ବାଧ୍ୟ କଲେ । ବନ୍ଧୁ ଦୀପ୍ତିମାନ ସରକାରଙ୍କ ନିକଟରୁ ସେ ତମ କଥା ଓ ପିଲାମାନଙ୍କ କଥା ଶୁଣିଛନ୍ତି । ଡାକ୍ତରବାବୁ କଂଗ୍ରେସର ଜଣେ ଅତି ବଡ଼ ନେତା । ସ୍ୱୟଂ ମହାତ୍ମାଗାନ୍ଧିଙ୍କର ସ୍ୱାସ୍ଥ୍ୟ ପରୀକ୍ଷା କେବଳ ସେହି ଡାକ୍ତର କରିଥାନ୍ତି । ମୋ ପରି ସାଧାରଣ କର୍ମୀମାନଙ୍କ ପ୍ରତି ତାଙ୍କର ଯଥେଷ୍ଟ ଶ୍ରଦ୍ଧା ରହିଛି । ଆମମାନଙ୍କ ପରିବାର ପ୍ରତି ମଧ୍ୟ ତାଙ୍କର ସମ୍ବେଦନା ଓ ଦୟା ରହିଛି ।''

ତପସ୍ୱୀବାବୁ ପୋଖରୀରେ ଗାଧୋଇବାକୁ ଚାଲିଗଲେ । ତେଜସ୍ୱୀ ମା'ଙ୍କୁ ପାଖରେ ବସାଇ ଜଳଖିଆ ଖୁଆଇଲା ।

ପୋଖରୀ ପାଣିରେ ଛିଡ଼ା ହୋଇ ଏବଂ ଉଦିତ ସୂର୍ଯ୍ୟ ଦେବତାଙ୍କ ଦିଗକୁ ଚାହିଁରହି ତପସ୍ୱୀବାବୁ କଠୋର ନିଷ୍ପତ୍ତି ନେଲେ, ବାବାଙ୍କ ରାଜଯକ୍ଷ୍ମା ବିଷୟ କିଛିଦିନ ଲାଗି ଗୋପନ ରଖିବାକୁ ହେବ । ଯଥାସମୟରେ ସତ୍ୟ ପ୍ରକାଶ ପୂର୍ବକ ଯାହା ଈଶ୍ୱରଙ୍କର ଇଚ୍ଛା ତାହାହିଁ କରାଯିବ ।

## ॥ ୯ ॥

ନିର୍ଜନ ସନ୍ଧ୍ୟାରେ ତୁଳସୀ ଚୌରା ଆଗରେ ଦୀପ ପ୍ରଜ୍ୱଳନ ପୂର୍ବକ ଶଙ୍ଖଧ୍ୱନି ଦେବାପରେ ମମତା ଦେଖିଲେ ଅପରାଧୀ ମନୋଭାବ ସହ ପଶ୍ଚାତରେ ଛିଡ଼ା ରହିଛନ୍ତି ତାଙ୍କ ସ୍ୱାମୀ । ''ମମତା, ମୋତେ ପ୍ରଥମେ କ୍ଷମାଦେବ ବୋଲି ପ୍ରତିଶ୍ରୁତି ଦିଅ । ଆଉ ଅଧିକ ଦିନ ତୁମ ନିକଟରେ ଦୁର୍ଭାଗ୍ୟପୂର୍ଣ୍ଣ ଘଟଣାଟି ଗୋପନ ରଖିପାରିବି ନାହିଁ । ପ୍ରତ୍ୟେକ ମୁହୂର୍ତ୍ତରେ ଅନ୍ତର୍ଦାହ ଅନୁଭବ କରୁଛି ।''

ତଟସ୍ଥ ହୋଇ ମମତା ଅଟକି ଗଲେ । ''ମୁଁ ଅନୁମାନ କରିପାରୁଛି ତୁମେ କେଉଁ ବିଷୟଟି ଗୋପନ ରଖିଛ । କଲିକତାରୁ ଫେରିଲା ସମୟରୁ ତୁମେ ସଦାବେଳେ ଚିନ୍ତାଗ୍ରସ୍ତ ଓ ବିମର୍ଷ ରହିବା ଦେଖିପାରୁଛି । ପ୍ରତିଦିନ ଦୂରବର୍ତ୍ତୀ ପୋଷ୍ଟ ଅଫିସକୁ କାହିଁକି ଯାଉଛ, ସେ କଥା ମୋତେ କୁହ ନାହିଁ ଦେଖି ସନ୍ଦେହ ମଧ୍ୟରେ ମୋ ମନ ଆତଙ୍କିତ ରହଛି । ଗାଁ ଲୋକ ଆସୁଛନ୍ତି, ବାବାଙ୍କ ରୋଗ କଥା ଜାଣିବାକୁ । ଶ୍ରୀହରିବାବୁ ଏବଂ ଶ୍ୟାମବାବୁ ପ୍ରାୟ ପ୍ରତିଦିନ ଆସନ୍ତି । ସେମାନଙ୍କ ସହିତ କଥାବାର୍ତ୍ତା କଲାବେଳେ ତୁମର ହସ ହସ ମୁହଁରେ ମୁଁ କୃତ୍ରିମତା ଦେଖିପାରୁଛି । ଏବେ ଯାହା କହିବ ତାହା ଯେ ଦୁଃସମ୍ବାଦ ଏଥିରେ ମୋର ସନ୍ଦେହ ନାହିଁ । କ୍ଷମାଦେବା ବା ନ ଦେବା ଅଧିକାର ମୋର ନାହିଁ ।''

''ହଁ, ଦାରୁଣ ଦୁଃସମ୍ବାଦ । ବାବାଙ୍କୁ ରାଜଯକ୍ଷ୍ମା ଆକ୍ରମଣ କରିଛି । ଯକ୍ଷ୍ମାନିବାସରେ ରଖିଦେଇ ଆସିଛି । ନିୟମ ଅନୁସାରେ ତାଙ୍କ ନିକଟକୁ କୌଣସି ଆତ୍ମୀୟସ୍ୱଜନ ଯାଇପାରିବେ ନାହିଁ । ତଥାପି ମୁଁ ଆଗାମୀ କାଲି କଲିକତା ଯାଇ ଦେଖି ଆସିବି । ଦୀପ୍ତିମାନ ପାଖରୁ ଚିଠି ପାଇବା ଆଶାରେ ପୋଷ୍ଟ ଅଫିସ୍ ଯାଉଛି । କିନ୍ତୁ, ଦୁଇ ସପ୍ତାହ ବିତିଗଲେ ସୁଦ୍ଧା ସେଠାରୁ ଚିଠି ଆସୁ ନାହିଁ । ଅବଶ୍ୟ, ଆମ ଗାଁ ପରି ମଫସଲ ଅଞ୍ଚଳର ପୋଷ୍ଟ ଅଫିସକୁ ବାହାରୁ ଚିଠି ଆସିବାକୁ ଅନେକ ବିଳମ୍ବ ହୁଏ ।''

''ଯକ୍ଷ୍ମା ! ବାବାଙ୍କୁ ପୁଣି ଏକାକୀ ରଖି ଦେଇ ଆସିଛ ? ପ୍ରଥମରୁ ଜଣାଇଥିଲେ ମୁଁ ତାଙ୍କ ପାଖରେ ରହି ସେବା କରିଥାନ୍ତି,'' ମମତା କାନ୍ଦି କାନ୍ଦି ଘର ଭିତରକୁ ଚାଲିଗଲେ । ପଛେ ପଛେ ଯାଇ ତପସ୍ୱୀବାବୁ ସାନ୍ତ୍ୱନା ଦେବାକୁ ଚେଷ୍ଟା କଲେ ।

''ମୋ କଥା ଧୈର୍ଯ୍ୟ ଧରି ଶୁଣ । ରାମକୃଷ୍ଣ ମିଶନ୍ ଦ୍ୱାରା ପରିଚାଳିତ ସେବାସଦନରେ ଡାକ୍ତର ଓ ନର୍ସମାନେ ବାବାଙ୍କର ସମସ୍ତ ପ୍ରକାର ଯତ୍ନ ନେଉଛନ୍ତି ।

ଡକ୍ଟର ରାୟଙ୍କ ପ୍ରତିଷ୍ଠିତ ଚିକିତ୍ସାଳୟ । କିନ୍ତୁ ସେଠାକାର ଆଇନ ଅତି କଠୋର । କେହି ଦେଖିବାକୁ ଯାଇପାରିବେ ନାହିଁ । କାରଣ, ରାଜଯକ୍ଷ୍ମା ହେଉଛି ଅତ୍ୟନ୍ତ ଗୁରୁତର ସଂକ୍ରାମକ ବ୍ୟାଧି ।''

''ସଂକ୍ରାମକ ! ସେଥିପାଇଁ ଝିଅ ହୋଇ ମଧ୍ୟ ମୁଁ ବାବାଙ୍କ ସେବା କରିପାରିବି ନାହିଁ ? କେଉଁ ଡାକ୍ତର ସେପରି କଥା କହିପାରିବେ ? ଯଦି ନର୍ସମାନେ ରୋଗୀଙ୍କ ପାଖକୁ ଯାଉଛନ୍ତି, ଝିଅ କାହିଁକି ନ ଯିବ ? ତୁମର ଆଉ କିଛି କହିବା ଦରକାର ନାହିଁ । ମୁଁ ଆଗାମୀ କାଲି ସେଠାକୁ ଯିବି । ମୋତେ ସେଠାକାର ଠିକଣା ଦିଅ,'' ମମତା ବିକଳ ଭାବରେ କାନ୍ଦିବାକୁ ଲାଗିଲେ ।

ସେତିକିବେଳେ ଘର ଭିତରକୁ ପଶିଆସିଲା ପୁଅ ତେଜସ୍ୱୀ । ''ବାବା, ବାବା, ମା', ମୋର ପରୀକ୍ଷା ଶେଷ ହେଲା । ଅଙ୍କରେ ଶହେରୁ ଶହେ ନମ୍ବର ରହିବ ବୋଲି ହେଡ୍‌ମାଷ୍ଟର କହୁଛନ୍ତି,'' ହସି ହସି ଏକଥା କହିଲାବେଳେ ମା'ଙ୍କର କାନ୍ଦିବା ଦେଖି ହଠାତ୍ ଥମକି ଯାଇ ପଚାରିଲା, ''ମା', କାନ୍ଦୁଛ କାହିଁକି ?''

''ତୋ ଅଜା ପାଇଁ କାନ୍ଦୁଛି ରେ । ତାଙ୍କୁ ଯକ୍ଷ୍ମା ହୋଇଛି । ତୋ ବାବା ଡାକ୍ତରମାନଙ୍କ କଥା ମାନି ତାଙ୍କୁ ଏକାକୀ ଛାଡ଼ି ଆସିଛନ୍ତି । ଆମ ଆଗରେ ଏତେପର୍ଯ୍ୟନ୍ତ ସେହି କଥା କହି ନାହାନ୍ତି ।''

''ଏବେ ତ ବାବା କହିସାରିଲେଣି । ଜାଣିଲା ପରେ ଆମେ ବର୍ତ୍ତମାନ ଡାକ୍ତରଖାନାକୁ ଯିବା । ଅଜାଙ୍କ ସେବା କରିବା । ଭଲ ହେଲା ପରେ ଘରକୁ ନେଇଆସିବା । ଏଥିରେ କାନ୍ଦିବାର କ'ଣ ଅଛି ।''

ତେଜ ଦୌଡ଼ି ଚାଲିଗଲା ଶ୍ୟାମବାବୁଙ୍କୁ ଡାକି ଆଣିବାକୁ । ତପସ୍ୱୀବାବୁ ତାଙ୍କ ଆଗରେ ସମସ୍ତ ବିଷୟ ବର୍ଣ୍ଣନା କଲେ ଏବଂ ପରାମର୍ଶ ଲୋଡ଼ିଲେ । ସେତେବେଳକୁ ମମତାଙ୍କ କୋହ ଅସମ୍ଭାଳ ହୋଇ ଉଠିଥାଏ । ତେଜ ମା'ଙ୍କ ଆଖିରୁ ଲୁହ ପୋଛୁଥାଏ ।

ଶ୍ୟାମବାବୁ ମମତାକୁ ସାନ୍ତ୍ୱନା ଦେବାଲାଗି ଭାଷା ପାଇଲେ ନାହିଁ । ଜାଣିପାରିଲେ, କାହାରିର କଥା ନ ମାନି ସେ ଏକାକୀ କଲିକତା ପଳାଇ ଯିବ । ତେଣୁ ପରାମର୍ଶ ଦେଲେ,

''ଚିକିତ୍ସକମାନେ ଯାହା କହିଲେ ସୁଦ୍ଧା ଏବଂ ଡାକ୍ତରଖାନାର ଆଇନକାନୁନ୍ ଯେତେଦୂର କଠୋର ହେଲେ ମଧ୍ୟ, ଅନ୍ତିମ ଶଯ୍ୟାରେ ଶୋଇଥିବା ଯେକୌଣସି ବ୍ୟକ୍ତିଙ୍କୁ ଦେଖିବାଲାଗି ନିଜ ପୁଅଝିଅର ଅଧିକାର ରହିଛି । ଶିବବାବୁଙ୍କ ଏକମାତ୍ର

ସନ୍ତାନ ହେଉଛି ମମତା । ଝିଅକୁ ଦେଖିବା ଲାଗି ତାଙ୍କ ପ୍ରାଣ ମଧ୍ୟ ବ୍ୟାକୁଳ ହେଉଥିବ । ମୋ ମତରେ, ତା'କୁ ସେଠାକୁ କାଳ ବିଳମ୍ବ ନ କରି ଶୀଘ୍ର ପଠାଇଦେବା ଉଚିତ ।''

ତେଜସ୍ୱୀ ମା'ଙ୍କୁ କୁଣ୍ଢାଇଧରି ଦମ୍ଭ ସହକାରେ କହିଲା, ''ମୋ ମା'ଙ୍କୁ ମୁଁ କଲିକତା ନେଇଯାଇପାରିବି । ବାବା ଏଠାରେ ରହି ସ୍ୱରାଜ, ସ୍ୱାଧୀନ ଓ କରୁଣାର ଦେଖାଶୁଣା କରନ୍ତୁ । ସେ ଡାକ୍ତରମାନଙ୍କ ଆଦେଶ ବା ଅନୁରୋଧ ଭାଙ୍ଗିପାରିବେ ନାହିଁ । ମୁଁ କିନ୍ତୁ କିଛି ମାନିବି ନାହିଁ । ମା'ଙ୍କୁ ନେଇ ସିଧା ଅଜାଙ୍କ ଆଗରେ ଛିଡ଼ା କରାଇ ଦେବି । ଆମକୁ ଦେଖିଲେ ସେ ଆନନ୍ଦରେ ଅଧୀର ହୋଇ ଉଠିବେ । ସେତିକିରେ ତାଙ୍କର ଅଧେ ରୋଗ ଭଲ ହୋଇଯିବ ।''

ଅଧିକ ଆଲୋଚନାର ଅବକାଶ ନ ଥାଏ । ତପସ୍ୱୀବାବୁ ପାଟି ଫିଟାଇବାକୁ ସାହସ କଲେ ନାହିଁ । ଭାବିଲେ, ମମତାକୁ ଦେଖିଲା ପରେ ବାବା ନିଜେ ଝିଅ ଓ ନାତିକୁ ବୁଝାଇ ଶୁଝାଇ ଘରକୁ ପଠାଇ ଦେଇପାରିବେ । ''ମମତା, ତୁମେ ଯାହା ଭଲ ଭାବୁଛ, ତାହାହିଁ କର, ମୋତେ କହିଲେ, ମୁଁ ନେଇଯିବି । ତେଜ ଯଦି ନେଇଯିବ ବୋଲି ସାହସ କରୁଛି, ତା ସାଙ୍ଗରେ ଯାଇପାର । କଲିକତା ଷ୍ଟେସନରୁ ବାହାରି ପ୍ରଥମେ ଦୀପ୍ତିମାନ ସରକାରଙ୍କ ଘରକୁ ଯିବ । ତାଙ୍କ ଠିକଣା ଲେଖିଦେଉଛି । ସେ ତୁମମାନଙ୍କୁ ଯଥାସ୍ଥାନରେ ପହଞ୍ଚାଇ ଦେବେ ।''

ରାତି ପାହିବା ଅନେକ ଆଗରୁ ମା' ଓ ପୁଅ ଘରୁ ବାହାରି ଚାଲିଲେ ଅନେକ ଦୂରବର୍ତ୍ତୀ ରେଳଷ୍ଟେସନ ଅଭିମୁଖେ । ଯେତେ ବୁଝାଇଲେ ସୁଦ୍ଧା ବଳଦଗାଡ଼ିରେ ନ ଯାଇ ଚାଲି ଚାଲି ଯିବାଲାଗି ଉଭୟେ ଜିଦ୍ ଧରିଲେ ।

ରାତିରେ ଧରିଲେ କଲିକତା ଗାଡ଼ି । ତହିଁ ପରଦିନ ହାବଡା ଷ୍ଟେସନରେ ପହଞ୍ଚିଲା ବେଳକୁ ସମୟ ଅପରାହ୍ଣ । ଦୀପ୍ତିମାନବାବୁଙ୍କ ଘର ଖୋଜି ଖୋଜି ପାଇଲା ବେଳକୁ ସନ୍ଧ୍ୟା ଆସିଯାଇଥାଏ । ସରକାର ମହାଶୟ ବାହାରକୁ ଯାଇଥାନ୍ତି । କିନ୍ତୁ ପରିଚୟ ପାଇ ତାଙ୍କ ସ୍ତ୍ରୀ କବିତାଦେବୀ ଆଦର ସହକାରେ ମମତା ଓ ତେଜସ୍ୱୀକୁ ଘର ଭିତରକୁ ଡାକିନେଲେ । ନିଜର ସନ୍ତାନସନ୍ତତି ନ ଥାଏ । ଅନ୍ୟ ଜଣେ ମହିଳାଙ୍କ ପୁଅକୁ ପାଇ ସେ ପୁତ୍ରସୁଖ ପାଇପାରିବା ଦେଖି ମମତାଙ୍କ ଆଖି ଆର୍ଦ୍ର ହୋଇଉଠିଲା ।

ଦୁଇ ମହିଳା ପାଖାପାଖି ବସି ପରସ୍ପରର ସୁଖଦୁଃଖ ଆଲୋଚନା କରୁଥିଲା ବେଳେ ଦୀପ୍ତିମାନବାବୁ ଘରେ ପ୍ରବେଶ କଲେ । ତପସ୍ୱୀବାବୁଙ୍କ ସ୍ତ୍ରୀ ଓ ପୁଅକୁ ଦେଖି ଆନନ୍ଦିତ ହେବା ସଙ୍ଗେ ଦୁଃଖ ପ୍ରକାଶ କରି କହିଲେ, ''ଦିଦୀ, ମୁଁ ଲୋକ ପଠାଇ

ନିୟମିତ ଭାବରେ ଶିବବାବୁଙ୍କ ଅବସ୍ଥା ଓ ଚିକିତ୍ସା ସମ୍ବନ୍ଧରେ ସମ୍ବାଦ ନେଉଛି । କିନ୍ତୁ ଆପଣ ଜାଣିପାରୁଥିବେ, ସେପରି ରୋଗରୁ ଆରୋଗ୍ୟ ଲାଭ କରିବା ନିର୍ଭର କରେ କେବଳ ଈଶ୍ୱରଙ୍କ ଇଚ୍ଛା ଉପରେ ।''

''ମୋ ବାବାଙ୍କ ସେବାକରିବା ଲାଗି ଆସିଛି । ସେତିକି ସୁଯୋଗ ପାଇପାରିଲେ ମୋ ଜୀବନ ସାର୍ଥକ ହେବ ବୋଲି ଜାଣିବି,'' କାନ୍ଦି କାନ୍ଦି ଆବେଦନ କଲେ ମମତା ।

''ସେପରି ସୁଯୋଗ ପାଇଁ କୌଣସି ପ୍ରକାରେ ଅନୁମତି ମିଳିବ ନାହିଁ । ଏପରିକି, ଦେଖିବାକୁ ମଧ୍ୟ ଛାଡ଼ି ନ ପାରନ୍ତି,'' ଦୁଃଖଭରା କଣ୍ଠରେ ଜଣାଇଲେ ଦୀପ୍ତିମାନବାବୁ ।

''ମଉସା, ମୁଁ ଡାକ୍ତରମାନଙ୍କ ପାଦଧରି ପ୍ରାର୍ଥନା କରିବି । ଏତେ ଦିନ ପର୍ଯ୍ୟନ୍ତ ତାଙ୍କ କୋଳରେ ଶୋଇଥିଲି । ତାଙ୍କରି ପାଖେ ପାଖେ ମା' ଛାଇପରି ରହିଥାନ୍ତି । ଯଦି ବର୍ଷ ବର୍ଷ ଧରି ଆମପାଖକୁ ଯକ୍ଷ୍ମା ଡେଇଁଲା ନାହିଁ, ତେବେ ଆଜି କାହିଁକି ତାଙ୍କ ନିକଟକୁ ଗଲେ ରୋଗ ଧରିନେବ ?'' ପଚାରିଲା ତେଜସ୍ୱୀ ।

ଦୀପ୍ତିମାନବାବୁ ନିରୁତ୍ତର ରହିଲେ । ମା' ପୁଅର ମନୋଭାବ ତା'ଙ୍କୁ ବିଚଳିତ କଲା । ସକାଳ ହେଲାକ୍ଷଣି ସେ ଜଣେ ରିକ୍ସାବାଲାକୁ ଡାକି ପଠାଇଲେ । କିନ୍ତୁ ମମତା ଓ ତେଜ ଚାଲି ଚାଲି ଯିବେ ବୋଲି ମିନତି ଜଣାଇଲେ ।

ଗଙ୍ଗା କୂଳେ କୂଳେ ମା' ଓ ପୁଅ ଆଗେଇ ଚାଲିଲେ ସହର ପାଖରୁ ଅନେକ ଦୂରରେ ଶ୍ୟାମାପୁର ନାମକ ଅଞ୍ଚଳରେ ଥିବା ଯକ୍ଷ୍ମାନିବାସ ପଥରେ । ଅନେକ ପଛରେ ଏବଂ ସେମାନଙ୍କ ଅଜ୍ଞାତରେ ସାଇକେଲରେ ଗମନ କଲେ ଦୀପ୍ତିମାନବାବୁ । ଅନାୟାସରେ ଏବଂ ସ୍ୱଳ୍ପ ସମୟ ମଧ୍ୟରେ ପାଞ୍ଚ ମାଇଲ ବାଟ ମା' ଓ ପୁଅ କିପରି ଭାବରେ ଅତିକ୍ରମ କରିପାରିଲେ ତାହା ଦେଖି ସରକାର ମହାଶୟ ଆଶ୍ଚର୍ଯ୍ୟାନ୍ୱିତ ହୋଇ ବୁଝିପାରିଲେ ଅନ୍ତରାତ୍ମାର ପ୍ରେରଣା ଶକ୍ତି କେତେଦୂର ପ୍ରଖର ହୋଇପାରେ !

ମା' ଓ ପୁଅ ଗେଟ୍ ପାଖରେ ପହଞ୍ଚିଲା ବେଳକୁ ସାଇକେଲରୁ ଓହ୍ଲାଇ ପଡ଼ିଲେ ଦୀପ୍ତିମାନବାବୁ । ଜଗୁଆଳିକୁ କହି ସେ ଭିତରକୁ ପ୍ରବେଶ କଲାବେଳେ ମମତାଙ୍କୁ ସେହିଠାରେ ଅପେକ୍ଷା କରିବାକୁ କହିଲେ । କିଛି ସମୟ ପରେ ସେବାସଦନର ପରିଚାଳକ ମହୋଦୟ ଗେଟ୍ ନିକଟରେ ପହଞ୍ଚିଗଲେ । ଜଣାଇଲେ, ''ରୋଗୀଙ୍କ ଅବସ୍ଥା ବିଶେଷ ଭଲ ନାହିଁ । ଝିଅକୁ ଓ ନାତିକୁ ଦେଖିଲେ ସେ ଅବଶ୍ୟ ଖୁସି ହୋଇପାରନ୍ତି, କିନ୍ତୁ ଅପରପକ୍ଷରେ ପ୍ରତିକ୍ରିୟା ମଧ୍ୟ ଶୁଭଙ୍କର ହୋଇ ନ ପାରେ । ତଥାପି, ଦୀପ୍ତିମାନବାବୁଙ୍କ ଅନୁରୋଧକ୍ରମେ ଅଳ୍ପସମୟପାଇଁ ଆପଣଙ୍କୁ ଓ ପିଲାଟିକୁ ରୋଗୀଙ୍କ ବିଛଣା ନିକଟକୁ ନେଇଯିବି । ବେଶି ସମୟ ରହିବାକୁ ଦେବି ନାହିଁ ।''

ମମତା ଓ ତେଜସ୍ୱୀ ତାଙ୍କ ପଛେ ପଛେ ଚାଲିଲେ । କ୍ଷୁଦ୍ର କୋଠରି ମଧ୍ୟରେ ଶଯ୍ୟାଶାୟୀ ପିତାଙ୍କ ଉପରେ ଦୃଷ୍ଟି ପଡ଼ିଲାମାତ୍ରେ ମମତା ବିକଳ ସ୍ୱରରେ 'ବାବା', 'ବାବା' ବୋଲି ଉଚ୍ଚାରଣ କରି ତା'ଙ୍କ ପାଦ ପାଖରେ ବସିପଡ଼ିଲେ । କାନ୍ଦି କାନ୍ଦି କହିଲେ, ''ବାବା, ତୁମର ସେବା ପାଇଁ ଆସିଛି । କୌଣସି ପ୍ରକାରେ ଛାଡ଼ି ଯାଇପାରିବି ନାହିଁ ।''

ଝିଅର ମୁଣ୍ଡ ଉପରେ ହାତରଖି ଅତିଶୟ କ୍ଷୀଣ ସ୍ୱରରେ ଶିବବାବୁ କହିଲେ, ''ମା, ମୁଁ ବେଶ୍ ଶାନ୍ତିରେ ଅଛି । ସବୁ ପ୍ରକାର ସେବା ଶୁଶ୍ରୂଷା ପାଉଛି । ତୁ କାହିଁକି ଆସିଲୁ ? ତେଜକୁ କାହିଁକି ଆଣିଲୁ ?''

ପରିଚାଳକ ମହୋଦୟ ଭିତରକୁ ପ୍ରବେଶ କଲେ । ସାଙ୍ଗରେ ଥାଆନ୍ତି ଡାକ୍ତର ଏବଂ ନର୍ସ । ପାଖରେ ଦୀପ୍ତିମାନବାବୁ ।

''ମହାଶୟ, ଆପଣମାନେ ଓ ନର୍ସ ଦିଦୀ ଯଦି ରୋଗୀଙ୍କ ସେବା କରିବାକୁ ଆସୁଛନ୍ତି, ତେବେ ମୁଁ ତାଙ୍କର ଝିଅ ଭାବରେ ଏଠାରେ ରହି ବାବାଙ୍କ ସେବା କରିବି ନାହିଁ କାହିଁକି ?'' ଡାକ୍ତରବାବୁଙ୍କୁ ପ୍ରଶ୍ନ କଲେ ମମତା ।

ଏପରି ପ୍ରଶ୍ନର ଉତ୍ତର ଦେବା ସହଜ ନ ଥାଏ । ଅନ୍ତିମ ଶଯ୍ୟାରେ ଶାୟିତ ନିଜ ଜନ୍ମଦାତା ପିତାଙ୍କ ସେବା ଲାଗି ଯଦି ନିଜର ତନୟା ବ୍ୟାକୁଳ ହୁଏ, ଯେଉଁ ଆଇନ ବଳରେ ତାଙ୍କୁ ବାରଣ କରାଯିବ ତାହା ମାନବିକ ରୀତିନୀତି ଓ ପ୍ରକୃତିର ବିପରୀତମୁଖୀ ବୋଲି ଡାକ୍ତରବାବୁ ହୃଦୟଙ୍ଗମ କରିପାରିଲେ । ତଥାପି, କିଛି ସମୟ ଚିନ୍ତା କଲାପରେ ଉତ୍ତର ଦେଲେ, ''ମା', ଆପଣଙ୍କ ମର୍ମବେଦନା ମୁଁ ଅନୁଭବ କରିପାରୁଛି । ପ୍ରତିବନ୍ଧକ ସୃଷ୍ଟି କରୁଛି ଏଠାକାର ଆଇନ । ଏକମାତ୍ର ସମାଧାନ ସୂତ୍ର ହେଉଛି, ନର୍ସ ଭାବରେ ଏଠାରେ କାର୍ଯ୍ୟ କରିବା ଲାଗି ଇଚ୍ଛା ଥିଲେ ପ୍ରଥମେ ସେଥିପାଇଁ ତାଲିମ୍ ନେବାକୁ ପଡ଼ିବ ଏବଂ ତାହା ପରେ ନିଜର ପିତାଙ୍କ ସେବା ପରି ଅନ୍ୟ ରୋଗୀମାନଙ୍କର ମଧ୍ୟ ସେବା କରିବାକୁ ହେବ । ଏଥିରେ ଆପଣଙ୍କର ଇଚ୍ଛା, ଅବଶ୍ୟ ଆପଣଙ୍କ ପୁଅକୁ ଏଠାରେ ରଖାଯିବାର ପ୍ରଶ୍ନ ଉଠୁ ନାହିଁ ।''

ଡାକ୍ତରବାବୁଙ୍କ ମତ ସହିତ ଏକମତ ହେଲେ ପରିଚାଳକ ମହୋଦୟ । ମମତାଙ୍କୁ ଜଣାଇଦେଲେ, ''ଆପଣ ଯଦି ଆମ ପ୍ରସ୍ତାବରେ ସମ୍ମତ ହେବେ, ତେବେ ମୋ ସହିତ ଚୁକ୍ତି ସ୍ୱାକ୍ଷର ଲାଗି ଆସିପାରନ୍ତି ।''

ନର୍ସ ଓ ଡାକ୍ତରବାବୁ ବାହାରିଗଲେ । ତେଜସ୍ୱୀ କହିଲା, ''ମା' ମୁଁ ଅଜାଙ୍କ ପାଖରେ ରହିବି । ନ ହେଲେ ତୁମେ ଯେଉଁଠାରେ ରହିବ, ସେହିଠାରେ ରହି ତୁମକୁ ସାହାଯ୍ୟ କରିବି ।''

ଶିବବାବୁ ତେଜକୁ ପାଖକୁ ଆସିବାଲାଗି ଇଙ୍ଗିତ ଦେଲେ । କିନ୍ତୁ ତା' ଦେହରେ ହାତ ଲଗାଇବାକୁ ସାହସ କଲେ ନାହିଁ । ଅଶ୍ରୁସିକ୍ତ ନୟନରେ ନାତି ମୁହଁକୁ ଚାହିଁରହି ସ୍ନେହପୂର୍ଣ୍ଣ ସ୍ୱରରେ କହିଲେ, ''ତେଜ, ମୋ ସୁନାନାତି, ତୋ ଅଜା କଥା ମାନି ଘରକୁ ଫେରିଯା । ମନଦେଇ ପାଠ ପଢ଼ି ବଡ଼ ମଣିଷଟିଏ ହେବୁ । ମୋର ଆଶୀର୍ବାଦ ରହିଲା । ପରଲୋକରେ ରହି ତୋର ମଙ୍ଗଳ କାମନା କରୁଥିବି ।''

ଦୀପ୍ତିମାନବାବୁ ମମତାଙ୍କୁ ବୁଝାଇଲେ, ''ଦିଦୀ, ଆପଣ ନର୍ସ ଭାବରେ ତାଲିମ ନେଇ ଏଠାରେ ବାବାଙ୍କ ସେବା କଲେ ମୋର ଆପତ୍ତି ନାହିଁ । ମୋର ବିଶ୍ୱାସ, ତପସ୍ୱୀଦାଦା ଏଥିରେ ଖୁସି ହେବେ । ତେଜସ୍ୱୀକୁ ନିଜ ପୁଅ ଭାବି ମୋ ଘରେ ରଖିବି । ସେଥିପାଇଁ ଚିନ୍ତା କରିବେ ନାହିଁ । ବର୍ତ୍ତମାନ ବାହାରକୁ ଆସନ୍ତୁ । ଏଠାକାର ଆଇନ ନ ମାନିଲେ ଡକ୍ଟର ରାୟ ମୋ ଉପରେ କ୍ଷୁବ୍ଧ ହେବେ । ଏକଥା ମଧ କହିଦେଉଛି, ଆପଣ ଏଠାରେ ନର୍ସ ଭାବରେ ରହିବା ସମ୍ବାଦ ପାଇଲେ ସେ ଅତ୍ୟନ୍ତ ପ୍ରୀତ ହେବେ ।''

ବାହାରକୁ ଆସି ଦୀପ୍ତିମାନବାବୁ, ପରିଚାଳକ ମହୋଦୟ ଏବଂ ମମତାଦେବୀ କିଛି ସମୟ ଲାଗି ପରସ୍ପର ମଧ୍ୟରେ ଆଲୋଚନା କଲେ । ଶେଷରେ ମମତାଙ୍କୁ ନିଆଗଲା ସେବାସଦନର ଅଫିସ କକ୍ଷକୁ । ପରିଚାଳକ ସ୍ୱଷ୍ଟ ଭାବରେ ଜଣାଇଦେଲେ ଯେ ଗୋଟିଏ ଯକ୍ଷ୍ମାସଦନରେ ରୋଗୀଙ୍କର ସେବା କରିବା ନିମନ୍ତେ ନର୍ସ ସଂଗ୍ରହ କରିବା ବାସ୍ତବିକ ଏକ କଷ୍ଟସାଧ୍ୟ ସମସ୍ୟା । କାରଣ, ନିଜର ଜୀବନ ବିପନ୍ନ କରି ଅନ୍ୟର ସେବା କରିବା ପ୍ରବୃତ୍ତି ସମସ୍ତଙ୍କ ନିକଟରେ ନ ଥାଏ । ''ଯଦି ମମତାଦେବୀ ସ୍ୱଇଚ୍ଛାରେ ଏହି ସ୍ଥାନରେ ନର୍ସ କାର୍ଯ୍ୟ କରିବା ଲାଗି ଆଗ୍ରହ ପ୍ରକାଶ କରୁଛନ୍ତି, ମୁଁ ତାଙ୍କୁ ସାଦରେ ଗ୍ରହଣ କରୁଛି । ତାଲିମ ନେବା ଅତି ସହଜ । ନର୍ସମାନଙ୍କ ପାଇଁ ନିର୍ମିତ ଘରେ ରହି ସେହିମାନଙ୍କ ନିକଟରୁ ଶିକ୍ଷା ନେବାକୁ ହେବ ।''

ମମତା ଚୁକ୍ତିପତ୍ରରେ ଦସ୍ତଖତ କଲେ । ଦୀପ୍ତିମାନବାବୁ ତେଜକୁ ନିଜ ଘରେ ରଖିବେ ବୋଲି ଆଶ୍ୱାସନା ଦେଲେ । କହିଲେ, ''ଆପଣଙ୍କ ପୁଅକୁ ଜାତୀୟ ବିଦ୍ୟାଳୟରେ ଭର୍ତ୍ତି କରିଦେବି । ମୋ ଘରେ ରହି ପଢ଼ିବ । ତପସ୍ୱୀବାବୁଙ୍କୁ ବୁଝାଇଥିଲି, ତାଙ୍କର ଚାରିପିଲାଙ୍କୁ ଜାତୀୟ ବିଦ୍ୟାଳୟରେ ରଖିଦେବାକୁ । ମୋର ବିଶ୍ୱାସ, ସେ ରାଜି ହେବେ । କାରଣ, ଆଗାମୀ ବିପ୍ଳବ ନିମନ୍ତେ ଆମ ଦୁହିଁଙ୍କୁ ଏବେଠାରୁ ପ୍ରସ୍ତୁତ ରହିବାକୁ ପଡ଼ିବ ।''

"ଆପଣ ଯାହା ଉଚିତ ମନେକରିବେ, ମୋ ସ୍ୱାମୀ ତାହାହିଁ ମାନିନେବେ । ମୁଁ ବାବାଙ୍କୁ ଛାଡ଼ି ଯିବି ନାହିଁ । ଅନ୍ୟ ରୋଗୀମାନଙ୍କର ସେବାକରି ଆନନ୍ଦ ଲାଭ କରିବି । ପିଲାମାନଙ୍କ ଭବିଷ୍ୟତ ଶିକ୍ଷା ଏବଂ ନିଜର ଆଗାମୀ କାର୍ଯ୍ୟସୂଚୀ ବିଷୟ ସେ ଓ ଆପଣ ନିର୍ଦ୍ଧାରଣ କରିବେ ।"

ମମତା ଦୀପ୍ତିମାନବାବୁଙ୍କ ପାଦସ୍ପର୍ଶ କଲେ । ତେଜସ୍ୱୀ ମା'ଙ୍କୁ କୁଣ୍ଢାଇଧରି କହିଲା, "ପ୍ରତିଦିନ ନ ହେଲେ ବି ପ୍ରତି ରବିବାର ଦିନ ଆସି ଅଜାଙ୍କୁ ଓ ତୁମକୁ ଦେଖିଯିବି ।"

ସାଇକେଲ ଆଗରେ ତେଜକୁ ବସାଇ ଦୀପ୍ତିମାନବାବୁ ସେବାସଦନରୁ ବିଦାୟ ନେଲେ । ସଜଳ ନୟନରେ ଚାହିଁ ରହିଥାନ୍ତି ମମତାଦେବୀ ।

## ।। ୧୦ ।।

ଦିନେ ସଞ୍ଜବେଳେ ତେଜକୁ କୋଳରେ ବସାଇ କବିତା ଦେବୀ ତାଙ୍କ ସ୍ୱାମୀଙ୍କ ସହିତ କଥାବାର୍ତ୍ତା ହେଉଥିବା ସମୟରେ ପ୍ରସଙ୍ଗକ୍ରମେ କଲିକତା ମହାନଗରୀର ଅସହ୍ୟ ପରିବେଶ ବିଷୟ ବର୍ଣ୍ଣନା କରିବାକୁ ଲାଗିଲେ । ଦୀପ୍ତିମାନବାବୁ ଦୁଃଖ ପ୍ରକାଶ ପୂର୍ବକ କହିଲେ ଯେ, "ଧନୀମାନେ ମଝେ ମଝେ ବାହାରକୁ ଯାଇ ଦାର୍ଜିଲିଂ, ସିମଳା, ପୁରୀ ଓ କୁମାରିକାରେ କିଛି ସପ୍ତାହ ବସବାସ କରିପାରନ୍ତି, କିନ୍ତୁ ଆମମାନଙ୍କ ପରି ହତଭାଗାମାନେ ଏହି ନରକପୁରୀରେ ହିଁ ଜୀବନ ଯାପନ କରିବାକୁ ବାଧ ।" ତେଜସ୍ୱୀ କହିଲା, "ମାଉସୀ, ଥରେ ଏପରି ବନ୍ଦିଶାଳାରୁ ବାହାରି ଆମ ଗାଁକୁ କିଛି ସପ୍ତାହ ପାଇଁ ବୁଲିବାକୁ ଚାଲନ୍ତୁ । ସେଠାରେ ମୁକ୍ତ ପବନ ଉପଭୋଗ କରିବେ । ଆମ ଘର ନିକଟରେ ସମୁଦ୍ର । ସନ୍ଧ୍ୟାବେଳେ ସମୁଦ୍ର କୂଳରେ ଚାଲିଲେ ଅପାର ଆନନ୍ଦ ମିଳିଥାଏ । ଗ୍ରାମାଞ୍ଚଳର ପରିବେଶ ସହରର ପରିବେଶ ଠାରୁ ପୃଥକ । ଆମ ଘରେ ଗୋଟିଏ ମାସ ରହିଲେ, ଆପଣଙ୍କ ସ୍ୱାସ୍ଥ୍ୟ ଭଲ ହୋଇଯିବ । ମଉସା ମଧ୍ୟ ନିଶ୍ଚୟ ଯିବେ । ତାଙ୍କର ବିଶ୍ରାମ ଦରକାର । ଦିନ ରାତି ସହରର ଗଳି ପ୍ରଗଳି ଓ ବସ୍ତିଗୁଡ଼ିକରେ କଂଗ୍ରେସ କାମ କରି କରି ସେ ମଧ୍ୟ ସ୍ୱାସ୍ଥ୍ୟ ହରାଇ ବସିଲେଣି ।" ବାସ୍ତବିକ, କବିତାଦେବୀ ଥାଆନ୍ତି ଶୀର୍ଣ୍ଣକାୟା ଏବଂ ଦୀପ୍ତିମାନବାବୁ ଜଣେ ଦୁର୍ବଳ ପୁରୁଷ ।

କବିତା ଥିଲେ ଜଣେ ଦୁଃଖିନୀ ମହିଳା । ସହରର ବସ୍ତି ଅଞ୍ଚଳରେ ଗୋଟିଏ ନିମ୍ନ-ମଧ୍ୟବିତ୍ତ ପରିବାରରେ ଜନ୍ମିଥିଲେ । ସୌଭାଗ୍ୟକ୍ରମେ ତାଙ୍କ ପିତାଙ୍କ ବାସଗୃହ

ନିକଟରେ ଥାଏ ଗୋଟିଏ ମହିଳା ହାଇସ୍କୁଲ । ବାପା ସେହି ବିଦ୍ୟାଳୟରେ ଭର୍ତ୍ତି କରାଇ ଦେଲେ । ତେଣେ, ବୟସ୍ ବୃଦ୍ଧି ସଙ୍ଗେ କନ୍ୟାର ବିବାହ ଲାଗି ମା' ବ୍ୟସ୍ତ ହୋଇ ଉଠିଲେ । କିନ୍ତୁ ଅର୍ଥାଭାବ ହେତୁ ଭଲ ବଂଶର ବରଟିଏ ପାଇବା କଷ୍ଟକର ହେଲା । ବାପା ବାଧହୋଇ ଝିଅକୁ ମେଟ୍ରିକ ପାସ୍ କରିବା ଯାଏ ପାଠ ପଢ଼ାଇଲେ । ପରୀକ୍ଷାରେ ପାସ୍ କଲାପରେ ଗୋଟିଏ ମାଇନର ସ୍କୁଲରେ ଶିକ୍ଷୟିତ୍ରୀ ଚାକିରିଟିଏ କରାଇଦେଲେ । ବିବାହ କଥା ଭୁଲିବାକୁ ହେଲା । କିନ୍ତୁ ଦୈବାତ୍‌କ୍ରମେ ତାଙ୍କ ଉପରେ ଦୀପ୍ତିମାନବାବୁଙ୍କ ଶୁଭଦୃଷ୍ଟି ପଡ଼ିଲା । ସେ ଥିଲେ ଧନଶାଳୀ ବଂଶର ଯୁବକ । ନିଜ ପିତାମାତା ଓ ଭାଇମାନଙ୍କ ଅନିଚ୍ଛା ସତ୍ତ୍ୱେ ଶେଷରେ ଅବାଧ ଭାବରେ କବିତାଙ୍କୁ ବିବାହ କଲେ । ପ୍ରଧାନ କାରଣ ଥିଲା, ଯୌବନାବସ୍ଥାରୁ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିବା ହେତୁ ତାଙ୍କ ଭାଇମାନେ ଘରୁ ବାହାର କରିଦେବାରୁ ସେ ଚାକିରି କରୁଥିବା ପତ୍ନୀଟିଏ ଖୋଜୁଥିଲେ । ଶେଷରେ କବିତାଙ୍କୁ ବିବାହ କରି ଖୁସି ହେଲେ ଏବଂ ନିଜ ପରିବାର ସହିତ ସମ୍ପର୍କ ଛିନ୍ନ କରି ଛୋଟିଆ ଘରଟିଏ ଭଡ଼ାନେଇ ସ୍ତ୍ରୀଙ୍କ ସହିତ ଏକାକୀ ଆସି ରହିଲେ । ସ୍ୱାମୀ ଜେଲ୍‌ରେ ଥିବାବେଳେ କବିତାଦେବୀ ନିଜର ଚାକିରି ଥିବା ଯୋଗୁଁ ଏକାକୀ ଚଳିଯାଇ ପାରିଲେ । ଦରମା ଅଳ୍ପ ହେଲେ ମଧ୍ୟ ସୁଖଶାନ୍ତିରେ ଚଳିଯାଉଥାନ୍ତି, ଯଦିଚ ସ୍ୱାଚ୍ଛନ୍ଦ୍ୟ ଭୋଗଲାଗି ସମ୍ବଳ ନ ଥାଏ ।

କଲିକତା ସହରର ଅଧିବାସୀମାନେ ଧନୀ, ମଧ୍ୟବିତ୍ତ ଓ ଦରିଦ୍ର ନିର୍ବିଶେଷରେ, ମଧ୍ୟେ ମଧ୍ୟେ ବାହାରକୁ ଯିବାଲାଗି ଭଲ ପାଇଥାନ୍ତି । ଜନାକୀର୍ଣ୍ଣ ନଗରୀର ଅବରୁଦ୍ଧ ପରିବେଶ ମଧ୍ୟରୁ କିଛିଦିନପାଇଁ ତ୍ରାହି ପାଇବା ନିମନ୍ତେ ସେମାନେ ବହିର୍ଯାତ୍ରା ଲାଗି ଅଳ୍ପ ଅଳ୍ପ ଅର୍ଥ ମଧ୍ୟ ସଞ୍ଚୟ କରିରଖନ୍ତି । କଲିକତାର ମୁକ୍ତ ସ୍ଥାନମାନଙ୍କରେ ସାଧାରଣ ଲୋକେ ସନ୍ଧ୍ୟାକାଳରେ ବୁଲିପାରୁ ନ ଥାନ୍ତି । ପ୍ରଶସ୍ତ ରାଜପଥଗୁଡ଼ିକ କେବଳ ସାହେବ ପରିବାରଙ୍କ ପାଇଁ ମୁକ୍ତ ଥାଏ । ଗଳି ପ୍ରଗଳିରେ ବାସ କରୁଥିବା ଅସଂଖ୍ୟ ନରନାରୀଙ୍କ ପାଇଁ ନିଜ ନିଜ ବାସଗୃହ ଥାଏ ଦୂଷିତ ଯନ୍ତାସଦୃଶ ସ୍ଥାନ ।

ତେଜସ୍ୱୀର କଥା ଶୁଣି କବିତାଙ୍କ ମୁହଁରେ ହସ ଫୁଟିଲା । ସେ ସ୍ୱାମୀଙ୍କ ଦିଗକୁ ଚାହିଁ ପଚାରିଲେ, ''ଶୁଣିଲ, ତେଜ କ'ଣ କହିଲା ?''

''ସରଳ ମନରେ ସରଳ ନିମନ୍ତ୍ରଣ କେବଳ କୋମଳମତି ବାଳକମାନେ ହିଁ କରିପାରନ୍ତି । ସେ ଜାଣେ, ଘରେ ମା' ନାହାନ୍ତି । ବାବା ଓ ଭାଇଭଉଣୀଙ୍କ ପାଇଁ କିଏ ରନ୍ଧାବଢ଼ା କରୁଥିବ, ସେ କଥା ମଧ୍ୟ ତା'କୁ ଜଣା ନାହିଁ । ତଥାପି ଏହି ଆବର୍ଜନାପୂର୍ଣ୍ଣ ବସ୍ତିର କଦର୍ଯ୍ୟ ସ୍ଥାନରୁ ତୁମକୁ କିଛି ଦିନ ଲାଗି ନେଇଯିବାକୁ ଆଗ୍ରହ ପ୍ରକାଶ କରୁଛି ।''

ତେଜସ୍ୱୀ ସଙ୍ଗେ ସଙ୍ଗେ ପ୍ରକାଶ କଲା, ''ମା' ନ ଥିଲେ ମଧ୍ୟ ଆପଣଙ୍କର ଓ ମାଉସୀଙ୍କର କୌଣସି ଅସୁବିଧା ହେବ ନାହିଁ, ବର୍ତ୍ତମାନ ଗ୍ରୀଷ୍ମଛୁଟି । ମାଉସୀଙ୍କର ସ୍କୁଲ ବନ୍ଦ ଅଛି, ଆମ ଗାଁକୁ ଯିବାପାଇଁ ଏହି ସମୟଟା ସବୁଠାରୁ ଭଲ । ପାଖରେ ସମୁଦ୍ର । ସେଥିପାଇଁ ଗ୍ରୀଷ୍ମଋତୁରେ ସୁଦ୍ଧା ଗରମ ନ ଥାଏ । ବର୍ଷାଋତୁ ଆସି ନାହିଁ । ତେଣୁ ବାହାରେ ବୁଲାବୁଲି କରିବାଲାଗି ଅସୁବିଧା ହୁଏ ନାହିଁ । ମଉସା, ଆପଣଙ୍କୁ ଏବଂ ମାଉସୀଙ୍କୁ ଆମ ଘରେ ପଦାର୍ପଣ କରିବା ଦେଖିଲେ ବାବା ଆନନ୍ଦରେ ଅଧୀର ହୋଇଉଠିବେ ।''

ଦୀପ୍ତିମାନବାବୁ ନିଜ ସ୍ତ୍ରୀଙ୍କ ମନୋଭାବ ଜାଣି ତେଜସ୍ୱୀର ପ୍ରସ୍ତାବରେ ରାଜି ହେଲେ । ମା'ଙ୍କ ପାଖକୁ ଏ ବିଷୟରେ ଚିଠି ଲେଖି ତେଜ ନିକଟବର୍ତ୍ତୀ ଡାକ ଘରେ ପକାଇ ଆସିଲା ।

କଲିକତାରୁ ଟ୍ରେନ ଯୋଗେ ଆସି ଏକ କ୍ଷୁଦ୍ର ଷ୍ଟେସନ ବାହାରେ ଦୀପ୍ତିମାନବାବୁ ଓ କବିତାଦେବୀ ଯେତେବେଳେ ବଳଦଗାଡ଼ିରେ ବସିଲେ, ଗ୍ରାମାଞ୍ଚଳର ଶୋଭା ସେମାନଙ୍କୁ ମୁଗ୍ଧ କଲା । ଦିଗ୍‌ବଳୟ ଉପରେ ଦେଖାଯାଉଥାଏ ଦୂରବର୍ତ୍ତୀ ପାହାଡ଼ ପର୍ବତ ଓ ଗହନ ବନାନୀ । ନୀଳ ଆକାଶରେ ଉଡୁ ଥାଆନ୍ତି ନାନା ପ୍ରକାର ପକ୍ଷୀ । ଅଳ୍ପ ଦୂରରେ ବହିଯାଉଥାଏ ଗ୍ରୀଷ୍ମକାଳୀନ ଶୁଷ୍କ ନଦୀର ମଧ୍ୟବର୍ତ୍ତୀ ସ୍ଥାନର ସଙ୍କୁଚିତ ଜଳଧାରା । ଦୂରବର୍ତ୍ତୀ ସମୁଦ୍ରରୁ ଉଡ଼ି ଆସୁଥାଏ ସ୍ନିଗ୍ଧ ଶୀତଳ ପବନ । ବଳଦଗାଡ଼ି ଚାଲିଥିବା ସଙ୍କୀର୍ଣ୍ଣ ପଥର ଉଭୟ ପାର୍ଶ୍ୱରେ ଥିବା ବଣୁଆ ବୁଦାଗୁଡ଼ିକରେ ଫୁଟିଥାଏ ବିବିଧ ପ୍ରକାରର ଫୁଲ । ଚାରି ଦିଗରେ ଉଡ଼ି ବୁଲୁଥାନ୍ତି ଅସଂଖ୍ୟ ପ୍ରଜାପତି । ବିମୋହିତ ମନରେ କବିତାଦେବୀ ପଚାରିଲେ, ''ତେଜ, ଏହି ରଙ୍ଗିନ ପ୍ରଜାପତିଗୁଡ଼ିକୁ ପାଖରୁ ଦେଖିବାଲାଗି ଇଚ୍ଛା ହେଉଛି ।''

ଗାଡ଼ିରୁ ତଳକୁ ଆସି ସେ ତେଜସ୍ୱୀର ହାତ ଧରି ପ୍ରଜାପତିଗୁଡ଼ିକୁ ଧରିବାଲାଗି ଚେଷ୍ଟାକଲେ । ଚାରିଦିଗରେ ସବୁଜ ଘାସପଡ଼ିଆ ଦେଖି ସେଥିରେ ଖାଲି ଗୋଡ଼ରେ ଚାଲିବାକୁ ତାଙ୍କୁ ଭଲ ଲାଗିଲା । ଶୁଖିଲା ନଈର ବାଲୁକାରାଶି ଉପରେ ବସିବାକୁ ଗଲାବେଳେ ତେଜ ଜଣାଇଲା, ''ମାଉସୀ, ଆମ ଘର ପାଖ ଦରିଆ ବାଲିରେ ବସିଲେ ଏହାଠାରୁ ଅଧିକ ଆରାମ ପାଇବେ ।''

ତେଣେ, ବଳଦଗାଡ଼ିଟି ବେଗି ବେଗି ଆଗେଇ ଚାଲିଥାଏ । ଜଣେ ପଥଚାରୀ ଗ୍ରାମବାସୀଙ୍କୁ ଦେଖିପାରି ତେଜ ଦୌଡ଼ିଯାଇ କାନ ପାଖରେ କହିଦେଲା, ''ବାବାଙ୍କୁ ଶୀଘ୍ର ଜଣାଇଦେବେ, ଦୀପ୍ତିମାନବାବୁ ଓ କବିତାଦେବୀ ସନ୍ଧ୍ୟା ପୂର୍ବରୁ ଆମ ଘରେ ପହଞ୍ଚିଯିବେ ।''

ଯଥାସମୟରେ ତପସ୍ୱୀବାବୁ ବନ୍ଧୁ-ଦମ୍ପତିଙ୍କ ଆଗମନ ସମ୍ବାଦ ପାଇଥିଲେ । ଘର ପର୍ଯ୍ୟନ୍ତ ବଳଦଗାଡ଼ି ଆସି ପାରିବ ନାହିଁ ଜାଣି ଗାଁ ମୁଣ୍ଡ ପର୍ଯ୍ୟନ୍ତ ପିଲାମାନଙ୍କ ସହିତ ଯାଇ ସେଠାରେ ଅପେକ୍ଷା କଲେ ।

ଶିବବାବୁଙ୍କ ଚିକିତ୍ସା କଲିକତାରେ ଚାଲିଛି ବୋଲି ଗ୍ରାମବାସୀମାନଙ୍କୁ ଜଣାଥାଏ । ତାଙ୍କ ପ୍ରତି ଭକ୍ତି ଓ ସମ୍ମାନର ନିଦର୍ଶନସ୍ୱରୂପ ପ୍ରତିଦିନ ଲୋକେ ନିଜ ନିଜ ଘର ଡିହରୁ ପରିବାପତ୍ର ଓ ଫଳମୂଳ ତାଙ୍କ ନାତିମାନଙ୍କ ପାଇଁ ଦେଇ ଆସୁଥାନ୍ତି । ରାନ୍ଧିବାଢ଼ି ସମସ୍ତଙ୍କୁ ଖୁଆଇବା ଦାୟିତ୍ୱ ନେଇଥିଲେ ଶ୍ୟାମାନନ୍ଦବାବୁଙ୍କ ବିଧବା ଭଉଣୀ । ତପସ୍ୱୀବାବୁଙ୍କ ପରି ଅନ୍ୟ ଜଣେ ସଂଗ୍ରାମୀ କଲିକତାରୁ ଆସୁଛନ୍ତି ଜାଣିପାରି ଗାଁର ଯୁବକମାନଙ୍କ ମଧ୍ୟରେ ଉତ୍ସାହ ଖେଳିଗଲା । ସେମାନେ ମଧ୍ୟ ସ୍ୱାଗତ ଜଣାଇବା ନିମନ୍ତେ ଗାଁ ମୁଣ୍ଡ ରାସ୍ତାପାଖରେ ଉପସ୍ଥିତ ରହିଲେ ।

ସୂର୍ଯ୍ୟାସ୍ତ ହେବାକୁ ସମୟ ବାକି ଥାଏ । ବଳଦଗାଡ଼ିରୁ ଦୀପ୍ତିମାନବାବୁ ଡେଇଁପଡ଼ି ତପସ୍ୱୀବାବୁଙ୍କୁ ଆଲିଙ୍ଗନ କଲେ । ଗ୍ରାମର ଯୁବକମାନେ ଆଗନ୍ତୁକ ଅତିଥି ଏବଂ ତାଙ୍କ ସ୍ତ୍ରୀଙ୍କୁ ଫୁଲ ଓ ଚନ୍ଦନ ସହ ସମ୍ବର୍ଦ୍ଧନା ଜଣାଇଲେ ।

''ତପସ୍ୱୀଦାଦା, ମମତା ଦିଦୀ ତାଙ୍କ ବାବାଙ୍କ ସେବାକାର୍ଯ୍ୟ ଲାଗି ଘରଦ୍ୱାର ଓ ଛୁଆମାନଙ୍କୁ ସମ୍ପୂର୍ଣ୍ଣ ଭାବରେ ଭୁଲିଯାଇଛନ୍ତି । ତାଙ୍କ ପିତୃଭକ୍ତି ଡାକ୍ତରମାନଙ୍କୁ ଆଚମ୍ବିତ କରିଛି । ସେ କେବେହେଲେ ଆମ ସହିତ ଆସି ନ ଥାନ୍ତେ ।'' କହିଲେ ଦୀପ୍ତିମାନବାବୁ ।

କବିତାଦେବୀ ତପସ୍ୱୀବାବୁଙ୍କ ପାଦଧୂଳି ନେଲେ ଏବଂ ସ୍ୱରାଜ୍, ସ୍ୱାଧୀନ ଓ କରୁଣାର କପାଳରେ ଚୁମ୍ବନ ଦେଲେ ।

ନିକଟରେ ଦିଶୁଥାଏ ନୀଳ ସାଗର । କବିତା ଏଥି ପୂର୍ବରୁ କେବେ ସମୁଦ୍ର ଦେଖି ନ ଥାନ୍ତି । ଦୃଷ୍ଟି ପଡ଼ିଗଲାକ୍ଷଣି ସେ ଛିଡ଼ା ହୋଇ ରହିଲେ । କୂଳ ପର୍ଯ୍ୟନ୍ତ ଯିବା ଲାଗି ଉଦ୍ୟତ ହେବା ଦେଖି ତେଜସ୍ୱୀ ଅନୁରୋଧ କଲା, ''ମାଉସୀ, ଭୋକ ଲାଗିଲାଣି । ପ୍ରଥମେ ଘରକୁ ଯାଇ ଜଳଖିଆ ଖାଇସାରିଲା ପରେ ଆପଣଙ୍କୁ ଦରିଆକୂଳକୁ ନେଇଯିବି । ସୂର୍ଯ୍ୟାସ୍ତ ଦେଖିବେ ।''

ତପସ୍ୱୀବାବୁ ଓ ଦୀପ୍ତିମାନବାବୁ ପରସ୍ପରର ହାତ ଧରାଧରି ହୋଇ ଗାଁ ଭିତରକୁ ପଶିଲେ । ସେମାନଙ୍କ ପଛରେ ତେଜସ୍ୱୀ ଓ କବିତା । ଯୁବକମାନେ ନିଜ ନିଜ ଘରକୁ ବିଦାୟ ନେଲେ । ଶ୍ୟାମାନନ୍ଦବାବୁଙ୍କ ଭଉଣୀ ଅତିଥିମାନଙ୍କୁ ମୁଢ଼ି ଓ ଗରମ ଆଳୁଦମ୍

ପରଷି ଦେଲେ । ଅବିଳମ୍ବେ ଜଳଖିଆ ଶେଷ କରି କବିତାଦେବୀ ସମୁଦ୍ର ଦେଖିବାଲାଗି ଅଧୀର ହୋଇଉଠିଲେ । ସାଙ୍ଗରେ ଚାଲିଲା ତେଜସ୍ୱୀ ।

ଦୀପ୍ତିମାନବାବୁ କହିଲେ, ''ଦାଦା, ଆପଣଙ୍କ ସହିତ ଅନେକ ଗୁରୁତ୍ୱପୂର୍ଣ୍ଣ ବିଷୟ ଆଲୋଚନା କରିବାପାଇଁ ସୁଯୋଗ ମିଳିଛି । ଚାଲନ୍ତୁ, ବାଲିଆଡ଼ିଆ ଉପରେ ବସି କଥାବାର୍ତ୍ତା କରିବା ।''

ସୁଦୀର୍ଘ ବେଳାଭୂମିକୁ ଲାଗିଥିବା ଗୋଟିଏ ଉଚ୍ଚ ବାଲୁକା ସ୍ତୁପ ଉପରେ କଂଗ୍ରେସୀ ବନ୍ଧୁଦ୍ୱୟ ଚକା ପକାଇ ବସିଗଲେ । ସାଗର କୂଳରେ ବୁଲୁଥାନ୍ତି କବିତା, ତେଜସ୍ୱୀ ଓ ଅନ୍ୟ ତିନିଜଣ ଭାଇଭଉଣୀ । ଢେଉ ପରେ ଢେଉ ବେଳା ପର୍ଯ୍ୟନ୍ତ ମାଡ଼ି ଆସି ନିମିଷ ମଧ୍ୟରେ ଫେରି ଯାଉଥାଏ । କ୍ଷଣକ ମଧ୍ୟରେ ଫୁଟିଉଠୁଥାନ୍ତି ଲକ୍ଷ ଲକ୍ଷ ବୁଦ୍‌ବୁଦ ଏବଂ ସଙ୍ଗେ ସଙ୍ଗେ ଫାଟିଯାଇ ମଶି ଯାଉଥାନ୍ତି ଦରିଆ ପାଣିରେ । ସେହି ଅପୂର୍ବ ଦୃଶ୍ୟ ଦେଖିବାଲାଗି ଅପଲକ ଦୃଷ୍ଟିରେ ଛିଡ଼ା ହୋଇ ରହିଲେ କବିତା । ତେଜସ୍ୱୀ ବୁଝାଇଲା, ''ମୋ ଅଜାଙ୍କ ମତରେ, ମନୁଷ୍ୟ ଜୀବନ ହେଉଛି କ୍ଷଣସ୍ଥାୟୀ ବୁଦ୍‌ବୁଦ । ପରମାତ୍ମାଙ୍କ ନିକଟରୁ ଆସିଥିବା ଆତ୍ମା ସେହି ପରମାତ୍ମାଙ୍କ ନିକଟକୁ ଫେରିଯାଏ ଠିକ୍ ଯେପରି ସମୁଦ୍ର କୂଳର ବୁଦ୍‌ବୁଦ ଯେଉଁ ଜଳରୁ ଜାତ ହୋଇଥାଏ ସେହି ଜଳରେ ହିଁ ମିଶିଯାଏ ।''

''ତୋ ଅଜାଙ୍କର ଏହି ସଂକ୍ଷିପ୍ତ ବାକ୍ୟ ମଧ୍ୟରେ ରହିଛି ମନୁଷ୍ୟର ଜୀବନ ଦର୍ଶନ; ସୃଷ୍ଟି, ସ୍ଥିତି ଓ ଲୟର ନିଗୂଢ଼ ରହସ୍ୟ,'' କହିଲେ କବିତା ।

ତେଜ କାନ୍ଦି ପକାଇ କହିଲା, ''ହଁ, ଅଜାଙ୍କ ଜୀବନ ବୁଦ୍‌ବୁଦ ପରି ଫାଟିଯିବାକୁ ବସିଛି । ତାଙ୍କ ପବିତ୍ର ଆତ୍ମା ସେହି ପରମାତ୍ମାଙ୍କ ସହିତ ଲୀନ ହୋଇଯିବ ।''

ପୁନର୍ବାର ସେମାନେ ବୁଲିବାକୁ ଲାଗିଲେ । ସ୍ୱରାଜ ଓ ସ୍ୱାଧୀନ ଢେଉଗୁଡ଼ିକ ଡେଇଁ ଡେଇଁ ପାଣି ଭିତରକୁ ଯାଉଥାନ୍ତି ଓ ଫେରୁଥାନ୍ତି । କରୁଣା ସଂଗ୍ରହ କରୁଥାଏ ଛୋଟ ଛୋଟ ଶାମୁକା ଖୋଳ ।

ଚାହୁଁ ଚାହୁଁ ପଶ୍ଚିମ ଦିଗନ୍ତ ପଥରେ ସୂର୍ଯ୍ୟ ଗଡ଼ି ଚାଲିଗଲେ । ଦରିଆ ଜଳ ରକ୍ତିମ ଆଭାରେ ଉଦ୍‌ଭାସିତ ହୋଇଉଠିଲା । ଏକାଗ୍ର ଚିତ୍ତରେ କବିତା ଦେଖୁଥାନ୍ତି ସୂର୍ଯ୍ୟାସ୍ତର ସେହି ଅପରୂପ ଶୋଭା । ବାଲୁକା ଶିଖରରୁ ତପସ୍ୱୀବାବୁ ଆଦେଶ ଦେଲେ, ''ତେଜ, ତୋ ମାଉସୀଙ୍କୁ ନେଇ ଘରକୁ ଫେରିଯା । ଅନ୍ଧକାର ଆସିଯାଉଛି । କିଆ ବଣ ପାଖକୁ ଯିବୁ ନାହିଁ । ମଝି ରାସ୍ତାରେ ଚଳାଇବୁ । ଅନ୍ଧାର ହେଲେ ରଣାସାପଗୁଡ଼ାକ ବେଢ଼ା ପାଖରେ ବୁଲନ୍ତି । ସାବଧାନ ସହକାରେ ନେଇଯିବୁ । ଆମକୁ ଫେରିବାକୁ ବିଳମ୍ବ ହେବ ।''

ବାବାଙ୍କ ଆଦେଶ ମାନି ତେଜସ୍ୱୀ ନିଜ ଭାଇଭଉଣୀକୁ ପାଣି ପାଖରୁ ଟାଣି ଆଣି ଓ ମାଉସୀଙ୍କ ହାତ ଧରି ଫେରିଚାଲିଲା ନିଜ ଘରକୁ । ଦୀପ୍ତିମାନବାବୁ ଓ ତପସ୍ୱୀବାବୁ ଆଲୋଚନାରେ ନିମଜ୍ଜିତ ରହିଲେ ।

ଦୀର୍ଘଶ୍ୱାସ ତ୍ୟାଗକରି ଦୁଃଖିତ ମନରେ ତପସ୍ୱୀବାବୁ କହିଲେ, ''ଆପଣ କହନ୍ତୁ, ଆଉ କେତେ ଯୁଗ ଧରି ବିଦେଶୀ ଶାସନ ଚାଲିବ ! ମହାତ୍ମା ଗାନ୍ଧି ପ୍ରଥମେ ଆରମ୍ଭ କଲେ ଅସହଯୋଗ ଆନ୍ଦୋଳନ । ସରକାର ଥରହର ହେଲା ବେଳକୁ ବିପ୍ଳବ ବନ୍ଦ କରିଦେଲେ । କାରଣ ଦର୍ଶାଇଲେ, ଦେଶବାସୀ ଅହିଂସ ସଂଗ୍ରାମ ନିମନ୍ତେ ମାନସିକ ସ୍ତରରେ ପ୍ରସ୍ତୁତ ହୋଇ ନାହାନ୍ତି, ତେଣୁ ଆନ୍ଦୋଳନ ବନ୍ଦ ରହିଲା । ଭାବିଦେଖନ୍ତୁ, ଗୋଟିଏ ସୁବିଶାଳ ଉପମହାଦେଶର କେଉଁ ଏକ ଅଜ୍ଞାତ ପଲ୍ଲୀରେ ଯଦି କେତେଜଣ ଉତ୍ତ୍ୟକ୍ତ ଗ୍ରାମବାସୀ ଗୋଟିଏ ଛୋଟ ଥାନା ଘରେ ନିଆଁ ଲଗାଇ ଦିଅନ୍ତି ଏବଂ ସେଥିଲାଗି ଅଳ୍ପ କେତେକ ସିପାହି ନିଆଁରେ ପୋଡ଼ି ମରିଗଲେ, ସେଥିପାଇଁ ଦେଶର କୋଟି କୋଟି ଜନତା କ'ଣ ଦାୟୀ ହେବେ ! ପ୍ରଥମ ବିପ୍ଳବର ଦଶବର୍ଷ ପରେ ପୁଣି ଆରମ୍ଭ କଲେ ଆଇନ୍ ଅମାନ୍ୟ ଆନ୍ଦୋଳନ । ଲକ୍ଷ ଲକ୍ଷ ନରନାରୀ ସତ୍ୟାଗ୍ରହୀ ଭାବରେ ଜେଲ ଯାଉଥିଲା ବେଳେ ବ୍ରିଟିଶ ସରକାର ଧୂଆଁବାଣ ଛାଡ଼ିଲେ ଯେ ଭାରତବାସୀଙ୍କୁ ସମ୍ବିଧାନ ମାଧ୍ୟମରେ କିଛି କିଛି ଗଣତାନ୍ତ୍ରିକ କ୍ଷମତା ଦିଆଯିବ । ବେଶ୍, ସେତିକିରେ ଆନ୍ଦୋଳନ ଧିମେଇ ଗଲା ଏବଂ ଆରମ୍ଭ ହୋଇଗଲା ନିର୍ବାଚନ ପ୍ରସ୍ତୁତି । ଏହା ପରେ ଆଉ କେତେକାଳ ବିତିଯିବ ତାହା ଆପଣ ଅନୁମାନ କରନ୍ତୁ । ଅଥଚ ଜମିଦାରମାନଙ୍କ ଶୋଷଣ ଚାଲିଛି । ରାଜାରାଜୁଡ଼ାଙ୍କ ଅତ୍ୟାଚାରରେ ପ୍ରଜାମାନେ ହାହାକାର କରୁଛନ୍ତି । ମୋତେ ଏ ସବୁ ସହ୍ୟ ହେଉ ନାହିଁ । ଏ ବିଷୟରେ ଆପଣଙ୍କ ମତ ଜାଣିବା ଲାଗି ମୁଁ ଉତ୍ସୁକ । ପଣ୍ଡିତ ନେହରୁ କହିସାରିଲେଣି ଯେ ନିର୍ବାଚନରେ ଅଂଶ ଗ୍ରହଣ କରିବାର ଉଦ୍ଦେଶ୍ୟ ହେଉଛି ବ୍ରିଟିଶ-ପ୍ରଦତ୍ତ ସମ୍ବିଧାନକୁ ଧ୍ୱଂସ କରିବା ।''

ବିନା ଦ୍ୱିଧାରେ ଦୀପ୍ତିମାନବାବୁ ଉତ୍ତର ଦେଲେ, ''ଗାନ୍ଧି ତାଙ୍କ ବାଟରେ ଚାଲନ୍ତୁ, ନେହରୁ ଓ ପଟେଲ ସେମାନଙ୍କ ପଥରେ ଯାଆନ୍ତୁ, ସେଥିରେ ଆମର ଆପତ୍ତି ନାହିଁ । କିନ୍ତୁ ଆମେ ଯଦି ସଂଗ୍ରାମରେ ଝାସ ଦେଇଛୁଁ, ଆମର ମଧ୍ୟ କିଛି ଅଧିକାର ରହିଛି । ତୁମର ଗାଁ ହେଉଛି ଜଣେ ଜମିଦାରଙ୍କ ଇଲାକା । ପ୍ରଜାଙ୍କ ଦାରିଦ୍ର୍ୟ ଦେଖିସାରିଲିଣି । ଯେଉଁ ଦୀନଦୁଃଖୀଟି ବଳଦଗାଡ଼ିରେ ଆମକୁ ଆଣିଥିଲା ତା ପାଖରୁ ଅନେକ କଥା ଶୁଣିଲି । ଆଚ୍ଛା, ଆପଣଙ୍କ ଗାଁରେ ତ ଅନେକ ଯୁବକ ଅଛନ୍ତି । ଅଧିକାଂଶ ହେଉଛନ୍ତି ଦରିଦ୍ର, ଦିନ ମଜୁରିଆ । ଅଥଚ, ଜମିଦାର ସେମାନଙ୍କୁ ମଧ୍ୟ ଶୋଷଣ କରୁଛି । ଆମେ

ଯଦି ପ୍ରଜାମାନଙ୍କୁ ମେଳି ବାନ୍ଧିବାକୁ ଶିଖାଇବା, ମୋ ମତରେ ସେପରି କାମ ସ୍ୱାଧୀନତା ସଂଗ୍ରାମ ବୋଲି ଅନେକେ ଭାବିନେବେ ।''

ତପସ୍ୱୀବାବୁଙ୍କ ମନ ସ୍ପର୍ଶ କଲା ବୈପ୍ଳବିକ ଚିନ୍ତାଧାରାଟି । ''ଆପଣ ଠିକ୍ କଥା କହିଛନ୍ତି । ବ୍ରିଟିଶ ସରକାରଙ୍କ କ୍ରୀତଦାସ ରୂପେ କାର୍ଯ୍ୟ କରୁଥିବା ଏହି ଜମିଦାରଗୁଡ଼ାକ ବିରୋଧରେ ଚାଷୀ ଓ ପ୍ରଜାମାନଙ୍କ ଆନ୍ଦୋଳନ ଚାଲିଲେ ଦେଶର ପ୍ରକୃତ ମଙ୍ଗଳ ହେବ । କଂଗ୍ରେସ ନେତାମାନେ ବାରଣ କରିପାରିବେ ନାହିଁ । ଦକ୍ଷିଣଆଫ୍ରିକାରୁ ଫେରିଲା ପରେ ଗାନ୍ଧି ନିଜେ ପ୍ରଥମେ ବିହାରର ଚମ୍ପାରଣ ନାମକ ସ୍ଥାନରେ ଗରିବ ଚାଷୀମାନଙ୍କପାଇଁ ସଂଗ୍ରାମ କରିଥିଲେ । ସର୍ଦ୍ଦାର ପଟେଲ ବାର୍ଦ୍ଦୋଳିଠାରେ କୃଷକମାନଙ୍କ ପାଇଁ ଲଢ଼ିଥିଲେ । ଆମେ ମଧ କୃଷକମାନଙ୍କୁ ସତ୍ୟାଗ୍ରହ ଶିକ୍ଷା ଦେଇ ସ୍ଥାନୀୟ ଜମିଦାରଙ୍କ ଶୋଷଣ ବିରୋଧରେ ଲଢ଼ିବା ।''

ଦୁଇ ବନ୍ଧୁଙ୍କ ମଧ୍ୟରେ ଅନେକ ସମୟ ଆଲୋଚନା ଚାଲିଲା । ତପସ୍ୱୀବାବୁ ଦାୟିତ୍ୱ ନେଲେ, ଦିନେ ରାତିରେ କେତେଜଣ ଚାଷୀ ଓ ଭୂମିହୀନ ମଜୁରିଆମାନଙ୍କୁ ତାଙ୍କ ଘରକୁ ଡକାଇବେ ।

ତାହାହିଁ ହେଲା । ନିଜର ଚାଳ ଘର ପିଣ୍ଡା ଉପରେ ଦିନେ ସନ୍ଧ୍ୟା ପରେ ଅନ୍ଧକାରରେ ନିଜ ଗାଁ ଓ ପାଖଆଖ ଗ୍ରାମର ପ୍ରାୟ କୋଡ଼ିଏ ପଚିଶ ଜଣ ବ୍ୟକ୍ତି ଏକତ୍ରିତ ହେଲେ । ଲଣ୍ଠନଟିଏ ଜାଳିବାକୁ ମଧ ଶ୍ୟାମାନନ୍ଦବାବୁ ନିଷେଧ କଲେ । ''ଯାହା ଆଲୋଚନା ହେବ, ତାହା ଅନ୍ଧକାରରେ, କାରଣ ଆମେସବୁ ଅନ୍ଧାରି ମୂଲକର ଅଧିବାସୀ,'' ଏହା ଥିଲା ତାଙ୍କର ପରାମର୍ଶ ।

ଦୀପ୍ତିମାନବାବୁ ପ୍ରଥମେ ଓଜସ୍ୱିନୀ ଭାଷାରେ ତାଙ୍କ ପ୍ରଦେଶର ଜମିଦାରମାନଙ୍କର ପ୍ରଜାପୀଡ଼ନ ବିଷୟ ବର୍ଣ୍ଣନା କରି ମତ ପ୍ରକାଶ କଲେ, ''ସମଗ୍ର ଭାରତବର୍ଷରେ, ସବୁ ପ୍ରଦେଶରେ ଜମିଦାରମାନେ ହେଉଛନ୍ତି ଗୋଟିଏ ଅଭିନବ ଗୋଷ୍ଠୀର ମନୁଷ୍ୟ । ନିଜର ପ୍ରଭୁତ୍ୱ ବଜାୟ ରଖିବା ଲାଗି ସେମାନେ ବିଦେଶୀମାନଙ୍କର ଗୋଲାମ ସାଜିଛନ୍ତି । ନିଜର ଭୋଗବିଳାସ ପାଇଁ ଅର୍ଥ ଶୋଷଣ କରୁଛନ୍ତି ଅସ୍ଥିକଙ୍କାଳସାର ପ୍ରଜାମାନଙ୍କ ପାଖରୁ । ଅର୍ଥ ଅପବ୍ୟୟ କରିବାଲାଗି କାତରତା ନାହିଁ । ସେମାନଙ୍କ ଅବିଚାର, ବ୍ୟଭିଚାର ଓ ଅନାଚାର ବିରୋଧରେ ସ୍ୱର ଉତ୍ତୋଳନ ଲାଗି ଏବେ ସମୟ ଆସିଯାଇଛି । ଆବଶ୍ୟକ ହେଉଛି ପ୍ରଜାମାନଙ୍କର ସାହସ ଓ ଦମ୍ଭ । ଆପଣମାନେ ଏକତ୍ରିତ ଓ ଏକତାବଦ୍ଧ ହେଲେ ଜମିଦାରମାନେ ଡରିଯିବେ । ଅନ୍ୟଥା ସେମାନେ

ଅଧିକରୁ ଅଧିକତର ଅତ୍ୟାଚାରୀ ହେବେ । ସୁତରାଂ, ଏହିଠାରୁ ଏବଂ ଆଜି ଆରମ୍ଭ କରାଯିବ ପ୍ରଜାମେଳି ବା ପ୍ରଜାଆନ୍ଦୋଳନ ।''

ଜଣେ ବୃଦ୍ଧ ଧୀବର ହାତ ଯୋଡ଼ି ଦୁଃଖ ଜଣାଇଲେ, ''ଆଜ୍ଞା, ଆମେ ମତ୍ସ୍ୟଜୀବୀମାନେ ଗଛତଳେ ପଲାମାରି ରହିଥାଉଁ । ଆମର ଘର ନାହିଁ କି ଜମି ନାହିଁ । ରହିଛି କେବଳ ପୈତୃକ ଜାଲ ଖଣ୍ଡିକ । ଦରିଆରୁ ମାଛ ଧରିବାପାଇଁ ସକାଳରୁ ସଞ୍ଜ ହୋଇଯାଏ । ଯାହା ମିଳେ, ଦୁଇ କୋଶ ବାଟ ଦୌଡ଼ି ଦୌଡ଼ି ଯାଇ ହାଟରେ ବିକ୍ରି କରି ଚାଉଳ କିଣିଲେ ବଂଶପାଇଁ ଭାତ ଫୁଟେ । କିନ୍ତୁ ଆମର ଜାଲ ପାଇଁ କର ଦେବାକୁ ହୁଏ । ମାସକୁ ଦିନେ ପାଳିକରି ଜମିଦାରଙ୍କ ଉଆସକୁ ଆମ ସମସ୍ତଙ୍କୁ ପାଞ୍ଚସେର ମାଛ ପଠାଇବାକୁ ପଡ଼େ । ନ ଦେଲେ ପିଠିରୁ ଛାଲ ଉଠିଯାଏ, ଜାଲ ମଧ୍ୟ ଛଡ଼ାଇ ନିଆଯାଏ ।''

''ଏହି ପ୍ରକାର ଶୋଷଣପାଇଁ ଧୀବରମାନଙ୍କୁ ଏକଜୁଟ୍ ହୋଇ ଶପଥ ନେବାକୁ ହେବ ଯେ ସେମାନେ ଜମିଦାରଙ୍କୁ କର ଦେବେ ନାହିଁ କିମ୍ବା ଦୈନିକ ମାଛ-ଭେଟି ଉଆସକୁ ପଠାଇବେ ନାହିଁ ।'' ପ୍ରେରଣା ଦେଲେ ଦୀପ୍ତିମାନ ସରକାର ।

ତପସ୍ୱୀବାବୁ ବୁଝାଇଲେ, ''ଆପଣମାନେ ପ୍ରତ୍ୟେକେ ଜଣେ ଜଣେ ସ୍ୱାଧୀନତା ସଂଗ୍ରାମୀ ହେବେ ବୋଲି ଶପଥ ନିଅନ୍ତୁ । ପ୍ରତ୍ୟେକେ ଜଣେ ଜଣେ ସେନାପତି ଭାବରେ ଅନ୍ୟମାନଙ୍କୁ ନିଜ ନିଜ ସୈନ୍ୟବାହିନୀରେ ଯୋଗ ଦେବାଲାଗି ବୁଝାନ୍ତୁ । ଯେତେବେଳେ ହଜାର ହଜାର ସଂଖ୍ୟାରେ ଆମେ ସମସ୍ତେ ମିଳିମିଶି ଆନ୍ଦୋଳନ ଆରମ୍ଭ କରିବା, ସେତେବେଳେ ଜମିଦାର ଭୟ ପାଇବେ, ନଚେତ୍ ନୁହେଁ ।''

ଶେଷରେ ସମସ୍ତେ ରାଜି ହେଲେ, ଆଗାମୀ ଅମାବାସ୍ୟା ତିଥିରେ ସନ୍ଧ୍ୟା ପରେ ସମୁଦ୍ର କୂଳରେ ହଜାର ହଜାର ସଂଖ୍ୟାରେ ଜନସମାବେଶ କରାଇବା ଲାଗି ସମସ୍ତେ ଉଦ୍ୟମ କରିବେ ।

ସେହି ଅମାବାସ୍ୟା ରାତି ଆସିଗଲା । ଅନ୍ଧକାର ମଧ୍ୟରେ ଦରିଆ କୂଳରେ ଦେଖିବାକୁ ମିଳିଲା ବିଶାଳ ଜନସମୁଦ୍ର । ଚାଲିଲା ଭାଷଣ ପରେ ଭାଷଣ । ସମସ୍ୱରରେ ମେଳି ଘୋଷଣା କରାଗଲା । ତେଜସ୍ୱୀ ଉଚ୍ଚ କଣ୍ଠରେ ଧ୍ୱନି ଦେଲା, 'ଇନକିଲାବ, ଜିନ୍ଦାବାଦ୍' । ଅନ୍ୟମାନେ ଧ୍ୱନି ଦେଲେ 'ଭାରତମାତା କି ଜୟ', 'ମହାତ୍ମା ଗାନ୍ଧି କି ଜୟ' ।

ସେହି ମୁହୂର୍ତ୍ତରେ ଗାଁ ଭିତରୁ ଜଣେ ବ୍ୟକ୍ତି ଦୌଡ଼ିଆସି ଦୁଃସମ୍ବାଦ ଜଣାଇଲା, ''ତପସ୍ୱୀବାବୁଙ୍କ ଘରେ ନିଆଁ ଲାଗିଛି । ପବନରେ ଅନ୍ୟ ଘରଗୁଡ଼ିକୁ ନିଆଁ ମାଡ଼ିଯାଉଛି ।''

ଦରିଆ କୂଳରୁ ଦିଶିଲା ଗାଁ ମଧରେ ବ୍ୟାପିଯାଉଛି ନିଆଁର ଲେଲିହାନ ଜିହ୍ୱା । ଆକାଶକୁ ଉଠିଯାଉଛି ପର୍ବତାକାର ଧୂଆଁ । କୋଳାହଳ ପଡ଼ିଯାଇଛି ସମଗ୍ର ଗାଁରେ । ମହିଳା ଓ ଶିଶୁମାନଙ୍କ ଆର୍ତ୍ତନାଦ ଆକାଶମଣ୍ଡଳ ପ୍ରକମ୍ପିତ କରି ଦେଉଥାଏ ।

ସମସ୍ତେ ଦୌଡ଼ିଲେ ନିଆଁ ଲିଭାଇବା ପାଇଁ । ପ୍ରବଳ ଉତ୍ତାପ ଭେଦକରି ଘରକୁ ଘର ଯିବା ସମ୍ଭବ ନ ଥାଏ ।

ବାହାରକୁ ପଳାଇ ଆସି କବିତାଦେବୀ ତପସ୍ୱୀବାବୁଙ୍କ ପୁଅଝିଅମାନଙ୍କ ହାତ ଧରି ଛିଡ଼ା ରହିଥାନ୍ତି ଅନେକ ଦୂରରେ । ଦିଶୁଥାଏ, ଗୃହଦାହର ଦାରୁଣ ଦୃଶ୍ୟ ।

॥ ୧୧ ॥

ଭୟଙ୍କର ସେହି ରଜନୀ । ଗ୍ରାମର ପୁରୁଷମାନେ ଚାଲିଯାଇଥିଲେ ବେଳାଭୂମିରେ ସଭା ଦେଖିବାପାଇଁ । ନିଜ ନିଜ ଘରେ ରହିଯାଇଥିଲେ ମହିଳାମାନେ ଏବଂ ସେମାନଙ୍କ ସନ୍ତାନସନ୍ତତି । ସଭା କାର୍ଯ୍ୟର ଶେଷ ମୁହୂର୍ତ୍ତରେ ଗାଁରେ ଲାଗିଲା ନିଆଁ । ପଲ୍ଲୀବାସୀଙ୍କ ଚାଳଘରଗୁଡ଼ିକ ପ୍ରାୟ ପାଖକୁ ପାଖ ଲାଗିଥାଏ । ସେଥିଯୋଗୁଁ ସମଗ୍ର ଗ୍ରାମଟି ଜଳି ଉଠିଥିଲା ନିଆଁରେ । କ୍ରନ୍ଦନ ଧ୍ୱନି, କୋଳାହଳ ଓ ଆର୍ତ୍ତନାଦ ମଧରେ ପୁରୁଷମାନେ ନିଜ ନିଜ ଘରକୁ ଫେରିଲା ବେଳକୁ ଅଧିକାଂଶ ଘର ପାଉଁଶଗଦାରେ ପରିଣତ ହୋଇ ସାରିଥାଏ । ମହିଳାମାନେ ପିଲାପିଲିଙ୍କୁ ଧରି ରାସ୍ତା ଉପରକୁ ପଳାଇ ଆସିଥାନ୍ତି । ଘରର ଆସବାବପତ୍ର ଉଦ୍ଧାର କରିବା ସେମାନଙ୍କ ପକ୍ଷରେ ସମ୍ଭବ ନ ଥିଲା ।

ଅସହାୟ ଅବସ୍ଥାରେ ଲୋକଙ୍କୁ ସାଙ୍ଗରେ ନେଇ ତପସ୍ୱୀବାବୁ ଓ ଦୀପ୍ତିମାନବାବୁ ଘରକୁ ଘର ଯାଇ ପୋଡ଼ିଯାଇଥିବା ସ୍ଥାନଗୁଡ଼ିକ ଦେଖୁଥିଲାବେଳେ, ଗୋଟିଏ କୁଡ଼ିଆ ଆଗରେ ବସିଥାଏ ଜଣେ ବୁଢ଼ୀ, ଆଠମାସ ବୟସର ନାତିଟିର ଦଗ୍ଧିଭୂତ ମୃତ ଦେହକୁ କୋଳରେ ଧରି । ପୁଅ ଚାଲିଯାଇଥିଲା ସଭା ସ୍ଥାନକୁ । ପିଲାଟିର ମା' ମରିଯାଇଥାଏ ଶିଶୁର ଜନ୍ମବେଳେ । ଦୀପ୍ତିମାନବାବୁଙ୍କ ଉପରେ ନଜର ପଡ଼ିଲା କ୍ଷଣି ବୃଦ୍ଧା ନିଜର କୋପ ଓ କ୍ରୋଧ ସମ୍ଭାଳି ନ ପାରି ପାଟି କଲା,

"ଏ ବାବୁ କଲିକତିଆ ନେତା ! ତୁମେ ଆମ ଗାଁକୁ କାହିଁକି ଆସିଲ ? ତୁମ ସହରରେ ସାଇବମାନେ ରାଜୁତି କରୁଛନ୍ତି । ଯଦି ତୁମର ସାହସ ଥିଲା ସେଠାରେ ଲଢ଼ିଲ ନାହିଁ ? ଚାଲିଆସିଲ ଆମ ଜମିଦାରଙ୍କ ସଙ୍ଗେ ଲଢ଼େଇ କରିବାକୁ, ଆମକୁ ବୁଝାଇବା ପାଇଁ ! ଘରପୋଡ଼ି ପାଇଁ ତୁମେ ଦାୟୀ । ମୋ ନାତିର ଜୀବନ ଫେରାଇ ଦେଇପାରିବ ?"

ଉତ୍ତର ଦେବାଲାଗି ଦୀପ୍ତିମାନ୍‌ବାବୁଙ୍କ କଣ୍ଠରେ ଭାଷା ନ ଥାଏ । ବ୍ୟଥିତ ଚିତ୍ତରେ ସେ ସେହିଠାରେ ବସିପଡ଼ିଲେ । ସେତିକିବେଳେ ଅନ୍ୟ ଗୋଟିଏ ଗ୍ରାମର ଜଣେ ବୃଦ୍ଧ ବାବାଜି ଆଖି ଆଗରେ ଦେଖିଥିବା ଦୃଶ୍ୟ ବର୍ଣ୍ଣନା କଲେ,

''ଅମାବାସ୍ୟା ତିଥିରେ ଏଠାକାର ମନ୍ଦିରରେ ପୂଜା ଦେବା ଲାଗି ଗାଁ ପଛ ବିଲ ରାସ୍ତାରେ ଚାଲିଥିଲା ବେଳେ ମୁଁ ଦେଖିଛି, ପୁରୁଷମାନେ ଦରିଆ ପାଖକୁ ବାହାରି ଗଲା ପରେ ଅନ୍ଧାର ଭିତରେ ତିନିଜଣ ଲୋକ ବିଲ ଭିତରୁ ହାତରେ ନିଆଁହୁଳା ଧରି ଘରଗୁଡ଼ିକ ପଛରୁ ଗୋଟିକ ପରେ ଗୋଟିଏ ଚାଳରେ ନିଆଁ ଲଗାଇ ଦେଲେ । ସେମାନେ ମୁହଁରେ କଳାକନା ବାନ୍ଧିଥିଲେ ଓ ହାତରେ ଲାଠି ଧରିଥିଲେ ।''

ଗ୍ରାମବାସୀମାନେ ତଟସ୍ଥ ହୋଇ ଶୁଣୁଥିବା ସମୟରେ ଶ୍ୟାମାନନ୍ଦବାବୁ ବୁଝାଇ ଦେଲେ, ''ଗତ କିଛିଦିନ ଧରି ପ୍ରଜାମେଳି ପାଇଁ ଗାଁ ଗାଁ ଆମର ଯେଉଁ ପ୍ରଚାର କାମ ଚାଲିଲା, ସେ ଖବର ଜମିଦାରଙ୍କ କାନକୁ ଚାଲିଗଲା, ତେଣୁ ସଭା ହେଉଥିବା ରାତିରେ ହିଁ ସେ ଆମମାନଙ୍କୁ ଉପଯୁକ୍ତ ଶିକ୍ଷା ଦେଇଦେଲେ । ତାଙ୍କର ଗୁଣ୍ଡାମାନେ ନିଆଁ ଲଗାଇବାକୁ ସୁଯୋଗ ପାଇଗଲେ, କାରଣ ପୁରୁଷମାନେ ଘରେ ନ ଥାନ୍ତି ।''

ସେତେବେଳକୁ ଗ୍ରାମର ପ୍ରାୟ ସମସ୍ତ ଲୋକ ସେଠାରେ ରୁଣ୍ଡ ହୋଇ ସାରିଥିଲେ । ତପସ୍ୱୀବାବୁ ବଜ୍ର ସ୍ୱରରେ ଘୋଷଣା କଲେ, ''ସମସ୍ତ ଦୋଷ ମୋର । ବନ୍ଧୁ ଦୀପ୍ତିମାନବାବୁ ଆମ ଘରକୁ ବିଶ୍ରାମ ଲାଗି ଆସିଥିଲେ । ଏଥିରେ ତାଙ୍କର କୌଣସି ଭୂମିକା ନାହିଁ । ଗୃହଦାହ ପାଇଁ ଆପଣମାନେ ଚିନ୍ତିତ ହୁଅନ୍ତୁ ନାହିଁ । ଆମେ ସମସ୍ତେ ଲାଗିପଡ଼ି ସାତଦିନ ଭିତରେ ସବୁ ଘରର ଛପର ତିଆରି କରିଦେବା । ଆମ ଘର ପୋଖରୀ ଆଡ଼ିରେ ବାଉଁଶବଣ ରହିଛି । ସେଠାରେ ଥିବା କୁଟାଗଦାରେ ନିଆଁ ଲାଗି ନାହିଁ । ପୋଡ଼ି ଯାଇଥିବା ଘରଗୁଡ଼ିକର କାନ୍ଥ ଛିଡ଼ା ରହିଛି । ଆମ ଘରର ବାଉଁଶ ଓ କୁଟାରେ ଚାଳଗୁଡ଼ିକ ଛାଇଦେବା । ଆଗାମୀ କାଲି ସକାଳ ପାଖରୁ କାମ ଆରମ୍ଭ ହେବ । ଯେଉଁମାନଙ୍କ ଲୁଗାପଟା ଓ ଆସବାବପତ୍ର ପୋଡ଼ିଯାଇଛି ସେ ସବୁ ମୁଁ ଜମି ବିକି କିଣି ଦେବି ।''

ଅନ୍ଧକାର ମଧ୍ୟରୁ ପଛରୁ ଶୁଭିଲା ଶ୍ରୀହରିବାବୁଙ୍କ ଘୋଷଣା, ''ପ୍ରତ୍ୟେକ ଘର ଲାଗି ବାସନକୁସନ, ଆସବାବପତ୍ର ଓ କପଡ଼ା ମୁଁ ଯୋଗାଇ ଦେବି । ମୋ ଗାଁ ଲୋକେ କାଲି ପାଖରୁ ଏଠାରେ କାମ କରିବାପାଇଁ ଆସିଯିବେ । ବିପଦ ବେଳେ ଭାଙ୍ଗିପଡ଼ିଲେ ଚଳିବ ନାହିଁ । ଯେଉଁ ବ୍ୟକ୍ତି ଏପରି ନୃଶଂସ ଅଗ୍ନିକାଣ୍ଡ ଘଟାଇଛି, ଈଶ୍ୱର ତାକୁ ଦଣ୍ଡ ଦେବେ ।''

ଭଗ୍ନପ୍ରାଣ ଗ୍ରାମବାସୀମାନଙ୍କ ମନରେ ଆଶାର ଆଲୋକ ସଞ୍ଚାରିତ ହେଲା । ଉପବାସ ସତ୍ତ୍ୱେ ସମସ୍ତେ ମୁକ୍ତ ଆକାଶ ତଳେ ଶୋଇଗଲେ । ପାଉଁଶ ଗଦା ତଳେ ସେତେପର୍ଯ୍ୟନ୍ତ ନିଆଁ ଦପ୍ ଦପ୍ କରୁଥାଏ । ପ୍ରଭାତ ପୂର୍ବରୁ ଶ୍ରୀହରିବାବୁଙ୍କ ଘରୁ ଆସିଗଲା ସମସ୍ତଙ୍କପାଇଁ ଚୁଡ଼ା ଓ ଗୁଡ଼ ।

ତୁଣ୍ଡ ବାଇଦ ସହସ୍ର କୋଶ । ସମଗ୍ର ଜମିଦାରୀ ଇଲାକାର ଗାଁ ଗାଁ ପ୍ରଚାର ହୋଇଗଲା ଯେ ଜମିଦାରଙ୍କ ଗୁଣ୍ଡାମାନେ ତପସ୍ୱୀବାବୁଙ୍କ ଗ୍ରାମଟିକୁ ନିଆଁରେ ପୋଡ଼ି ଧ୍ୱଂସ କରିଦେଇଛନ୍ତି । କିଏ କହିଲା, ଗୋଟିଏ ପିଲାକୁ ଜୀବନ୍ତ ପୋଡ଼ି ଦିଆଯାଇଛି, ଆଉ କିଏ କହିଲା ଜଣେ ନୁହେଁ, ଦଶ ଜଣ ଶିଶୁ ମରିଛନ୍ତି । ଗାଁ ପରେ ପରେ ଗାଁରେ ଖବର ବ୍ୟାପିଗଲା ଯେ ତପସ୍ୱୀବାବୁ ଜମିଦାରୀ ଶାସନ ବିରୋଧରେ ସଭା କରିଥିବା ଯୋଗୁଁ ତାଙ୍କୁ ଶାସ୍ତି ଦିଆଗଲା । ସେଥି ସଙ୍ଗେ ତାଙ୍କ ଗ୍ରାମର ନିରୀହ ଲୋକମାନଙ୍କୁ ମଧ୍ୟ । ଯେଉଁ ସମସ୍ତ ଗ୍ରାମର ଲୋକମାନେ ସଭାରେ ଯୋଗ ଦେଇଥିଲେ ସେହିସବୁ ଗାଁ ମଧ୍ୟ ପାଉଁଶରେ ପରିଣତ ହେବ ବୋଲି କେହି କେହି ବିଚକ୍ଷଣ ବ୍ୟକ୍ତି ସନ୍ଦେହ ପ୍ରକାଶ କଲେ । ନାନାପ୍ରକାର ଗୁଜବ ହେଲା ସାରା ଇଲାକାରେ ଚର୍ଚ୍ଚାର ବିଷୟ ।

ଚାହୁଁ ଚାହୁଁ ବିଭିନ୍ନ ଗ୍ରାମର ଯୁବକମାନେ ପ୍ରତିଶୋଧ ଲାଗି ସଂଗଠିତ ହେବାକୁ ଲାଗିଲେ । ସେମାନଙ୍କୁ ପ୍ରରୋଚନା ଦେବା ଲାଗି ବାହାର ଅଞ୍ଚଳର ବିପ୍ଳବୀମାନେ ଆସିଗଲେ । ପ୍ରସ୍ତାବିତ ପ୍ରଜାମେଳିକୁ ବାସ୍ତବ ରୂପ ଦେବା ନିମନ୍ତେ ଅଗ୍ନିକାଣ୍ଡର ବିଭୀଷିକାକୁ ଏକ ଅମୋଘ ଅସ୍ତ୍ର ରୂପେ ବ୍ୟବହାର କରାଗଲା । ଉତ୍ତ୍ୟକ୍ତ ଯୁବକମାନେ ଘରକୁ ଘର ଯାଇ ପ୍ରଜାମାନଙ୍କୁ ବିଦ୍ରୋହ ବାର୍ତ୍ତା ଶୁଣାଇଲେ । ଭୀରୁ ଓ କାପୁରୁଷ ଭାବରେ ଜମିଦାରଙ୍କ ବୀଭତ୍ସ କାଣ୍ଡ ସହ୍ୟ କରିବା ଉଚିତ ନୁହେଁ ବୋଲି ପ୍ରଚାରକମାନେ ଉତ୍ତେଜନା ସୃଷ୍ଟି କଲେ । ସମଗ୍ର ଜମିଦାରୀ ଅଞ୍ଚଳରେ ଏକ ସରଗରମ ପରିସ୍ଥିତି ଦେଖିବାକୁ ମିଳିଲା ।

ଶେଷରେ ଦିନେ ରାତିରେ କେତେଜଣ ଯୁବକ ଅତର୍କିତ ଭାବରେ ଆକ୍ରମଣ କଲେ ନିକଟବର୍ତ୍ତୀ ସ୍ଥାନରେ ଥିବା ଜମିଦାରଙ୍କ କଚେରି ଘର ଉପରେ । ସେଠାରେ ରହୁଥାନ୍ତି ନାଏବବାବୁ, ତିନିଜଣ ଖଜଣା ଆଦାୟକାରୀ ଏବଂ ଦୁଇଜଣ ଗୁମାସ୍ତା । ଅକସ୍ମାତ୍ କଚେରି ଉପରେ ଆକ୍ରମଣ ଦେଖି ନାଏବବାବୁ ଝରକା ଖୋଲି ବନ୍ଧୁକରୁ ଗୁଳି ଚଳାଇଲେ । ଗୁଳି ବାଜିଲା ଜଣେ ଦରିଦ୍ର ଦେଖଣାହାରିର ଛାତିରେ । ଚିତ୍କାର କରି ସେ ମରି ପଡ଼ିଯିବା ଦେଖି ଉତ୍ତ୍ୟକ୍ତ ଜନତା କଚେରି ଘର ଚତୁର୍ଦ୍ଦିଗ ଘେରିଯାଇ ଚାରିପଟରୁ ନିଆଁ ଲଗାଇଦେଲେ । ଯେଉଁମାନେ କବାଟ ଭାଙ୍ଗି ବାହାରକୁ ପଳାଇ

ଆସିଲେ, ସେମାନେ ଠେଙ୍ଗା ମାଡ଼ର ଶିକାର ହେଲେ । ନିଜେ ନାଏବବାବୁ ପ୍ରବଳ ଢେଲାମାଡ଼ରେ ପ୍ରାଣ ହରାଇଲେ ।

କଚେରି ପୋଡ଼ି ସମ୍ବାଦ ତଡ଼ିତ୍ ଗତିରେ ଜମିଦାରଙ୍କ କର୍ଣ୍ଣଗୋଚର ହେଲା । ପ୍ରଭୁଭକ୍ତ ନାଏବଙ୍କ ମୃତ୍ୟୁ ଘଟଣାରେ ସେ ମ୍ରିୟମାଣ ହୋଇପଡ଼ିଲେ । ସେଥିସହ ଅନୁଭବ କଲେ ଛାତିରେ ଯନ୍ତ୍ରଣା । ତାଙ୍କୁ ସଙ୍ଗେ ସଙ୍ଗେ ବିଛଣାରେ ଶୁଆଇ ଦିଆଗଲା । ଜଣେ ଆତ୍ମୀୟ ଡାକ୍ତର ଡାକିବା ଲାଗି ସାଇକେଲରେ ଧାଇଁଲେ ।

ତାଙ୍କ ପୁତ୍ର ସେତେବେଳକୁ ଅଗ୍ନିଶର୍ମା ରୂପ ଧାରଣ କରିସାରିଥିଲେ । କ୍ରୋଧ ଜର୍ଜରିତ ଅବସ୍ଥାରେ ଘୋଡ଼ା ପିଠିକୁ ଉଠିଲା ପୂର୍ବରୁ ଇଂରାଜୀ ଜାଣିଥିବା ଜଣେ ହାଇସ୍କୁଲ ଶିକ୍ଷକଙ୍କୁ ପିଆଦା ପଠାଇ ଡାକିଆଣିଲେ । ଶିକ୍ଷକଙ୍କ ଭୟ ପ୍ରତି ଭ୍ରୂକ୍ଷେପ ନ କରି ତାଙ୍କୁ ଘୋଡ଼ା ଉପରେ ବସାଇ ଦିଆଗଲା । ପଛରେ ବସିଲେ ଜମିଦାର ପୁତ୍ର । ପିଠିରେ ଚାବୁକ୍ ବସିଲା ମାତ୍ରେ ଘୋଡ଼ା ଦୌଡ଼ିବାକୁ ଲାଗିଲା । ଗନ୍ତବ୍ୟ ସ୍ଥାନ ଥାଏ ଦୂରବର୍ତ୍ତୀ ସହରରେ ଥିବା ଇଂରେଜ ପୋଲିସ ଇନ୍ସପେକ୍ଟରଙ୍କ କୋଠି । ଧମକ ଚମକ ସହ ଶିକ୍ଷକଙ୍କୁ ଶିଖାଇ ଦିଆଗଲା ସାହେବଙ୍କ ସମ୍ମୁଖରେ କେଉଁପ୍ରକାର ବାକ୍ୟ କହିବାକୁ ହେବ ।

ଇନ୍ସପେକ୍ଟର ସାହେବ କୋଠି ସମ୍ମୁଖସ୍ଥ ବଗିଚାରେ ଚେୟାର ପକାଇ ଦୁଇଜଣ ଗୋରା ଅଫିସରଙ୍କ ସହିତ କଥାବାର୍ତ୍ତା କରୁଥିଲେ । ଜମିଦାରପୁତ୍ର ହାତଯୋଡ଼ ଅବସ୍ଥାରେ ଛିଡ଼ା ରହି ଭଙ୍ଗା ଭଙ୍ଗା ହିନ୍ଦୀ ଭାଷାରେ ପ୍ରଜାମେଳି ବିଷୟରେ ବିଶଦ ବର୍ଣ୍ଣନା କରିଗଲେ । ତାଙ୍କୁ ଜଣାଇ ଦିଆଗଲା ଯେ ତପସ୍ୱୀନାମକ ନେତା କଲିକତାରୁ ଜଣେ ଭଡ଼ାଟିଆ କଂଗ୍ରେସୀ ଗୁଣ୍ଡାର ସାହାଯ୍ୟରେ ଗାଁରେ ନିଆଁ ଲଗାଇ ଦେଇ ପ୍ରଜାମେଳି ଆରମ୍ଭ କରିଛି । ପ୍ରଜାମାନଙ୍କୁ ଉତ୍ତେଜିତ କରି ସେହି ଦୁଇ ଗୁଣ୍ଡା ନେତା ଜମିଦାରଙ୍କ କଚେରିରେ ନିଆଁ ଲଗାଇ ସେଠାକାର କର୍ମଚାରୀମାନଙ୍କୁ ଲାଠିରେ ପିଟି ପିଟି ମାରି ଦେଇଛନ୍ତି । ସର୍ବମୋଟ୍ ସାତଜଣ ମରିଛନ୍ତି ।

ଇନ୍ସପେକ୍ଟର ସାହେବ ଗର୍ଜନ କରି ଉଠିଲେ, "What ? Murder of seven persons of the landlord ? Terrible, terrible ! A most violent incident !"

ଶିକ୍ଷକ ମହାଶୟ ଇଂରାଜୀରେ ବିଶ୍ଳେଷଣ କରିଦେଲେ ଯେ, ନାଏବ ହେଉଛନ୍ତି ଜମିଦାରଙ୍କ ପ୍ରତିନିଧି ଠିକ୍‌ ଯେପରି ଭାଇସ୍‌ରୟ ହେଉଛନ୍ତି ମହାମାନ୍ୟ ସମ୍ରାଟ୍‌ଙ୍କ ପ୍ରତିନିଧି । ସାଂକେତିକ ଅର୍ଥରେ ଜମିଦାରଙ୍କ କଚେରି ହେଉଛି ସମ୍ରାଟ୍‌ଙ୍କ ରାଜପ୍ରାସାଦ ତୁଲ୍ୟ କ୍ଷମତା କେନ୍ଦ୍ର । କଚେରି ଉପରେ ଆକ୍ରମଣର ଅର୍ଥ ସାମ୍ରାଜ୍ୟ ଉପରେ ଆକ୍ରମଣ ।

ସାତଜଣ କର୍ମଚାରୀଙ୍କୁ ହତ୍ୟା କରିବା ଅର୍ଥ ସମ୍ରାଟ୍‌ଙ୍କ ବିରୋଧରେ ଯୁଦ୍ଧ ଘୋଷଣା । କଂଗ୍ରେସ ଆନ୍ଦୋଳନ ସହିତ ଏପରି ହିଂସାକାଣ୍ଡର ସମ୍ପର୍କ ନାହିଁ ।

ସାହେବ ପୁନର୍ବାର ଗର୍ଜନ କଲେ, "I understand what you mean". ପୁଲିସ ଫୋର୍ସ ତତ୍‌କ୍ଷଣାତ୍ ବିଦ୍ରୋହ ଦମନ ଲାଗି ପ୍ରସ୍ତୁତ ହେଲେ । ସାହେବମାନେ ଘୋଡ଼ାରେ ଯିବା ଲାଗି ପ୍ରସ୍ତୁତ ହେବା ପୂର୍ବରୁ ଜମିଦାର-ପୁତ୍ର ସେମାନଙ୍କ ଅଭ୍ୟର୍ଥନା ଲାଗି ବନ୍ଦୋବସ୍ତ କରିବା ଉଦ୍ଦେଶ୍ୟରେ ଦ୍ରୁତ ଗତିରେ ଅଶ୍ୱଚାଳନା କଲେ ।

କଚେରି ପୋଡ଼ି ଖବର ଶୁଣିଲା ପାଖରୁ ତପସ୍ୱୀବାବୁ ଓ ଦୀପ୍ତିମାନବାବୁ ଚିନ୍ତିତ ହୋଇ ପଡ଼ିଥିଲେ । ଘଟଣାର ଅନୁସନ୍ଧାନ କରିବା ଆବଶ୍ୟକ ବୋଲି ସିଦ୍ଧାନ୍ତ ନେବା ସଙ୍ଗେ ପୁନର୍ବାର ଯେପରି ହିଂସାତ୍ମକ କାଣ୍ଡ ନ ଘଟେ ସେଥିଲାଗି ଗ୍ରାମ ପରେ ଗ୍ରାମ ଭ୍ରମଣ କରି ଲୋକମାନଙ୍କୁ ଶାନ୍ତ ରହିବାକୁ ଉପଦେଶ ଦେବେ ବୋଲି ନିଷ୍ପତ୍ତି ନେଲେ ।

ଗୋଟିଏ ଦିନ ପରେ ଜଣେ ଲୋକ ଦୌଡ଼ି ଦୌଡ଼ି ଆସି ତପସ୍ୱୀବାବୁଙ୍କ କାନ ପାଖରେ ଗୋପନ ସମ୍ବାଦ ଦେଲା ଯେ କଚେରି ପୋଡ଼ି ଓ ହିଂସାକାଣ୍ଡର ଖବର ପାଇ ପୁଲିସ ସାହେବ ଫୋର୍ସ ଧରି ନିକଟବର୍ତ୍ତୀ ଗୋଟିଏ ସ୍ଥାନରେ ତମ୍ବୁ ପକାଇ ରହିଗଲେଣି । ଯେକୌଣସି ସମୟରେ ସେମାନେ ତଦନ୍ତ କରିବାକୁ ଆସିଯିବେ ।

ଶ୍ୟାମାନନ୍ଦବାବୁ ନିଜ ଘରକୁ ତପସ୍ୱୀବାବୁ ଓ ଦୀପ୍ତିମାନବାବୁଙ୍କୁ ଡକାଇ ନେଇ ପରାମର୍ଶ ଦେଲେ, ''ତୁମେ ଦୁଇବନ୍ଧୁ ଏ ଗାଁରୁ ଅବିଳମ୍ବେ ବିଦାୟ ନେବା ଉଚିତ । ମୋର ଭୟ ହେଉଛି, ପ୍ରଜାମେଳି ପାଇଁ ପୁଲିସ ତୁମ ଦୁଇଜଣଙ୍କୁ ଦାୟୀ କରିପାରେ ।''

''ହଁ, ମେଳି ଲାଗି ଆମେ ସଭା ଆୟୋଜନ କରିଥିଲୁଁ, ଏ କଥା ଆମେ ସ୍ୱୀକାର କରିବୁଁ । କିନ୍ତୁ ଜମିଦାରଙ୍କ ଲୋକମାନେ ଆମ ଗାଁ ପୋଡ଼ିଥିବା କଥା ମଧ୍ୟ ଜଣାଇ ଦେବୁଁ ଏବଂ ପାଉଁଶ ଗଦାମାନ ଦେଖାଇ ପାରିବୁଁ । ତେବେ, କଚେରିରେ ଘଟିଥିବା ହିଂସାକାଣ୍ଡ ସହିତ ଆମର କୌଣସି ସମ୍ପର୍କ ନାହିଁ ବୋଲି କହିବା ସହିତ ଯେଉଁମାନେ ସେଥିପାଇଁ ଦାୟୀ ସେମାନଙ୍କୁ ଆମେ ଜାଣି ନାହୁଁ ବୋଲି ସ୍ପଷ୍ଟ ଭାବରେ ବ୍ୟକ୍ତ କରିବୁଁ,'' ଦମ୍ଭ ସହକାରେ କହିଲେ ତପସ୍ୱୀ ।

ଦୀପ୍ତିମାନବାବୁ ମତ ଦେଲେ, ''ପୁଲିସ ଆସିବ ସରକାରଙ୍କ ତରଫରୁ । ପ୍ରଜାମେଳି ଆରମ୍ଭ ହୋଇଯାଇଛି, ବନ୍ଦ ହେବ ନାହିଁ, ହିଂସାତ୍ମକ ଆନ୍ଦୋଳନ ପ୍ରତି ଆମ ଗାନ୍ଧିବାଦୀମାନଙ୍କର ସମର୍ଥନ ନାହିଁ ବୋଲି ସରକାର ଜାଣନ୍ତି । ଏକଥା ମଧ୍ୟ ସରକାରଙ୍କୁ ଜଣା ଅଛି ଯେ ଶାନ୍ତି ସ୍ଥାପନ ନିମନ୍ତେ ଆମ ପରି କଂଗ୍ରେସ କର୍ମୀମାନେ

ସଦାବେଳେ ପ୍ରସ୍ତୁତ । ସରକାର ଅନୁସନ୍ଧାନ କରିବା ଉଚିତ ଯେ ପ୍ରଜାଆନ୍ଦୋଳନର କାରଣ କ'ଣ ହୋଇପାରେ ଏବଂ ହିଂସାକାଣ୍ଡ କାହିଁକି ଘଟିଲା । ହିଂସା ପାଇଁ ଦାୟୀ କିଏ ? ଜମିଦାରଙ୍କ ଗୁଣ୍ଡାମାନେ ଯଦି ଗୋଟିଏ ଗ୍ରାମକୁ ଅଗ୍ନିସ୍ତୂପରେ ପରିଣତ କରି ନ ଥାନ୍ତେ ତେବେ ଉତ୍ତ୍ୟକ୍ତ ପ୍ରଜାମାନେ କଚେରି ଘରେ ନିଆଁ ଲଗାଇ ନ ଥାନ୍ତେ । ଜମିଦାରମାନଙ୍କ ଅତ୍ୟାଚାର ବିଷୟ ସରକାରଙ୍କ ଦୃଷ୍ଟିକୁ ଆଣିବା ଉଦ୍ଦେଶ୍ୟରେ ଏପରି ଆନ୍ଦୋଳନର ଆବଶ୍ୟକତା ରହିଛି । ବରଂ ଭଲ ହେଲା ଯେ ଆମର କାର୍ଯ୍ୟ ଯୋଗୁଁ ସରକାରଙ୍କ ନିଦ୍ରାଭଙ୍ଗ ହେବ ।''

ଶ୍ୟାମାନନ୍ଦବାବୁ ଉଭୟ ନେତାଙ୍କ କଥା ଶୁଣି ନିଜର ମନୋଭାବ ପ୍ରକାଶ କରିପାରିଲେ ନାହିଁ । କିନ୍ତୁ ତାଙ୍କର ଆଶଙ୍କା ଲାଗି ରହିଲା ଯେ ପୁଲିସ ପ୍ରଥମେ ଏହି ଦୁଇ ବ୍ୟକ୍ତିଙ୍କୁ ଗିରଫ କରିପାରେ, କାରଣ ମେଳି ଲାଗି ସଭା ଆୟୋଜନ କରିଥିଲେ ଏହି ଦୁଇ ବନ୍ଧୁ ଏବଂ ଉଭୟେ ହେଉଛନ୍ତି କଂଗ୍ରେସର ନେତା । ପ୍ରଜାଆନ୍ଦୋଳନର କାରଣ ଯାହା ହେଉନା କାହିଁକି, ପୁଲିସ ଓ ସରକାର ପ୍ରଥମେ ଦୃଷ୍ଟି ଦେବେ ନାଏବବାବୁ ଏବଂ ତାଙ୍କ କର୍ମଚାରୀମାନଙ୍କ ଶୋଚନୀୟ ମୃତ୍ୟୁ ପ୍ରତି । ନରହତ୍ୟା ହେଉଛି ଗୁରୁତର ଅପରାଧ । ସେହି ଧର୍ତ୍ତବ୍ୟ ଅପରାଧର କାରଣ ଖୋଜିଲେ ଉତ୍ତ୍ୟକ୍ତ ପ୍ରଜାମାନଙ୍କୁ ବିଦ୍ରୋହର ମନ୍ତ୍ର ଦେଇଛନ୍ତି ଏହି ଦୁଇଜଣ ନେତା । ନିଜର କ୍ଷୁଦ୍ର ବୁଦ୍ଧିରେ ସେ ଯାହା ଅନୁମାନ କରିଗଲେ, ସେହିପରି ଅନୁମାନ ଶକ୍ତି ଦୁଇ ବିଚକ୍ଷଣ ସଂଗ୍ରାମୀଙ୍କର ନାହିଁ ବୋଲି ଜାଣିପାରି ଶ୍ୟାମାନନ୍ଦବାବୁ ବିସ୍ମିତ ହେଲେ ।

ଶେଷରେ ସେ କହିଲେ, ''ତୁମେ ଦୁହେଁ ମେଳି ଆରମ୍ଭ କରିଛ । ବର୍ତ୍ତମାନ ସରକାରଙ୍କ ମୁକାବିଲା କରିବା ହେଉଛି ତୁମମାନଙ୍କର କର୍ତ୍ତବ୍ୟ । ଦରକାର ହେଲେ, କଂଗ୍ରେସ କର୍ତ୍ତୃପକ୍ଷଙ୍କୁ ଘଟଣାଚକ୍ର ମଧ୍ୟକୁ ଟାଣିଆଣ । ସ୍ୱୟଂ ମହାତ୍ମାଗାନ୍ଧି ମଧ୍ୟ ସରକାରଙ୍କୁ ଆବେଦନ ଜଣାଇପାରିବେ ଯେ ଜମିଦାରଙ୍କ ପକ୍ଷ ନେଇ ଦରିଦ୍ର ପ୍ରଜାମାନଙ୍କ ପ୍ରତି ଅବିଚାର କରା ନ ଯାଉ । ମୁଁ କେବଳ ଏତିକି ଅନୁରୋଧ କରିବି ଯେ କବିତାଦେବୀ ଏବଂ ପିଲାମାନଙ୍କୁ ମୋ ଘରେ କିମ୍ବା ଅନ୍ୟତ୍ର ଲୁଚାଇ ରଖିବି । ପୁଲିସ ଆସିବା ପୂର୍ବରୁ ସେମାନଙ୍କୁ ମୋ ହାତକୁ ଛାଡ଼ିଦିଅ ।''

ଦୁଇବନ୍ଧୁ ପରସ୍ପର ଦିଗକୁ ଚାହିଁରହିଲେ । କବିତାଦେବୀ ସମ୍ମୁଖକୁ ଆସି କହିଲେ, ''ଆପଣ ପିଲାମାନଙ୍କୁ ଯେଉଁଠାକୁ ଇଚ୍ଛା ନେଇଯାଇପାରନ୍ତି । କିନ୍ତୁ ମୁଁ ମୋ ସ୍ୱାମୀଙ୍କ ପାଖରେ ରହିବି । ପୁଲିସ ତାଙ୍କୁ ଗିରଫ କଲାବେଳେ ମୁଁ ମଧ୍ୟ ହାତକଡ଼ି ପିନ୍ଧିବା ଲାଗି ମୋ ହାତଦୁଇଟି ଦେଖାଇ ଦେବି ।''

ଦୀପ୍ତିମାନବାବୁ ପ୍ରତିବାଦ କଲେ, ''ଯଦି ପ୍ରକୃତ ପକ୍ଷେ ପୁଲିସ୍ ଆମ ଦୁହିଁଙ୍କୁ ମେଳିପାଇଁ ଦାୟୀ କରି ଧରିନିଏ, ତୁମେ ବାହାରେ ନ ରହିଲେ ଚାରିଜଣ ପିଲାପିଲିଙ୍କ ଦେଖାଶୁଣା କରିବ କିଏ ? ମମତାଦେବୀ ରହିଲେ ଅନେକ ଦୂରରେ । ତାଙ୍କ ଅନୁପସ୍ଥିତିରେ ବର୍ତ୍ତମାନ ତୁମେ ହେଉଛ ସେମାନଙ୍କ ମା' । ମୋର ଅନୁରୋଧ, ତୁମେ ଶ୍ୟାମକକାଙ୍କ କଥା ମାନି ପିଲାମାନଙ୍କ ସହିତ ତାଙ୍କ ଘରକୁ ଚାଲିଯାଅ । ଆମ ଦୁହିଁଙ୍କୁ ଯଦି ଜେଲ୍ ଯିବାକୁ ହୁଏ, ତୁମେ ପିଲାମାନଙ୍କୁ ନେଇ କଲିକତାରେ ନିଜ ପାଖରେ ରଖିବ ଏବଂ ଡକ୍ଟର ରାୟଙ୍କୁ ନିବେଦନ ଜଣାଇ ସେମାନଙ୍କୁ ଜାତୀୟ ବିଦ୍ୟାଳୟରେ ଭର୍ତ୍ତି କରିଦେବ । କରୁଣା ବଡ଼ ହେଲା ପରେ ତାକୁ ନିଜ ଝିଅ ବୋଲି ଭାବି ତମରି ବିଦ୍ୟାଳୟର ପ୍ରାଥମିକ ସ୍ତରରେ ଭର୍ତ୍ତି କରାଇ ଦେବ ।''

ଶ୍ୟାମାନନ୍ଦବାବୁ ଭୟ ପ୍ରକାଶପୂର୍ବକ ଅତି ଶୀଘ୍ର ସେମାନଙ୍କୁ ନିଜ ଘରକୁ ନେଇ ଯିବାକୁ ଜିଦ୍ ଧରିଲେ । ଜଣାଇଦେଲେ, ''ମୁଁ ପ୍ରକୃତପକ୍ଷେ ଏମାନଙ୍କୁ ମୋ ଘରେ ରଖିବି ନାହିଁ, ମୋର ଜଣେ ଦୂରବର୍ତ୍ତୀ ଆତ୍ମୀୟଙ୍କ ଘରକୁ ପଠାଇଦେବି । ସେଠାରେ ସମ୍ପୂର୍ଣ୍ଣ ନିରାପଦ ରହିବେ । ଏ ବିଷୟରେ ଅଧିକ ଆଲୋଚନା ପାଇଁ ଏହା ଉପଯୁକ୍ତ ସମୟ ନୁହେଁ । ତୁରନ୍ତ ପଦକ୍ଷେପ୍ ନ ନେଲେ ଅନୁତାପ କରିବାକୁ ହେବ ।''

ମଧ୍ୟାହ୍ନ ଭୋଜନ ବେଳକୁ ଜଣେ ବ୍ୟକ୍ତି ଦୂରସ୍ଥାନରୁ ଦୌଡ଼ି ଦୌଡ଼ି ଆସି ତପସ୍ୱୀବାବୁଙ୍କୁ ଖବର ଦେଲା, ''ଇଂରେଜ ଇନ୍ସପେକ୍ଟର ଦଳ ଦଳ ବନ୍ଧୁକଧାରୀ ପୁଲିସ ସହିତ ଆସୁଛି ବୋଲି ଜମିଦାରଙ୍କ କଚେରି ଜଗିଥିବା ଜଣେ କନଷ୍ଟେବଲଙ୍କ ମୁହଁରୁ ଶୁଣିଆସିଲି ।''

ତପସ୍ୱୀବାବୁ ଚିନ୍ତିତ ହେଲେ, କିନ୍ତୁ ଭୟଭୀତ ହେଲେ ନାହିଁ । ଦୀପ୍ତିମାନବାବୁ କବିତାଦେବୀଙ୍କୁ ବୁଝାଇଲେ, ''ମୋ କଥା ମାନିନିଅ । ଲୁଗାପଟା ଧରି ପିଲାମାନଙ୍କୁ ସାଙ୍ଗରେ ନେଇ ଶ୍ୟାମାନନ୍ଦବାବୁଙ୍କ ଘରକୁ ଚାଲିଯାଅ । ଆମେ ଦୁହେଁ ଏଠାରେ ରହିଛୁଁ ଏବଂ ରହିବୁଁ । ଆମ ବିଷୟ ଚିନ୍ତା କର ନାହିଁ । ଖୁବ୍ ବେଶିରେ ପୁଲିସ ଆମ ଦୁହିଁଙ୍କୁ ଥାନାକୁ ଧରିନେବେ । ସେଠାରେ ଅନ୍ୟ ସ୍ଥାନକୁ ନେବାଲାଗି ସାହସ କରିବେ ନାହିଁ । କାରଣ ହଜାର ହଜାର ପ୍ରଜା ବାଧା ଦେବେ । ସରକାରଙ୍କର ମଧ୍ୟ ଭୟ ଅଛି । ତାହାହିଁ ଆମର ସାହସ ।''

## ॥ ୧୨ ॥

ତହିଁ ପରଦିନ ସକାଳ ପାଖରୁ ତପସ୍ୱୀବାବୁ ଗ୍ରାମବାସୀମାନଙ୍କୁ ସଙ୍ଗଠିତ କରି ଲାଗିପଡ଼ିଲେ ପ୍ରତ୍ୟେକ ଘରର ଛପର ତିଆରି କାମରେ । ତେଣେ, ପୁଅ ତେଜସ୍ୱୀ ସାଇକେଲ ଖଣ୍ଡିଏ ଯୋଗାଡ଼ କରି ଗୋପନରେ ଚାଲିଯାଉଥାଏ ପୁଲିସ ଫୋର୍ସର ଗତିବିଧି ସମ୍ବାଦ ସଂଗ୍ରହ କରିବା ଲାଗି । ଜଣେ ଧୀବର ପାଖରୁ ଶୁଣିଲା, ଜମିଦାରଙ୍କ ପିଆଦାମାନେ ସକାଳେ ଆସି ରାତି ମଧ୍ୟରେ ଧରିଥିବା ମାଛସବୁ ଲୁଟି ନେଇ ଯାଇଛନ୍ତି ପୁଲିସମାନଙ୍କ ଚର୍ଚ୍ଚା ପାଇଁ । ପରେ ପରେ ଶୁଣିପାରିଲା ସାହେବ ତିନିଜଣ ପହଞ୍ଚିଗଲେଣି ଅର୍ଦ୍ଧଦଗ୍ଧ କଚେରି ଘରେ । ସେହି ସ୍ଥାନରୁ ଆରମ୍ଭ କରାଯାଇଛି ଅନୁସନ୍ଧାନ କାର୍ଯ୍ୟ ।

ସନ୍ଧ୍ୟା ସମୟରେ ଶ୍ୟାମାନନ୍ଦବାବୁ ସମ୍ବାଦ ପାଇଗଲେ ରାତି ମଧ୍ୟରେ ତାଙ୍କ ଗ୍ରାମ ଉପରେ ଚଢ଼ାଉ ହେବାର ସମ୍ଭାବନା ରହିଛି । ତପସ୍ୱୀବାବୁଙ୍କୁ ଏକଥା ଜଣାଇଲାରୁ ସେ ଉତ୍ତର ଦେଲେ, "ଆମେ ପ୍ରସ୍ତୁତ ଅଛୁଁ । ଗ୍ରାମବାସୀମାନେ ମିଳିତ ଭାବରେ ପୁଲିସ ଆଗରେ ବୟାନ ଦେବେ ଯେ ଜମିଦାରଙ୍କ ଗୁଣ୍ଡାମାନେ ଗାଁରେ ନିଆଁ ଲଗାଇଥିଲେ ।"

"ମୁଁ ତମ କଥା କିମ୍ବା ତୁମ ବନ୍ଧୁଙ୍କ କଥା କହୁ ନାହିଁ । ଗାନ୍ଧିଙ୍କ ସଂଗ୍ରାମୀମାନେ ଅତ୍ୟନ୍ତ ଅବୁଝା ଲୋକ ବୋଲି ମୁଁ ଶୁଣିଛି । ମୋତେ ଅନୁମତି ଦିଅ, ଅନ୍ଧକାର ମଧ୍ୟରେ କବିତାଦେବୀ ଏବଂ ପିଲା ଚାରିଜଣଙ୍କୁ ନେଇ ଦୂର ସ୍ଥାନକୁ ଚାଲିଯିବି," କହିଲେ ଶ୍ୟାମାନନ୍ଦବାବୁ ।

ତେଜସ୍ୱୀ ପାଟି କଲା, "ନା, ମୁଁ ମୋ ବାବାଙ୍କୁ ଛାଡ଼ି ଯିବି ନାହିଁ । ପଛଘୁଞ୍ଚା ନାହିଁ ବୀରର ଜାତକେ ... ।"

ତା ବାକ୍ୟ ଶେଷ ହେବା ପୂର୍ବରୁ ଶ୍ୟାମାନନ୍ଦବାବୁ ରାଗି ଉଠିଲେ, "ଚୁପ୍ କର । ତୁ ଗୋଟିଏ କାଲିକା ପିଲା ! ତୁ କ'ଣ ଜାଣିଛୁ, ପୁଲିସ କ'ଣ କରିପାରେ ବା ନ ପାରେ ?"

ଶ୍ୟାମାନନ୍ଦବାବୁ ସସ୍ନେହ ଦୃଷ୍ଟିରେ କବିତାଙ୍କ ଆଖିକୁ ଚାହିଁ କହିଲେ, "ମା', ତୁମେ ମୋର ଝିଅ । ପୁଲିସଦଳ ଆସିଯିବେ ଜାଣି ମୁଁ ତୁମକୁ କଦାପି ଏଠାରେ ରହିବାକୁ ଦେବି ନାହିଁ । ଅଧଘଣ୍ଟାଏ ମଧ୍ୟରେ ଖିଆପିଆ ଶେଷ କରି ମୋ ସହିତ ବାହାରି ଚାଲ ।"

ତାଙ୍କ ଭଉଣୀ ରନ୍ଧାବଢ଼ା ଶେଷ ହେଲାଣି ବୋଲି ଜଣାଇଲେ । ପଂକ୍ତି ଭୋଜନରେ ବସିଗଲେ ତପସ୍ୱୀବାବୁ, ଦୀପ୍ତିମାନବାବୁ, କବିତାଦେବୀ ଓ ପିଲାମାନେ । ଭୋଜନ ସରିଲା ବେଳକୁ ହାତରେ ଲଣ୍ଠନ ଓ ସାଙ୍ଗରେ ଦୁଇଜଣ ବଳବାନ୍ ବ୍ୟକ୍ତିଙ୍କ ସହ ପହଞ୍ଚିଗଲେ ଶ୍ୟାମାନନ୍ଦବାବୁ । ଅଳ୍ପ ସମୟ ମଧ୍ୟରେ ସେମାନେ ଘର ପଛ ବିଲ ପଥରେ ଅଦୃଶ୍ୟ ହୋଇଗଲେ । ଅନେକ ଦୂରରୁ ଦିଶୁଥାଏ ଲଣ୍ଠନର ମିଞ୍ଜି ମିଞ୍ଜି ଆଲୁଅ । ଚାହୁଁ ଚାହୁଁ ତାହା ମଧ୍ୟ ଅଦୃଶ୍ୟ ହେଲା । ବିଦାୟ ଦୃଶ୍ୟ ଦେଖୁଥିବା ଦୁଇବନ୍ଧୁ ଘର ଭିତରକୁ ଫେରିଆସି ନୂଆ ଛପର ପଡ଼ିଥିବା ଗୋଟିଏ କୋଠରି ମଧ୍ୟରେ ଶେଯ ପକାଇ ଶୋଇପଡ଼ିଲେ ।

ନିଦ ଲାଗିଯାଇଥାଏ । ହଠାତ୍ ମଧ୍ୟରାତ୍ରିରେ ଘର ଚାରିପାଖରେ ଶୁଭିଲା କେତେକ ଲୋକର ଦୌଡ଼ାଦୌଡ଼ି କରିବା ଶବ୍ଦ । କ୍ଷଣକ ମଧ୍ୟରେ ବାହାର ପିଣ୍ଡାରେ ଗୁଳିଚାଳନା ଶବ୍ଦ ଶୁଣି ତପସ୍ୱୀବାବୁ ବାହାରି ପଡ଼ିଲେ । ପଛେ ପଛେ ଆସିଗଲେ ଦୀପ୍ତିମାନ ସରକାର ।

ଅଶ୍ୱାରୋହୀ ସାହେବ ଆଦେଶ ଦେଲେ, ''ଗିରଫ୍ କର ।'' ସେତେବେଳକୁ ଘର ଚାରି ଦିଗରେ ଘେରି ରହିଥାନ୍ତି ବନ୍ଧୁକଧାରୀ ପୁଲିସ । କେତେଜଣ ଭିତରକୁ ପଶିଯାଇ ଖାନତଲାସ ଆରମ୍ଭ କଲେ, ନିସ୍ତବ୍ଧ ଗାଁଟି ଚଳଚଞ୍ଚଳ ହୋଇଉଠିଲା ପରି ବୋଧ ହେଲା । ବିଭିନ୍ନ ଦିଗରୁ ଲୋକଙ୍କର କଣ୍ଠସ୍ୱର ଶୁଭିଲା । ସାହେବ ପାଟି କରି କହିଲେ, ''ଚଳାଓ ଗୁଳି ।'' କେତେଗୋଟି ଗୁଳି ଶବ୍ଦ ଆକାଶକୁ ଭେଦ କଲାବେଳକୁ ପୁନର୍ବାର ବ୍ୟାପିଗଲା ରାତ୍ରିର ନୀରବତା ।

ଜଣେ ଭାରତୀୟ ପୁଲିସ କର୍ମଚାରୀ କର୍କଶ କଣ୍ଠରେ ପଚାରିଲେ, ''କଲିକତାରୁ ଆସିଥିବା ନେତାଟା କିଏ ?''

''ମୁଁ କଲିକତାରୁ ଆସିଛି । ମୋର ନାମ ଦୀପ୍ତିମାନ ସରକାର,'' ଶିକୁଳି ପିନ୍ଧି ସାରିଥିବା ଦୀପ୍ତିମାନବାବୁ ଉତ୍ତର ଦେଲେ ।

''ସେତେ ଦୂରରୁ ଏପରି ନିପଟ ମଫସଲ ଅଞ୍ଚଳକୁ ଆସିଥିଲୁ କାହିଁକି ?'' ତପସ୍ୱୀବାବୁ ଏ ପ୍ରଶ୍ନର ଉତ୍ତର ଦେଲେ, ''ସମୁଦ୍ରକୂଳରେ ଏକମାସ ବିଶ୍ରାମ ନେବା ଲାଗି ମୁଁ ତାଙ୍କୁ ନିମନ୍ତ୍ରଣ କରିଥିଲି ।''

''ତୋ ପୁଅଟା କାହିଁ ଗଲା ?'' ପଚାରିଲେ ଥାନାର ପୂର୍ବତନ ସେହି ମୋଟା ଦାରୋଗା ।

ତପସ୍ୱୀଙ୍କାବୁ ଉତ୍ତର ଦେଲେ ନାହିଁ । ସେହି ସମୟରେ ଗାଁର ପଶ୍ଚିମପଟରୁ ଧ୍ୱନି ନିର୍ଗତ ହେଲା, ''ତପସ୍ୱୀବାବୁ ଜିନ୍ଦାବାଦ୍'', ''ଇନକିଲାବ ଜିନ୍ଦାବାଦ୍'', ''ଜମିଦାର ମୁର୍ଦ୍ଦାବାଦ ।''

ସେହି ଦିଗକୁ ଲକ୍ଷ୍ୟ କରି ପୁଲିସ ଗୁଳି ଚାଳନା କଲେ । ସେଥି ସଙ୍ଗେ ସାହେବ ଇନ୍ସପେକ୍ଟର ହୁଇସିଲ ବଜାଇ ରାସ୍ତା ଦିଗକୁ ଅଶ୍ୱଚାଳନା କଲେ । ସଙ୍କେତ ଥିଲା, ଆସାମୀମାନେ ଧରା ପଡ଼ିଗଲା ପରେ ସେଠାରୁ ତୁରନ୍ତ ବିଦାୟ ନେଇ ଜମିଦାରଙ୍କ ଉଆସ ପର୍ଯ୍ୟନ୍ତ ପୁଲିସ ଫୋର୍ସ ଦୌଡ଼ିବେ ।

ଘୋଡ଼ା ଛୁଟିଲା ଦ୍ରୁତ ଗତିରେ । ପଛରେ ଦୌଡ଼ିଲେ ପୁଲିସ ଦଳ । ବନ୍ଦୀ ଦୁଇଜଣଙ୍କୁ ଟାଣି ଘୋଷାରି ନେଲାବେଳେ ସେମାନଙ୍କ ପିଠିରେ ବସୁଥାଏ ଚାବୁକ ପରେ ଚାବୁକ । ଖଣ୍ଡିଆଖାବରା ଦେହରୁ ଝରି ପଡୁଥାଏ ଟୋପା ଟୋପା ରକ୍ତ । ଅନ୍ଧକାର ଭିତରେ ଯେଉଁ ସ୍ଥାନରେ ଲୋକମାନଙ୍କ ରୁଣ୍ଡ ହେବା ଦେଖାଯାଉଥାଏ, ସେଠାରେ ଆକାଶକୁ ଛଡ଼ାଯାଉଥାଏ ଗୁଳି । ଯେଉଁ ସ୍ଥାନରୁ ପୁଲିସ ଉପରକୁ ଢେଲାମାଡ଼ ହେଉଥାଏ ସେହି ଦିଗକୁ ଗୁଳି ଚଳାଇବାକୁ ଆଦେଶ ମିଳୁଥାଏ । ମଧ୍ୟେ ମଧ୍ୟେ ଶୁଭୁଥାଏ ଆହତର ଆର୍ତ୍ତନାଦ ।

ଦ୍ୱିନ ପ୍ରାୟ ଏକ ପ୍ରହର ବେଳକୁ ଗୋରା ଇନ୍ସପେକ୍ଟର ଜମିଦାରବାବୁଙ୍କ ଉଆସ ସମ୍ମୁଖରେ ଘୋଡ଼ାରୁ ଅବତରଣ କଲେ । କିଛି ସମୟ ପରେ ପହଞ୍ଚିଗଲେ ରକ୍ତାକ୍ତ ବନ୍ଦୀମାନଙ୍କ ସହ ପୁଲିସ ବାହିନୀ । ବନ୍ଦୀମାନଙ୍କ ହାତରେ ପଡ଼ିଥାଏ ଲୁହା ଶିକୁଳି ଏବଂ କମରରେ ବନ୍ଧା ଥାଏ ମୋଟା ଦଉଡ଼ି । ସାହେବ ଚେୟାରରେ ବସି ରହିଥାନ୍ତି । ତାଙ୍କ ପଛରେ ଛିଡ଼ା ରହିଥାନ୍ତି ଜମିଦାରବାବୁ । ପିଆଦାମାନେ ସାହେବଙ୍କୁ ପଙ୍ଖା ଝିଞ୍ଚିବା ଲାଗି ବ୍ୟସ୍ତ ଥା'ନ୍ତି । ନିକଟରେ ଥାଆନ୍ତି ଜମିଦାରଙ୍କ ପୁତ୍ର । ତାଙ୍କର ଦୃଷ୍ଟି ପଡ଼ିଗଲା ତପସ୍ୱୀବାବୁଙ୍କ ଉପରେ । ସଙ୍ଗେ ସଙ୍ଗେ ବର୍ଷଣ କଲେ ଅଜସ୍ର ଗାଳି ।

''ହଇରେ ନେତା ! ସେଦିନ ମୋ ବାବାଙ୍କୁ ସତ୍ୟ, ଅହିଂସା, ପ୍ରେମ, ଧର୍ମ ଇତ୍ୟାଦି ମନ୍ତ୍ର ଶୁଣାଉଥିଲୁ । କୁଆଡ଼େ ଗଲା ସେହିସବୁ ନୀତିବାକ୍ୟ ? କେଉଁଠି ରଖିଦେଲୁ ଅହିଂସ ସତ୍ୟାଗ୍ରହ ? କଲିକତାରୁ ଗୋଟାଏ ଭଡ଼ାଟିଆ ଶଇତାନକୁ ଆଣି ନିଜ ଗାଁରେ ନିଆଁ ଲଗାଇଲୁ । ପ୍ରଚାର କଲୁ, ଜମିଦାରଙ୍କ ଗୁଣ୍ଡାମାନେ ଗାଁ ପୋଡ଼ିଛନ୍ତି । ନିରୀହ, ମୂର୍ଖ ପ୍ରଜାଗୁଡ଼ାଙ୍କୁ ସାଙ୍ଗରେ ଆଣି ରାତି ଭିତରେ ନାଏବବାବୁ ଓ ତାଙ୍କ କର୍ମଚାରୀମାନଙ୍କୁ ନିଜ ହାତରେ ପୋଡ଼ି ଓ ପିଟି ମାରି ପକାଇଲୁ । ଏବେ ତୋର

ଅବସ୍ଥା କ'ଣ ହେବ ? ନରହତ୍ୟା କଲା ପରେ କେଉଁ ପ୍ରକାର ଦଣ୍ଡ ମିଳେ ସେ ବିଷୟରେ ତୋର ଜ୍ଞାନ ଅଛି ?''

ତପସ୍ୱୀବାବୁ କିଛି କହିବା ପୂର୍ବରୁ ଇନ୍ସପେକ୍ଟର ସାହେବଙ୍କ ପାଟିରୁ ବାହାରି ପଡ଼ିଲା ଦୁଇଟି ଅସ୍ପଷ୍ଟ ଶବ୍ଦ - ''କାଲାପାନି, କାଲାପାନି ।''

ଦୀପ୍ତିମାନବାବୁ ଚମକି ଉଠିଲେ । 'କଳାପାଣି' ନାମ ଦିଆଯାଇଛି ଆଣ୍ଡାମାନ ଦ୍ୱୀପପୁଞ୍ଜର ଚାରିପାର୍ଶ୍ୱ ବେଷ୍ଟନ କରିଥିବା ସମୁଦ୍ର ପାଣିକୁ । ଅନେକ ଦୂରରେ ଥିବା ସେହି କଳାପାଣି ବେଷ୍ଟିତ ଦ୍ୱୀପପୁଞ୍ଜର ଗହନ ଅରଣ୍ୟ ମଧ୍ୟରେ ବ୍ରିଟିଶ ସରକାର ଛାଡ଼ି ଦେଉଥାନ୍ତି ଅପରାଧୀମାନଙ୍କୁ । ସେ କିଛି କହିବାଲାଗି ସାହେବଙ୍କ ଅନୁମତି ମାଗିଲେ ।

ଭଙ୍ଗା ଭଙ୍ଗା ହିନ୍ଦୀରେ ସାହେବ ବ୍ୟକ୍ତ କଲେ, ''ଯାହା କହିବୁ, ତାହା ଜଜ୍ ସାହେବଙ୍କ ଆଗରେ, ମୋ ଆଗରେ ନୁହେଁ । ରାଜଦ୍ରୋହ ଏବଂ ଜଘନ୍ୟ ନରହତ୍ୟା ଲାଗି ଦଣ୍ଡବିଧାନ କରିବେ ବିଚାରପତି । ଆମେ ପୁଲିସମାନେ କେବଳ ତୁମମାନଙ୍କ ଅପରାଧ ବର୍ଣ୍ଣନା କରିବା ।''

ଜମିଦାର-ପୁତ୍ର ଅଟ୍ଟହାସ୍ୟ ସହ ଜଣାଇଦେଲେ, ''ବୁଝିପାରିଲୁ ନାହିଁ, ଭଣ୍ଡ ତପସ୍ୱୀ ! ମୁଁ ଅନୁମାନ କରିପାରୁଛି କିପରି ଦଣ୍ଡ ପାଇବୁ । ସରକାର ବାହାଦୁର ରାଜଦ୍ରୋହୀ ଓ ଖୁନୀମାନଙ୍କ ବିଚାର ସଙ୍ଗେ ସଙ୍ଗେ କରି ଦିଅନ୍ତି । ଦଣ୍ଡବିଧାନ ମଧ୍ୟ ସଙ୍ଗେ ସଙ୍ଗେ । କଳାପାଣିରେ ଥାଇ ଏଠାରେ ପ୍ରଜାମେଳି କରିବାକୁ ସୁବର୍ଣ୍ଣସୁଯୋଗ ପାଇଯିବୁ ।''

ସାହେବଙ୍କ ଆଗରେ ଜମିଦାରବଂଶର ଦାନଶୀଳତା ପ୍ରଦର୍ଶନ ନିମନ୍ତେ ଜମିଦାରବାବୁ ଭୃତ୍ୟମାନଙ୍କୁ ଆଦେଶ ଦେଲେ, ''ଅଫିସରମାନଙ୍କୁ ଜଳଖିଆ ଦିଅ । ଆସାମୀ ଦୁଇଜଣଙ୍କୁ ମଧ୍ୟ ଖାଇବାକୁ ଦିଅ ।''

ସାହେବଙ୍କ ଟେବୁଲ ଉପରେ ରଖାଗଲା ପ୍ଲେଟ ଭର୍ତ୍ତି ମାଂସ ଚପ୍, ଟୋଷ୍ଟ ଏବଂ ଫଳ । କନଷ୍ଟେବଲମାନଙ୍କ ପାଇଁ ଆସିଗଲା ସିଙ୍ଗଡ଼ା, ନିମକି ଓ ଓମ୍‌ଲେଟ୍ । ବନ୍ଦୀ ଦୁଇଜଣଙ୍କୁ ଦୂରକୁ ନିଆଯାଇ ସେମାନଙ୍କ ହାତରେ ରଖାଗଲା ମୁଠାଏ ମୁଠାଏ ଗୁଡ଼ମିଶା ଚୁଡ଼ା । ଦୀପ୍ତିମାନବାବୁଙ୍କ କାନ ପାଖରେ ତପସ୍ୱୀବାବୁ କହିଲେ, ''ଚୁଡ଼ା ମୁଠାଏ ହାତରେ ରଖିଲି । ସାହେବର ଆଖିକୁ ଫୋପାଡ଼ି ଯାହା କହିବା କଥା କହିଦେବି ।'' ''ମୁଁ ମଧ୍ୟ ଚୁଡ଼ା ପୋଫାଡ଼ିବି ଜମିଦାରର ପୁଅ ଆଖିକୁ,'' କହିଲେ ଦୀପ୍ତିମାନବାବୁ ।

ସାହେବ ହୁଇସିଲ ଦେଲେ । ପୁଲିସ ଫୋର୍ସ ମାର୍ଚ୍ଚ ଅର୍ଡ଼ାର ପାଇଲେ । ବନ୍ଦୀମାନଙ୍କୁ ଟାଣି ଟାଣି ନେବାଲାଗି ସ୍ୱତନ୍ତ୍ର ଦ୍ରୁତଗାମୀ କନଷ୍ଟେବଲମାନେ ପ୍ରସ୍ତୁତ ହେଲେ । ସାହେବ ଘୋଡ଼ା ଉପରକୁ ଉଠୁଥାଆନ୍ତି । ସେହି ସମୟରେ ଦୁଇ ପାଦ ଆଗେଇଯାଇ ତପସ୍ୱୀବାବୁ ଖୁବ୍ ଜୋରରେ ସାହେବଙ୍କ ଆଖିକୁ ଲକ୍ଷ୍ୟ କରି ଚୁଡ଼ା ନିକ୍ଷେପ କରିବା ବେଳେ ଉଚ୍ଚ ସ୍ୱରରେ କହିଲେ,

"You bloody foreigner ! You have already pronounced your verdict of Kalapani before we are produced in the Court ! This shows the Justice of the imperialists !"

ସାହେବ ରାଗରେ ଚିତ୍କାର କରି ଘୋଷଣା କଲେ, "You will eat the same food in the Cellular Jail what you threw at my face."

ସେଲ୍ୟୁଲାର ଜେଲ୍ ! ନାମଟି ଶୁଣି ଦୀପ୍ତିମାନବାବୁ ବିବ୍ରତ ଓ ବିଚଳିତ ହୋଇ ପଡ଼ିଲେ । ତାଙ୍କ ମନୋଭାବ ଦେଖି ତପସ୍ୱୀବାବୁ ପଚାରିଲେ, ''ଦାଦା, ଜେଲ୍ ଶବ୍ଦଟି ଶୁଣି ଭୟ ପାଇଗଲ କାହିଁକି ?''

''ନା, ମୁଁ ଜେଲ ଶବ୍ଦ ଶୁଣି ଡରି ନାହିଁ । ସେଲ୍ୟୁଲାର ଶବ୍ଦଟି ଶୁଣି ଚମକି ଉଠିଛି ।''

କିଛି ଦିନ ପରେ ମଧ୍ୟରାତ୍ରରେ ଶ୍ୟାମାନନ୍ଦବାବୁ ବିକଳ ଭାବରେ କାନ୍ଦି କାନ୍ଦି ପହଞ୍ଚିଲେ କବିତାଦେବୀ ରହିଥିବା ବନ୍ଧୁଙ୍କ ଘରେ । ''ଦୁଃସମ୍ବାଦ, ଦାରୁଣ ଦୁଃସମ୍ବାଦ ! ମା କବିତା, ତୁମେ ଏତେବେଳେ ଦୁଃଖରେ ଭାଙ୍ଗିପଡ଼ିଲେ ଚଳିବ ନାହିଁ । ଦୀପ୍ତିମାନ ଓ ତପସ୍ୱୀଙ୍କୁ ରାଜଦ୍ରୋହ ଓ ନରହତ୍ୟା ଅପରାଧରେ ବିଚାରପତି କାରାଦଣ୍ଡ ଦେଇଛନ୍ତି । ସେହି କାରାବାସ ସେମାନେ ଭୋଗ କରିବେ ଆଣ୍ଡାମାନ ଦ୍ୱୀପରେ ଥିବା ସେଲ୍ୟୁଲାର ଜେଲରେ ।''

ଅଥୟ ଅବସ୍ଥାରେ ଶ୍ୟାମାନନ୍ଦବାବୁ ମାଟି ଉପରେ ପଡ଼ି ରହି ଆଖିରୁ ଅଶ୍ରୁ ଗଡ଼ାଉ ଥାନ୍ତି । କବିତା ବସିଥାନ୍ତି ପଥର ମୂର୍ତ୍ତିପରି । ପିଲାମାନେ କରୁଣ ଭାବରେ କାନ୍ଦି କାନ୍ଦି କବିତାଦେବୀଙ୍କୁ ଜାବୁଡ଼ି ଧରିଲେ । ସ୍ଥିତପ୍ରଜ୍ଞ ରୂପରେ କବିତାଦେବୀ ଶ୍ୟାମାନନ୍ଦବାବୁଙ୍କୁ କହିଗଲେ -

''କାକା ବାବୁ, ମୁଁ ଜାଣିପାରୁଛି, ମୋ ସ୍ୱାମୀଙ୍କୁ ଆଉ କେବେହେଲେ ଦେଖିପାରିବି ନାହିଁ । ମମତା ଦିଦୀ ମଧ୍ୟ ଏ ଜୀବନରେ ତାଙ୍କ ସ୍ୱାମୀଙ୍କୁ ଦର୍ଶନ କରିପାରିବେ ନାହିଁ । ମୁଁ ଶୁଣିଛି, ଯେଉଁ ବନ୍ଦୀମାନଙ୍କୁ ସେଲ୍ୟୁଲାର ଜେଲରେ ରଖାଯାଏ, ସେଠାରୁ ସେମାନେ

ଫେରିଆସିପାରନ୍ତି ନାହିଁ । ଅଶେଷ ନିର୍ଯାତନା ମଧ୍ୟରେ ସେମାନେ ପାଗଳ କିମ୍ବା ବ୍ୟାଧିଗ୍ରସ୍ତ ଅବସ୍ଥାରେ ଅକାଳରେ ମୃତ୍ୟୁବରଣ କରନ୍ତି । ଅଥଚ ସେହିମାନେ ହିଁ ହେଉଛନ୍ତି ପ୍ରକୃତ ସହିଦ। ସେମାନଙ୍କୁ ସ୍ମରଣ କରି ମୋତେ ଏବଂ ମମତା ଦିଦୀଙ୍କୁ ବଞ୍ଚି ରହିବାକୁ ହେବ ଏବଂ ଏହି ଚାରିଜଣ ପିଲାଙ୍କୁ ମଣିଷ କରିବାକୁ ପଡ଼ିବ । ତପସ୍ୱୀବାବୁ ଦେଶ ଲାଗି ଜୀବନ ଦେବେ । ତାଙ୍କ ସନ୍ତାନମାନେ ହିଁ ସ୍ୱାଧୀନ ଦେଶର ମୁକ୍ତ ମନୁଷ୍ୟ ଭାବରେ ଜୀବନ ଭୋଗ କରିବେ । ସେଲ୍ୟୁଲାର ଜେଲରେ ଉଭୟ ବନ୍ଦୀ ସ୍ୱାଧୀନତାର ସ୍ୱପ୍ନ ଦେଖି ଏବଂ ଭାରତମାତାଙ୍କ ଜୟଧ୍ୱନି ସହ ଆନନ୍ଦ ମନରେ ସମସ୍ତ ଲାଞ୍ଛନା ସହ୍ୟ କରିଯାଉଥିବେ, ଏହି ବିଶ୍ୱାସ ବଳରେ ମୁଁ ଓ ମମତା ଦିଦୀ ଶୋକସନ୍ତପ୍ତ ପ୍ରାଣଧରି ବଞ୍ଚିରହିବାକୁ ବାଧ୍ୟ ।''

ସେହି କାଳରାତ୍ରିର କିଛିଦିନ ପରେ ଶ୍ରୀହରିବାବୁ ନିଜ ପୁଅଙ୍କ ସହିତ କବିତା ଦେବୀ ଓ ତପସ୍ୱୀବାବୁଙ୍କ ପିଲାମାନଙ୍କୁ କଲିକତା ପଠାଇ ଦେଲେ ।

ତେଣେ, ପ୍ରଜା ଆନ୍ଦୋଳନ ଲାଗିରହିଲା । ସରକାର ଓ ଜମିଦାରଙ୍କ ଦମନଲୀଳା ସତ୍ତ୍ୱେ ଅତ୍ୟାଚାର ପ୍ରପୀଡ଼ିତ ମଣିଷମାନେ ବିପ୍ଳବର ଭୟାବହତା ଭେଦ କରି ଦେଖିବାକୁ ଲାଗିଲେ ସ୍ୱାଧୀନତାର ସ୍ୱପ୍ନ ।

## ।। ୧୩ ।।

ସନ୍ଧ୍ୟା ସମୟରେ କବିତାଦେବୀ ପହଞ୍ଚିଲେ ତାଙ୍କ କଲିକତା ଘରେ । ଏକମାତ୍ର ସାନ୍ତ୍ୱନା ଓ ସାହସ ଥାଏ ତପସ୍ୱୀବାବୁଙ୍କ ଚାରିଜଣ ପିଲା । ନିଃସଙ୍ଗ ଜୀବନ ପଥରେ ପିଲାମାନଙ୍କର କୋମଳ ମୁଖଗୁଡ଼ିକ ଭରି ଦେଉଥାଏ ସେହି ଅଭାଗିନୀ ମହିଳାଙ୍କ ପ୍ରାଣରେ ମାତୃତ୍ୱର ସ୍ନେହ । ବସ୍ତିରେ ବାସ କରୁଥିବା ପଡ଼ୋଶୀମାନେ ସମସ୍ତଙ୍କପାଇଁ ଖାଦ୍ୟପଦାର୍ଥ ଆଣିଦେଲେ । ଶ୍ରୀହରିବାବୁଙ୍କ ଲୋକ କବିତାଦେବୀଙ୍କୁ ଯଥାସ୍ଥାନରେ ଛାଡ଼ିଦେଇ ବିଦାୟ ନେଲେ ।

ସକାଳ ହେଲା । ନିଦରୁ ଉଠି ତେଜସ୍ୱୀ କହିଲା, ''କାକୀ ମା', ମୁଁ ମୋ ମା'ଙ୍କୁ ଓ ଅଜାଙ୍କୁ ଦେଖିବାକୁ ଯାଉଛି । ଭାତ ଖାଇଲାବେଳକୁ ଫେରି ଆସିପାରିବି ।''

କବିତା ଆଦେଶ ଦେଲେ, ''ନା, ଏବେ ଯାଇପାରିବୁ ନାହିଁ । ତୋ ଭାଇ-ଭଉଣୀଙ୍କ ପାଖରେ ଗୋଟିଏ ଦିନ ରହି ଥା । ଅଳ୍ପସମୟ ପରେ ମୁଁ ପ୍ରଥମେ ଡକ୍ଟର ରାୟଙ୍କ ସହିତ ସାକ୍ଷାତ କରିବାକୁ ଯିବି । ତୋ ବାପା ଓ ମୋ ସ୍ୱାମୀଙ୍କୁ କଳାପାଣି

ଦଣ୍ଡ ମିଳିଛି ବୋଲି ଜଣାଇବି । ମୁଁ ସେଠାରୁ ଫେରିଆସିଲା ପରେ ତୋତେ ସାଙ୍ଗରେ ନେଇ ମମତାଦିଦୀ ଓ ତୋ ଅଜାଙ୍କ ସହିତ ଦେଖା କରିବାକୁ ଯିବି ।'' ତେଜ ରାଜି ହେଲା । ପିଲାମାନଙ୍କୁ ଜଳଖିଆ ଖୁଆଇ କବିତା ଦେବୀ ବାହାରିଗଲେ ଡକ୍ଟର ରାୟଙ୍କ ବାସଭବନ ଦିଗରେ ।

ରୋଗୀମାନେ ନୀରବରେ ଲାଇନରେ ଛିଡ଼ା ହୋଇଥାନ୍ତି । ଡାକ୍ତରବାବୁଙ୍କ ଚେମ୍ବର ଖୋଲା ହେଲା ପରେ ଜଣକ ପରେ ଜଣେ ରୋଗ ଦେଖାଇବାକୁ ଯିବେ । ପ୍ରତିଦିନ ପରି ସେଦିନ ମଧ୍ୟ ଡକ୍ଟର ରାୟ ନିଜ ବାଲକୋନିରେ ପଦଚାରଣ କରୁଥିଲେ । ହାତରେ ଥାଏ ସମ୍ବାଦପତ୍ର ।

କବିତା ରିକ୍ସାରୁ ତଳକୁ ପାଦ ଦେଲାକ୍ଷଣି ଡାକ୍ତରବାବୁଙ୍କ ଦୃଷ୍ଟି ପଡ଼ିଗଲା । କୋମଳ ସ୍ୱରରେ ଉପରୁ ଡାକିଲେ, ''ମା କବିତା, ସିଧା ଉପରକୁ ଉଠିଆସ ।''

ବାଲକୋନିରେ ପହଞ୍ଚି କବିତା ଡାକ୍ତରବାବୁଙ୍କ ପାଦଧୂଳି ନେଉଥିବା ସମୟରେ ସେ ଦୁଃଖିତ ମନରେ କହିଲେ, ''ଦୀପ୍ତିମାନ ଓ ତପସ୍ୱୀର ଦ୍ୱୀପାନ୍ତର ଦଣ୍ଡ ବିଷୟ ଆମ କର୍ମୀମାନଙ୍କ ପାଖରୁ ଶୁଣି ମର୍ମାହତ ହୋଇଛି । ସେମାନଙ୍କୁ ଆଖ୍ୟା ଦିଆଯାଇଛି 'ସନ୍ତ୍ରାସବାଦୀ' ଓ 'ହତ୍ୟାକାରୀ' । ପ୍ରଜା ଆନ୍ଦୋଳନ ସମ୍ପର୍କରେ ମହାତ୍ମାଗାନ୍ଧିଙ୍କ ନିକଟକୁ ବିଶଦ ଭାବରେ ଲେଖି ପଠାଇଛି ।''

କବିତାଦେବୀ କାନ୍ଦି କାନ୍ଦି ଜଣାଇଲେ, ''ସେମାନେ ଆନ୍ଦୋଳନ ଆରମ୍ଭ କରିଥିଲେ ସତ୍ୟ, କିନ୍ତୁ ହିଂସାକାଣ୍ଡ କିମ୍ବା ନରହତ୍ୟାପାଇଁ ଦାୟୀ ନୁହନ୍ତି । ଗ୍ରାମଦାହର ପ୍ରତିଶୋଧ ନେବାଲାଗି ଉତ୍ତ୍ୟକ୍ତ ପ୍ରଜାମାନେ କଚେରିଘର ଆକ୍ରମଣ କରିଥିଲେ ।''

''ମା, ବ୍ରିଟିଶ୍ ଶାସନର ବିଚାରଧାରା ଭିନ୍ନ ପ୍ରକାରର । ପ୍ରଜାମାନଙ୍କୁ ଭୟଭୀତ କରିବା ଉଦ୍ଦେଶ୍ୟରେ ନିର୍ଦ୍ଦୋଷ ଲୋକଙ୍କୁ ଦଣ୍ଡ ଦେବାଲାଗି ସେମାନେ କାତରତା ପ୍ରକାଶ କରନ୍ତି ନାହିଁ । କଠୋର ଦଣ୍ଡ ଦେବା ହେଉଛି ସେମାନଙ୍କର ନୀତି ।''

କିଛି ସମୟପାଇଁ ଡକ୍ଟର ରାୟ ନୀରବ ରହିଲେ । କବିତା କାନ୍ଦୁଥାନ୍ତି । ଗମ୍ଭୀର ସ୍ୱରରେ ପୁନର୍ବାର ଆରମ୍ଭ କଲେ, ''ବିପଦ ଯେତେବେଳେ ଆସେ, ଗୋଟିଏ ଦିଗରୁ ନ ଆସି ଭିନ୍ନ ଭିନ୍ନ ଦିଗରୁ ଆସିଥାଏ । ତୁମକୁ ଅନ୍ୟ ଗୋଟିଏ ବିପଦ ବିଷୟ ଜଣାଇଦେବାକୁ ବାଧ୍ୟ ହେଉଛି । ଯେଉଁ ରୋଗୀଙ୍କୁ ଦୀପ୍ତିମାନ ଆମ ଯକ୍ଷ୍ମା ନିକେତନରେ ଭର୍ତ୍ତି କରାଇ ଦେଇଥିଲେ, ସେ ଇତିମଧ୍ୟରେ ଇହଧାମ ତ୍ୟାଗ କରିଛନ୍ତି । ତାଙ୍କ ଝିଅ ମମତା ଦୁଃଖରେ ଭାଙ୍ଗିପଡ଼ି ସେହିଠାରେ ଚିରଦିନ ଲାଗି ବିନା

ପାରିଶ୍ରମିକରେ ନର୍ସ ଭାବରେ ରହିବ ବୋଲି ଜିଦ୍ ଧରିଛି ଶୁଣି ମୋତେ ସେଠାକୁ ଯିବାକୁ ପଡ଼ିଲା । ତାଙ୍କ ଆର୍ଥିକ ଅବସ୍ଥା ଓ ଚାରିଜଣ ପିଲାପିଲି ଥିବା କଥା ଜାଣିପାରି ପ୍ରାୟତଃ ବାଧ କରି ତାଙ୍କୁ ସେଠାରୁ ନେଇଆସିଲି ଏବଂ ଅନ୍ୟ ଗୋଟିଏ ଭଲ ନର୍ସିଂହୋମ୍‌ରେ ରଖିଦେଇଛି । ଭଲ ଦରମା ମିଳିବ । କେବଳ ପିଲାମାନଙ୍କ ଭବିଷ୍ୟତ ଦୃଷ୍ଟିରୁ ମୋତେ ତାଙ୍କ ଇଚ୍ଛା ବିରୋଧରେ ପଦକ୍ଷେପ ନେବାକୁ ହେଲା ।''

''ସାର୍, ମମତା ଦିଦୀଙ୍କ ସେହି ଚାରିଜଣ ପିଲାଙ୍କୁ ମୁଁ ସାଙ୍ଗରେ ନେଇଆସି ମୋ ଘରେ ରଖିଛି । ପିଲାମାନେ ପ୍ରକୃତ ପକ୍ଷେ ପ୍ରତିଭାବାନ୍ ।''

''ଭଲ କରିଛ, ମା, ଭଲ କରିଛ । ଜଣେ ସଂଗ୍ରାମୀର ଅସହାୟ ସନ୍ତାନସନ୍ତତିଙ୍କୁ ଯଦି ଅନ୍ୟମାନେ ଆଶ୍ରୟ ନ ଦେବେ, ତେବେ ସ୍ୱାଧୀନତା ସଂଗ୍ରାମର ମୂଲ୍ୟବୋଧ ରହିବ ନାହିଁ । ବର୍ତ୍ତମାନ ପରିସ୍ଥିତିରେ ତୁମେ ଓ ମମତା ନିଜ ନିଜ ସ୍ୱାମୀଙ୍କ ଚିନ୍ତା ମନରୁ ପୋଛିଦିଅ । ଦୁହେଁ ମିଳିମିଶି କିଛି କିଛି କାମ କରି ଅର୍ଥ ଆୟ କର, ସେହି ପିଲାମାନଙ୍କ ମଙ୍ଗଳ ଲାଗି । ମମତାକୁ ରଖି ଦେଇଛି ସିଟି ନର୍ସିଂ ହୋମରେ । ମୋ ସେକ୍ରେଟାରୀ ପାଖରୁ ଠିକଣା ନେଇ ତାଙ୍କ ସହିତ ସାକ୍ଷାତ କରି ସାନ୍ତ୍ୱନା ଦିଅ । ବୋଧହୁଏ ଏ ପର୍ଯ୍ୟନ୍ତ ସେ ତା' ସ୍ୱାମୀର କାରାଦଣ୍ଡ ବିଷୟ ଜାଣି ନ ଥିବ । ତାଙ୍କୁ ଜଣାଇଦେବ ତା' ପିଲାମାନେ ସମସ୍ତେ ଜାତୀୟ ବିଦ୍ୟାଳୟରେ ପଢ଼ିବେ । ମୁଁ ଭର୍ତ୍ତି କରାଇ ଦେବି ।''

ଡକ୍ଟର ରାୟଙ୍କ ସେକ୍ରେଟାରୀଙ୍କ ପାଖରୁ ନର୍ସିଂହୋମ୍‌ର ଠିକଣା ନେଇ କବିତା ନିଜ ଘରକୁ ଫେରିଲେ । ତେଜସ୍ୱୀ କିଛି କହିବା ପୂର୍ବରୁ ସେ ପିଲାମାନଙ୍କୁ ହସି ହସି କହିଲେ, ''ଚାଲ, ତୁମ ମା'ଙ୍କ ପାଖକୁ ନେଇଯିବି ।''

ସିଟି ନର୍ସିଂହୋମ୍‌ଟି ଥାଏ ସହରର କେନ୍ଦ୍ରସ୍ଥଳରେ । ନିକଟରେ ଥାଏ ନର୍ସମାନଙ୍କର ରହିବା ଘର । କବିତା ସେହି ଦିଗକୁ ଚାଲିଲେ । ମମତା ରୋଗୀମାନଙ୍କ ୱାର୍ଡ଼କୁ ଯିବା ଲାଗି ପ୍ରସ୍ତୁତ ହେଉଥାନ୍ତି । ଅକସ୍ମାତ୍ ଓ ଅପ୍ରତ୍ୟାଶିତ ଭାବେ ପିଲାମାନେ ତାଙ୍କ ଚାରିପଟରୁ ଘେରିଯାଇ କୁଣ୍ଢାଇ ପକାଇଲେ । ଝିଅଟିକୁ କାଖକୁ ଟେକିନେଇ ପୁଅମାନଙ୍କ କପାଳରେ ଚୁମ୍ବନ ଦେଉଥିଲାବେଳେ ତେଜସ୍ୱୀ ପଚାରିଲା, ''ମା', ତୁମେ ଏଠାରେ ରହିଛ । ମୋ ଅଜା କାହାନ୍ତି ?''

କୋହ ସମ୍ଭାଳି ନ ପାରି ମମତା କାନ୍ଦି କାନ୍ଦି ଜଣାଇଲେ, ''ସେ ବର୍ତ୍ତମାନ ସ୍ୱର୍ଗରେ ।'' ତାଙ୍କୁ କାନ୍ଦୁଥିବା ଦେଖି ପିଲାମାନେ ମଧ୍ୟ କାନ୍ଦିବାକୁ ଲାଗିଲେ । କବିତା

ଦେବୀ ବୁଝାଇଲେ, ''ଅଜା ଅନେକ ବୁଢ଼ା ହୋଇଯାଇଥିଲେ । ସଂସାରରୁ ଯିବା ସମୟ ଆସିଯିବାରୁ ବିଦାୟ ନେଲେ । ତୁମେମାନେ ତାଙ୍କ ଲାଗି କାନ୍ଦିଲେ ସ୍ୱର୍ଗରେ ରହି ତାଙ୍କ ଆତ୍ମା ଅଶାନ୍ତି ଭୋଗ କରିବ । ଅଜାଙ୍କ ମହତ୍ ଗୁଣମାନ ସ୍ମରଣ କରି ନିଜେ ନିଜେ ମନଦେଇ ପାଠ ପଢ଼ିଲେ ତାଙ୍କ ଅମର ଆତ୍ମା ତୃପ୍ତିଲାଭ କରିବ ।''

ପିଲାମାନଙ୍କୁ ପିଣ୍ଡାରେ ବସାଇ ଦେଇ କବିତା ହାତ ଧରି ମମତାଦେବୀଙ୍କୁ ତାଙ୍କ କୋଠରି ଭିତରକୁ ଟାଣି ନେଇଗଲେ । ଖଟଟି ଉପରେ ବସାଇ ରଖି ବର୍ଣ୍ଣନା କରିଗଲେ ସଦ୍ୟ ଘଟି ଯାଇଥିବା ଘଟଣାମାନ । ''ଦିଦୀ, ତୁମକୁ ତପସ୍ୱୀବାବୁଙ୍କ କଥା ଭୁଲିବାକୁ ହେବ । ମୁଁ ମୋ ସ୍ୱାମୀଙ୍କ ସ୍ମୃତି ମନରୁ ପୋଛିଦେଇଛି । ଆମ ଦୁହିଁଙ୍କୁ ବର୍ତ୍ତମାନ ପୁରୁଷତୁଲ୍ୟ କର୍ତ୍ତବ୍ୟ ଓ ଦାୟିତ୍ୱ ବହନ କରିବାକୁ ହେବ । ମୁଁ ଚାକିରି କରୁଛି, ତୁମେ ମଧ୍ୟ ଚାକିରି ପାଇଛ । ଉଭୟଙ୍କ ଯତ୍‌ସାମାନ୍ୟ ଆୟରେ ପିଲାମାନଙ୍କୁ ମଣିଷ କରାଇବାକୁ ହେବ । ତୁମେ ମୋ ଘରେ ରହିବ । ନର୍ସିଂହୋମ୍ ପାଖରୁ ଦୂର ନୁହେଁ । ଡକ୍ଟର ରାୟ ଚାରିପଲାଙ୍କୁ ଜାତୀୟ ବିଦ୍ୟାଳୟରେ ଭର୍ତ୍ତି କରାଇଦେବେ । ସେମାନଙ୍କୁ ପାଖରେ ବସାଇ ମୁଁ ପଢ଼ାଇବି । ବଡ଼ ହେଲେ ବୋର୍ଡ଼ିଂରେ ରହିବେ । ଶୋକ ଦୁଃଖ ଭୁଲି ଓ ଧୈର୍ଯ୍ୟ ଧରି ଆମକୁ ବଞ୍ଚି ରହିବାକୁ ହେବ ଏହି ପୁଅଝିଅଙ୍କ ଭବିଷ୍ୟତପାଇଁ ।''

ପଥର ମୂର୍ତ୍ତିଟି ପରି ବସିରହି ମମତା ସବୁକଥା ଶୁଣିଗଲେ । ଦୀର୍ଘଶ୍ୱାସ ପରେ ଦୀର୍ଘଶ୍ୱାସ ତ୍ୟାଗ କରୁଥାନ୍ତି, କିନ୍ତୁ ମୁହଁରେ ଭାଷା ନ ଥାଏ ।

କିଛିଦିନ ମଧ୍ୟରେ ନୂତନ ସଂସାରଟିଏ ଦେଖିବାକୁ ମିଳିଲା । ଦୀପ୍ତିମାନବାବୁଙ୍କ ଘରେ ଥାଏ ତିନୋଟି କୋଠରି । ଗୋଟିକରେ ରହିଲେ ତେଜସ୍ୱୀ, ସ୍ୱରାଜ ଓ ସ୍ୱାଧୀନ । ଦ୍ୱିତୀୟଟିରେ ମମତା ଓ ଝିଅ କରୁଣା । ଅନ୍ୟଟିରେ କବିତା । ଯଥାସମୟରେ ପିଲାମାନଙ୍କୁ ବିଦ୍ୟାଳୟରେ ଭର୍ତ୍ତି କରାଗଲା । ଉଭୟ ମହିଳା ସେମାନଙ୍କୁ ଖୁଆଇ ପିଆଇ ସ୍କୁଲ ପଠାଇଦେଇ ନିଜ ନିଜ କର୍ମକ୍ଷେତ୍ରକୁ ଯିବାକୁ ଲାଗିଲେ । ନିୟମିତ ଜୀବନ ପ୍ରଣାଳୀ ମଧ୍ୟରେ ମାସ ପରେ ମାସ ବିତିବାକୁ ଲାଗିଲା ।

କିଛି ମାସ ପରେ ଦିନେ କବିତାଦେବୀଙ୍କ ଘରେ ପହଞ୍ଚିଲେ ଶ୍ୟାମାନନ୍ଦବାବୁ । ପୂର୍ବରୁ ଚିଠି ପାଇ ସମସ୍ତ କଥା ଜାଣିଥିଲେ । ତଥାପି ମମତା ପ୍ରତି ଅଗାଧ ଶ୍ରଦ୍ଧା ଯୋଗୁଁ ଦେଖା କରିବାକୁ ଚାଲିଆସିଲେ । ପିଲାମାନେ ସ୍କୁଲରୁ ଫେରି ଶ୍ୟାମାନନ୍ଦବାବୁଙ୍କ ପାଦଧୂଳି ନେଲେ । ସନ୍ଧ୍ୟାବେଳେ ଶ୍ୟାମାନନ୍ଦବାବୁ ବର୍ଣ୍ଣନା କଲେ,

''ମୁଁ ଶିବବାବୁଙ୍କ ଘରଦ୍ୱାର, ବାଡ଼ିବଗିଚା ଓ ପୋଖରୀ ଇତ୍ୟାଦି ଯେଉଁପରି ଥିଲା ଠିକ୍ ସେହିପରି ରଖିଛି । ମୋ ଭଉଣୀକୁ ସେଠାରେ ରଖି ଦେଇଛି, ଧାନ ଜମିରେ ଆଗପରି ଚାଷ କରୁଛି ।''

ଏତକ କହି ଶିବବାବୁଙ୍କ ଜମିରୁ ଉତ୍ପନ୍ନ ହୋଇଥିବା ଧାନ ବିକ୍ରିର ଟଙ୍କା ସେ ମମତା ହାତକୁ ବଢ଼ାଇ ଦେଲେ । ସେଥି ସଙ୍ଗେ ମତ ଦେଲେ, ''ତେଜସ୍ୱୀ, ସ୍ୱରାଜ ଓ ସ୍ୱାଧୀନକୁ ହଷ୍ଟେଲରେ ରଖିଦେଲେ ଭଲ ହେବ । ମେଟ୍ରିକୁଲେସନ ପଢ଼ିଲା ସମୟରେ ଅନ୍ୟ ସାଙ୍ଗମାନଙ୍କର ସାହାଯ୍ୟ ଦରକାର ହୁଏ । ହଷ୍ଟେଲର ନିୟମ ଅନୁଯାୟୀ ଶୃଙ୍ଖଳା ମାନିବାକୁ ପଡ଼େ । ପିଲାବେଳରୁ ବ୍ୟକ୍ତିତ୍ୱ ବିକାଶ ଲାଗି ହଷ୍ଟେଲ ଜୀବନ ଉତ୍ତମ ବୋଲି ଏମାନଙ୍କ ଅଜା ବାରମ୍ବାର କହୁଥିବା ମୁଁ ଶୁଣିଛି ।''

ମମତା ଦେଖି ଆସୁଥିଲେ, ତିନି ପୁଅକୁ ଯଥାସମୟରେ ରାନ୍ଧିବାଢ଼ି ଓ ଖୁଆଇ ସାରି ପୂର୍ବାହ୍ନ ୧୦ଟା ସମୟରେ ସ୍କୁଲକୁ ପଠାଇବା କାମ କବିତାଙ୍କ ପ୍ରତି କଷ୍ଟଦାୟକ ହେଉଥାଏ । ନିଜେ ନର୍ସ ହୋଇଥିବାରୁ ଦିନର ଅଧିକାଂଶ ସମୟ ନର୍ସିଂହୋମରେ ବିତାଇବା ବାଧ୍ୟତାମୂଳକ ଥାଏ । ତେଣୁ ସେ ଶ୍ୟାମାନନ୍ଦବାବୁଙ୍କ କଥାରେ ରାଜି ହୋଇଗଲେ । ''ମୁଁ ଏହି ଧାନ ବିକ୍ରି ଟଙ୍କାରେ ସିଲାଇ ମେସିନ କିଣି ଛୋଟ ଛୋଟ ପିଲାଙ୍କ ଲାଗି ଅବସର ସମୟରେ ପୋଷାକ ତିଆରି କରିପାରିବି । ସେଥିରୁ କିଛି ଆୟ କରିପାରିବି ବୋଲି ମୋର ବିଶ୍ୱାସ,'' କହିଲେ ମମତା ।

ତେଜସ୍ୱୀ ପ୍ରତିବାଦ କଲା । ''ମୁଁ ଶ୍ୟାମଅଜା, ମା' ଏବଂ କାକୀମାଙ୍କୁ କଷ୍ଟ ଦେବି ନାହିଁ । ମୋର ପାଠପଢ଼ା ଦରକାର ନାହିଁ । ପାଠରେ ମନ ଲାଗୁ ନାହିଁ । ସଦାବେଳେ ବାବାଙ୍କ କଥା ମନେପଡୁଛି । ସେ ପ୍ରଜାମେଳି ଆରମ୍ଭ କରିଥିଲେ । ମୁଁ ଗାଁରେ ରହି ଚାଷ କରିବି ଏବଂ ଆନ୍ଦୋଳନ ଚଳାଇବି । ବାବା ସେଲୁ୍ୟଲାର ଜେଲରେ ରହି ଅସହ୍ୟ ଯନ୍ତ୍ରଣା ଭୋଗ କରୁଥିବେ । ସେଠାରେ ନିଷ୍ଠୁର ଭାବରେ ପ୍ରହାର ଦିଆଯାଏ, ଖାଇବା ଲାଗି ଅଖାଦ୍ୟ ମିଳିଥାଏ ଏବଂ ହାତଗୋଡ଼ରେ ଲୁହା ଶିକୁଳି ପିନ୍ଧି ରାତିରେ ଶୋଇବାକୁ ହୁଏ ବୋଲି ଜଣେ ଶିକ୍ଷକ କହୁଥିଲେ । ସେହି ପ୍ରକାର ଅତ୍ୟାଚାରର ପ୍ରତିଶୋଧ ନେବା ଲାଗି ମୁଁ ପ୍ରଜାମେଳି ଚଳାଇବି । ମୋତେ ଧରିନେଇ ଆଣ୍ଡାମାନ ପଠାଇଲେ ବାବାଙ୍କ ସହିତ କଷ୍ଟଭୋଗ କରି ଆନନ୍ଦ ମନରେ ରହିବି ।''

ଶ୍ୟାମାନନ୍ଦବାବୁ ରାଗିଉଠି କଠୋର ସ୍ୱରରେ କହିଲେ, ''କାଲି ତୋର ଜନ୍ମ, ତୋ ମୁହଁରେ ପୁଣି ଏଡ଼େ ବଡ଼ ବଡ଼ କଥା'! ଆଗେ ପାଠପଢ଼ା ଶେଷ ହେଉ । ନେତା ହେବାପାଇଁ ଆଗକୁ ଅନେକ ସମୟ ପଡ଼ିଛି । ପ୍ରଜାମେଳି ବନ୍ଦ ହୋଇଗଲାଣି । ଗାନ୍ଧୀଙ୍କ

ଆନ୍ଦୋଳନ ମଧ୍ୟ ଧିମେଇ ଯାଇଛି । ଆଉ କିଛି ବର୍ଷ ପରେ ପୁନର୍ବାର ବଡ଼ ଧରଣର ଆନ୍ଦୋଳନ ଆରମ୍ଭ ହୋଇପାରେ । ସେତେବେଳେ ଗାଁକୁ ଯାଇ ନେତୃତ୍ୱ ନେଇ ପାରିବୁ । ବିଦ୍ୟା ହେଉଛି ବଳ । ପ୍ରଥମେ ମନ ପ୍ରାଣ ଲଗାଇ ଶିକ୍ଷିତ ହେବାପାଇଁ ଚେଷ୍ଟା କର । ତୋ ଅଜା ପାଠପଢ଼ିବାଲାଗି ଯେଉଁ ଭାବରେ ଉପଦେଶ ଦେଉଥିଲେ ତାହା ଭୁଲିଯିବା ଉଚିତ ନୁହେଁ ।'' ତେଜ ତୁନି ପଡ଼ିଲା ।

କିଛି ଦିନ ମଧ୍ୟରେ ମମତାର ତିନି ପୁଅକୁ ହଷ୍ଟେଲରେ ଭର୍ତ୍ତି କରାଇ ଶ୍ୟାମାନନ୍ଦବାବୁ ବିଦାୟ ନେଲେ । ଝିଅ କରୁଣା ରହିଲା ତା' ମା' ପାଖରେ ।

ଦିନ ବିତିବାକୁ ଲାଗିଲା । ସମୁଦ୍ର ଦିଗକୁ ଧାବମାନ ଗଙ୍ଗାର ସ୍ରୋତ ପରି ଭାସି ଚାଲିଗଲା ବର୍ଷ ପରେ ବର୍ଷ ।

## ।। ୧୪ ।।

ସମୟ ସ୍ରୋତରେ ଆସିଗଲା ୧୯୪୨ ମସିହା । ବିପ୍ଲବ ଯୁଗର ଏକ ମାଇଲଖୁଣ୍ଟ । ମହାତ୍ମା ଗାନ୍ଧୀ ତାଙ୍କର ଶେଷ ସଂଗ୍ରାମ ଲାଗି ଚିନ୍ତା କଲେ ଏବଂ ବ୍ରିଟିଶ ସରକାରଙ୍କୁ ଚରମ ଆହ୍ୱାନ ଦେଲେ - ''ଭାରତ ଛାଡ଼'' । କିନ୍ତୁ ସରକାର ତାଙ୍କୁ ସଙ୍ଗେ ସଙ୍ଗେ ଗିରଫ କରିନେଲେ । ସେଥିସଙ୍ଗେ ବନ୍ଦୀ କରାଗଲା ଜାତୀୟ କଂଗ୍ରେସର ତୁଙ୍ଗ ନେତାମାନଙ୍କୁ । ସେହି ଦାରୁଣ ସମ୍ବାଦ ପ୍ରଚାର ହେଲାମାତ୍ରେ ସହସା ପ୍ରଜ୍ୱଳିତ ହୋଇଉଠିଲା ଦେଶବ୍ୟାପୀ ଆନ୍ଦୋଳନ । ସରକାର ମଧ୍ୟ ବିପ୍ଳବ ଦମନ ନିମନ୍ତେ ପୂର୍ବରୁ ପ୍ରସ୍ତୁତ ହୋଇ ରହିଥିଲେ । ବିପ୍ଳବ ବହ୍ନି ଜଳି ଉଠିଲାକ୍ଷଣି ଦେଶର ଚାରି ଦିଗରେ ଥିବା ଅସଂଖ୍ୟ କଂଗ୍ରେସ କର୍ମୀ ଓ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ କାରାରୁଦ୍ଧ କରାଗଲା । ଯେକୌଣସି ବ୍ୟକ୍ତିଙ୍କୁ, ଏପରିକି ସ୍କୁଲ କଲେଜର ଛାତ୍ରମାନଙ୍କୁ ମଧ୍ୟ ସନ୍ଦେହରେ କାରାଗାରରେ ରଖାଗଲା ।

ଫଳ ହେଲା ବିପରୀତ । ଅବିଳମ୍ୱେ ଦେଖିବାକୁ ମିଳିଲା ଏକ ନେତୃତ୍ୱହୀନ ସର୍ବଭାରତୀୟ ଗଣବିପ୍ଳବ । ନଗର, ମହାନଗର ତଥା ଦୂରଦୂରାନ୍ତ ଗ୍ରାମାଞ୍ଚଳରେ ବିଦ୍ରୋହର ସ୍ରୋତ ମାଡ଼ିଗଲା । ବ୍ରିଟିଶ ଶାସିତ ପ୍ରଦେଶଗୁଡ଼ିକରୁ ବିପ୍ଳବ ମାଡ଼ି ଚାଲିଗଲା ଦେଶୀୟ ରାଜ୍ୟଗୁଡ଼ିକୁ । ଦୁର୍ଗମ ପାହାଡ଼ ପର୍ବତ ଓ ଘନ ଅରଣ୍ୟାନୀରେ ବାସ କରୁଥିବା ଦୁର୍ଦ୍ଧର୍ଷ ବନବାସୀମାନେ ସେମାନଙ୍କ ରଜା ମହାରାଜାମାନଙ୍କ ବିରୋଧରେ ସଂଗ୍ରାମ ଆରମ୍ଭ କରିଦେଲେ । ସେମାନଙ୍କ ତୀବ୍ର ଚାଳନା ଭୟରେ ରାଜାମାନଙ୍କୁ ରକ୍ଷା କରିବା

ଲାଗି ଇଂରେଜ ସୈନ୍ୟମାନେ ମଧ୍ୟ ସାହସ କଲେ ନାହିଁ । ସ୍ୱୟଂ ବ୍ରିଟିଶ ସମ୍ରାଟ୍‌ଙ୍କ ସିଂହାସନ ଟଳମଳ ହେଉଥିଲା ବେଳେ ରାଜା ମହାରାଜାଙ୍କ ଆସନ ମଧ୍ୟ ଥରହର ହେଲା । ଅନେକ ସ୍ଥାନରେ ପ୍ରଜାମାନେ ନିଜ ନିଜ ଅଞ୍ଚଳକୁ ସ୍ୱାଧୀନ ଇଲାକା ବୋଲି ଘୋଷଣା କରି ତ୍ରିରଙ୍ଗ ପତାକା ଉତ୍ତୋଳନ କଲେ ।

ଏହି ପ୍ରକାର ପରିବେଶ ମଧ୍ୟରେ କଲିକତା ମହାନଗରୀ ଅହରହ ପ୍ରକମ୍ପିତ ହେଉଥାଏ । ସହସ୍ର କଣ୍ଠରୁ ଅବିରତ ନିର୍ଗତ ହେଉଥାଏ ବିପ୍ଳବର ଧ୍ୱନି - 'ଭାରତ ମାତା କି ଜୟ', 'ମହାତ୍ମା ଗାନ୍ଧୀ କି ଜୟ', 'ଇନକିଲାବ୍ ଜିନ୍ଦାବାଦ' ।

ଭାରତଛାଡ଼ ବିପ୍ଳବ ଭୟଙ୍କର ଗତି ଧାରଣ କରୁଥାଏ । କେତେକ ମାସ ପରେ ଦିନେ ସନ୍ଧ୍ୟା ସମୟରେ କବିତା ତାଙ୍କର ପିଣ୍ଡା ଉପରୁ ଦେଖିପାରିଲେ ଘର ଆଗରେ ଥିବା ଆବର୍ଜନାମୟ ମ୍ୟୁନିସିପାଲିଟି ପଡ଼ିଆ ମଧ୍ୟରେ ଖଣ୍ଡିଏ ମୋଟର ଗାଡ଼ି ପ୍ରବେଶ କଲା । ସେଥିରୁ ବାହାରି ଆସିଲେ ଜଣେ ଭଦ୍ର ବ୍ୟକ୍ତି । ଗଳି ରାସ୍ତାରେ ଚାଲି ଚାଲି ସେ ଖୋଜୁଥାଆନ୍ତି କୌଣସି ବ୍ୟକ୍ତିର ବାସସ୍ଥାନ । ପଥଚାରୀମାନଙ୍କୁ ପଚାରି ପଚାରି ଶେଷରେ ସେ ହଠାତ୍ ଛିଡ଼ା ହୋଇଗଲେ କବିତାଦେବୀଙ୍କ ଘର ସାମନାରେ । ସନ୍ଧ୍ୟାବେଳର ଝାପସା ଅନ୍ଧକାର ମଧ୍ୟରେ କବିତା ଚମକି ଉଠି ଦେଖିଲେ ପିଣ୍ଡା ତଳେ ଛିଡ଼ା ହୋଇଛନ୍ତି ସ୍ୱୟଂ ଡକ୍ଟର ରାୟ ।

''ମା କବିତା, ଭିତରକୁ ଚାଲ, ତୁମକୁ ଭେଟିବାକୁ ଆସିଛି, କଥା ଅଛି ।''

ତାଙ୍କ ପାଦଧୂଳି ନେଇ କବିତା ଡକ୍ଟର ରାୟଙ୍କୁ ଘର ଭିତରକୁ ପାଛୋଟି ନେଲେ । ସେତେବେଳେ ମମତାଦେବୀ ଚୁଲି ପାଖରେ ପିଲାମାନଙ୍କପାଇଁ ଜଳଖିଆ ତିଆରି କରୁଥାନ୍ତି । ତାଙ୍କର ମଧ୍ୟ ଦୃଷ୍ଟି ପଡ଼ିଗଲା ଡକ୍ଟର ରାୟଙ୍କ ଉପରେ । ତତ୍‌କ୍ଷଣାତ୍ ବାହାରି ଆସି ସେ ଡାକ୍ତରବାବୁଙ୍କ ପାଦସ୍ପର୍ଶ କଲେ ।

''ପିଲାମାନେ ଘରେ ନାହାନ୍ତି ତ ?'' ପ୍ରଶ୍ନ କଲେ ଡକ୍ଟର ରାୟ ।

ମମତା ଉତ୍ତର ଦେଲେ, ''ବଡ଼ପୁଅର ପରୀକ୍ଷା ଫଳ ପ୍ରକାଶ ପାଇବ ଜାଣି ସେ କଲେଜକୁ ଯାଇଛି । ଅନ୍ୟ ତିନିଜଣ ସଉଦା କିଣିବାକୁ ଯାଇଛନ୍ତି ।''

''କବିତା ଓ ମମତା, ଗୋଟିଏ ଦାରୁଣ ଦୁଃସମ୍ବାଦ ଦେବାକୁ ଆସିଛି । ପିଲାମାନଙ୍କୁ ଏକଥା କଦାପି କହିବ ନାହିଁ । ବିଶ୍ୱସ୍ତ ଗୋପନୀୟ ସୂତ୍ରରୁ ସତ୍ୟ ଘଟଣାଟି ଜାଣିବାକୁ ପାଇଛି । ଭାରତଛାଡ଼ ଆନ୍ଦୋଳନର ଅଗ୍ରଗତି ବିଷୟରେ ଅବଗତ ହୋଇ ଦୀପ୍ତିମାନ ଓ ତପସ୍ୱୀ ସେଲ୍ୟୁଲାର୍ ଜେଲର ଅନ୍ୟ କଏଦୀମାନଙ୍କୁ ସଙ୍ଗଠିତ କରି

ବ୍ରିଟିଶ ପ୍ରହରୀମାନଙ୍କୁ ଆକ୍ରମଣ କରି ଆହତ କଲେ । ଫଳରେ କାରାଗାରର ଗଭର୍ଣ୍ଣର ଉଭୟଙ୍କୁ ଫାଶୀକାଠରେ ଝୁଲାଇ ହତ୍ୟା କରିଛନ୍ତି । ତୁମେ ଦୁହେଁ ପ୍ରଥମରୁ ଜାଣିଥିଲ କଳାପାଣି ଦଣ୍ଡ ପାଇଲା ପରେ ସେଠାରୁ କେହି ଫେରନ୍ତି ନାହିଁ । ଶେଷରେ ତାହାହିଁ ଘଟିଲା । କିନ୍ତୁ ଉଭୟେ ସହିଦ ଭାବରେ ଜାତିପ୍ରାଣରେ ଅମର ରହିବେ ।''

କପାଳରେ ହାତ ରଖି ଉଭୟ ମହିଳା ବିକଳରେ କାନ୍ଦିବାକୁ ଲାଗିଲେ । ଡାକ୍ତରବାବୁ ସତର୍କବାଣୀ ଶୁଣାଇଲେ, ''କ୍ରନ୍ଦନଦ୍ୱାରା କାହାର ପୁନର୍ଜୀବନ ମିଳେ ନାହିଁ । ଯାହା ଅବଶ୍ୟମ୍ଭାବୀ ଥିଲା ତାହାହିଁ ଘଟିଗଲା । ଦେଶର ମୁକ୍ତି ଲାଗି ପ୍ରାଣଦାନ କରିଥିବା ଦୁଇଜଣ ସହିଦଙ୍କ ପତ୍ନୀ ଭାବରେ ତୁମମାନଙ୍କୁ ସାହସିନୀ ହେବାକୁ ପଡ଼ିବ । ନିଜ ନିଜ ପତିଙ୍କୁ ସ୍ମରଣପୂର୍ବକ ସେମାନଙ୍କ ଚରମ ତ୍ୟାଗ ବିଷୟ ମନେରଖି ଗର୍ବ ଅନୁଭବ କରିବା ହେଉଛି ଏବେଠାରୁ ତୁମ ଦୁହିଁଙ୍କର କର୍ତ୍ତବ୍ୟ । ମୋତେ ଯେକୌଣସି ସମୟରେ ଗିରଫ କରାଯାଇପାରେ । ସେଥିଲାଗି ଗୋପନରେ ଆସିଛି । ତୁମମାନଙ୍କୁ ବିଷାଦମୟ ଘଟଣାଟି ଜଣାଇ ଦେଇ ଚାଲିଯାଉଛି । ପିଲାମାନଙ୍କ ଲାଗି ତୁମ ଦୁହିଁଙ୍କୁ ଧୈର୍ଯ୍ୟ ସହ ଅବିଚଳିତ ଭାବରେ ବଞ୍ଚିବାକୁ ହେବ ।''

ଡକ୍ଟର ରାୟ ତୁରନ୍ତ ଘର ଭିତରୁ ବାହାରି ପଡ଼ିଲେ । ସେତିକିବେଳେ ଦୌଡ଼ି ଦୌଡ଼ି ଆସୁଥାଏ ତେଜସ୍ୱୀ । ସମ୍ମୁଖରେ ଜଣେ ମହାନ ହିତୈଷୀଙ୍କୁ ଦେଖିପାରି ସେ ଆଚମ୍ବିତ ହେବା ସଙ୍ଗେ ତାଙ୍କ ପାଦସ୍ପର୍ଶ କଲା । ପରେ ଆନନ୍ଦରେ କହିପକାଇଲା, ''ସାର୍, ବି.ଏ. ପରୀକ୍ଷା ଫଳ ବାହାରି ଯାଇଛି । ଅନର୍ସ ସହ ମୁଁ ଫାଷ୍ଟ ଡିଭିଜନରେ ପାସ୍ କରିଛି । ପ୍ରିନ୍ସିପାଲ କହିଲେ, ଏମ୍.ଏ. ପଢ଼ିବାଲାଗି ମୋତେ ବୃତ୍ତି ମିଳିପାରେ ।''

''ସାବାସ୍, ତେଜସ୍ୱୀ ସାବାସ୍ ! ଦେଶ ସ୍ୱାଧୀନ ହେବାକୁ ଯାଉଛି । ଉଚ୍ଚଶିକ୍ଷିତ ନାଗରିକ ଭାବରେ ତୁମେମାନେ ହିଁ ହେବ ଦେଶର ଭବିଷ୍ୟତ କର୍ଣ୍ଣଧାର । ମନଦେଇ ପାଠପଢ଼ି ଜଣେ ସଂଗ୍ରାମୀ ବାବାଙ୍କର ସୁପୁତ୍ର ଭାବରେ ତୁମେ ଓ ତୁମପରି ଯୁବକମାନେ ଦେଶର ମର୍ଯ୍ୟାଦା ରଖିପାରିବ । ମୋର ଆଶୀର୍ବାଦ ରହିଲା ।''

କ୍ଷଣକାଳ ନୀରବ ରହିଲା ପରେ ଡକ୍ଟର ରାୟ ପୁନର୍ବାର ପଚାରିଲେ, ''ତୁମ ଭାଇମାନେ କିପରି ପଢୁଛନ୍ତି ?''

ତେଜସ୍ୱୀ ଉତ୍ତର ଦେଲା, ''ମୋ ତଳ ଭାଇ ସ୍ୱରାଜ ବି.ଏ. ପ୍ରଥମଭାଗରେ ପଢୁଛି । ତା' ତଳକୁ ସ୍ୱାଧୀନ ହେଉଛି ଆଇ.ଏ. ଶେଷ ବର୍ଷର ଛାତ୍ର ଏବଂ ଭଉଣୀ କରୁଣା ମେଟ୍ରିକ ପରୀକ୍ଷା ଦେବ । ସମସ୍ତେ ହଷ୍ଟେଲରେ ରହି ଭଲ ପଢୁଛନ୍ତି ।''

ପିଣ୍ଡାରେ କଥାବାର୍ତ୍ତା ଶୁଣି ମମତା ଓ କବିତା ଭିତରୁ ବାହାରି ପଡ଼ିଲେ । ଉଭୟଙ୍କ ଆଖିରୁ ଲୁହ ଝରି ଯାଉଥାଏ । ଡକ୍ଟର ରାୟ କହିଲେ, ''ମା ମମତା, ତୁମେ ବାସ୍ତବିକ୍ ରତ୍ନଗର୍ଭା, ତୁମର ପ୍ରତ୍ୟେକଟି ପିଲା ମଣିଷ ହେବ ଏବଂ ତୁମେ କବିତା, ତୁମରି ନିକଟରେ ଆଶ୍ରୟ ପାଇ ମଣିଷ ହେବାକୁ ସୁଯୋଗ ପାଇଲେ ବୋଲି ତୁମେ ମଧ ସେମାନଙ୍କର ଜନନୀ । କଷ୍ଟ ପରିଶ୍ରମ ଦ୍ୱାରା ତୁମେ ଦୁଇ ଭଉଣୀ ପିଲାମାନଙ୍କୁ ମଣିଷ କରୁଛ । ସେହି ବ୍ରତରୁ ବିଚ୍ୟୁତ ହେବାର ପ୍ରଶ୍ନ ନାହିଁ ।''

ମାଡ଼ିଆସୁଥିବା ଅନ୍ଧକାର ମଧ୍ୟରେ ଡକ୍ଟର ରାୟ ଅନ୍ତର୍ଦ୍ଧାନ ହେଲେ । ନିଜ ନିଜ କୋହ ସମ୍ଭାଳି ନେଇ କବିତା ଓ ମମତା ସସ୍ନେହରେ ତେଜକୁ ଜଳଖିଆ ଖୁଆଇଲେ । ପରୀକ୍ଷାରେ ଫାଷ୍ଟ କ୍ଲାସ ପାଇଥିବା ଯୋଗୁଁ ଯେଉଁ ପ୍ରକାର ଉତ୍‌ଫୁଲ୍ଲିତ ହେବା ସ୍ୱାଭାବିକ, ତାହା ପରିବର୍ତ୍ତେ ଗମ୍ଭୀର ବଦନରେ ବସିପଡ଼ି ତେଜସ୍ୱୀ ହଠାତ୍ ନିଜର ଇଚ୍ଛା ପ୍ରକାଶ କଲା,

''ମା', କାକୀମା', ଡକ୍ଟର ରାୟ କହିଗଲେ ମୁଁ ଏମ୍.ଏ. ପଢ଼ିବି । ସ୍ୱାଧୀନ ଭାରତର ସୁନାଗରିକ ହେବି । ନା, ମୁଁ ଭାରତଛାଡ଼ ଆନ୍ଦୋଳନରେ ଯୋଗ ଦେବି । ଏପରି ସୁଯୋଗ ମୋ ବାବା ଓ କକା ପାଇପାରିଲେ ନାହିଁ । ସେମାନେ ଏବେ ଜେଲ ମଧ୍ୟରେ ଯେପରି ନିର୍ଯାତନା ଭୋଗ କରୁଥିବେ ତାହାର ପ୍ରତିଶୋଧ ନେବି । ଦେଶ ସ୍ୱାଧୀନ ହେଲା ପରେ ସେମାନେ ନିଶ୍ଚୟ ସ୍ୱଦେଶକୁ ଫେରିବେ । ସେମାନଙ୍କ ସମ୍ମୁଖରେ ମୁଁ ଦମ୍ଭସହ କହିପାରିବି, ମୁଁ ଜଣେ ସଂଗ୍ରାମୀ, ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲି ।''

ତେଜସ୍ୱୀର କଥା ଶେଷ ହେବା ପୂର୍ବରୁ ଉଭୟ ମହିଳା କରୁଣ ଭାବରେ କାନ୍ଦିଉଠିଲେ । ଡକ୍ଟର ରାୟଙ୍କ ଉପଦେଶ ଭୁଲିଯାଇ କବିତାଦେବୀ କହି ପକାଇଲେ,

''ତେଜ, ତୋ ବାବା ଓ କକା କେବେହେଲେ ଫେରିପାରିବେ ନାହିଁ । ସେମାନଙ୍କୁ ଜେଲ ଭିତରେ ଫାଶୀ ଦିଆଯାଇଛି । ଡକ୍ଟର ରାୟ ସେହି ଦୁଃସମ୍ବାଦ ଦେବାଲାଗି ଆସିଥିଲେ ।'' ପୁନର୍ବାର ଛାତି ଫଟାଇ ଉଭୟେ ପରସ୍ପରକୁ ଗଳାରେ ଛନ୍ଦାଇଧରି ଉଚ୍ଚ ସ୍ୱରରେ କାନ୍ଦିବାକୁ ଲାଗିଗଲେ ।

ଅଶ୍ରୁ ପରିବର୍ତ୍ତେ ତେଜସ୍ୱୀର ଚକ୍ଷୁରୁ ବାହାରି ଆସୁଥାଏ ସତେଯେପରି ଅଗ୍ନିସ୍ଫୁଲିଙ୍ଗ । ମେଜିଆ ଉପରେ ଚିନ୍ତାମଗ୍ନ ଅବସ୍ଥାରେ ସେ ନୀରବ ହୋଇ ବସିରହିଲା ଅନେକ୍ ସମୟ । ଯୁବକ ଅବସ୍ଥା । କେଉଁ ବିଷୟ ସେ ଚିନ୍ତା କରୁଥାଏ ତାହା ତା ମା' କିମ୍ବା କାକୀମା' ପକ୍ଷରେ ଅନୁମାନ କରିବା ସମ୍ଭବ ନ ଥାଏ ।

ସେଦିନ ରାତିରେ ରାନ୍ଧିବା କିମ୍ବା ଖାଇବା ପ୍ରଶ୍ନ ନ ଥାଏ । କବିତା ଓ ମମତା ନିଜ ନିଜ କୋଠରି ମଧ୍ୟରେ ପ୍ରବେଶ କଲେ, ନିଦ୍ରାପାଇଁ ନୁହେଁ, ପତିହରା ପତ୍ନୀର ଶୋକାକୁଳ ମନପ୍ରାଣର ଭାବାବେଗ ମଧ୍ୟରେ ନିମଜ୍ଜିତ ରହିବା ଲାଗି ।

ତେଜସ୍ୱୀ ନୀରବରେ ଚାଲିଗଲା ତା' ଶୋଇବା ଘରକୁ । ଭିତରୁ ବନ୍ଦ କରିଦେଲା ଦରଜା ।

ରାତି ପାହିଲା । ମମତା ଦେଖିଲେ ତେଜର ଘର ଖୋଲା ରହିଛି । ପିଣ୍ଡା କବାଟ ମଧ୍ୟ ଖୋଲା, ଯଦିଚ ବାହାରପଟରୁ ଆଉଜା ଅଛି । ଅଜଣା ଆଶଙ୍କାରେ ସେ ଡାକିଲେ କବିତାଙ୍କୁ । ଉଭୟେ ଦେଖିବାକୁ ପାଇଲେ ତେଜର ଖଟ ଉପରେ ମୁକ୍ତ ଆକାରରେ ଥୁଆ ହୋଇଥାଏ ଖଣ୍ଡିଏ କାଗଜ । ଲେଖା ଥିଲା -

''ମା' ଓ କାକୀମା' । ବିନା ଅନୁମତିରେ ଘର ଛାଡ଼ି ଚାଲିଯାଉଥିବାରୁ ମୋତେ କ୍ଷମା ଦେବେ । ମୁଁ ଜଣେ ଯୁବକ । ବୟସ ହେଲାଣି ବାଇଶ । ମୁଁ ନାବାଳକ ନୁହେଁ । ନିଜର ଇଚ୍ଛା ଅନୁଯାୟୀ କାର୍ଯ୍ୟ କରିବା ଲାଗି ମୁଁ ସକ୍ଷମ । ବାବା ଓ କକାଙ୍କ ନୃଶଂସ ହତ୍ୟାର ପ୍ରତିଶୋଧ ନେବା ନିମନ୍ତେ ମୋତେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେବାକୁ ହେବ । ଏହା ହେଉଛି ମୋ ବିବେକ, ମୋ ଦେଶ ଏବଂ ମୋ ବାବା କକାଙ୍କର ମୋ ପ୍ରତି ଆହ୍ୱାନ ।

''ମୁଁ ପ୍ରଥମେ ଯିବି ମୋ ଜନ୍ମମାଟିକୁ । ସେଠାରେ ଆନ୍ଦୋଳନ ଚଳାଇ ଜମିଦାରୀ ଶାସନ ଓ ବିଦେଶୀ ଶାସନ ଲୋପ କରିବି । ଆମ ଇଲାକାକୁ ସ୍ୱାଧୀନ ଘୋଷଣା କଲା ପରେ ଚାଲିଯିବି ପାର୍ଶ୍ୱବର୍ତ୍ତୀ ଦେଶୀୟ ରାଜ୍ୟର ଆଦିବାସୀମାନଙ୍କ ଗହଣକୁ । ସେମାନଙ୍କୁ ସଂଗଠିତ କରି ସଂଗ୍ରାମ ଚଳାଇବି । ଅତ୍ୟାଚାରୀ ରଜାର ଶାସନ ଲୋପ କରିବି । ସ୍ୱର୍ଗରେ ଥାଇ ମୋ ବାବା ଓ କକା ଆଶୀର୍ବାଦ ବର୍ଷଣ କରିବେ ।

''ମୋ ଲାଗି ଆପଣମାନେ ଚିନ୍ତିତ ହେବେ ନାହିଁ । ଦେଶପାଇଁ ଯାହା କରିବା ଉଚିତ ତାହାହିଁ କରିବି । ମହାତ୍ମା ଗାନ୍ଧୀଙ୍କ ଆଦେଶ ହେଉଛି - 'କର ବା ମର' । ଏହାର ଅର୍ଥ ପରିଷ୍କାର । ତାଙ୍କର ଏହି ଶେଷ ସଂଗ୍ରାମ କେବଳ ସ୍ୱାଧୀନତା ପ୍ରାପ୍ତିରେ ହିଁ ଶେଷ ହେବ ।

''ଆପଣମାନଙ୍କୁ ମୋର ଏକମାତ୍ର ପ୍ରାର୍ଥନା, ମୋ ବିଷୟ ନ ଭାବି, ମୋ ଭାଇ ଓ ଭଉଣୀ ପ୍ରତି ଧ୍ୟାନ ଦେବେ । ସେମାନେ ମନଦେଇ ପାଠ ପଢୁଛନ୍ତି । ପରୀକ୍ଷାରେ ନିଶ୍ଚୟ ଭଲ କରିବେ ଏବଂ ସ୍ୱାଧୀନ ଦେଶର ସେବା ଲାଗି ସୁଯୋଗ ପାଇବେ । ବାବା ଓ କକାଙ୍କ ଅମର ଆତ୍ମା ସେହିମାନଙ୍କ ଭବିଷ୍ୟତ ଦେଖି ତୃପ୍ତି ପାଇପାରିବେ ।

''ଆନ୍ଦୋଳନ ଶେଷ ହେଲା ପରେ ଆପଣମାନଙ୍କ କୋଳକୁ ଫେରିଆସିବି । ଦୟାପୂର୍ବକ ମୋର ସନ୍ଧାନ ଲାଗି ଉଦ୍ୟମ କରିବେ ନାହିଁ । ସ୍ୱରାଜ, ସ୍ୱାଧୀନ ଓ କରୁଣାକୁ ମୋ ସ୍ନେହ ଜଣାଇଦେବେ । ଆପଣମାନଙ୍କୁ ପ୍ରଣାମ ସହ ବିଦାୟ ନେଉଛି । ଇତି ।

ସ୍ନେହାଧୀନ

ତେଜ ।''

ଲେଖାଟି ପଢ଼ିସାରି ମମତା ମାଟି ଉପରେ ଲୋଟି ପଡ଼ିଲେ । କବିତା ବସିପଡ଼ି ବୁଝାଇବାକୁ ଲାଗିଲେ,

''ଦିଦୀ, ତେଜ ଛୋଟ ପିଲା ନୁହେଁ । ଆନ୍ଦୋଳନରେ ଝାସ ଦେଲେ ମଧ୍ୟ ନିଜ ବୁଦ୍ଧି ବଳରେ ସେ ପୁଲିସ ହାତରୁ ଖସିଯିବ । ଖୁବ୍ ବେଶିରେ, ଧରାପଡ଼ିଲେ ଜେଲ ଯାଇପାରେ । ଲକ୍ଷ ଲକ୍ଷ ନରନାରୀ ଜେଲ ଗଲେଣି । ସ୍କୁଲ ଛାତ୍ରମାନେ ମଧ୍ୟ । ସେଥିପାଇଁ ଆତଙ୍କିତ ହେବାର କୌଣସି କାରଣ ନାହିଁ ।''

''ମୋତେ ଏ ବିଷୟରେ କିଛି କୁହ ନାହିଁ । ମୋ ପୁଅର ସ୍ୱଭାବ ମୁଁ ଜାଣିଛି । କେଉଁଠି କେତେବେଳେ କ'ଣ କରିପକାଇବ ତାହା ଅନୁମାନ କରିବା ସହଜ ନୁହେଁ । ଗାନ୍ଧୀ ରହିଲେ ଜେଲରେ । କଂଗ୍ରେସ କର୍ମୀମାନେ ଜେଲରେ । ନେତୃତ୍ୱହୀନ ଜନତା ଦିଗ୍‌ଦର୍ଶନ ପାଉ ନାହାନ୍ତି । ସେଥିଯୋଗୁଁ ଅନେକ ସ୍ଥାନରେ ହିଂସାକାଣ୍ଡ ଘଟିଯାଉଛି । ପୁଲିସ ଗୁଳିରେ ଶହ ଶହ ମରୁଛନ୍ତି । ତେଜ ପରି ଉତ୍ତ୍ୟକ୍ତ ଯୁବକ ପିତାଙ୍କ ମୃତ୍ୟୁର ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ଭାବପ୍ରବଣ ଅବସ୍ଥାରେ ହିଂସାତ୍ମକ କାଣ୍ଡ କରିପାରେ ଏବଂ ନିଜର ଜୀବନ ମଧ୍ୟ ଦେଇପାରେ । ମୁଁ ମୋ ପୁଅକୁ ଜାଣେ ଓ ଭଲ ଭାବରେ ଜାଣେ ।''

ଧୈର୍ଯ୍ୟ ଶକ୍ତି ହରାଇ ମମତା ବିଳାପ କରିବାକୁ ଲାଗିଲେ । କବିତାକୁ କହିଲେ, ''ଭଉଣୀ, ତେଜ ପ୍ରଥମେ ଗାଁକୁ ଯାଇଥିବ । ମୁଁ ସେଠାରେ ପହଞ୍ଚିବି । ବୁଝାଇ ଶୁଝାଇ ଫେରାଇ ଆଣିବି ।''

କବିତା ଉତ୍ତର କିମ୍ବା ଉପଦେଶ ଦେବାକୁ ବୁଦ୍ଧି ପାଇଲେ ନାହିଁ ।

## || ୧୫ ||

ନିଜ ଗ୍ରାମକୁ ଯିବା ପୂର୍ବରୁ ମମତାଦେବୀଙ୍କ ପ୍ରବଳ ଇଚ୍ଛା ହେଲା ସ୍ୱରାଜ, ସ୍ୱାଧୀନ ଓ କରୁଣାକୁ ଦେଖିଯିବେ । କବିତାଙ୍କୁ ସାଙ୍ଗରେ ନେଇ ସେ ପୃଥକ ପୃଥକ ହଷ୍ଟେଲରେ ଥିବା ଦୁଇ ପୁଅ ଓ ବାଳିକା ହଷ୍ଟେଲରେ ଥିବା ଝିଅକୁ ଭେଟିଲେ । ତିନିଜଣକୁ ଗୋଟିଏ ଜାଗାକୁ ଡାକି ନେଇ ସେ ପିଲାମାନଙ୍କୁ କେତେଗୁଡ଼ିଏ ଉପଦେଶ ଦେଲେ । ସେମାନଙ୍କ ବାବା ଆଣ୍ଡାମାନରେ ଭଲ ଅଛନ୍ତି ଏବଂ ସ୍ୱାଧୀନତା ପରେ ସ୍ୱଦେଶକୁ ଫେରିଆସିବେ ବୋଲି ଆଶ୍ୱାସନା ଦେଲେ । ସେଥିସହ ଜଣାଇଲେ ଯେ ତେଜସ୍ୱୀ ଗାଁକୁ ପଳାଇ ଯାଇଛି ନିଜ ଅଞ୍ଚଳରେ ଆନ୍ଦୋଳନ କରିବ ବୋଲି । ''ମୁଁ ଯାଉଛି ତେଜ ପାଖରେ କିଛିଦିନ ରହିବି । ଫେରିଆସିଲେ ଦେଖା କରିବି । ପରୀକ୍ଷାରେ ଭଲ କରିବ ବୋଲି ମନ ଦେଇ ପାଠ ପଢ଼ ।''

ସ୍ୱରାଜ ହସି ହସି ଉତ୍ତର ଦେଲା, ''ମା', ତେଜଭାଇ ଫାଷ୍ଟ ଡିଭିଜନରେ ପାସ୍ କରିଛି । ମୁଁ ଫାଷ୍ଟ ଡିଭିଜନରେ ଫାଷ୍ଟ ହେବି । ଦେଖିବ, ଭାଇକୁ ଟପିଯିବି ।''

ସ୍ୱାଧୀନ କହିଲା, ''ଅଧ୍ୟାପକମାନେ କହୁଛନ୍ତି, ମୁଁ ଆଇ.ଏ. ପରୀକ୍ଷାରେ ଖୁବ୍ ଭଲ ନମ୍ବର ରଖି ଉତ୍ତୀର୍ଣ୍ଣ ହେବି ।''

କରୁଣା ମୁହଁ ତଳକୁ କରି ଛିଡ଼ା ହୋଇଥାଏ । ଜାଣିଥାଏ, ସେ ଭାଇମାନଙ୍କ ପରି ମେଧାବୀ ନୁହେଁ ।

ଦୁଇ ପୁଅକୁ ନାନା ପ୍ରକାର ଉପଦେଶ ପ୍ରଦାନ ପରେ ମମତାଦେବୀ ଫେରିବାଲାଗି ଉଦ୍ୟତ ହେଲା ସମୟରେ କବିତାଦେବୀ ହଠାତ୍ କରୁଣାକୁ କୁଣ୍ଢାଇ ପକାଇ ନିବେଦନ କଲେ, ''ଦିଦୀ, ଆପଣ ଚାଲିଗଲେ ମୋତେ ଏକାକୀ ଘରେ ରହିବାକୁ ଭଲ ଲାଗିବ ନାହିଁ । ମୋ ପାଖରେ କରୁଣା ଯଦି କିଛିଦିନପାଇଁ ରହନ୍ତା, ତା' ମୁହଁକୁ ଚାହିଁ ସୁଖରେ ରହିପାରନ୍ତି । ଆପଣ ଯଦି ଅନୁମତି ଦେବେ, କରୁଣାକୁ ହଷ୍ଟେଲରୁ ନେଇଯାଆନ୍ତି । ତା' ପଢ଼ାପଢ଼ିରେ କ୍ଷତି ହେବ ନାହିଁ । ମୁଁ ନିଜେ ସକାଳେ ଓ ସନ୍ଧ୍ୟାରେ ତାକୁ ପାଠ ପଢ଼ାଇବି ।''

କରୁଣା ତା' କାକୀମା' ପାଖକୁ ଦୌଡ଼ିଆସି କହିଲା, ''ହଁ, ମା' । ମୁଁ କାକୀମା'ଙ୍କ ଘରେ ରହିବି । ହଷ୍ଟେଲରେ ଭଲ ଲାଗୁ ନାହିଁ । ସାଙ୍ଗମାନେ ପାଠ ନ ପଢ଼ି ହସଖୁସିରେ ସମୟ ନଷ୍ଟ କରନ୍ତି । କହନ୍ତି, ବାପା ମା' ଶାଶୁଘରକୁ ପଠାଇ ଦେବା ଲାଗି ବର ଖୋଜୁଛନ୍ତି । ପାଠ ପଢ଼ି ଲାଭ କ'ଣ ହେବ ! ଆମେ କ'ଣ ଚାକିରି କରିବୁ ଯେ ମନଦେଇ ଦିନ ରାତି ପାଠ ପଢ଼ିବୁ ! ଚୁଲି ପାଖ ତ ଆମର ଭାଗ୍ୟ !''

କରୁଣାର କଥା ଶୁଣି ମମତା ଓ କବିତା ହସିଉଠିଲେ । ମମତା ଭାବିନେଲେ, ଅଭାଗିନୀ କବିତାର ଦୁଃଖପୂର୍ଣ୍ଣ ସମୟରେ ଜଣେ ଛୁଆ ପାଖରେ ରହିଲେ ସେ ସାନ୍ତ୍ୱନା ପାଇବେ ।

ଦୁଇ ପୁଅକୁ ସେମାନଙ୍କ ହଷ୍ଟେଲକୁ ପଠାଇ ଦିଆଗଲା । କବିତାଦେବୀ କରୁଣାକୁ ନେଇଗଲେ ତା' ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟଙ୍କ ପାଖକୁ । ତାଙ୍କ ଅନୁମତି ସହ ଝିଅକୁ ସାଙ୍ଗରେ ନେଇ ଘରକୁ ଫେରିଲେ ।

ତିନି ଦିନ ପରେ ମମତାଦେବୀ ନର୍ସିଂହୋମରୁ ଛୁଟି ପାଇ ନିଜ ଗ୍ରାମକୁ ଯିବାଲାଗି ପ୍ରସ୍ତୁତ ହେଲେ । ଶାଢ଼ି ପିନ୍ଧି ସଧବା ବେଶରେ ଘରକୁ ଫେରିବାକୁ ଇଚ୍ଛା ହେଲା ନାହିଁ । ଗୋପନରେ ଦୁଇଖଣ୍ଡି ବିଧବା ପିନ୍ଧିବା ଧୋତି କିଣି ଆଣି ନିଜ ବାକ୍ସରେ ରଖିଲେ ।

ଅପରାହ୍ଣରେ କଲିକତାରୁ ଟ୍ରେନ ଛାଡ଼ିବ । ସକାଳଓଳି କବିତାଦେବୀଙ୍କ ସହିତ କଥାବାର୍ତ୍ତା କଲେ । ''ତେଜସ୍ୱୀ ପାଇଁ ମନ ଅଥୟ ହେଉଛି । କେଉଁଠି କ'ଣ କରୁଥିବ, ତାହାହିଁ ଚିନ୍ତା । ଜମିଦାର ଓ ରାଜାମାନେ ସହଜ ଲୋକ ନୁହନ୍ତି । ବ୍ରିଟିଶ ସରକାର ମଧ ଭୀଷଣ ଆକ୍ରୋଶରେ ଦମନ ଲୀଳା ଚଳାଇଛନ୍ତି । ପ୍ରତିଦିନ ସମ୍ବାଦପତ୍ରରେ ପ୍ରକାଶ ପାଉଛି, କେଉଁଠାରେ ଲାଠିମାଡ଼, କେଉଁଠାରେ ଗୁଳି ବର୍ଷଣ ଓ ଅନ୍ୟ କୌଣସି କୌଣସି ସ୍ଥାନରେ ଆକାଶରୁ ବୋମା ନିକ୍ଷେପ । ଗାଁ ପରେ ଗାଁ ପୁଲିସମାନେ ଲୋକଙ୍କ ଘରଦ୍ୱାରରେ ନିଆଁ ଲଗାଇ ଦେଉଛନ୍ତି ବୋଲି ଶୁଣିବାକୁ ମିଳୁଛି । ତେଜ ଯଦି ଆମ ଗ୍ରାମାଞ୍ଚଳରେ ଆନ୍ଦୋଳନ ଚଳାଇଥିବ, ଅବସ୍ଥା ଭୟଙ୍କର ହୋଇପାରେ !''

''ମୋର ବିଶ୍ୱାସ, ଏଥର ଆଉ ବିପ୍ଳବ ଦମନ ସମ୍ଭବ ନୁହେଁ । ମହାତ୍ମା ଗାନ୍ଧୀଙ୍କ ଦେଶବାସୀଙ୍କ ପ୍ରତି ଆହ୍ୱାନ, ଯଥା, ସ୍ୱାଧୀନତା ଆଣ ଅଥବା ଜୀବନ ଦିଅ, ନିଶ୍ଚୟ ସଫଳ ହେବ । ସରକାର ଡରି ଗଲେଣି । ମହାଯୁଦ୍ଧ ଚାଲିଛି । ଇଂରେଜମାନେ ସବୁ ସ୍ଥାନରେ ହାରୁଛନ୍ତି । ସେମାନଙ୍କ ନିଜ ଦେଶ ଶତ୍ରୁପକ୍ଷର ବୋମାମାଡ଼ରେ ଧ୍ୱଂସ ପାଇଗଲାଣି । ଅଧିକକାଳ ଭାରତଶାସନ ଲାଗି ସେମାନେ ସକ୍ଷମ ହେବେ ନାହିଁ । ନିଶ୍ଚିତ ଭାବେ ସେମାନେ ଆମ ଦେଶରୁ ପଳାଇଯିବେ । ପ୍ରଥମେ ନିଜ ଦେଶ ରହିଲେ ସିନା, ସାମ୍ରାଜ୍ୟ ରହିବ । ଆପଣ ତେଜସ୍ୱୀ ଲାଗି ଚିନ୍ତା କରନ୍ତୁ ନାହିଁ । ବି.ଏ. ପାସ୍ କରିଛି । ବିଦ୍ୟା ଓ ବୁଦ୍ଧି ବଳରେ ସେ ବିଦ୍ରୋହ ପରିଚାଳନା କରୁଥିବ । ଅବଶ୍ୟ,

ଆପଣ ଘରେ ରହିଲେ, ସେ ସଂଯତ ଭାବରେ ଆନ୍ଦୋଳନ ଚଳାଇବ,'' ବୁଝାଇଲେ କବିତା ।

ମମତା ଉଠିପଡ଼ି ନିଜ କୋଠରି ମଧ୍ୟରୁ ଛୋଟ ଡବାଟିଏ ହାତରେ ଧରି ବାହାରି ଆସିଲେ । ''ଭଉଣୀ, ଏହା ଭିତରେ ଅଛି ଦୁଇଖଣ୍ଡି ସୁନା ଚୁଡ଼ି, ଦୁଇଟି କାନଫୁଲ ଓ ଗୋଟିଏ ହାର । ଏଗୁଡ଼ିକ ମୋ ମା'ଙ୍କ ଅଳଙ୍କାର । ବାବାଙ୍କ ଆଦେଶ ମାନି କରୁଣାର ବିବାହଲାଗି ସାଇତି ରଖିଛି । ଦୈବାତ୍ ଯଦି ମୁଁ ଫେରି ଆସି ନ ପାରିବି, କରୁଣାର ବିବାହ ବେଳେ ତାକୁ ଏହି ଅଳଙ୍କାର ପିନ୍ଧାଇଦେବ ।'' କଥା ଶେଷ ହେବା ପୂର୍ବରୁ ସେ କାନ୍ଦିଉଠିଲେ ।

''ଏପରି କଥା କାହିଁକି କହୁଛ ଦିଦୀ ?''

''ମନକୁ ଭୟ ଆସୁଛି ବୋଲି କହିଲି । କରୁଣାର ବୟସ ଚଉଦ ହେଲାଣି । ମୁଁ ଫେରିଲା ପରେ ବର ଖୋଜିବା । ଯଦି ସରକାର ମୋତେ ତପସ୍ୱୀବାବୁଙ୍କ ପତ୍ନୀ ଏବଂ ତେଜସ୍ୱୀର ମା ବୋଲି ଜାଣିଲା ପରେ ଜେଲରେ ଆବଦ୍ଧ ରଖନ୍ତି, ତେବେ କେବେ ଫେରିବି ବା ନ ଫେରିବି ସେହି ଭୟରେ ଏପରି କଥା କହିଲି । ଭଉଣୀ, କରୁଣା ମୋ ଝିଅ ନୁହେଁ, ତୁମର ଝିଅ । ତା'ର ବିବାହ ଦାୟିତ୍ୱ ତୁମ ହାତରେ । ପୁଅ ଦୁଇଟା ପାଠ ପଢ଼ି ନିଜ ନିଜ ଗୋଡ଼ରେ ଛିଡ଼ା ହୋଇପାରିବେ । ସେମାନେ ମଧ୍ୟ ତୁମର ପୁଅ ।'' ଆକୁଳ କଣ୍ଠରେ କହିଲେ ମମତା ।

ପିଣ୍ଡାରୁ ରିକ୍ସାବାଲାର ଡାକ ଶୁଭିଲା । କରୁଣା ଗାଢ଼ ନିଦରେ ଶୋଇଥାଏ । ତା' ବିଛଣା ପାଖକୁ ଯାଇ ଗାଲରେ କୋମଳ ଚୁମ୍ବନଟିଏ ଦେଇ ଆଖି ପୋଛି ପୋଛି ମମତାଦେବୀ ବାହାରି ଆସିଲେ । କବିତା ପିଣ୍ଡାରେ ଛିଡ଼ା ରହିଥାନ୍ତି । ମମତାକୁ ବସାଇ ରିକ୍ସା ଚାଲିଲା ଷ୍ଟେସନ ପଥରେ ।

ସାରା ରାତି ରେଳଗାଡ଼ିରେ ଓ ତହିଁ ପରଦିନ ସକାଳ ପାଖରୁ ସନ୍ଧ୍ୟାପର୍ଯ୍ୟନ୍ତ ବଳଦଗାଡ଼ିରେ ବସି ଗାଁ ନିକଟରେ ପହଞ୍ଚିଲା ବେଳକୁ ସମୁଦ୍ର କୂଳରେ ଦେଖାଯାଉଥାଏ ଜନସମାବେଶ । ଦୂରରୁ ଶୁଭୁଥାଏ ତେଜସ୍ୱୀର ଓଜସ୍ୱିନୀ ଭାଷଣ । ଅନର୍ଗଳ ବକ୍ତୃତା ଚାଲିଥିବା ସମୟରେ ମମତା ଗାଁ ଭିତରେ ଚାଲି ଚାଲି ପହଞ୍ଚିଲେ ଶ୍ୟାମାନନ୍ଦବାବୁଙ୍କ ପିଣ୍ଡାରେ । ଭିତରକୁ ପଶିଲେ ।

ଶ୍ୟାମାନନ୍ଦବାବୁ ବିଛଣାରେ ଶୋଇଥାନ୍ତି । ମୁଣ୍ଡ ପାଖରେ ଲଣ୍ଠନଟିଏ ଜଳୁଥାଏ । ଗୋଡ଼ ପାଖରେ ବସିଥାନ୍ତି ତାଙ୍କ ବିଧବା ଭଉଣୀ । ମମତା ଉପରେ ଦୃଷ୍ଟି ପଡ଼ିଲାକ୍ଷଣି ଶ୍ୟାମବାବୁ ଭାବବିହ୍ୱଳ ସ୍ୱରରେ କହି ପକାଇଲେ,

''ମୋ ଅନ୍ତରାତ୍ମା ତୋତେ ଦେଖିବାଲାଗି ଅନେକ ଦିନରୁ ବ୍ୟାକୁଳ ହେଉଛି । ତୁ ଆସିଯାଇଛୁ ଦେଖି ଜାଣିପାରୁଛି ଭଗବାନ୍ ମୋ ଡାକ ଶୁଣିଛନ୍ତି । କିନ୍ତୁ ତୋର ଏ ବେଶ କାହିଁକି ? ସତ କଥା କହ, ସତେ କ'ଣ ତପସ୍ୱୀ - ?''

''ମଉସା, ସରକାର ମୋ ସ୍ୱାମୀଙ୍କୁ ଫାଶୀକାଠରେ ଝୁଲାଇ ମାରି ଦେଇଛନ୍ତି ।''

''ହାୟ ଭଗବାନ୍'' ବୋଲି ଚିତ୍କାର କରି ଶ୍ୟାମାନନ୍ଦବାବୁ ବିଛଣାରୁ ଉଠି ବସିଲେ । କିଛି ସମୟ ଅଶ୍ରୁ ବିସର୍ଜନ ପରେ ପୁନର୍ବାର ସେ ଶଯ୍ୟାଂଶାୟୀ ହେଲେ ।

''ମଉସା, ଆପଣ ବିଛଣାରେ ପଡ଼ିରହିଛନ୍ତି କାହିଁକି ?''

''ମୁଁ ଯଦି ପଚାରିବି, ଶିବବାବୁ ଇହଧାମରୁ ବିଦାୟ ନେଲେ କାହିଁକି, ସେ ପ୍ରଶ୍ନର ଉତ୍ତର ଦେଇପାରିବୁ କି ? ବୁଢ଼ା ହେଲିଣି, ରୋଗ ଆକ୍ରମଣ କଲାଣି, ମରିବା ଦିନ ଆସିଗଲାଣି, ବାର୍ଦ୍ଧକ୍ୟର ସହଚର ହେଉଛି ବ୍ୟାଧି । କବିରାଜ ଶୋଇ ରହିବାକୁ କହିଛନ୍ତି, ଔଷଧ ଦେଉଛନ୍ତି । ହେଉ, ତୁ ଯା । ତୋ ଘର ଯେଉଁପରି ଥିଲା, ଠିକ୍ ସେହିପରି ଅଛି । ତେଜସ୍ୱୀ ସେହିଠାରୁ ଆନ୍ଦୋଳନ ଚଳାଇଛି ।''

ଶ୍ୟାମାନନ୍ଦବାବୁଙ୍କ ଭଉଣୀ ସହିତ ନିଜ ଘରକୁ ଆସୁଥିଲା ସମୟରେ ଜୟଧ୍ୱନି ସହ ମାଡ଼ିଆସିଲେ ଶହ ଶହ ନରନାରୀ । ତଡ଼ିତ୍ ଗତିରେ ସଭାସ୍ଥଳରେ ପ୍ରଚାର ହୋଇଯାଇଥାଏ ମମତାଦେବୀ ନିଜ ଘରକୁ ଆସି ଯାଇଛନ୍ତି । ସେଲ୍ୟୁଲାର ଜେଲରେ ତପସ୍ୱୀବାବୁଙ୍କ ଫାଶୀଦଣ୍ଡ ପାଇବା ବିଷୟ ତେଜସ୍ୱୀର ଭାଷଣରୁ ଜାଣିଲା ପରେ ଶୋକବିହ୍ୱଳିତ ତଥା ଉତ୍ତେଜିତ ଜନତା ବହୁ ସଂଖ୍ୟାରେ ଚାଲି ଆସିଲେ ତାଙ୍କ ବିଧବା ପତ୍ନୀଙ୍କ ଦର୍ଶନ ଆଶାରେ ।

'ମମତା ଦେବୀ ଜିନ୍ଦାବାଦ୍', 'ଭାରତ ମାତା କି ଜୟ', 'ଇନ୍‌କିଲାବ ଜିନ୍ଦାବାଦ' ପ୍ରଭୃତି ଧ୍ୱନି ଦେଇ ଲୋକମାନେ ମମତାଙ୍କ ଗଳାରେ ଫୁଲମାଳ ପିନ୍ଧାଇବାକୁ ଲାଗିଲେ । କିଛି ସମୟ ପାଇଁ ତାଙ୍କ ଉପରେ ପୁଷ୍ପ ବର୍ଷଣ ଚାଲିଲା । ସେହି ସମୟରେ ଜଣେ ଯୁବକ ବଜ୍ର ଗମ୍ଭୀର ସ୍ୱରରେ ଘୋଷଣା କଲେ,

''ଏହି ମୁହୂର୍ତ୍ତରୁ ଆମର ଏହି ପାଞ୍ଚଖଣ୍ଡି ଗ୍ରାମର ନାମ ରହିବ ତପସ୍ୱୀ ମଣ୍ଡଳ ଏବଂ ଏହି ମଣ୍ଡଳକୁ ଏକ ସ୍ୱାଧୀନ ସାଧାରଣତନ୍ତ୍ର ରୂପେ ବିବେଚନା କରାଯିବ । ଗ୍ରାମବାସୀମାନେ ଏହାର ଶାସନ କାର୍ଯ୍ୟ ପରିଚାଳନା କରିବେ । ମାଲିମୋକଦ୍ଦମା ଗ୍ରାମବାସୀ ବିଚାର କରିବେ । ଆମ ଅଞ୍ଚଳ ମଧ୍ୟରେ ପୁଲିସ କିମ୍ବା ସରକାରୀ କର୍ମଚାରୀ କିମ୍ବା ଜମିଦାରଙ୍କ ଖଜଣା ଆଦାୟକାରୀ ପ୍ରବେଶ କରିପାରିବେ ନାହିଁ ।''

ସମବେତ କଣ୍ଠରୁ ନିର୍ଗତ ହେଲା, 'ସ୍ୱାଧୀନତା ଜିନ୍ଦାବାଦ୍', 'ତପସ୍ୱୀବାବୁ ଅମର ରହେ', 'ଭାରତ ମାତା କି ଜୟ' ଇତ୍ୟାଦି ଧ୍ୱନି । ଜନତା ମଧ୍ୟରୁ ଧୀର ଗତିରେ ବାହାରି ଆସିଲା ତେଜସ୍ୱୀ । ମା'ଙ୍କ ପାଦଧୂଳି ମୁଣ୍ଡରେ ରଖି ଜଣାଇ ଦେଲା,

''ନିଜ ବଂଶ ଗୋଷ୍ଠୀ ସହିତ ଜମିଦାର ତାଙ୍କ ଉଆସ ଛାଡ଼ି କେଉଁ ଅଜଣା ସ୍ଥାନକୁ ପଳାଇଗଲାଣି । ଚୌକିଦାର ଓ ଦଫାଦାରମାନେ ଲୁଚି ଯାଇଛନ୍ତି । ଥାନାର ଦାରୋଗା ଓ କନଷ୍ଟେବଲମାନେ ପ୍ରାଣ ଭୟରେ ପଳାଇଛନ୍ତି । ବାବା ସିନା ଯୁଦ୍ଧ ଜୟ ଦେଖିପାରିଲେ ନାହିଁ । କିନ୍ତୁ ବୀରୋଚିତ ମୃତ୍ୟୁ ବରଣ କରି ସେ ସହିଦ ହୋଇଛନ୍ତି ଏବଂ ସହିଦମାନଙ୍କର ପରାଜୟ ନାହିଁ କିମ୍ବା ମରଣ ନାହିଁ । ସେମାନେ ଚିରଦିନପାଇଁ ଅମର ।''

ତେଜସ୍ୱୀର ଅନୁରୋଧ କ୍ରମେ ଜନତା ବିଦାୟ ନେଇ ଚାଲିଗଲେ । ମମତାଦେବୀ ପ୍ରବେଶ କଲେ ନିଜ ବାସଗୃହ ମଧ୍ୟରେ । ତାଙ୍କ ବାବା ଓ ସ୍ୱାମୀଙ୍କ କୋଠରି ଦୁଇଟି ଶୂନ୍ୟ ପଡ଼ିଥାଏ । ପୁଅର ମୁଣ୍ଡରେ ହାତ ରଖି ଆଶୀର୍ବାଦ ଶୁଣାଇଲେ, ''ତୋ ବାବାଙ୍କ ଇଚ୍ଛା ପୂରଣ କରିପାରିଛୁ । ସେଥିପାଇଁ ଭଗବାନ୍ ତୋର ମଙ୍ଗଳ କରିବେ । ସ୍ୱର୍ଗରେ ଥାଇ ତୋ ବାବା ତୋ କାର୍ଯ୍ୟମାନ ଦେଖିପାରୁଥିବେ ।''

''ମା', ତୁମେ କାହିଁକି କଷ୍ଟ କରି ଗାଁକୁ ଚାଲିଆସିଲ ?''

''ତୋ ପାଖେ ପାଖେ ରହିବାପାଇଁ ।''

''ମୁଁ କିନ୍ତୁ ଅନ୍ୟ ଅଞ୍ଚଳକୁ ଚାଲିଯିବି । ଗୋଟିଏ ସ୍ଥାନରେ ରହିପାରିବି ନାହିଁ ।''

''ଯେଉଁ ସ୍ଥାନକୁ ତୁ ଯିବୁ, ତୋ ସାଙ୍ଗରେ ମୁଁ ମଧ୍ୟ ଯିବି । ବିପଦ ଆପଦ ବେଳେ ତୋର ଉପକାର କରିପାରିବି । ସ୍ୱରାଜ, ସ୍ୱାଧୀନ ଓ କରୁଣା ସେମାନଙ୍କ ବାବାଙ୍କ ମୃତ୍ୟୁ ଖବର ଜାଣିପାରି ନାହାନ୍ତି । ତୋ ଲାଗି ମନ ଅସ୍ଥିର ହେଉଛି କାହିଁକି ଜାଣିପାରୁ ନାହିଁ । ପାଖରେ ରହିପାରିଲେ ଶାନ୍ତି ପାଇବି ।''

ତେଜ ନୀରବରେ ମା'ଙ୍କ କଥା ଶୁଣିଗଲା ।

ମଧ୍ୟରାତ୍ରର ନିସ୍ତବ୍ଧତା ମଧ୍ୟରେ ଗାଢ଼ ନିଦରେ ଶୋଇଥିବା ବେଳେ ବାରଣ୍ଡା ଦରଜା ଖୋଲାଯିବାର ଶବ୍ଦ ଶୁଣି ମମତାଙ୍କ ନିଦ ଭାଙ୍ଗିଗଲା । ଧୀର ପଦକ୍ଷେପରେ ସେ କବାଟ ପର୍ଯ୍ୟନ୍ତ ଆସି ସେଠାରେ ନୀରବରେ ଛିଡ଼ାହୋଇ ରହିଲେ । ଶୁଣିପାରିଲେ ଅସ୍ପଷ୍ଟ ଶବ୍ଦରେ ଚାଲିଥିବା କଥାବାର୍ତ୍ତା ।

ତେଜସ୍ୱୀର ସାଦର ସମ୍ଭାଷଣ ଭାଷାରୁ ସେ ଜାଣିପାରିଲେ ଯେ ଆଗନ୍ତୁକ ବ୍ୟକ୍ତିମାନେ ଆସିଛନ୍ତି ନିକଟବର୍ତ୍ତୀ ପାର୍ବତ୍ୟାଞ୍ଚଳର ଗୋଟିଏ ଦେଶୀୟ ରାଜ୍ୟରୁ ।

ଜଣେ ବନବାସୀଙ୍କ କଣ୍ଠରୁ ଶୁଭିଲା, ''ତେଜ୍‌ବାବୁ, ରାଜାଙ୍କ ଗୁଣ୍ଡାମାନେ ରାତିରେ ଆସି ଆମ ଗାଁଗୁଡ଼ିକର ସର୍ଦ୍ଦାରମାନଙ୍କୁ ବାନ୍ଧିନେଇ ଯାଉଛନ୍ତି ।''

ଅନ୍ୟ ଜଣେ କହିଲେ, ''ସର୍ଦ୍ଦାରମାନଙ୍କ ପତ୍ତା ମିଳୁ ନାହିଁ । ଆମର ସନ୍ଦେହ, ସେମାନଙ୍କୁ ହାଣି ପକାଇ ନଈରେ ଭସାଇ ଦିଆଯାଉଛି । ଆପଣଙ୍କ ଉପଦେଶପାଇଁ ଆଦିବାସୀ ଇଲାକାର ମାଝି ସର୍ଦ୍ଦାର ଆମକୁ ପଠାଇଛନ୍ତି । ଗଙ୍ଗାରାମ ସର୍ଦ୍ଦାରଙ୍କ ନାମ ଆପଣ ଶୁଣିଥିବେ । ତାଙ୍କୁ ଆମେ ଦେବତା ପରି ମାନି ନେଉ ।''

ତେଜସ୍ୱୀ ଲଘୁସ୍ୱରରେ ଆଶ୍ୱାସନା ଦେଲେ, ''ତୁମମାନଙ୍କ ମଧ୍ୟରୁ ଯେଉଁମାନେ ବନବାସୀ ଓ ଗିରିଜନମାନଙ୍କ ନେତା ଭାବରେ ଲଢ଼ାଇ କରିବାକୁ ସାହସ ବାନ୍ଧିଛ, ସେମାନେ ନିଜ ନିଜ ପଲ୍ଲୀରେ ନ ରହି ମହାଗିରି ପାହାଡ଼ରେ ଗୁମ୍ଫାଗୁଡ଼ିକରେ ଆଶ୍ରୟ ନିଅ । ମୁଁ ଦୁଇ ତିନିଦିନ ଭିତରେ ସେଠାରେ ପହଞ୍ଚିଯିବି । ରଣକୌଶଳ ଶିଖାଇ ଦେଲେ ରାଜାଙ୍କ ଗୁଣ୍ଡାମାନେ ମରି ପଡ଼ିବେ ।''

''ଆଜ୍ଞା, ରଜାଙ୍କ ଡାକ ପାଇ ଦଳେ ବନ୍ଧୁକବାଲା ଗୋରା ସାହେବ ପହଞ୍ଚି ଗଲେଣି । ସେମାନେ ଗୁଳି କରି ଆମକୁ ମାରି ପକାଇବେ ।''

''ମୁଁ ପରା କହିଲି, କେମିତି ଭାବରେ ଲଢ଼ିଲେ ବନ୍ଧୁକବାଲାମାନେ ମରିବେ ସେ ବିଦ୍ୟା ଶିଖାଇ ଦେବି । ଶୁଣିରଖ, ସାହେବମାନେ ବନବାସୀମାନଙ୍କ ତୀର ଚାଳନାକୁ ଡରନ୍ତି । ଗହନ ଅରଣ୍ୟରେ ଲୁଚି ରହି ଶତ୍ରୁ ଦିଗକୁ ତୀର ଚଳାଇବା ଶକ୍ତି ତୁମମାନଙ୍କର ଅଛି । ସାହେବ ସୈନ୍ୟମାନେ ଦିନବେଳେ ଲକ୍ଷ୍ୟକରି ଗୁଳି ଚଳାନ୍ତି । ରାତିରେ ପାରନ୍ତି ନାହିଁ । ସେହି ଭୟ ଯୋଗୁଁ ଦେଶର ଚାରିଆଡ଼େ ସେମାନେ ପାହାଡ଼, ପର୍ବତ ଓ ଅରଣ୍ୟମୟ ଅଞ୍ଚଳଗୁଡ଼ିକ ନିଜ ଦଖଲରେ ନ ରଖି ରାଜା ମହାରାଜାମାନଙ୍କୁ ସିଂହାସନରେ ବସାଇଛନ୍ତି । ଏହି ରଜାଗୁଡ଼ାଙ୍କର ପୁଲିସମାନେ ପ୍ରକୃତପକ୍ଷେ ଭଡ଼ାଟିଆ ଗୁଣ୍ଡା । ସେମାନେ ଦିନବେଳେ ଲୋକଙ୍କୁ ଆକ୍ରମଣ କରନ୍ତି; କିନ୍ତୁ ରାତିରେ ବାହାରି ପାରନ୍ତି ନାହିଁ । କାରଣ, ଭଡ଼ାଟିଆଗୁଡ଼ାକ ମଣିଷ ମାରିବାକୁ ସାହସ କରନ୍ତି, ଅଥଚ ନିଜେ ମରିବାକୁ ଜାଣନ୍ତି ନାହିଁ । ମୁଁ ଯେଉଁ କୌଶଳ ଶିଖାଇଦେବି, ସେଥିରେ ରାଜାଙ୍କ ପୁଲିସ ଓ ଗୋରା ସୈନିକ କେହିହେଲେ ଗିରିଜନମାନଙ୍କ ସହିତ ଲଢ଼ିପାରିବେ ନାହିଁ । ଭୟ ନ କରି ଫେରିଯାଅ । ମୁଁ ଦୁଇଦିନ ମଧ୍ୟରେ ରାତିରେ ଯାଇ ପାହାଡ଼ ଉପରେ ପହଞ୍ଚି ଯିବି । ମାଝି ସର୍ଦ୍ଦାରଙ୍କୁ ମୋର ନମସ୍କାର ଜଣାଇ ଦେବ ।''

''ଆଜ୍ଞା, ଆମ ପାଖ ରାଜ୍ୟରେ ବି ଆଦିବାସୀ ଆନ୍ଦୋଳନ ଚାଲିଛି । ଗୁଳିରେ କେତେକ ଲୋକ ମଲେଣି ।''

''ସବୁଆଡ଼େ ବିପ୍ଳବ ଚାଲିବ । ସବୁ ରାଜ୍ୟରେ ରାଜାମାନଙ୍କ ଅତ୍ୟାଚାର ଆଉ ଚଳିବ ନାହିଁ । ବନବାସୀ ପ୍ରଜାଙ୍କ ବିଦ୍ରୋହ ଫଳରେ ସେମାନେ ଲୋପ ପାଇଯିବେ ।''

ବନବାସୀ ନେତାମାନେ ବିଦାୟ ନେଇଗଲେ । ମମତା ସଙ୍ଗେ ସଙ୍ଗେ ଦୁଆର ପାଖରୁ ଆସି ନିଜ କୋଠରିରେ ଶୋଇପଡ଼ିଲେ । ତେଜସ୍ୱୀ ଭିତରପଟୁ କବାଟ ବନ୍ଦ କରୁଥିବାର ଶବ୍ଦ ଶୁଣି ଆଶ୍ୱସ୍ତ ହେଲେ । ପୁଅ ଜାଣିପାରିଲା ନାହିଁ ଯେ ମା' ସବୁକଥା ଶୁଣି ପାରିଛନ୍ତି ।

## ॥ ୧୬ ॥

ରାତି ପାହିଲା । ମମତା ଓ ତେଜସ୍ୱୀ ନିଜ ନିଜ ଶଯ୍ୟାକକ୍ଷରୁ ବାହାରି ଆସିଲେ । ପୁଅର ଆଖି ଦୁଇଟି ନାଲି ଦେଖାଯାଉଥାଏ । ମା' ଆଶ୍ଚର୍ଯ୍ୟାନ୍ୱିତ ହୋଇ ପଚାରିଲେ, ''ତୋ ଦେହ ଭଲ ନାହିଁ କି ? ଆଖି କାହିଁକି ନାଲି ଦିଶୁଛି ?''

ପାଖକୁ ଆସି କପାଳରେ ହାତ ରଖି ଚମକି ଉଠି କହିଲେ, ''ତୋ ଦେହ ତାତିଛି । ଜ୍ୱର ହେଲାଣି । ମୁହଁ ଧୋଇ ବିଛଣାରେ ଶୋଇ ଯା' । ଜ୍ୱର ନ ଛାଡ଼ିଲା ପର୍ଯ୍ୟନ୍ତ ବାହାରକୁ ବାହାରି ପାରିବୁ ନାହିଁ ।''

''ଅଳ୍ପ ଟିକିଏ ପରିଶ୍ରମପାଇଁ ଦେହରେ ଉତ୍ତାପ ଦେଖା ଦେଇଛି । ଗୋଟିଏ ଦିନ ବିଶ୍ରାମ ନେଲେ ସୁସ୍ଥ ହୋଇଯିବି । ମା', ମୁଁ ସଂସାରରେ କାହାରିକୁ ଡରେ ନାହିଁ । ରାଜା, ଜମିଦାର, ପୁଲିସ ବା ଗୁଣ୍ଡା, କେହିହେଲେ ମୋ ଛାଇ ମାଡ଼ିପାରିବେ ନାହିଁ । ସମସ୍ତଙ୍କ ଆଖିରୁ ଖସିଯିବାର ବୁଦ୍ଧି ଓ ବଳ ମୋ ପାଖରେ ରହିଛି । ମୁଁ ଭୟ କରେ କେବଳ ମୋ ମା'ଙ୍କୁ । ଆଗାମୀ କାଲି ଗୋଟିଏ ଦୂରବର୍ତ୍ତୀ ଅଞ୍ଚଳକୁ ଜରୁରୀ କାମରେ ଯିବାକୁ ପଡ଼ିବ । ଲୋକଙ୍କୁ ଜବାବ ଦେଇଛି । ମୋର ପ୍ରାର୍ଥନା, ତୁମେ ମନା କରିବ ନାହିଁ ।''

''ଆଗାମୀ କାଲି ଆସିଲେ, ଦେଖାଯିବ । ଯଦି ଉତ୍ତାପ ନ କମିବ, ତେବେ ବାହାରକୁ ଯିବୁ କିପରି ? ବର୍ତ୍ତମାନ ସାଗୁ ତିଆରି କରି ଆଣୁଛି । ସେତକ ପିଇ ଦେଇ ସୁନା ଛୁଆଟି ପରି ଶୋଇ ଯା' । ତୁ ଶୋଇଗଲା ପରେ ମୁଁ ଶ୍ୟାମକକାଙ୍କ ଘରକୁ ଯିବି । ତାଙ୍କ ଦେହ ଭଲ ନାହିଁ । ଫେରିଆସି ପାଳୁଅ ତିଆରି କରିଦେଲେ ଖାଇବୁ ।''

ବାଧ୍ୟ ବାଳକଟି ପରି ତେଜ ମା'ଙ୍କ କଥା ମାନି ସାଗୁ ପିଇ ଶୋଇପଡ଼ିଲା । ମମତା ବାହାରିଗଲେ ଶ୍ୟାମାନନ୍ଦବାବୁଙ୍କ ଘରକୁ ।

ତାଙ୍କ ଘର ଭିତରୁ ବାହାରି ଆସୁଥାଆନ୍ତି ସେ ଅଞ୍ଚଳର ଜଣେ ପ୍ରସିଦ୍ଧ କବିରାଜ । ଉତ୍ସୁକ ମନରେ ମମତା ତାଙ୍କ ସହିତ କଥାବାର୍ତ୍ତା କଲେ । କବିରାଜଙ୍କ ମତ ଥିଲା, ଶ୍ୟାମାନନ୍ଦବାବୁ ନିମୋନିଆ ଜ୍ୱରରେ ଆକ୍ରାନ୍ତ । ଏକ ସପ୍ତାହ ବିତି ଯାଇଥିଲେ ସୁଦ୍ଧା ଦେହର ଉତ୍ତାପ କମି ନାହିଁ । ଏପରି ପୀଡ଼ାରେ ତିନି ସପ୍ତାହ ଅତିକ୍ରାନ୍ତ ହେଲା ପରେ ରୋଗୀ ଆରୋଗ୍ୟଲାଭ କରିପାରନ୍ତି । ଅନ୍ୟଥା, ସେହି ତିନି ସପ୍ତାହ ମଧ୍ୟରେ ହିଁ ରୋଗୀଙ୍କୁ ଶେଷ ନିଶ୍ୱାସ ତ୍ୟାଗ କରିବାକୁ ହୁଏ ।

ମମତା ହତଭମ୍ବ ଅବସ୍ଥାରେ ଛିଡ଼ା ହୋଇ ରହିଲେ । ନର୍ସିଂହୋମରେ ଥିବା ସମୟରେ ସେ ଟାଇଫଏଡ୍ ରୋଗୀମାନଙ୍କୁ ଦେଖିଛନ୍ତି । ଡାକ୍ତରୀ ଔଷଧ ଓ ଇଞ୍ଜେକ୍ସନ ସତ୍ତ୍ୱେ ସେମାନେ ଆରୋଗ୍ୟଲାଭ କରନ୍ତି ନାହିଁ । ମଫସଲ ଗାଁର କବିରାଜ ବା କ'ଣ କରିପାରିବେ !

ଭିତରକୁ ପ୍ରବେଶ କରି ନିଃଶବ୍ଦରେ ଶ୍ୟାମବାବୁଙ୍କ ବିଛଣା ପାଖରେ ଛିଡ଼ା ହେଲେ । ଆଖି ଫିଟାଇ ସେ ଅସ୍ପଷ୍ଟ ଭାବରେ କହିଲେ, ''ମା', ମୋ କଥା ଚିନ୍ତା କରିବା ଦରକାର ନାହିଁ । ମୁଁ ଯିବାପାଇଁ ପ୍ରସ୍ତୁତ ହୋଇ ରହିଛି । ମୋର ଚିନ୍ତା ତୋ ପୁଅ ପାଇଁ । ଗତକାଲି ରାତିରେ ତା' ପାଖକୁ ଶୀରିଖଣ୍ଡ ରାଜ୍ୟର କେତେଜଣ ଆଦିବାସୀ ନେତା ଆସିଥିଲେ ବୋଲି ମୋ ଭଉଣୀ ପାଖରୁ ଶୁଣିଲି । ସେଠାକାର ରଜା ଗୋଟିଏ ରାକ୍ଷସ । ତା' ବିରୋଧରେ ପ୍ରଜାମାନେ ବିଦ୍ରୋହ କରିଛନ୍ତି । ରଜାର ପୁଲିସମାନେ ହେଉଛନ୍ତି ବାହାରୁ ଅଣାଯାଇଥିବା ଭଡ଼ାଟିଆ ଗୁଣ୍ଡା । ସେମାନଙ୍କ ନିକଟରେ ଦୟାମାୟା ବୋଲି କିଛି ନାହିଁ । ମା', ତୋତେ ସାବଧାନ କରିଦେଉଛି, ତେଜକୁ ଘରେ ସମ୍ଭାଳି ରଖିବୁ । ଶୀରିଖଣ୍ଡ ଅଞ୍ଚଳକୁ କଦାପି ଛାଡ଼ିବୁ ନାହିଁ ।''

ବିଛଣା ଉପରେ ଆତଙ୍କିତ ମନରେ ବସିରହି ମମତା କିଛି ସମୟ ଶ୍ୟାମାନନ୍ଦବାବୁଙ୍କ ଗୋଡ଼ ଘଷି ଦେଲେ । ଜାଣିପାରିଲେ, ରୋଗୀ ଆରାମ ବୋଧ କରୁଛନ୍ତି । ତାଙ୍କ ଅବସନ୍ନ ଦେହ ଓ ଉତପ୍ତ କପାଳରେ ହାତ ଦେଉଥିବା ବେଳେ ନିଜ ନର୍ସିଂହୋମ ଅଭିଜ୍ଞତାରୁ ମମତା ଅନୁଭବ କରିନେଲେ ଯେ ରୋଗୀର ଅନ୍ତିମ ସମୟ ଦୂରବର୍ତ୍ତୀ ନୁହେଁ । ସାନ୍ତ୍ୱନା ଦେବା ଉଦ୍ଦେଶ୍ୟରେ କହିଲେ, ''ମୁଁ କଲିକତାରେ ରୋଗୀମାନଙ୍କ ସେବାକାର୍ଯ୍ୟରେ ତାଲିମ ନେଇଛି । ଆପଣ କବିରାଜଙ୍କ ଔଷଧ ନିୟମିତ ଭାବରେ ସେବନ କରନ୍ତୁ । ମୁଁ ଡାକ୍ତରୀ ପଦ୍ଧତିରେ ସେବା କରିବି ଓ ଖାଦ୍ୟପେୟ ଦେବି । ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଥିବି ଆପଣଙ୍କ ଆରୋଗ୍ୟଲାଭ ଲାଗି ।''

ଶ୍ୟାମାନନ୍ଦବାବୁ କରୁଣ ଭାବରେ ଶୂନ୍ୟ ଆଖିରେ ଚାହିଁରହିଲେ । ଝରକା ବାଟେ ସୂର୍ଯ୍ୟ ଦେଖା ଯାଉଥା'ନ୍ତି । ସେହି ଦିଗକୁ ଆଖି ଫେରାଇ ଧୀର ସ୍ୱରରେ କହିଲେ, ''ମା', ତୋ ବାବାଙ୍କ ଯିବା ସମୟ ଆସିଯିବାରୁ ସେ ଚାଲିଗଲେ । କିନ୍ତୁ, ତପସ୍ୱୀ ଆଗରେ ଥାଏ ଦୀର୍ଘ ଜୀବନକାଳ । ତଥାପି ସେ ସହିଦ ହୋଇ ଅମରତ୍ୱ ପାଇଲା । ତୁ ବର୍ତ୍ତମାନ ମୋର ସେବା ପରିବର୍ତ୍ତେ ତୋ ପୁଅ ତେଜସ୍ୱୀକୁ ନିଜ ନଜରରେ ରଖିବାକୁ ଚେଷ୍ଟା କର । ମୋର ଭୟ ହେଉଛି, ନିଜ ପିତୃହତ୍ୟାର ପ୍ରତିଶୋଧ ଲାଗି ସେ ଯେ କୌଣସି ସ୍ଥାନରେ ଯେ କୌଣସି ପ୍ରକାରର ଚରମ ପଦକ୍ଷେପ ନେଇପାରେ । ତାକୁ ସାଙ୍ଗରେ ନେଇ ଥରେ ଶ୍ରୀହରିବାବୁଙ୍କ ସହିତ ସାକ୍ଷାତ୍ କର । ତେଜକୁ ଦେଖି ସେ ଖୁସି ହେବେ ଏବଂ ଉପଯୁକ୍ତ ଉପଦେଶ ଦେବେ । ସେ ମଧ୍ୟ ବୁଢ଼ା ହେଲେଣି । ତୁମମାନଙ୍କ କଥା ପଚାରନ୍ତି ।''

ଶ୍ୟାମାନନ୍ଦବାବୁ ଅଧିକ କଥା କହିବାକୁ ଇଚ୍ଛା କରୁଥିଲେ ମଧ୍ୟ କିଛି କହିପାରିଲେ ନାହିଁ । ମମତା ତାଙ୍କ ଦେହ ଉପରେ କମ୍ବଳ ଘୋଡ଼ାଇ ଦେଇ ନିଜ ଘରକୁ ଫେରିଆସିଲେ ।

ମନରେ ଦେଖାଦେଲା ଦୁଇଟି ସମସ୍ୟା । ଗୋଟିଏ ଦିଗରେ, ଅନ୍ତିମ ଶଯ୍ୟାରେ ଶାୟିତ ଶ୍ୟାମାନନ୍ଦବାବୁ, ଯାହାଙ୍କ ସେବାଲାଗି ଘରେ ରହିବା ଏକାନ୍ତ ଆବଶ୍ୟକ । ତାଙ୍କର ପୁଅଝିଅ ନାହିଁ । ବିଧବା ଭଉଣୀ ଉପରେ ଭରସା । ନିଜ ବାବାଙ୍କର ବାଲ୍ୟବନ୍ଧୁ ଏବଂ ପଡ଼ୋଶୀ ଭାବରେ ଚିରଦିନ ସବୁ ପ୍ରକାର ଉପକାର କରିଆସିଛନ୍ତି । ତାଙ୍କୁ ମୁମୂର୍ଷୁ ଅବସ୍ଥାରେ ଛାଡ଼ି ଦେଇ ଅନ୍ୟତ୍ର ଚାଲିଯିବା ହେବ ନୈତିକ ଦୃଷ୍ଟିରୁ ଅଧର୍ମ ।

ଅନ୍ୟ ପକ୍ଷରେ ଗିରିଜନମାନଙ୍କ ସଂଗ୍ରାମରେ ଝାସ ଦେବାଲାଗି ପୁଅ ତେଜସ୍ୱୀ ସଂକଳ୍ପବଦ୍ଧ । ଯେଉଁ ସ୍ଥାନକୁ ସେ ଗଲେ ମଧ୍ୟ ମା' ଭାବରେ ତା' ନିକଟରେ ରହିଲେ ସେ ସଂଯମ ରକ୍ଷା କରିବାକୁ ବାଧ୍ୟ ହେବ । ଶ୍ୟାମାନନ୍ଦବାବୁ ଯଦି ତେଜସ୍ୱୀର କୌଣସି ଚରମ ପଦକ୍ଷେପ ବିଷୟ ଚିନ୍ତା କରୁଛନ୍ତି, ମମତା ମଧ୍ୟ ସେହି କଥା ଚିନ୍ତା କରି ବିବ୍ରତ ହୋଇପଡ଼ିଲେ ।

ଘରକୁ ଫେରିଲା ବେଳକୁ ବାରଣ୍ଡାରେ ବସି ତେଜସ୍ୱୀ କେତେକ ଲୋକଙ୍କ ସହିତ କଥାବାର୍ତ୍ତା କରୁଥାଏ । ସେମାନେ ବର୍ଣ୍ଣନା କରୁଥାନ୍ତି, କେଉଁଠାରେ ରେଳଷ୍ଟେସନ ପୋଡ଼ି ଦିଆଗଲାଣି, ଅନ୍ୟ କେଉଁଠାରେ ପୋଷ୍ଟଅଫିସ ଓ ଅନ୍ୟ କୌଣସି କୌଣସି ସ୍ଥାନରେ ସରକାରୀ ଦପ୍ତର । ମମତା ବିରକ୍ତି ପ୍ରକାଶ କରି କହିଲେ, ''ମହତ୍ମା ଗାନ୍ଧୀ ଜେଲରେ ନ ଥିଲେ କ'ଣ ଦେଶବାସୀ ଏହି ପ୍ରକାର ଧ୍ୱଂସାତ୍ମକ କାର୍ଯ୍ୟମାନ

କରିପାରିଥାନ୍ତେ ? ଗାନ୍ଧୀଙ୍କ ନୀତି ବିରୋଧରେ ଯେଉଁମାନେ ଏପରି କାର୍ଯ୍ୟ କରୁଛନ୍ତି, ଆପଣମାନେ ସେପରି କାର୍ଯ୍ୟ କରିବେ ନାହିଁ ବୋଲି ମୋର ନିବେଦନ ।''

ତେଜସ୍ୱୀ ଉତ୍ତର ଦେଲା, ''ସାହେବମାନେ ଯଦି ଶହ ଶହ ନିରୀହ ଲୋକଙ୍କୁ ଗୁଳି କରି ମାରିଦେଉଛନ୍ତି, ତେବେ ଦେଶବାସୀ ମିଳିମିଶି ବିଦେଶୀ ଶାସନକର୍ତ୍ତାଙ୍କୁ ଅକାମୀ କରିଦେଲେ କୌଣସି ଅନ୍ୟାୟ ହେବ ନାହିଁ । ଆମର ଅହିଂସା ନୀତି ଦେଖି ବିଦେଶୀମାନଙ୍କ ସାହସ ବଢ଼ିଯାଉଛି ଏବଂ ସେଥିପାଇଁ ସେମାନେ ଅତ୍ୟାଚାର ଚଳାଇଛନ୍ତି ।''

ମମତା ରାଗିଉଠିଲେ । ''ତୋତେ ଜ୍ୱର ହୋଇଛି । ସମ୍ପୂର୍ଣ୍ଣ ବିଶ୍ରାମ ନେବାଲାଗି କହି ଯାଇଥିଲି । ମୋ କଥା ନ ମାନି ବାହାରେ ବସିଛୁ ! ଯା, ବିଛଣାରେ ଶୋଇବୁ ଯା ।''

ଆସିଥିବା ଲୋକମାନେ ସଙ୍କୋଚ ପ୍ରକାଶ ସହ ବିଦାୟ ନେଲେ । ତେଜସ୍ୱୀ ମଧ ଶୋଇପଡ଼ିଲା । କିଛି ସମୟ ପରେ ମା' ପାଳୁଅ ତିଆରି କରି ଖାଇବାକୁ ଦେଲେ ।

ରାତ୍ରିବେଳକୁ ତେଜ ଦେହରେ ଉତ୍ତାପ ନ ଥାଏ । ମମତା କହିଲେ, ''ଶ୍ୟାମାନନ୍ଦବାବୁ ମୋତେ କହିଛନ୍ତି ଆଗାମୀ କାଲି ସକାଳେ ତୋତେ ସାଙ୍ଗରେ ନେଇ ଶ୍ରୀହରିବାବୁଙ୍କ ଘରକୁ ଯିବାଲାଗି । ସେ ବୁଢ଼ା ହେଲେଣି । ଆମ କଥା ସଦାବେଳେ ପଚାରନ୍ତି । ଯଦି ସକାଳ ବେଳକୁ ସମ୍ପୂର୍ଣ୍ଣ ସୁସ୍ଥ ହୋଇଯାଇଥିବୁ, ତେବେ ତାଙ୍କ ଘରକୁ ଯିବା ।''

''ହଁ ମା', ମୁଁ ସମ୍ପୂର୍ଣ୍ଣ ସୁସ୍ଥ ହୋଇଗଲିଣି । ଶ୍ରୀହରିବାବୁଙ୍କ ସହିତ ସାକ୍ଷାତ୍ ପରେ ସଙ୍ଗେ ସଙ୍ଗେ ଘରକୁ ଫେରିଆସିବା । ଉପର ଓଳି ମୋତେ ଅନ୍ୟ ଗୋଟିଏ ସ୍ଥାନକୁ ଯିବାକୁ ହେବ । ମୋ ରାଣ, ମୋତେ ବାଧା ଦେବ ନାହିଁ ।''

ସକାଳବେଳା ମା', ପୁଅ ଚାଲିଚାଲି ଶ୍ରୀହରିବାବୁଙ୍କ ଘରେ ପହଞ୍ଚିଲେ । ସେ ନିଜ ଶଯ୍ୟାକକ୍ଷରେ ବସି ରେଡିଓରୁ ସମ୍ବାଦ ଶୁଣୁଥାନ୍ତି । ଉଭୟଙ୍କୁ ପାଖରେ ଦେଖି ଆନନ୍ଦରେ ଅଧୀର ହୋଇଉଠିଲେ । ତେଜସ୍ୱୀକୁ କୋଳରେ ବସାଇ ବିଗତ ଦିନର କଥା ମନେପକାଇ କହିଲେ, ''ପିଲାବେଳେ ହରିନାମ ଉଚ୍ଚାରଣ କରି ମହାମାରୀ ସମୟରେ ଆମ ଗାଁରୁ ଯମକୁ ତଡ଼ି ଦେଇଥିଲୁ । ଏବେ ଯୁବକ ଅବସ୍ଥାରେ ସ୍ୱାଧୀନତାର ଜୟଧ୍ୱନିଦ୍ୱାରା ଜମିଦାର ବଂଶକୁ ତଡ଼ିଦେଇପାରିଛୁ । ଜଣେ ପ୍ରତ୍ୟକ୍ଷଦର୍ଶୀଙ୍କ ପାଖରୁ ଶୁଣିଲି, ଜମିଦାରଙ୍କ ଉଆସରୁ ପ୍ରଜାମାନେ ଝରକା, କବାଟ ମଧ ତାଡ଼ି ଖୋଳି

ନେଇଗଲେଣି । ଏବେ ଦିନବେଳେ ଜମିଦାରଙ୍କ ଶୋଇବା ଘରେ ରହୁଛନ୍ତି କେତେଗୁଡ଼ିଏ ବାଦୁଡ଼ି ଓ ଚମଚଟା ଏବଂ ରାତିରେ ଉଆସରେ ରହୁଛନ୍ତି ଗୁଡ଼ାଏ ଶିଆଳ ଓ ସାପ ।''

ହସି ହସି ତେଜସ୍ୱୀ କହିଲା, ''ଅଜା, ରଜା ମହାରଜାମାନଙ୍କ ପ୍ରାସାଦରେ ମଧ ସେହି ଅବସ୍ଥା ହେବାକୁ ଯାଉଛି ।''

ଶ୍ରୀହରିବାବୁଙ୍କ ମୁଖ ବିମର୍ଷ ଦେଖାଗଲା । ସେ ଜଣାଇଲେ, ''ବର୍ତ୍ତମାନ ସମ୍ବାଦ ଶୁଣୁଥିଲି । ଚଣ୍ଡାଳ ଚର୍ଚ୍ଚିଲ ତା' ଦେଶବାସୀଙ୍କୁ ଜଣାଇଛି ଯେ ଭାରତରେ ଏବେ ଯେତେସଂଖ୍ୟକ ଇଂରେଜ ସୈନ୍ୟ ରଖାଗଲାଣି, ସେତେସଂଖ୍ୟକ ସୈନ୍ୟ ସମସ୍ତ ବ୍ରିଟିଶ ରାଜତ୍ୱ କାଳରେ କେବେହେଲେ ମୁତୟନ କରାଯାଇ ନ ଥିଲା । ଅର୍ଥାତ୍, ସେ ଗାନ୍ଧୀଙ୍କ ବିପ୍ଲବକୁ ସାମରିକ ବଳଦ୍ୱାରା ସମ୍ପୂର୍ଣ୍ଣରୂପେ ଦମନ କରିବାକୁ ବଦ୍ଧପରିକର । ତେଣେ, ଶତ୍ରୁଦେଶ ଜାପାନ ଦକ୍ଷିଣ-ପୂର୍ବ ଏସିଆର ଦେଶ ପରେ ଦେଶ ଅଧିକାର କରି ଭାରତ ସୀମାନ୍ତକୁ ମାଡ଼ିଆସିଲାଣି । ସେମାନଙ୍କ ସହିତ ଯୁଦ୍ଧ ନ କରି ବ୍ରିଟିଶ ପ୍ରଧାନମନ୍ତ୍ରୀ ଚାହୁଁଛି ଭାରତୀୟ ବିଦ୍ରୋହକୁ ନିର୍ମମ ଭାବରେ ନିଶ୍ଚିହ୍ନ କରିଦେବ । ମୋଟଉପରେ, ସେ ଭାବୁଛି ଭାରତ ସାମ୍ରାଜ୍ୟ ହେଉଛି ଇଂରେଜମାନଙ୍କର ପୈତୃକ ସମ୍ପତ୍ତି ଏବଂ ସେହି ସମ୍ପତ୍ତି ସେମାନେ ଚିରଦିନ ଲାଗି ଭୋଗ କରିବେ ।''

''ଭାରତ ସାମ୍ରାଜ୍ୟ ସିନା ସେମାନଙ୍କର ସମ୍ପତ୍ତି, କିନ୍ତୁ ଭାରତୀୟ ଜାତି ଇଂରେଜମାନଙ୍କର କ୍ରୀତଦାସ ନୁହନ୍ତି । ଗଣବିପ୍ଳବ ଫଳରେ ସାମ୍ରାଜ୍ୟର ମୂଳଭିତ୍ତି ଦୋହଲି ଗଲାଣି । ଶହେ ଜଣ ଚର୍ଚ୍ଚିଲ ମଧ ଭାରତବାସୀଙ୍କୁ ଆଉ ପରାଧୀନ ରଖିପାରିବେ ନାହିଁ । ଅଜା, ଆପଣଙ୍କ ଗାଁକୁ ଏବେ ସ୍ୱାଧୀନ ବୋଲି ଘୋଷଣା କରିଦିଅନ୍ତୁ । ଆମେ ଆମ ଗାଁଗୁଡ଼ିକୁ ସ୍ୱାଧୀନ କରିସାରିଛୁ । ମୁଁ ଆଜି ଗୋଟିଏ ନୂଆ ଅଞ୍ଚଳକୁ ଯିବି । ସେଠାରୁ ଫେରିଆସିଲେ ଆପଣଙ୍କ ଆଖ ପାଖ ଗାଁମାନଙ୍କରେ ସଭା କରିବି । ସମସ୍ତେ ମିଳିମିଶି ଏହି ଅଞ୍ଚଳରେ ସ୍ୱାଧୀନତାର ପତାକା ଉଡ଼ାଇବୁ ।''

''ତେଜ, କେଉଁ ଅଞ୍ଚଳକୁ ଯିବାପାଇଁ ଠିକ୍ କରିଛୁ ?''

''ସେ କଥା ଆପଣଙ୍କୁ କହିବି ନାହିଁ, ମା' ଶୁଣିନେବେ ।''

ଶ୍ରୀହରିବାବୁ ଓ ମମତା ଚିନ୍ତାଗ୍ରସ୍ତ ହେବା ଦେଖାଗଲା । ବାରଣ୍ଡାରେ ସେତେବେଳକୁ ଜନସମାଗମ ଦେଖି ତେଜସ୍ୱୀ ବାହାରି ଗଲା । ସେହି ସୁଯୋଗରେ ମମତା ଶ୍ରୀହରିବାବୁଙ୍କୁ ପଚାରିଲେ, ''ମଉସା, ମହାଗିରି ନାମକ ପର୍ବତ କେଉଁଠାରେ

ଆପଣ ଜାଣିଛନ୍ତି ? ତେଜ ସେହି ସ୍ଥାନକୁ ଯିବ ବୋଲି କେତେଜଣ ଆଦିବାସୀ ନେତାଙ୍କୁ କହୁଥିବା ମୁଁ ଶୁଣିଛି । କାହିଁକି କେଜାଣି, ମୋତେ ଡର ଲାଗୁଛି ।''

ମହାଗିରି ନାମଟି ଶୁଣି ଶ୍ରୀହରିବାବୁ ଚମକିଉଠିଲେ । ଶଙ୍କା ପ୍ରକାଶ କରି କହିଲେ, ''ଶୀରିଖଣ୍ଡ ଦେଶୀୟ ରାଜ୍ୟରେ ରଜାଙ୍କ ବିରୋଧରେ ବନବାସୀମାନଙ୍କର ଭୟଙ୍କର ବିଦ୍ରୋହ ଚାଲିଛି । ସେହି ରାଜ୍ୟର ମଧ୍ୟସ୍ଥଳରେ ରହିଛି ମହାଗିରି ପର୍ବତ ଓ ପାହାଡ଼ । ତେଜ ସେଠାକୁ କାହିଁକି ଯିବ ? ସେଠାକୁ ଯିବାଲାଗି ତାକୁ ବାରଣ କର । ଜଙ୍ଗଲରେ ବାଘ, ଭାଲୁ ଭର୍ତ୍ତି । ପୁଣି ରଜାଙ୍କ ସୈନ୍ୟମାନେ ବଣ ଭିତରେ ଲୁଚି ରହିଛନ୍ତି । କେତେକ ଆଦିବାସୀଙ୍କୁ ସେମାନେ ମାରିଦେଲେଣି । ତେଜକୁ ଯଦି ସେମାନେ ଧରି ପକାଇବେ, ତେବେ ସର୍ବନାଶ । ତୁମେ ତାକୁ ଘରୁ ଛାଡ଼ ନାହିଁ ।''

''ମୋ ଆଦେଶ ସେ ମାନିବ ନାହିଁ । ନିଶ୍ଚୟ ଯିବ । ତା' ପଛେ ପଛେ ଲୁଚିକରି ଯିବି ବୋଲି ଭାବିଥିଲି । କିନ୍ତୁ ଶ୍ୟାମାନନ୍ଦମଉସା ବର୍ତ୍ତମାନ ଅନ୍ତିମ ଶଯ୍ୟାରେ । ତାଙ୍କୁ ଛାଡ଼ି ମୁଁ ଯାଇପାରିବି ନାହିଁ । ଏପରି ଅବସ୍ଥାରେ ମୁଁ କ'ଣ କରିବି, ଆପଣ ଉପଦେଶ ଦିଅନ୍ତୁ ।''

ଶ୍ରୀହରିବାବୁ ଚିନ୍ତାଗ୍ରସ୍ତ ଅବସ୍ଥାରେ କିଛି ସମୟ ବସିରହିଲେ । ତାହାପରେ ସାହସ ଦେଲେ, ''ମା' ଭୟ କର ନାହିଁ । ମୁଁ ତୁମ ମାନସିକ ସମସ୍ୟା ବୁଝିପାରୁଛି । ଜାଣିପାରୁଛି, ଏକ ଚରମ ବିପ୍ଳବ ସମୟରେ ତେଜସ୍ୱୀ ପରି ଦୁଃସାହସୀ ଯୁବକକୁ ତୁମେ ଘରେ ଅଟକାଇ ରଖିପାରିବ ନାହିଁ । ସେ ନିଶ୍ଚୟ ଚାଲିଯିବ, କାରଣ ଆଦିବାସୀମାନଙ୍କୁ ପ୍ରତିଶ୍ରୁତି ଦେଇସାରିଥିବ । ତୁମେ ଚିନ୍ତା କର ନାହିଁ । ମୁଁ ମୋର ଦୁଇଜଣ ବଳବାନ ଲୋକଙ୍କୁ ତା' ପଛେ ପଛେ ଛଦ୍ମ ବେଶରେ ପଠାଇବି । ସେ ଜାଣିପାରିବ ନାହିଁ । ମହାଗିରି ପର୍ବତ ଏଠାରୁ ପ୍ରାୟ ପଚାଶ ମାଇଲ୍ ଦୂରରେ । ଚାରିଦିଗରେ ଘନଘଞ୍ଚ ବଣଜଙ୍ଗଲ । ତେଜ ନିଶ୍ଚୟ ଆଦିବାସୀ ବସତିଗୁଡ଼ିକରେ ବୁଲି ବୁଲି ଶେଷରେ ମହାଗିରିଠାରେ ପହଞ୍ଚିବ । ସେ କେଉଁଠାରେ ରହିବ କିମ୍ବା କେଉଁପ୍ରକାର କାର୍ଯ୍ୟ କରୁଥିବ, ପ୍ରତିଦିନ ରାତିରେ ମୋର ଜଣେ ଲୋକ ଫେରିଆସି ତୁମକୁ ଓ ମୋତେ ଖବର ଦେବ । ଆଉ ଜଣେ ଲୋକ ତା' ପାଖେ ପାଖେ ଦେହରକ୍ଷୀ ଭାବରେ ଛପି ରହିବ । ଯଦି ତେଜ ପ୍ରତି କୌଣସି ପ୍ରକାର ବିପଦର ଆଶଙ୍କା ଜଣାପଡ଼ିବ, ତେବେ ତାହାକୁ ସେଠାରୁ ଫେରାଇ ଆଣିବା ବ୍ୟବସ୍ଥା ମୁଁ କରିବି । ତୁମେ ନିଶ୍ଚିନ୍ତ ରୁହ ଏବଂ ଶ୍ୟାମାନନ୍ଦବାବୁଙ୍କ ସେବା ଶୁଶ୍ରୂଷା କର ।''

ଶ୍ରୀହରିବାବୁଙ୍କ ବାକ୍ୟଗୁଡ଼ିକ ମମତାଙ୍କ ପ୍ରାଣରେ ସଞ୍ଜୀବନୀ ମନ୍ତ୍ର ରୂପେ କାର୍ଯ୍ୟ କଲା । ପୁଅକୁ ସାଙ୍ଗରେ ଧରି ଘରକୁ ଫେରିବା ସମୟରେ ଶ୍ରୀହରିବାବୁ ପଚାରିଲେ, ''ତେଜ, ନୂଆ ଅଞ୍ଚଳକୁ ଆଜି କେତେବେଳେ ବାହାରିଯିବୁ ? ଆଜି ରାତିଟା ଆମ ଘରେ ରହିଯାଇଥିଲେ ଭଲ ହୋଇଥା'ନ୍ତା । ଅନେକ ବିଷୟ ଆଲୋଚନା କରିଥା'ନ୍ତେ ।''

''ଫେରିଆସିଲା ପରେ ଆପଣଙ୍କ ଘରକୁ ଆସି ଦିନେ ଦୁଇଦିନ ରହିବି । ଆଜି ସନ୍ଧ୍ୟାବେଳେ ଘରୁ ବାହାରିଯିବି । ଗୋଟାଏ ଅନ୍ଧାରି ମୁଲକରେ ପଶିବାକୁ ହେଲେ ଅନ୍ଧାରରେ ଯାତ୍ରା କରିବା ଆବଶ୍ୟକ । ମୁଣ୍ଡରେ ପୁଣି କଳା ପଗଡ଼ି ପିନ୍ଧି ଏବଂ ଦରକାର ପଡ଼ିଲେ ମୁହଁଟିକୁ କଳା କନାରେ ଘୋଡ଼ାଇ ରଖି ଚାଲିବାକୁ ହେବ ।''

''ଶୁଭ ଉଦ୍ଦେଶ୍ୟ ରଖି ଘରୁ ବାହାରି ଯାଉଛୁ । ଭଗବାନ୍ ମଙ୍ଗଳ କରିବେ,'' କହିଲେ ଶ୍ରୀହରିବାବୁ ।

''ଅଜା, ଭଗବାନ୍ ଯଦି ଅଛନ୍ତି, ଇଂରେଜମାନେ ହଜାର ହଜାର ଲୋକଙ୍କୁ ହତାହତ କରୁଥିଲା ବେଳେ, ସେ କ'ଣ କରୁଛନ୍ତି ? ମୋର ବିଶ୍ୱାସ, ଭଗବାନ୍ ବୋଧହୁଏ ଏତେବେଳେ ଗାଢ଼ ନିଦରେ ଶୋଇ ପଡ଼ିଥିବେ ।''

ପିଣ୍ଡା ଉପରେ ଓ ତଳେ ଛିଡ଼ା ହୋଇଥିବା ଲୋକମାନେ କରତାଳି ଦେଲେ ଏବଂ ଶ୍ରୀହରିବାବୁ ହସିଉଠିଲେ ।

## ।। ୧୭ ।।

ସନ୍ଧ୍ୟା ଆସନ୍ନପ୍ରାୟ । ମା'ଙ୍କ ପାଦସ୍ପର୍ଶ ପୂର୍ବକ ତେଜସ୍ୱୀ ବିଦାୟ ନେଲା କେଉଁ ଏକ ଅଜ୍ଞାତ ଅଭିଯାନ ପଥରେ । ମମତା ଆଚମ୍ବିତ ହୋଇ ଦେଖିଲେ ପୁଅର ଅସ୍ୱାଭାବିକ ପୋଷାକ । ମଇଳା ଧୋତି ଉପରେ ଥାଏ ନୀଳରଙ୍ଗର ଚୌକିଦାରୀ ଜାମା ଓ ମୁଣ୍ଡରେ କଳା ପଗଡ଼ି । ''ମା', ଆଶୀର୍ବାଦ ଦିଅ । ମୋ କାର୍ଯ୍ୟରେ ସଫଳ ହୋଇ ବାବାଙ୍କ ନାମ ରଖିପାରିବି ।''

''ଏପରି ଚୌକିଦାରୀ ପୋଷାକ କାହିଁକି ପିନ୍ଧିଲୁ ?''

''ଚୌକିଦାର ବୋଲି ଭାବି ଅନ୍ଧକାରରେ ଜମିଦାର ବା ରଜାଙ୍କ ଲୋକମାନେ ମୋ ପାଖକୁ ଆସିବେ ନାହିଁ, ସେମାନେ ଜାଣନ୍ତି ଯେ ରାତ୍ରିରେ ଗସ୍ତ କରିବା ହେଉଛି ଚୌକିଆମାନଙ୍କ କାମ ।''

''ତୋର ମଙ୍ଗଳପାଇଁ ଅହରହ ପ୍ରାର୍ଥନା କରୁଥିବି । ସଦାବେଳେ ସାବଧାନ ରହିବୁ । କୌଣସି ବିପଦର ସୂଚନା ପାଇଲେ ପଳାଇ ଆସିବୁ ।'''

''ମା', ତୁମକୁ ବାରମ୍ବାର କହିଛି, ପଛଘୁଞ୍ଚା ନାହିଁ ବୀରର ଜାତକେ । ମୋ ବାବାଙ୍କ ପୁଅ ଭାବରେ ମୁଁ ପଳାଇ ଆସିପାରିବି ନାହିଁ, ହସି ହସି ବିପଦର ମୁକାବିଲା କରିବାଲାଗି ମୋର ସାହସ ଅଛି । ତୁମେ ନିଶ୍ଚିନ୍ତ ରହିଲେ ହିଁ ମୋର ଶକ୍ତି ବଢ଼ି ବଢ଼ି ଚାଲିବ ।''

ଏତକ କହି ହାତରେ ଖଣ୍ଡିଏ ଠେଙ୍ଗା ଧରି ତେଜସ୍ୱୀ ରାସ୍ତା ଉପରକୁ ବାହାରି ଚାଲିଗଲା । ମମତା ଚାହିଁରହିଥାନ୍ତି । ଦେଖିଲେ, ଅଳ୍ପ ସମୟ ପରେ ଦୁଇଜଣ ହୃଷ୍ଟପୁଷ୍ଟ ବ୍ୟକ୍ତି ଚାଲିଛନ୍ତି ପୁଅ ଅଗ୍ରସର ହେଉଥିବା ରାସ୍ତାର ପଶ୍ଚାଦ୍‌ଭାଗରେ । ଜାଣିପାରିଲେ, ସେମାନେ ଶ୍ରୀହରିବାବୁଙ୍କ ପ୍ରେରିତ ଚର । ଉଭୟେ ଦିଶୁଥାନ୍ତି କନ୍ଧ ବା ସାନ୍ତାଳ ଜାତିର ଶ୍ରମିକ ପରି । ହାତରେ ଥାଏ ମୋଟା ମୋଟା ବାଉଁଶ ବାଡ଼ି । ସମସ୍ତେ ଅଦୃଶ୍ୟ ହେଲା ପରେ ମମତା ଚାଲିଲେ ଶ୍ୟାମାନନ୍ଦବାବୁଙ୍କ ଘରକୁ ।

''ମାମି, ପିଲାବେଳେ ଯେଉଁ ଭଜନଗୁଡ଼ିକ ଶିଖିଥିଲୁ, ସେଥିରୁ ଗୋଟିଏ ଗାଇଲେ ମୁଁ ଶୁଣିବି,'' କ୍ଷୀଣ ସ୍ୱରରେ କହିଲେ ଶ୍ୟାମାନନ୍ଦବାବୁ ।

ତାଙ୍କ ପାଦ ପାଖରେ ବସି ଅଶ୍ରୁସିକ୍ତ ନୟନରେ ବାତାୟନ ଦିଗକୁ ଚାହିଁରହି ମମତା ଗାଇଲେ ପିତାଙ୍କ ନିକଟରୁ ଶିକ୍ଷା କରିଥିବା ପ୍ରାର୍ଥନାଟିଏ -

''ତୁମରି ଚରଣ ପରଶ ମାନସେ ଅଥୟ ହେଉଛି ମୋ ପ୍ରାଣ,
ହେ କରୁଣାମୟ କରୁଣା କରହେ ଭକତ ପ୍ରାର୍ଥନା ଶୁଣ .....''

ସଙ୍ଗୀତର ମଧୁର ମୂର୍ଚ୍ଛନାରେ ରୋଗୀର ଶଯ୍ୟାକକ୍ଷଟି ପବିତ୍ର ପରିବେଶ ଧାରଣ କଲା । ସେହି ଭଜନ ଶୁଣୁଥିବା ସମୟରେ ଶ୍ୟାମାନନ୍ଦବାବୁ ନିଦ୍ରାଗ୍ରସ୍ତ ହେଲେ । କପାଳରେ ହାତ ରଖି ମମତା ଜାଣିପାରିଲେ, ଉତ୍ତାପ କମିବା ପରିବର୍ତ୍ତେ ବଢ଼ିଯାଇଛି । ନିଶ୍ୱାସ ପ୍ରଶ୍ୱାସରୁ ନିର୍ଗତ ହେଉଥାଏ କଷ୍ଟଦାୟକ ଅଶୁଭ ସ୍ୱନ ।

ରାତିରେ ନିଜ ଘରେ ଶୋଇଥିବାବେଳେ ମମତା ଆଶା କରୁଥାନ୍ତି ଶ୍ରୀହରିବାବୁଙ୍କ ଦୁଇ ଚର ମଧ୍ୟରୁ ଜଣେ କେହି ଶେଷ ରାତି ସୁଦ୍ଧା ଫେରିଆସି ତେଜସ୍ୱୀ କେତେଦୂରରେ ପହଞ୍ଚିଲା ବା ଆଶ୍ରୟ ନେଲା ସେ ବିଷୟରେ ସମ୍ବାଦ ଦେବ । ସାରାରାତି ଅନିଦ୍ରାରେ କଟିଲା, କିନ୍ତୁ କେହି ଜଣେ ଆସିଲା ନାହିଁ । ସାନ୍ତ୍ୱନା ଲାଗି ଭାବିନେଲେ ଶୀରିଖଣ୍ଡ ରାଜ୍ୟ ଅନେକ ଦୂରରେ । ସାରା ରାତି ଚାଲି ଚାଲି ସେଠାରେ ପହଞ୍ଚିବା ପରେ ସିନା

ଶ୍ରୀହରିବାବୁଙ୍କ ଲୋକ ପୁଅର ରହିବା ସ୍ଥାନ ଜାଣିପାରିବେ । ବିପଦ ସମୟରେ ଧୈର୍ଯ୍ୟ ହରାଇବା ଉଚିତ ନୁହେଁ ।

ତହିଁ ପରଦିନ ଅପରାହ୍ଣ ପର୍ଯ୍ୟନ୍ତ କେହି ନ ଆସିବା ଦେଖି ମମତାଙ୍କ ମନରେ ଭୟ ଓ ଆଶଙ୍କା ଗାଢ଼ତର ହେବାକୁ ଲାଗିଲା । ସନ୍ଧ୍ୟାବେଳେ ପୋଖରୀରେ ସ୍ନାନ କରିବା ସମୟରେ ଦେଖିପାରିଲେ ପଛ ପଟ ବିଲ ଭିତରୁ ଜଣେ ବ୍ୟକ୍ତି ଦୌଡ଼ି ଦୌଡ଼ି ଆସୁଛି । ପଡ଼ିଆ ଆଡ଼ିରେ ଛିଡ଼ା ହୋଇ ସେ କହିଲା, ''ମା', ମୁଁ ଶ୍ରୀହରିବାବୁଙ୍କ ଲୋକ । ଜାତିରେ ସାନ୍ତାଳ । ତାଙ୍କ ଘରେ ମୁଁ ଓ ଭାଇ ବାରମାସିଆ ଚାଷୀ ଭାବରେ ରହିଛୁ । ତେଜସ୍ୱୀବାବୁଙ୍କ ପଛେ ପଛେ ଯାଇଥିଲୁ । ଶୀରିଖଣ୍ଡ ରାଜ୍ୟର ସୀମା ନିକଟରେ କେତେଜଣ ସାନ୍ତାଳ ନେତା ଉପସ୍ଥିତ ଥିଲେ । ସେମାନେ ତେଜବାବୁଙ୍କୁ ଜୁହାର କରି ଗୋଟିଏ ଗାଁ ଭିତରକୁ ନେଇଗଲେ । ରାତି ଶେଷ ହୋଇ ନ ଥାଏ । ଗହନ ଜଙ୍ଗଲ । ଗୋଟିଏ ପଲା ଭିତରେ ଦଶ, ବାରଜଣ ମାଝି ବସିଥାନ୍ତି । ସେମାନେ ହେଉଛନ୍ତି ବନବାସୀମାନଙ୍କର ସର୍ଦ୍ଦାର । ଆମେ ଦୁଇଭାଇ ବାହାରେ ଲୁଚି ରହିଲୁଁ । ତେଜବାବୁ ଭଲ ଅଛନ୍ତି । ମୁଁ ସାରାଦିନ ଦୌଡ଼ି ଦୌଡ଼ି ଫେରିଛି ।''

ମମତା ପୋଖରୀରୁ ଉଠିଆସି ଲୋକଟିକୁ ପ୍ରଥମେ ଘର ଭିତରକୁ ନେଇ ଖାଇବାଲାଗି ପଖାଳ ବାଢ଼ିଦେଲେ । ସେଥିସଙ୍ଗେ ଦେଲେ ନଡ଼ିଆ କୋରା ଓ ଆଚାର । ଲୋକଟିର ଆକଣ୍ଠ ଭୋଜନ ଦେଖି ମମତା ତା'ର କ୍ଷୁଧା ଏବଂ ପରିଶ୍ରମ ବିଷୟ ଅନୁମାନ କରିପାରିଲେ । ପଚାରିଲେ, ''ତେଜ ଓ ଆଦିବାସୀ ସର୍ଦ୍ଦାରମାନେ କ'ଣ କଥାବାର୍ତ୍ତା ହେଉଥିଲେ ତାହା ଶୁଣିପାରୁଥିଲ ?''

''ହଁ, ମା', ଶୁଣିଛି । ଆଜି ରାତିରେ ତେଜବାବୁଙ୍କୁ ସାଙ୍ଗରେ ନେଇ ସେମାନେ ମହାଗିରି ପାହାଡ଼କୁ ଯିବେ । ସେଠାରେ ବିପ୍ଳବୀମାନେ ରୁଣ୍ଡ ହୋଇସାରିଛନ୍ତି । ପାହାଡ଼ର ଗୁମ୍ଫାଗୁଡ଼ିକ ମଧ୍ୟରେ ସମସ୍ତେ ଲୁଚିଛନ୍ତି । ତେଜବାବୁଙ୍କ ଆଦେଶ ପାଇଲେ ସେମାନେ ଲଢ଼ାଇ ଆରମ୍ଭ କରିବେ ।''

''ମୋ ପୁଅ କିପରି ଲଢ଼ାଇ ଶିଖାଇବ ସେ କଥା ଶୁଣିଛ କି ?''

''ହଁ, ଆଜ୍ଞା, ଶୁଣିଛି । ପ୍ରତିଟି ଆଦିବାସୀ ଗାଁରେ ଦିନବେଳେ ଜଣେ ଜଣେ ଲୋକ ଗାଁ ମୁଣ୍ଡରେ ଜଗୁଆଳି ରହିବେ । ଗୋରା ସାହେବମାନଙ୍କୁ ଦେଖିଲେ ଜଣେ ଶଙ୍ଖ ବଜାଇବ । ସଙ୍ଗେ ସଙ୍ଗେ ସବୁ ଗାଁରେ ଶଙ୍ଖ ବାଜିଉଠିବ । ସେତେବେଳକୁ ମହାଗିରି ପର୍ବତ ଉପରୁ ବହୁ କଣ୍ଠରୁ ରଣଧ୍ୱନି ଦିଆଯିବ ଏବଂ ଅନେକ ଶଙ୍ଖ ବାଜିବ ।

ସେଥିସଙ୍ଗେ ସେଠାରେ ନିଆଁ ଜଳିବ, ଯାହାକି ଅନେକ ଦୂରକୁ ଦିଶିବ । ରଜାଙ୍କ ପୁଲିସ ଓ ଗୋରା ସୈନ୍ୟମାନେ ସେହିଦିଗକୁ ଆଗେଇବେ । ସେତେଦୂରରେ ପହଞ୍ଚିଲା ବେଳକୁ ରାତି ଆସିଯିବ । ପାହାଡ଼ ତଳ ଜଙ୍ଗଲରେ ସେତେବେଳକୁ ବଡ଼ ବଡ଼ ଗଛ ଉପରେ ଲୁଚି ବସିଥିବେ ଧନୁଶର ଧରି ଆଦିବାସୀମାନେ ସାହେବମାନଙ୍କୁ ଲକ୍ଷ୍ୟକରି ସେମାନେ ତୀର ଚଳାଇବେ । ତେଜବାବୁ କହୁଥିଲେ, ଜଣେ ଦୁଇଜଣ ଗୋରା ସାହେବ ମରିପଡ଼ିଲେ ରଜାଙ୍କ ସୈନ୍ୟମାନେ ଡରରେ ପଳାଇଯିବେ । ସାହେବଗୁଡ଼ାକ ମଧ ପଳାଇବେ ।''

ମମତା ଅଧିକ କିଛି ପଚାରିବା ପୂର୍ବରୁ ଲୋକଟି କହିଲା, ''ମୋ ଭାଇ କହିଛି, ଆପଣଙ୍କୁ ଏହି ଖବର ଦେଇ ତୁରନ୍ତ ଫେରିଯିବି । ଏବେଠୁଁ ସାରାରାତି ଚାଲିବି । ପୁଣି ସକାଳ ହେଲେ ତେଜବାବୁ ଯାଇଥିବା ବଣ ବାଟରେ ମହାଗିରି ପର୍ବତରେ ପହଞ୍ଚିବି । ସେଠାରୁ ଫେରିବାକୁ ପୂରା ଦୁଇ ଦିନ ବା ତିନି ଦିନ ଲାଗିବ । ଆପଣ ମୋତେ ଅପେକ୍ଷା କରିବେ ନାହିଁ । ଚାରି ଦିନ ହେଲେ ବି କିଛି ଭାବିବେ ନାହିଁ । ତେଜବାବୁ ଲଢ଼େଇ ଜିଣିବେ । ସାଇବମାନେ ପଳାଇଗଲା ପରେ ମୁଁ ଫେରିବି । ଆଦିବାସୀମାନେ କହୁଛନ୍ତି, ଗୋରା ସିପାହିମାନେ ପଳାଇଗଲେ ରଜା ମଧ ପଳାଇଯିବ ।''

ମମତାଦେବୀଙ୍କ ଛାତି ଥରୁଥାଏ । ଲୋକଟି ଗାମୁଛା ପିନ୍ଧି ପୋଖରୀରେ କେତେଥର ବୁଡ଼ ମାରି ପଛ ପଟ ବେଢ଼ା ଡେଇଁ ବିଲ ଭିତରକୁ ଦୌଡ଼ି ଚାଲିଗଲା । ବିଦ୍ରୋହର ନିଶା ଯେ ବନବାସୀ ସମ୍ପ୍ରଦାୟକୁ ଉତ୍ତେଜିତ ଓ ଏକତ୍ରିତ କରିପାରିଛି ତାହାର ପ୍ରମାଣ ସାନ୍ତାଳ ମୂଲିଆଟିର ବଡ଼ ବଡ଼ ଆଖି ଓ କଥା କହିବା ଢଙ୍ଗରୁ ଜଣା ପଡ଼ିଯାଉଥାଏ । ଯେଉଁ ପ୍ରକାର କଷ୍ଟ ସ୍ୱୀକାର, ଶାରୀରିକ ପରିଶ୍ରମ ଓ ବିପଦ ଆପଦର ଆଶଙ୍କା ପ୍ରତି ଭ୍ରୂକ୍ଷେପ ନ କରି ଲୋକଟି ଆସିଗଲା ଓ ଚାଲିଗଲା ତାହା କେବଳ ଆନ୍ତରିକ ପ୍ରେରଣାର ଶକ୍ତି ବୋଲି ମମତା ବୁଝିପାରିଲେ । ତୁଳସୀ ଚୌରା ତଳେ ଦୀପ ଜାଳି ସେ ପ୍ରାର୍ଥନା କଲେ, ''ହେ ଭଗବାନ୍, ମୋ ପୁଅ ବିଜୟୀ ହେଉ । ପୁଅର କୀର୍ତ୍ତି ଦେଖି ତା' ବାବାଙ୍କ ଆତ୍ମା ଆଶୀର୍ବାଦ ବର୍ଷଣ କରୁ ।''

ମମତା ଚାଲିଲେ ଶ୍ୟାମାନନ୍ଦବାବୁଙ୍କ ଶଯ୍ୟା ନିକଟକୁ । ଅତ୍ୟନ୍ତ କ୍ଷୀଣ ସ୍ୱରରେ ସେ କହିଲେ, ''ମାମି, ଭକ୍ତ ସାଲବେଗଙ୍କ ସେହି ଜଣାଣଟା ଗାଇଲୁ । ଶୁଣିବାକୁ ମନ କହୁଛି ।''

ସୁଲଳିତ ସ୍ୱରରେ ମମତା ଗାଇଲେ -

''ଆହେ ନୀଳ ଶଇଳ, ପ୍ରବଳ ମତ୍ତ ବାରଣ, .... ।''

ଶ୍ୟାମାନନ୍ଦବାବୁ ସାଲବେଗଙ୍କ ଜଣାଣଟି ଶୁଣୁଥିଲା ସମୟରେ ତାଙ୍କ ଆଖିରୁ ଅଶ୍ରୁ ଝରି ଯାଉଥାଏ । କିନ୍ତୁ ମମତାର ଗାଇବା ଶେଷ ହେଲା ବେଳକୁ ତାଙ୍କୁ ଗାଢ଼ ନିଦ ଲାଗିଯାଇଥାଏ । ପାଖରେ ଛିଡ଼ା ହୋଇ ବିଧବା ଭଉଣୀଟି କାନ୍ଦୁଥାନ୍ତି । କବିରାଜ ପଶିଆସିଲେ । ନାଡ଼ି ଉପରେ ଅନେକ ସମୟ ହାତ ରଖିଲେ । ଛାତି ଉପରେ କାନ ଦେଲେ । ଶେଷରେ ଦୀର୍ଘଶ୍ୱାସଟିଏ ତ୍ୟାଗକରି ନୀରବରେ ବାହାରି ଚାଲିଗଲେ । ମମତାଙ୍କୁ ଜଣାଯାଉଥାଏ, ବୋଧହୁଏ ଦିନେ ଦୁଇଦିନ ମଧ୍ୟରେ ଶେଷ ମୁହୂର୍ତ୍ତ ଆସିଯିବ । ରାତିରେ ମେଜିଆ ଉପରେ ଶେଯ ପାତି ରୋଗୀଙ୍କ ଶଯ୍ୟାପାଖରେ ଶୋଇପଡ଼ିଲେ ।

ତହିଁ ପରଦିନ ସକାଳେ ଶ୍ରୀହରିବାବୁ ଓ ତାଙ୍କ ଭାଇମାନେ ଶ୍ୟାମାନନ୍ଦବାବୁଙ୍କୁ ଦେଖିବାକୁ ଆସିଲେ । ରୋଗୀ ଶୋଇଥାନ୍ତି । ମମତାଙ୍କୁ ବାହାରକୁ ଡାକିନେଇ ଶ୍ରୀହରିବାବୁ ତାଙ୍କ ସାନ୍ତାଳ ଚାଷୀର ବର୍ଣ୍ଣନାମାନ ଶୁଣିଲେ । ମୁହଁରେ ଫୁଟି ଉଠିଥାଏ ଦାରୁଣ ଦୁଃଶ୍ଚିନ୍ତାର ଛାଇ ।

ସେଦିନ ସନ୍ଧ୍ୟାବେଳେ ରୋଗୀଙ୍କ ଗୋଡ଼ ଘଷୁଥିଲା ସମୟରେ ମମତା ଗାନ କରିବାକୁ ଲାଗିଲେ ଭକ୍ତକବି ଦୀନକୃଷ୍ଣ ଦାସଙ୍କର ଗୋଟିଏ ମର୍ମସ୍ପର୍ଶୀ ଭଜନ -

''ଜୟ ଜୟ ଜଗନ୍ନାଥ ନୀଳଗିରି ପତି
ଅଭିନବ ଜଳଧର ସୁନ୍ଦର ମୂରତି ହେ ...''

ସେତେବେଳକୁ ରୋଗୀର ବାକ୍‌ଶକ୍ତି ଲୋପ ପାଇଯାଇଥାଏ । କିନ୍ତୁ ଆଖିରୁ ଝରି ପଡୁଥାଏ ଲୋତକ ବିନ୍ଦୁ । କବିରାଜ ପଶିଆସି ଚମକି ଉଠିଲେ । ତାଙ୍କ ମୁଖରୁ ବାହାରି ପଡ଼ିଲା ଦୁଇଟି ଅସ୍ପଷ୍ଟ ଶବ୍ଦ - ''ଯୋଗ ହାକୁଟି !'' ଶବ୍ଦ ଦୁଇଟିର ଅର୍ଥ ବୁଝି ନ ପାରି ମମତା ପଚାରିଲେ, ''ମହୋଦୟ, ଅର୍ଥ ବୁଝିପାରୁ ନାହିଁ ।''

''ଅର୍ଥ ହେଲା ପରମାତ୍ମା ସହିତ ଆତ୍ମାର ମିଳନ ।''

ସେହି ରାତ୍ରିର ଶେଷ ପ୍ରହରରେ ଶ୍ୟାମାନନ୍ଦବାବୁ ଶେଷ ନିଶ୍ୱାସ ତ୍ୟାଗ କଲେ । ସୂର୍ଯ୍ୟୋଦୟ ବେଳକୁ ଆଖପାଖ ଗାଁଗୁଡ଼ିକରୁ ଆସିଗଲେ ଶେଷ ଦର୍ଶନ ଲାଗି ଅନେକ ଲୋକ । ଶ୍ରୀହରିବାବୁ ଗ୍ରାମବାସୀମାନଙ୍କୁ ପ୍ରଶ୍ନ କଲେ, ''ଅପୁତ୍ରକ ଏବଂ ନିଃସନ୍ତାନ ବ୍ୟକ୍ତିଙ୍କ ମୁଖାଗ୍ନି କିଏ ଦେଲେ ଭଲ ହେବ ?'' ଗାଁର ବୟୋଜ୍ୟେଷ୍ଠ ବ୍ୟକ୍ତିମାନେ ଆଲୋଚନାପୂର୍ବକ ଉତ୍ତର ଦେଲେ, ''ମମତାଦେବୀ ।''

ମମତା ଗ୍ରାମବାସୀମାନଙ୍କ ଆଦେଶ ପାଳନ କଲେ । ଚିତା ନିକଟରେ ଛିଡ଼ା ରହି ସେ ଭାବୁଥାନ୍ତି, ପଞ୍ଚଭୂତର ଶରୀର ଶେଷରେ ଚିତା ଭସ୍ମରେ ପରିଣତ ହୋଇ ମିଶିଗଲା ସେହି ପଞ୍ଚଭୂତ ସହିତ । ଶ୍ରୀହରିବାବୁ ଘୋଷଣା କଲେ ନିଜ ଅର୍ଥବ୍ୟୟରେ ସେ ଶ୍ୟାମାନନ୍ଦବାବୁଙ୍କ ଶ୍ରାଦ୍ଧ କାର୍ଯ୍ୟ ସମ୍ପନ୍ନ କରିବେ ।

ମମତାଙ୍କୁ ତାଙ୍କ ଘରେ ଛାଡ଼ିଦେବାପାଇଁ ଆସିଲାବେଳେ ଶ୍ରୀହରିବାବୁ ଆଶଙ୍କା ପ୍ରକାଶ କଲେ, ତାଙ୍କ ଭୃତ୍ୟମାନେ କେଉଁ ଦିନ ଫେରିବେ ସେଥିଲାଗି ତାଙ୍କର ଚିନ୍ତା ! ''କିନ୍ତୁ ମୋର ପୂରା ବିଶ୍ୱାସ, ତେଜସ୍ୱୀ କୃତିତ୍ୱ ସହ ନିର୍ବିଘ୍ନରେ ଫେରିଆସିବ ।''

ସ୍ନାନ ଓ ବସ୍ତ୍ର ପରିବର୍ତ୍ତନ ପରେ ମମତା ବସିରହିଲେ ନିଜର ଶଯ୍ୟାକକ୍ଷରେ । ଏକମାତ୍ର ଚିନ୍ତା ତେଜସ୍ୱୀ ପାଇଁ । ଆଶା ବାନ୍ଧୁଥାନ୍ତି, ସୁସମ୍ବାଦ ପାଇବେ । ପୁଣି ଆସିଯାଉଥାଏ ଅଜଣା ଆଶଙ୍କା !

ଦୁଇଦିନ ବିତିଗଲା । ତୃତୀୟ ଦିନର ମଧ୍ୟାହ୍ନର ଘଟଣା । ଶୀରିଖଣ୍ଡ ରାଇଜର ଜଣେ ବ୍ୟକ୍ତି ଅକସ୍ମାତ୍ ସାଇକେଲରେ ଆସି ପହଞ୍ଚିଲେ ଶ୍ରୀହରିବାବୁଙ୍କ ଘରେ । ନିଜକୁ ଜଣେ ଆତ୍ମଗୋପନ କରିଥିବା ସ୍ୱାଧୀନତା ସଂଗ୍ରାମୀ ବୋଲି ପରିଚୟ ଦେଇ ଶ୍ରୀହରିବାବୁଙ୍କ କାନପାଖରେ କୌଣସି ଗୁପ୍ତ ସମ୍ବାଦ ଜଣାଇ ତୁରନ୍ତ ସାଇକେଲରେ ଚାଲିଗଲେ । ମର୍ମାହତ ଅବସ୍ଥାରେ ଶ୍ରୀହରିବାବୁ ଚୌକି ଉପରେ ବସିପଡ଼ିଲେ । ଭାଇ ଓ ପୁଅମାନେ ପାଖକୁ ଆସିଲାବେଳକୁ ସେ ମୂକ ବଧିର ଭାବରେ ବସିଥାନ୍ତି । କିଛି ସମୟ ପରେ ହଠାତ୍ କାନ୍ଦି ପକାଇ ଜଣାଇଲେ, ''ରଜାର ସୈନ୍ୟମାନେ ଆମ ଦୁଇଟି ଲୋକଙ୍କୁ ଗୁଳି କରି ମାରିଦେଇଛନ୍ତି । ତେଜସ୍ୱୀକୁ ସାନ୍ତାଳମାନେ ଲୁଚାଇ ରଖିଛନ୍ତି । ସାହେବଗୁଡ଼ାକ ଓ ରଜାଙ୍କ ଲୋକମାନେ ଗାଁ ପରେ ଗାଁ ଆକ୍ରମଣ କରି ତେଜକୁ ଖୋଜୁଛନ୍ତି । ଏ କଥା ମୁଁ ମମତାକୁ ଜଣାଇବି କିପରି ? ସେ ବା କ'ଣ କରିପାରିବ ?''

ଶ୍ରୀହରିବାବୁଙ୍କ ଯୁବକ ପୁଅ ସୁଶାନ୍ତ କହି ପକାଇଲା, ''ବାବା, ମୋତେ ଅନୁମତି ଦିଅ । ମୁଁ ମମତାଦେବୀଙ୍କୁ ଏ କଥା ଜଣାଇଦେବି ଏବଂ ତାଙ୍କୁ ସାନ୍ତ୍ୱନା ଦେଇ ନିଜେ ତେଜସ୍ୱୀକୁ ଉଦ୍ଧାର କରିବାପାଇଁ ବାହାରିଯିବି ।''

''ତେଜସ୍ୱୀ ମରଣଯନ୍ତାରେ ପଡ଼ିଯାଇଛି । ତା ପାଖରେ ଥିବା ଯୋଗୁଁ ଆମର ଦୁଇଜଣ ଲୋକ ପ୍ରାଣ ଦେଲେଣି । ତୁ ପୁଣି ସେହି ଯନ୍ତାରେ ପଡ଼ିବାଲାଗି ସାହସ କରୁଛୁ । ମୁଁ 'ହଁ' କହିବି କିପରି ?''

''ଆପଣ କେବଳ ଆଶୀର୍ବାଦ କରନ୍ତୁ । ଘଟଣାଟା ମମତାଦେବୀଙ୍କୁ ଜଣାଇ ଦେବା ଆମର କର୍ତ୍ତବ୍ୟ ।''

''ସେ କ'ଣ ପ୍ରାଣ ଧରି ରହିପାରିବେ ? ସ୍ୱାମୀଙ୍କ ମୃତ୍ୟୁ ପରେ ବଡ଼ପୁଅ ମରଣକୁ ଡାକି ଆଣିବା ଲାଗି ନିଜେ ବାହାରିଯାଇଛି । କେଉଁ ପ୍ରକାର ଦୁର୍ଘଟଣା ଘଟିଯିବ ସେ ବିଷୟ କଳ୍ପନା କରିବା କଷ୍ଟକର । କେଉଁ ମହିଳା ଏପରି ଦୁଃଖ ସହ୍ୟ କରି ପାରିବେ ?''

ସୁଶାନ୍ତ ଉତ୍ତର ଦେଲେ, ''ବିପ୍ଳବ ଓ ବିପଦ ସମୟରେ ଅସମ୍ଭବ ମଧ୍ୟ ସମ୍ଭବ ହୋଇପାରେ । ମମତାଅପାଙ୍କ ଧୈର୍ଯ୍ୟ ଓ ସହ୍ୟ ଶକ୍ତି ରହିଛି । ତେଜସ୍ୱୀର ବୁଦ୍ଧି ଅଛି । ସେ ଲୁଚି ରହିଥିବାରୁ ଅରଣ୍ୟ ମଧ୍ୟରୁ କିମ୍ୱା ଆଦିବାସୀମାନଙ୍କ ପଲ୍ଲୀରୁ ତାକୁ ଖୋଜି ବାହାର କରିବା ସହଜ ନୁହେଁ । ମୁଁ ଭାବୁଛି, ଭିଖାରି କିମ୍ୱା ଆଦିବାସୀମାନଙ୍କ ତାନ୍ତ୍ରିକ ଗୁଣିଆ ବେଶ ଧରି ସେ ଅଞ୍ଚଳକୁ ପ୍ରବେଶ କରିବି । ତେଜସ୍ୱୀକୁ ଖୋଜିବା ପାଇଁ ପ୍ରାଣପଣେ ଚେଷ୍ଟା କରିବି । ନ ପାଇଲେ ଫେରିଆସିବି ।''

''ପ୍ରଥମେ ମମତାଙ୍କୁ ପୁଅର ବିପଦ ବିଷୟ ଜଣାଇଲା ପରେ ତାଙ୍କ ମାନସିକ ଅବସ୍ଥା ଓ ଧୈର୍ଯ୍ୟଶକ୍ତି ପରୀକ୍ଷା କଲା ପରେ ତୋ ଯିବା ବିଷୟ ଚିନ୍ତା କରାଯିବ ।''

ସୁଶାନ୍ତ ସାଇକେଲଟି ଧରି ଚାଲିଲା ମମତାଦେବୀଙ୍କ ଘରକୁ ।

## ।। ୧୮ ।।

ମମତାଦେବୀଙ୍କ ଘର ପାଖରେ ପହଞ୍ଚିଲା ବେଳକୁ ସୁଶାନ୍ତ ଦେଖପାରିଲେ, ସେ ବାରଣ୍ଡା ଦରଜାରେ ତାଲା ପକାଇ ଏକାକୀ ବାହାରିଛନ୍ତି କେଉଁ ସ୍ଥାନକୁ ଯିବା ଲାଗି । ସାଇକେଲଟି ତଳେ ଥୋଇଦେଇ ସୁଶାନ୍ତ ବାରଣ୍ଡା ଉପରକୁ ଉଠିପଡ଼ି ପଚାରିଲେ, ''ଅପା, କେଉଁଠାକୁ ଯିବେ ?''

''ତୁମେ ଯାହା କହିବାକୁ ଆସିଛ ସେ କଥା ଶ୍ରୀହରିମଉସାଙ୍କ କାନରେ କହିବା ପୂର୍ବରୁ ଶୀରିଖଣ୍ଡର ସଂଗ୍ରାମୀ ଜଣକ ଗୋପନରେ ମୋତେ ଜଣାଇ ସାରିଛନ୍ତି । ମୁଁ ବାହାରିଛି ମୋ ତେଜକୁ ଖୋଜି ଖୋଜି ଆବିଷ୍କାର କରି ସାଙ୍ଗରେ ଫେରାଇଆଣିବି । ମୋ ମନରେ ଦୁଃଖ ନାହିଁ କି ଶୋକ ନାହିଁ କିମ୍ୱା ଚିନ୍ତା ନାହିଁ । ମରିବା ଲାଗି ମୁଁ ପ୍ରସ୍ତୁତ ହୋଇଯାଇଛି । ତେଜସ୍ୱୀକୁ ଶତ୍ରୁମାନେ ଯଦି ମାରି ଦେଇଥିବେ ଅଥବା ମାରିଦେବେ, ସେଥିପାଇଁ ମୁଁ କାନ୍ଦିବି ନାହିଁ କିମ୍ୱା ଦୁଃଖ ମଧ୍ୟ କରିବି ନାହିଁ ।''

''ଅପା, ଧୈର୍ଯ୍ୟ ଧର । ମୁଁ ତୁମ ସାଙ୍ଗରେ ଯିବି । ବାପାଙ୍କୁ କହିଆସିଛି ।''

''ନା, ତୁମକୁ ମୋ ସାଙ୍ଗରେ ସେପରି ବିପଦସଙ୍କୁଳ ଜାଗାକୁ ନେବି ନାହିଁ । ନିଜେ ଯାଉଛି ମୃତ୍ୟୁମୁଖକୁ । ଜାଣିଶୁଣି ତୁମ ପରି ଜଣେ ଯୁବକଙ୍କୁ ସାଙ୍ଗରେ ନେଇଯିବାର ପ୍ରଶ୍ନ ଉଠୁ ନାହିଁ ।''

''ମୁଁ ମଧ୍ୟ ତୁମକୁ ଏକାକୀ ଯିବାକୁ କଦାପି ଛାଡ଼ିବି ନାହିଁ ।''

ଅବିଚଳିତ ଭାବରେ ଛିଡ଼ାରହି ମମତା କହିଲେ, ''ତୁମର ସାହସ ଦେଖି ଆଶ୍ଚର୍ଯ୍ୟ ହେଉଛି । କିନ୍ତୁ ତୁମର ଉଦ୍ଦେଶ୍ୟ ପାଳନ କରିବାକୁ କୌଣସି ପ୍ରକାରେ ଅନୁମତି ଦେବି ନାହିଁ । ଯଦି ସାଙ୍ଗରେ ଯିବା ଲାଗି ଜିଦ୍ କରୁଛ, ତେବେ ଗୋଟିଏ କାର୍ଯ୍ୟ କରିପାର । ମୋତେ ଯଦି ଆମ ଇଲାକାରୁ ଶୀରିଖଣ୍ଡ ରାଜ୍ୟର ସୀମାପର୍ଯ୍ୟନ୍ତ ସାଇକେଲରେ ବସାଇ ନେଇ ଯାଇପାରିବ, ସେତିକି ସାହାଯ୍ୟ ଯଥେଷ୍ଟ ହେବ । ବନବାସୀ ରାଇଜର ସୀମା ନିକଟରେ ରହିଛି ଗୋଟିଏ ଠାକୁରାଣୀ ମନ୍ଦିର । ସେହିଠାରେ ସମ୍ବାଦ ଆଣିଥିବା ସଂଗ୍ରାମୀ ଜଣକ ସନ୍ଧ୍ୟାକାଳରୁ ମୋତେ ଅପେକ୍ଷା କରିବେ ବୋଲି କହିଯାଇଛନ୍ତି । ଅନ୍ଧକାରରେ ସେ ବଣଜଙ୍ଗଲ ମଧ୍ୟରେ ମୋତେ ବାଟ ଦେଖାଇ ଗୋଟିକ ପରେ ଗୋଟିଏ ଆଦିବାସୀ ପଲ୍ଲୀକୁ ନେଇଯିବେ । ମୋ ଡାକ ଶୁଣି ତେଜ ନିଶ୍ଚୟ ଲୁଚି ରହିଥିବା ସ୍ଥାନରୁ ବାହାରିଆସିବ । ଏହି ଆଶା ନେଇ ବାହାରିଯାଉଛି ।''

ମମତାଦେବୀଙ୍କ ପାଦ ଧରି ସୁଶାନ୍ତ ଅନୁରୋଧ କଲେ, ''ଅପା, ତମ କଥା ମାନି ଶୀରିଖଣ୍ଡ ସୀମାପର୍ଯ୍ୟନ୍ତ ନିଶ୍ଚୟ ନେଇଯିବି । ତା'ପରେ କିନ୍ତୁ ମୁଁ ଯଦି ତୁମ ପାଖେ ପାଖେ ଚାଲିବି, ମୋତେ ବାରଣ କରିବ ନାହିଁ । ଦେଶର ମୁକ୍ତି ଲାଗି ସମସ୍ତଙ୍କର କିଛି ନା କିଛି କର୍ତ୍ତବ୍ୟ ରହିଛି । ଏଥିରେ ବାଧା ଦେବା ଉଚିତ ନୁହେଁ ।''

ମଧ୍ୟାହ୍ନ ପ୍ରହରରେ ସୁଶାନ୍ତର ସାଇକେଲ ପଛରେ ବସିଲେ ମମତା । ମୁଣ୍ଡ ଓ ଦେହ ଘୋଡ଼ାଇ ରଖିଥାନ୍ତି ଖଣ୍ଡିଏ କଳା ଆବରଣ ତଳେ । ଅନେକ ରାସ୍ତା । ଅତି ବେଗରେ ସାଇକେଲ ଚଳାଇଲେ ସୁଶାନ୍ତ । ସନ୍ଧ୍ୟା ପରେ ପରେ ଦିଶିଲା ଶୀରିଖଣ୍ଡ ରାଇଜର ସୀମାବର୍ତ୍ତୀ ଏକ ସ୍ଥାନରେ ଗୋଟିଏ ପ୍ରାଚୀନ ଯୁଗର ମନ୍ଦିର । ପଥରରେ ତିଆରି । ଜରାଜୀର୍ଣ୍ଣ ଅବସ୍ଥା । ବନବାସୀ ସମ୍ପ୍ରଦାୟର ବିଶ୍ୱାସ ଅନୁଯାୟୀ ସେହି ମନ୍ଦିର ମଧ୍ୟରେ ରହିଛନ୍ତି ସେମାନଙ୍କ ଠାକୁରାଣୀ, ଧରଣୀ ପେନୁ । ପୂର୍ବକାଳରେ ସେଠାରେ 'ମେରିଆ' ନାମକ ନରବଳି ପ୍ରଥା ପ୍ରଚଳିତ ଥିଲା । ଅର୍ଥାତ୍, ଛୋଟ ଛୋଟ ବାଳକମାନଙ୍କୁ ଧରିଆଣି ସେମାନଙ୍କୁ କିଛି ମାସ ଭଲ ଭଲ ଖାଦ୍ୟ ଖାଇବାକୁ ଦେଇ ହୃଷ୍ଟପୁଷ୍ଟ କଲା ପରେ ଶେଷରେ ସେଠାରେ ବଳି ଦିଆଯାଇଥାଏ । ସେହି ନିଷ୍ଠୁର ପ୍ରଥା ଉଠାଇଦେଲା ପରେ, ମନ୍ଦିରଟି ପରିତ୍ୟକ୍ତ ଅବସ୍ଥାରେ ପଡ଼ି ରହିଛି । ଭୟରେ

ସେଠାକୁ କେହି ଆସନ୍ତି ନାହିଁ । ଚାରିଦିଗରେ ବଣବୁଦା ଭର୍ତ୍ତି ରହିଥାଏ । ମନ୍ଦିର ଗାତ୍ରରୁ ପଥର ଖଣ୍ଡମାନ ଖସିପଡ଼ିଥାଏ । ଅନ୍ଧକାର ମଧ୍ୟରେ ସ୍ଥାନଟି ଭୟଙ୍କର ଦିଶୁଥାଏ । ସତେଯେପରି ଭୂତ ପ୍ରେତର ଆଶ୍ରୟସ୍ଥଳୀ ।

ମନ୍ଦିର ଭିତରୁ ଟର୍ଚ୍ଚଲାଇଟର ଆଲୋକ ରେଖାଟିଏ ସୀମା ଉପରକୁ ପଡ଼ିଲା । ମମତା ସାଇକେଲରୁ ଓହ୍ଲାଇ ପଡ଼ି ସୁଶାନ୍ତକୁ କହିଲେ, ''ସଂଗ୍ରାମୀ ବନ୍ଧୁ ନିଜର ଜବାବ ରକ୍ଷାକରି ମନ୍ଦିର ଭିତରେ ଗୋପନରେ ମୋତେ ଅପେକ୍ଷା କରିଛନ୍ତି । ତୁମେ ଏହିଠାରୁ ଘରକୁ ଫେରିଯାଅ । ଶ୍ରୀହରିମଉସା ତୁମ ଫେରିବା ସମୟକୁ ଚାହିଁ ବସିଥିବେ । ଅବଶ୍ୟ, ତୁମେ ମୋ ପାଖରେ ରହିଲେ ମୋର ସାହସ ରହନ୍ତା । କିନ୍ତୁ ସଂଗ୍ରାମୀ ବନ୍ଧୁଙ୍କୁ ନ ପଚାରି ତୁମକୁ ସାଙ୍ଗରେ ନେବା ଠିକ୍ ହେବ ନାହିଁ । ତୁମେ ଏହିଠାରେ ଅପେକ୍ଷା କର । ମୁଁ ତାଙ୍କ ସହିତ କଥାବାର୍ତ୍ତା କରି ଆସେ ।''

ସୁଶାନ୍ତ ଅପେକ୍ଷା କଲେ । ମମତା କଣ୍ଟାବୁଦାଗୁଡ଼ାକ ଡେଇଁ ଡେଇଁ ମନ୍ଦିର ପାଖକୁ ଗଲେ । ଭିତରୁ ପୁଣି ଟିକିଏ ଆଲୋକ ଦେଖାଗଲା । ସେ ମନ୍ଦିର ମଧ୍ୟରେ ପ୍ରବେଶ କଲେ । କିଛି ସମୟ ପରେ ସୁଶାନ୍ତ ନିକଟକୁ ଫେରିଆସି ଜଣାଇଲେ, ''ସଂଗ୍ରାମୀଜଣକ ବାହାର ଅଞ୍ଚଳର ବ୍ୟକ୍ତି । ସେ ଶୀରିଖଣ୍ଡ ବସତିଗୁଡ଼ିକରେ ଅନେକ ବର୍ଷ ରହିଲେଣି । ଡାକ୍ତରି ପାଠ ନ ପଢ଼ି ମଧ୍ୟ ସେ ଜଣେ ସମାଜସେବୀ ଭାବରେ ଆଦିବାସୀମାନଙ୍କର ଚିକିତ୍ସା କରନ୍ତି ଓ ପିଲାମାନଙ୍କୁ ଅକ୍ଷର ଶିଖାନ୍ତି । ତେଜସ୍ୱୀ କେଉଁଠି ଲୁଚିଛି, ତାହା ସେ ଜାଣନ୍ତି ନାହିଁ । ଗହନ ଅରଣ୍ୟ ମଧ୍ୟରେ ଥିବା ପଲ୍ଲୀମାନଙ୍କୁ ମୋତେ ଗୋପନରେ ନେଇଯିବେ । ସାଙ୍ଗରେ ଅନ୍ୟ କୌଣସି ଲୋକ ଗଲେ ବନବାସୀମାନେ ସନ୍ଦେହ କରିବେ । ତେଣୁ ତୁମେ ଏହିଠାରୁ ଫେରିଯାଅ । ମଉସାଙ୍କୁ ମୋର ପ୍ରଣାମ ଜଣାଇଦେବ । ବିଳମ୍ବ ନ କରି ଅତି ଶୀଘ୍ର ବିଦାୟ ନିଅ ।''

ଆଦେଶ ମାନିନେଇ ସୁଶାନ୍ତ ବ୍ୟଥିତ ଚିତ୍ତରେ ସାଇକେଲ ଫେରାଇଲେ । ମମତା ପୁନର୍ବାର ମନ୍ଦିର ଦିଗକୁ ଚାଲିଲେ ।

ଅନ୍ଧକାର ମଧ୍ୟରେ ଗାଉଁଲି ରାସ୍ତାର ଢିପ ହିଡ଼ ଉପରେ ପଡ଼ି କଚାଡ଼ି ଓ ଉଠିକରି ସାଇକେଲ୍ ଚଳାଇଲା ବେଳେ ସୁଶାନ୍ତର ମନରେ ସୃଷ୍ଟି ହେଲା ଏକ ଅଶାନ୍ତ ଝଡ଼ । କେଉଁ ଅଜ୍ଞାତ ବ୍ୟକ୍ତି ସହିତ ଏକାକିନୀ ଜଣେ ମହିଳା ଚାଲି ଚାଲି ଯିବେ ଅସରନ୍ତି ବଣଜଙ୍ଗଲ ପଥରେ ଥିବା ଦୂରଦୂରାନ୍ତ ବନବାସୀ ପଲ୍ଲୀଗୁଡ଼ିକୁ ! ରଜାଙ୍କ ଲୋକମାନେ ଯଦି ସଂଗ୍ରାମୀମାନଙ୍କୁ ଚାରିଆଡ଼େ ଖୋଜିବୁଲୁଥିବେ, ତେବେ ଏମାନଙ୍କ ଅବସ୍ଥା କ'ଣ ହେବ ! ଏହିପରି ଭାବନା ସହିତ ଆସିଗଲା ଏକ ଭୟ । କିଏ ସେହି ସଂଗ୍ରାମୀ ଯିଏକି

ମମତାଙ୍କ ପାଖକୁ ଏବଂ ଶ୍ରୀହରିବାବୁଙ୍କ ନିକଟକୁ ଖବର ନେଇ ଆସିଥିଲା ? ସିଏ କିପରି ଜାଣିପାରିଲା ତେଜସ୍ୱୀର ଲୁଚିବା ବିଷୟ ? କୁଆଡୁ ପାଇଗଲା ଖଣ୍ଡିଏ ସାଇକେଲ୍ ! ନିଜର ନାମ ଓ ପରିଚୟ ନ ଦେଇ ମୁହୂର୍ତ୍ତ ମଧ୍ୟରେ ଅନ୍ତର୍ଦ୍ଧାନ ହେବା ପଶ୍ଚାତ୍‌ରେ କିଛି ରହସ୍ୟ ଥାଇପାରେ କି ? ଆମ ଘରର ସାନ୍ତାଳ ମୂଲିଆମାନଙ୍କର ମୃତ୍ୟୁ ସମ୍ବାଦ ମୋ ବାବାଙ୍କ ନିକଟରେ ଦେବା ପୂର୍ବରୁ ସେ ମମତାଙ୍କୁ ସେ କଥା ଆଗରୁ ଜଣାଇ ଦେଲା କାହିଁକି ! ସେ ବା କିପରି ଜାଣିଥିଲା ଯେ ଆମ ଲୋକ ଦୁଇଜଣ ତେଜସ୍ୱୀକୁ ଜଗିବାଲାଗି ଯାଇଥିଲେ ଯଦିଚ ତେଜସ୍ୱୀକୁ ସେ କଥା ଜଣା ନ ଥିଲା !

ସୁଶାନ୍ତ ଅନେକ କିଛି ଭାବିଗଲେ । ଆଶ୍ଚର୍ଯ୍ୟ ହେଉଥାନ୍ତି, ମମତାଙ୍କ ସାହସ ବିଷୟ ଚିନ୍ତାକରି । ଧନ୍ୟ ଏହି ସାହସିନୀ ନାରୀ ! ଏହି ଦେଶରେ ତ ଜନ୍ମିଥିଲେ ରାଣୀ ଦୁର୍ଗାବତୀ ଓ ଝାନ୍‌ସିରାଣୀ ଲକ୍ଷ୍ମୀବାଈଙ୍କ ପରି ବୀରାରମଣୀ ! ସେହିମାନଙ୍କ ପରମ୍ପରା ବୋଧହୁଏ ଜୀବିତ ରହିଛି ମମତାଙ୍କ ପରି ଅସହାୟା ନାରୀମାନଙ୍କ ଅନ୍ତରାତ୍ମା ମଧ୍ୟରେ । ଧନ୍ୟ ଏ ଦେଶର ମାତୃପ୍ରାଣ ! ପୁଅକୁ ବିପଦରୁ ରକ୍ଷା କରିବା ଲାଗି ଜଣେ ମା' ଚାଲିଯାଇଛି ମହାବିପଦ ଦିଗକୁ !

ମନ ମଧ୍ୟରେ ସ୍ଥାନ ପାଇଲା ଆତ୍ମଗ୍ଳାନି । ''ମମତାଅପାଙ୍କୁ ଏକାକୀ ଛାଡ଼ିଆସି ମୁଁ କ'ଣ ନିଜର ପୁରୁଷତ୍ୱ ରକ୍ଷାକରି ପାରିଛି ! ଧିକ୍ ମୋର ଜନ୍ମ, ଧିକ୍ ମୋର ଜୀବନ ।''

ଅନେକ ରାତିରେ ନିଜ ଘରେ ପହଞ୍ଚି ଦେଖିଲେ, ବାପା ଅପେକ୍ଷା କରି ପିଣ୍ଡା ଉପରେ ବସିଛନ୍ତି । ତାଙ୍କ ପଛରେ ଛିଡ଼ା ହୋଇଛନ୍ତି ଦୁଇ ସାନ୍ତାଳ ଭାଇ ଯେଉଁମାନେ ତେଜସ୍ୱୀକୁ ଜଗିବାକୁ ଯାଇଥିଲେ ।

ଚିତ୍କାର କରିଉଠିଲେ ଶ୍ରୀହରିବାବୁ, ''ସୁଶାନ୍ତ, ମମତାଙ୍କୁ କେଉଁଠାରେ ଓ କାହା ପାଖରେ ଛାଡ଼ି ଦେଇଆସିଲୁ ? ଯେଉଁ ସଂଗ୍ରାମୀଟା ଆସିଥିଲା, ସେ ଗୋଟାଏ ଠକ । ମୋତେ କହିଲା, ରଜାଙ୍କ ଲୋକମାନେ ଆମ ଦୁଇଜଣ ଲୋକଙ୍କୁ ମାରିଦେଇଛନ୍ତି । କିନ୍ତୁ ଏମାନେ ଫେରିଆସିଛନ୍ତି । ତେଜସ୍ୱୀକୁ ଆଦିବାସୀମାନେ କେଉଁଠାରେ ଲୁଚାଇ ରଖିଲେ ସେ ବିଷୟ ଜାଣି ନ ପାରି ଏମାନେ ଫେରିଆସିଛନ୍ତି । ଅଥଚ, ଭଣ୍ଡ ସଂଗ୍ରାମୀଟା ମିଛ କହିଲା ଯେ ଏମାନଙ୍କୁ ହତ୍ୟା କରାଯାଇଛି !''

ହତବାକ୍ ଭାବରେ ବାପାଙ୍କ ମୁଖକୁ ଚାହିଁରହି ସୁଶାନ୍ତ ମୁଣ୍ଡରେ ହାତରଖି ହଠାତ୍ ତାଙ୍କ ପାଦତଳେ ବସିପଡ଼ି ବିକଳ କଣ୍ଠରେ କହିଲେ, ''ବାପା, ମମତାଅପାଙ୍କୁ ସେହି

ଚଣ୍ଡାଳ ପାଖରେ ଛାଡ଼ିଆସିଛି । ମେରିଆ ମନ୍ଦିର ଭିତରେ ସେ ଲୁଚି ରହିଥାଏ । ତା'କୁ ଦେଖିବାପାଇଁ ମଧ୍ୟ ସୁଯୋଗ ପାଇଲି ନାହିଁ । ଆମ ଲୋକମାନେ ଜୀବିତ ଅଛନ୍ତି ବୋଲି ଜାଣିପାରିଥିଲେ, ସେହି ମିଥ୍ୟାବାଦୀ ଠକକୁ ମାରିପକାଇଥାନ୍ତି । ଅପା ତା' ସହିତ ସାକ୍ଷାତ୍ କଲା ପରେ ମୋତେ ବାଧ୍ୟ କରି ଘରକୁ ଫେରାଇଦେଲେ । ଅନିଚ୍ଛାସତ୍ତ୍ୱେ ମୁଁ ଚାଲି ଆସିଲି । ବର୍ତ୍ତମାନ ଅପାଙ୍କ ଅବସ୍ଥା କ'ଣ ହେଉଥିବ, ମୁଁ ଭାବିପାରୁ ନାହିଁ ।''

କଥା କହୁଥିବା ଅବସ୍ଥାରେ ସେ ଅକସ୍ମାତ୍ ସଂଜ୍ଞାହୀନ ହୋଇପଡ଼ିଲେ । କିଛି ସମୟ ଆଖି ଓ କପାଳରେ ପାଣି ସିଞ୍ଚନ ପରେ ତାଙ୍କର ଚେତା ଫେରିଲା । ଶ୍ରୀହରିବାବୁ ଓ ତାଙ୍କ ଭାଇ ସୁଶାନ୍ତକୁ ଘରଭିତରକୁ ନେଇ ବିଛଣା ଉପରେ ଶୁଆଇ ପକାଇଲେ ।

ସାନ୍ତାଳ ଚାଷୀ ଦୁଇଜଣ ପୁନର୍ବାର ଜଙ୍ଗଲ ରାଜ୍ୟକୁ ଯିବାଲାଗି ପ୍ରସ୍ତୁତ ହେଉଥିବା ଶୁଣି ଶ୍ରୀହରିବାବୁ ଆଦେଶ ଦେଲେ, ''ରାତିଟା ବିଶ୍ରାମ ନିଅ । ଅନେକ ବାଟ ଦୌଡ଼ି ଦୌଡ଼ି ଫେରିଆସିଛ । ଆଗାମୀ କାଲି ସକାଳେ ସେ ରାଇଜକୁ ଯିବ ଏବଂ ମମତା ଓ ତେଜକୁ ଖୋଜାଖୋଜି କରିବ ।''

ଜଣେ ସାନ୍ତାଳ ଚାଷୀ ଜଣାଇଲା, ''ଫେରିଲାବେଳେ ଶୀରିଖଣ୍ଡ ନିକଟରେ ଥିବା ଆମ ଜିଲ୍ଲାର ରେଳଷ୍ଟେସନରେ ଗୋରା ସୈନ୍ୟମାନେ ଗାଡ଼ିରୁ ଓହ୍ଲାଇବା ଦେଖିଲୁ । ସମସ୍ତଙ୍କ ହାତରେ ବନ୍ଧୁକ ଥାଏ । ଲୋକମାନେ କୁହାକୁହି ହେଉଥିଲେ, ସେମାନେ ରଜାଙ୍କ ଡାକ ପାଇ ଶତ୍ରୁମାନଙ୍କୁ ନିପାତ କରିବାକୁ ଆସିଛନ୍ତି ।''

ଶ୍ରୀହରିବାବୁ ନିର୍ବାକ ହୋଇ ଶୁଣୁଥାନ୍ତି । ରାତ୍ରିର ବିଳମ୍ବିତ ପ୍ରହର ପର୍ଯ୍ୟନ୍ତ ସେ ଏକାକୀ ବସିରହି ଗୁଣୁଗୁଣୁ ସ୍ୱରରେ ବୋଧହୁଏ ଈଶ୍ୱରଙ୍କୁ ପ୍ରାର୍ଥନା କରୁଥାନ୍ତି ।

## ॥ ୧୯ ॥

ସୁଶାନ୍ତଙ୍କୁ ବିଦାୟ ଦେଇ ମମତା ମନ୍ଦିରକୁ ଫେରିଆସିଲା ବେଳକୁ ସଂଗ୍ରାମୀ ବନ୍ଧୁ ଚକାମାଡ଼ି ବସିଥାନ୍ତି । ''ମା' ମୋ ପାଖରେ ବସନ୍ତୁ । କିଛି ସମୟ ବିଳମ୍ବ କରି ବାହାରିଲେ ଭଲ ହେବ । ରଜାଙ୍କ ପୁଲିସ ଦଳ ଏଣେ ତେଣେ ବୁଲୁଥାଇପାରନ୍ତି । ବନବାସୀମାନେ ହାଣ୍ଡିଆ ପିଇ ଅଚେତ ଭାବରେ ଶୋଇପଡ଼ିଲେ, ପୁଲିସ ଦଳ ନିଜ ନିଜ ସ୍ଥାନକୁ ଫେରିବେ । ବାଘ ଓ ଭାଲୁର ଭୟରେ ସେମାନେ ମଧ୍ୟ ବେଶି ରାତି ପର୍ଯ୍ୟନ୍ତ ଜଙ୍ଗଲରେ ରହନ୍ତି ନାହିଁ ।''

ବନ୍ଧୁଙ୍କ ଉପଦେଶ ଅନୁଯାୟୀ ମମତା ମନ୍ଦିର ପିଣ୍ଡାର ଗୋଟିଏ କୋଣରେ ଚକାମାଡ଼ି ବସିରହିଲେ । ସଂଗ୍ରାମୀ ବର୍ଣ୍ଣନା କଲେ ନିଜର ପରିଚୟ । ‘‘ମୋ ବାପା ମହାତ୍ମା ଗାନ୍ଧୀଙ୍କୁ ଦର୍ଶନ କଲା ପରେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ଏବେ ବଞ୍ଚିଥିଲେ ସେ ମଧ୍ୟ ବିଦେଶୀ ସରକାର ଓ ରଜାମାନଙ୍କ ବିରୋଧରେ ସଂଗ୍ରାମ କରୁଥାଆନ୍ତେ । ମୁଁ ବାଲ୍ୟକାଳରୁ ବାପାଙ୍କ ପରି ସଂଗ୍ରାମୀ ହେବି ବୋଲି ଆଶା ବାନ୍ଧିଥିଲି । କିନ୍ତୁ ବାପାଙ୍କ ଅକାଳ ବିୟୋଗ ଯୋଗୁଁ ଘରସଂସାରର ଦାୟିତ୍ୱ ମୋ ଉପରେ ପଡ଼ିଲା । ତେଣୁ ସଂଗ୍ରାମର ବାର୍ତ୍ତା ପ୍ରଚାର କରି ଆନନ୍ଦ ପାଇଲି । ଥରେ ଏହି ଶୀରିଖଣ୍ଡ ରାଜ୍ୟରେ ଆନ୍ଦୋଳନ ମନ୍ତ୍ର ପ୍ରଚାର ପାଇଁ ଆସି ଆଦିବାସୀମାନଙ୍କ ଦୁର୍ଦ୍ଦଶା ଦେଖି ସେହିମାନଙ୍କ ସେବାପାଇଁ ରହିଗଲି । ସେଥିପାଇଁ ଏ ଅଞ୍ଚଳର ଲୋକମାନେ ମୋତେ ଭକ୍ତି କରନ୍ତି । ତେଜସ୍ୱୀବାବୁ ରଜାଙ୍କ ବିରୋଧରେ ଆନ୍ଦୋଳନ ଆରମ୍ଭ କଲା ପରେ ଏବଂ ଆଦିବାସୀଙ୍କ ତୀରରେ ଚାରିଜଣ ଗୋରା ସୈନିକ ମରିପଡ଼ିଲା ପରେ ଖବର ପାଇଲି ଯେ ବିଦ୍ରୋହ ଦମନ ଲାଗି କଲିକତାରୁ ବ୍ରିଟିଶ ଫୌଜ ଆସୁଛନ୍ତି । ସେମାନେ କୁଆଡ଼େ ପ୍ରତ୍ୟେକ ପଲ୍ଲୀର ପ୍ରତ୍ୟେକ କୁଡ଼ିଆରେ ତେଜସ୍ୱୀବାବୁଙ୍କୁ ଖୋଜିବେ । ଆଦିବାସୀ ସର୍ଦ୍ଦାର ଏକଥା ଶୁଣିପାରି ତେଜସ୍ୱୀବାବୁଙ୍କୁ କୌଣସି ଗୋଟିଏ ପଲ୍ଲୀରେ ଲୁଚାଇ ରଖିଛନ୍ତି । ତାଙ୍କ ବାପା ସହିଦ ହୋଇଥିଲେ । ପୁଅ ମଧ୍ୟ ସେହିପରି ମୃତ୍ୟୁଦଣ୍ଡ ପାଇପାରେ ବୋଲି ଭାବି ମୁଁ ମୋ କର୍ତ୍ତବ୍ୟ ପାଳନ କରିବି ବୋଲି ସଂକଳ୍ପ ନେଲି ଯେ ତାଙ୍କ ପରି ଯୁବକ ନେତାଙ୍କୁ ବିପଦରୁ ରକ୍ଷା କରିବି ।’’

ଏହିପରି ବର୍ଣ୍ଣନା କରୁଥିବା ଅବସ୍ଥାରେ ସେ ସହସା ଉଠିପଡ଼ି କହିଲେ, ‘‘ମା’, ଆପଣ ବସିଥାନ୍ତୁ । ମୁଁ ବାହାରର ଅନ୍ଧକାର ଓ ନିସ୍ତବ୍ଧତା ଅନୁଭବ କରି ଅବିଳମ୍ବେ ଫେରିଆସୁଛି ।’’

ମନ୍ଦିରର ହତା ମଧ୍ୟରୁ ସଂଗ୍ରାମୀ ହାତରେ ଟର୍ଚ୍ଚଧରି ବାହାରିଗଲେ । ମମତା ବସିରହିଲେ । ଦୂରରୁ ଶୁଭୁଥାଏ ବଣ୍ୟଜନ୍ତୁମାନଙ୍କର ବିକଟ ରଡ଼ି । ଫେରିବା ଲାଗି ସଂଗ୍ରାମୀଙ୍କ ବିଳମ୍ବ ହେଉଥାଏ ଦେଖି ଶଙ୍କା ଅନୁଭବ କରିବାବେଳେ ସେ ଆସି ପହଞ୍ଚିଗଲେ ଏବଂ ଉଠିବାକୁ ଅନୁରୋଧ କଲେ ।

ମମତା ଓ ସଂଗ୍ରାମୀ ଅଗ୍ରସର ହେଲେ ଗହନ ଅରଣ୍ୟ ପଥରେ । ଚାରିଦିଗରେ ବ୍ୟାପିରହିଥାଏ ଅରଣ୍ୟର ଗଭୀର ଓ ଭୟପ୍ରଦ ଅନ୍ଧକାର । ଗୋଟିଏ ବନବାସୀ ପଲ୍ଲୀର ଏକ ନିକଟବର୍ତ୍ତୀ ସ୍ଥାନରେ ସଂଗ୍ରାମୀ ଉପଦେଶ ଦେଲେ, ‘‘ମା’, ମୁଁ ଉଚ୍ଚ

ସ୍ୱରରେ ପାଟିକରି ଡାକିବି -ମ-ମ-ତା । ତାହାପରେ ତୁମେ ଚିତ୍କାର କରିବ - ପୁଅ, ମୁଁ ତୋ ମା' । ମୋ ପାଖକୁ ଆ । ପ୍ରଥମେ ଆପଣଙ୍କର ନାମ ଶୁଣିଲେ ଏବଂ ପରେ ପରେ ଆପଣଙ୍କ କଣ୍ଠସ୍ୱର ଶୁଣିପାରିଲେ, ତେଜସ୍ୱୀବାବୁ ନିଶ୍ଚୟ ତାଙ୍କର ଲୁଚିବା ସ୍ଥାନରୁ ବାହାରିଆସିବେ ।''

ପଲ୍ଲୀର କୁଡ଼ିଆଗୁଡ଼ିକ ଅରଣ୍ୟର ଅନ୍ଧକାର ମଧ୍ୟରେ ହଜି ରହିଥାଏ । ରାତି ପ୍ରାୟ ଏକପ୍ରହର । ଚାରିଦିଗରେ ନିସ୍ତବ୍ଧତା । ସତେଯେପରି ଜୀବନ୍ତ ମନୁଷ୍ୟମାନଙ୍କ ବାସସ୍ଥାନଗୁଡ଼ିକ ମଶାଣି ଭୂଇଁର ନୀରବତାପୂର୍ଣ୍ଣ ଆବରଣ ତଳେ ଲୁଚି ରହିଥାଏ । ସଂଗ୍ରାମୀବନ୍ଧୁ ବୁଝାଇଦେଲେ, ''ମା', ଏପରି ଆଦିବାସୀ ମୁଲକଗୁଡ଼ିକରେ କିରୋସିନି କିମ୍ୱା ଡିବିରି ବା ଲଣ୍ଠନ ଶବ୍ଦଗୁଡ଼ିକ କେହି କେବେ ଶୁଣି ନାହାନ୍ତି, ସେପରି ଜିନିଷ ଦେଖିବା ତ ଦୂରର କଥା ।''

ପଲ୍ଲୀର ଏକ ମଧ୍ୟସ୍ଥଳରେ ଗୋଟିଏ ପ୍ରକାଣ୍ଡ ବୃକ୍ଷ ତଳେ ଛିଡ଼ାରହି ସଂଗ୍ରାମୀ ବଡ଼ ପାଟିରେ ଡାକ ଛାଡ଼ିଲେ - 'ମ-ମ-ତା' । ତାଙ୍କ ଡାକ ପରେ ପରେ ମମତା ପାଟିକରି ଉଠିଲେ, ''ପୁଅ, ମୁଁ ତୋ ମା' । ମୋ ପାଖକୁ ଆ ।''

ଆକାଶ ଓ ଅରଣ୍ୟର ଗଭୀରତା ସହିତ ମିଶିଗଲା ମନୁଷ୍ୟର ଚିତ୍କାରଧ୍ୱନି । ପଲ୍ଲୀଟି ପଡ଼ି ରହିଲା ପୂର୍ବପରି ନୀରବ ନିସ୍ତବ୍ଧ । କେବଳ ଶୁଭିଲା ବୃକ୍ଷ ଉପରୁ ଉଡ଼ିଯାଉଥିବା କେତେଗୋଟି ବଣ୍ୟପକ୍ଷୀର ରବ ।

କିଛି ସମୟ ଅପେକ୍ଷା କଲା ପରେ ସଂଗ୍ରାମୀ ପଚାରିଲେ, ''ମା', ଆପଣଙ୍କ ଚାଲିବା ଅଭ୍ୟାସ ନ ଥିବାରୁ କଷ୍ଟ ଅନୁଭବ କରୁଥିବେ । ଏଠାରୁ ଏକ ମାଇଲ ଦୂରରେ ଆଉ ଏକ ପଲ୍ଲୀ । ତେଜସ୍ୱୀ ଏଠାରେ ନାହିଁ, ସେଠାରେ ଥାଇପାରେ । ଆପଣ ସେତେଦୂର ଚାଲିପାରିବେ ?''

ମମତା ଉତ୍ତର ଦେଲେ, ''ଯେତେ ଦୂର ବାଟ ହେଲେ ସୁଦ୍ଧା ଚାଲିପାରିବି । ସାରାରାତି ଚାଲିବି । ପୁଅକୁ ନ ପାଇଲା ପର୍ଯ୍ୟନ୍ତ ଚାଲିଥିବି । ମୋ ପାଇଁ ଆପଣ ଯେଉଁପ୍ରକାର କଷ୍ଟ କରୁଛନ୍ତି ସେଥିଲାଗି କୃତଜ୍ଞତା ପ୍ରକାଶ ଲାଗି ମୋ ପାଖରେ ଭାଷା ନାହିଁ । ଜଣେ ଦେଶପ୍ରାଣ ବ୍ୟକ୍ତି ବୋଲି ପରର ଉପକାରପାଇଁ ଏପରି ପରିଶ୍ରମ କରିପାରୁଛନ୍ତି । ଭଗବାନ୍ ଆପଣଙ୍କର ମଙ୍ଗଳ କରିବେ ।''

ଅନ୍ୟ ପଲ୍ଲୀଟିରେ ପହଞ୍ଚିବା ବେଳକୁ ମଧ୍ୟରାତ୍ରି ହୋଇଯାଇଥାଏ । ସେଠାରେ ମଧ୍ୟ ଉଭୟେ ପୂର୍ବ ପରି ଧ୍ୱନି ଉଚ୍ଚାରଣ କରି ନିରାଶ ହେଲେ ।

ଆସିଗଲା ଅନେକ ଦୂରରେ ଥିବା ତୃତୀୟ ପଲ୍ଲୀ । ଅନେକ କୁଡ଼ିଆ ପାଖକୁ ପାଖ ଲାଗିଥାଏ । ଜଣାଯାଉଥାଏ, ଏକ ପରିବ୍ୟାପ୍ତ ଆଦିବାସୀ ବସତି । ସଂଗ୍ରାମୀ ପଚାରିଲେ, ''ମା', କିଛି ଖାଇବେ ? ମୋ ଥଳିରେ ଦୁଇଟା ନଡ଼ିଆ ମିଠା ରଖିଛି । ଆପଣ ଥକିଗଲେଣି । ଟିକିଏ ବଳ ପାଇଲେ, ବଡ଼ପାଟିରେ ପୁଅକୁ ଡାକିପାରିବେ ।''

ମମତାଙ୍କ ଚାଲିବା ଶକ୍ତି ନ ଥାଏ । କିନ୍ତୁ ପାଟି କରିବା ଶକ୍ତି ଅଛି ବୋଲି ଜଣାଇ କହିଲେ, ''ପୁଅକୁ ପାଇବାଲାଗି ପ୍ରାଣ ଅସ୍ଥିର ହେଉଥିଲା ସମୟରେ କୌଣସି ଖାଦ୍ୟ ଖାଇପାରିବି ନାହିଁ । ଆପଣ ଆଗେଇ ଚାଲନ୍ତୁ ।'' ସଂଗ୍ରାମୀ ଦୁଇଟିଯାକ ମିଷ୍ଟାନ୍ନ ଗିଳି ପକାଇଲେ ।

ସଂଗ୍ରାମୀ ପହଞ୍ଚିଲେ ବିସ୍ତୀର୍ଣ୍ଣ ପଲ୍ଲୀଟିର ମଧ୍ୟ ଭାଗରେ । ଖଣ୍ଡିଏ ପଥର ଉପରେ ଛିଡ଼ା ରହି ସେ ଚିତ୍କାର କଲେ - ମ-ମ-ତା । ସଙ୍ଗେ ସଙ୍ଗେ ମମତାଙ୍କ କରୁଣ ନାରୀକଣ୍ଠରୁ ନିସୃତ ହେଲା ତାଙ୍କର ଆହ୍ୱାନ - ''ମୁଁ ତୋ ମା' ଡାକୁଛି । ପୁଅ ଥରେ ତୋ ମା' ପାଖକୁ ଆ ।''

ତଡ଼ିତ୍ ବେଗରେ ଗୋଟିଏ କୁଡ଼ିଆର ପଛପଟରୁ ବାହାରିପଡ଼ିଲେ ଜଣେ ମାଝି ସର୍ଦ୍ଦାର । ମୁହୂର୍ତ୍ତ ମଧ୍ୟରେ ଜାଳି ପକାଇଲେ ଗୋଟିଏ ମଶାଲ । ହାତରେ କୁରାଢ଼ିଟିଏ ଧରି ଦୌଡ଼ିଆସିଲେ ଡାକ ଶୁଭୁଥିବା ସ୍ଥାନପାଖକୁ । ମଶାଲର ଜ୍ୟୋତିରେ ସଂଗ୍ରାମୀ ଦୂରରୁ ଦେଖିନେଲେ ସର୍ଦ୍ଦାରଙ୍କ ପଛରେ ଛିଡ଼ା ରହିଛି ନେତା ତେଜସ୍ୱୀ । ତତ୍‌କ୍ଷଣାତ୍ ସେ ହୁଇସିଲ ବଜାଇବାକୁ ଲାଗିପଡ଼ିଲେ । ଚିତ୍କାର କରୁଥାନ୍ତି, ''ନେତା ଟୋକାଟା ଏହି ଗାଁରେ ଲୁଚିଛି । ଶୀଘ୍ର ଏଠାକୁ ବାହାରିଆସ । ବନ୍ଧୁକରୁ ଗୁଳି ଚଳାଅ ।''

ସେତେବେଳକୁ ମାଝି ସର୍ଦ୍ଦାର ପାଖରେ ପହଞ୍ଚି ଯାଇଥାନ୍ତି । ତଥାକଥିତ ସଂଗ୍ରାମୀଙ୍କ ମୁହଁକୁ ଚାହିଁଦେଇ ସେ ପାଟିକରି ଉଠିଲେ, ''ରଜାର ସେହି ବେଧ ଡାକୁଆ ଗୁଣ୍ଡାଟା ତେଜବାବୁଙ୍କ ମା'ଙ୍କୁ ଏଠାକୁ ନେଇଆସିଛି ଆମ ନେତାଙ୍କୁ ଧରାଇ ଦେବାପାଇଁ ।''

ଛଦ୍ମବେଶୀ ସଂଗ୍ରାମୀ ଅନ୍ଧକାର ମଧ୍ୟରେ ପଳାଇଯାଉଥିବା ଦେଖି ସର୍ଦ୍ଦାର ଉଲ୍‌କା ବେଗରେ ଦୌଡ଼ିଯାଇ ତା' ମୁଣ୍ଡରେ ବସାଇ ଦେଲେ କୁରାଢ଼ି ଚୋଟ । ହାତରୁ ଖସିପଡ଼ିଗଲା ଜ୍ୱଳନ୍ତ ନିଆଁ ହୁଳାଟି । ସେତେବେଳକୁ ଗାଁ ମଧ୍ୟରୁ ଶୁଭୁଥାଏ ପ୍ରବଳ ଶଙ୍ଖଧ୍ୱନି । ତେଣେ ଜଙ୍ଗଲ ମଧ୍ୟରୁ ଶୁଭୁଥାଏ ଘନ ଘନ ଗୁଳିର ଆବାଜ । ଲୋକମାନଙ୍କ

ପଛରେ ଛିଡ଼ା ହୋଇଥିବା ତେଜସ୍ୱୀର ଦୃଷ୍ଟି ପଡ଼ିଗଲା ନିର୍ବାପିତ ମଶାଲ ନିକଟରେ ଛିଡ଼ା ହୋଇଥିବା ନିଜ ମା'ଙ୍କର ଛାୟାମୂର୍ତ୍ତି ଉପରେ । ଅତିବେଗରେ ଦୌଡ଼ିଆସି ମା'ଙ୍କୁ କୁଣ୍ଢାଇଧରି ସେ କାନ୍ଦି ଉଠି ପଚାରିଲେ - ''ମା', ତୁମେ କାହିଁକି ଏପରି ଜାଗାକୁ ଚାଲିଆସିଲ ?''

ମମତା କିଛି କହିବା ପୂର୍ବରୁ ଜଙ୍ଗଲ ମଧ୍ୟରୁ ଭାସିଆସୁଥାଏ କ୍ରମାଗତ ଭାବରେ ଫୁଟି ଉଠୁଥିବା ଗୁଳିର ପ୍ରଚଣ୍ଡ ଶବ୍ଦ । ''ଗୋରା ବନ୍ଧୁକବାଲା ଓ ରଜାର ସୈନ୍ୟମାନେ ଆସି ଯାଇଛନ୍ତି । ଅନ୍ଧାର ଭିତରୁ ଚଳାଅ ତୁମର ତୀର.'' ଚିତ୍କାର କରି ଆଦେଶ ଦେଲା ତେଜସ୍ୱୀ ।

ବଣ ଭିତରେ ଅଦୃଶ୍ୟ ଭାବରେ ସଂଗ୍ରାମୀଙ୍କ ପଛେ ପଛେ ଆସିଥିବା ରଜାଙ୍କର ଗୁଣ୍ଡାମାନେ ଦୌଡ଼ିଆସି ଧରି ପକାଇଲେ ତେଜସ୍ୱୀକୁ । ଅନ୍ଧକାର ଭିତରେ ତାଙ୍କୁ ଘୋଷାରି ଘୋଷାରି ନେଇଯାଉଥିବା ବେଳେ ପାଗଳିନୀ ଅବସ୍ଥାରେ ପଛେ ପଛେ ଦୌଡ଼ିଲେ ମମତା । ନିମିଷକ ମଧ୍ୟରେ ମା' ଓ ପୁଅକୁ ଶତ୍ରୁମାନେ ଟେକିନେଇ ଚାଲିଗଲେ ଗହନ ଅରଣ୍ୟ ଗର୍ଭକୁ ।

ଏଣେ ଚାଲିଥାଏ ଆଦିବାସୀମାନଙ୍କର ତୀର ଚାଳନା ଓ ସାହେବମାନଙ୍କର ଗୁଳି ବର୍ଷଣ । ଆର୍ତ୍ତନାଦ ଓ ଚିତ୍କାର ଭେଦି ଯାଉଥାଏ ଦୂର ଦୂରାନ୍ତ ସ୍ଥାନକୁ । ରଣହୁଙ୍କାର ଓ ଶଙ୍ଖଧ୍ୱନି ଭାସିଆସୁଥାଏ ବିଭିନ୍ନ ଦିଗରୁ ।

ଗୋଟିଏ କର୍କଶ କଣ୍ଠରୁ ଶୁଭିଲା ଆଦେଶ, ''ସେହି ନେତା ଟୋକାଟାକୁ ହାଣିଦିଅ । ତା' ମା' ଦେହରେ ତେଲ ଢାଳି ନିଆଁ ଲଗାଇ ଦିଅ । ଶତ୍ରୁମାନେ ଆସିଯାଉଛନ୍ତି । ଶୀଘ୍ର ପଳାଇଆସ ।''

ତେଜସ୍ୱୀ ଦେହରେ ବସି ଯାଉଥାଏ ଖଣ୍ଡାର ଚୋଟ ପରେ ଚୋଟ । ଅଦୂରରୁ ଶୁଭୁଥାଏ ଆର୍ତ୍ତନାଦ, ''ମା', ମା', ମା', ମରିଗଲି ମା', ମରିଗଲି ।'' ବିକଳ ସ୍ୱରରେ କହୁଥାନ୍ତି ମମତା, ''ହେ ବିଧାତା, ମୋ ପୁଅକୁ ରକ୍ଷାକର ।'' ତତ୍‌କ୍ଷଣାତ୍ ପୁଅର କଟାମୁଣ୍ଡଟା ଆସି ପଡ଼ିଲା ତାଙ୍କ ପାଦ ପାଖରେ । ''ହେ ବିଧାତା, ମୋହରି କପାଳରେ ଲେଖି ରଖିଥିଲ ଏହି ପ୍ରକାର ଦୃଶ୍ୟ ।''

ଦପ୍ କରି ଦେହ ଉପରେ ଜଳିଉଠିଲା ନିଆଁ ।

ଶେଷ ଧ୍ୱନିଟି ମିଶିଗଲା ଆକାଶର ଶୂନ୍ୟତାରେ - ''ହେ ବିଧାତା !''

## ॥ ୨୦ ॥

''ହେ କରମ ଠାକୁର, ହେ ମାରାଙ୍ଗ୍ ଗୁରୁ ! ସାରା ଦେହଟା ପୋଡ଼ି ପାଉଁଶ ହୋଇଯାଇଥିଲା । ତିନି ବର୍ଷରୁ ବେଶି ସମୟ ମଡ଼ା ହୋଇ ପଡ଼ି ରହିଥିଲା । ଆଜି ପ୍ରଥମଥର ତା' ମୁହଁରୁ 'ଉଁ' 'ହୁଁ' ଶବ୍ଦ ବାହାରୁଛି । ସେ ଜାଣିପାରୁ ନାହିଁ, କିନ୍ତୁ ମୁଁ ତା' ଶବ୍ଦ ଶୁଣିପାରିଛି । ଯାଉଛି, ମାଝି ସର୍ଦ୍ଦାରଙ୍କୁ କହିବି । ତୁ ତା' ପାଟିରେ ପତର ଚୁଙ୍ଗାରେ ଟୋପାଏ ଟୋପାଏ ଦୁଧ ଦେଉଥା ।''

କିଛି ସମୟ ପରେ ମାଝି ସର୍ଦ୍ଦାର ଆସିଗଲେ । ସାଙ୍ଗରେ ଦେହୁରି ଗୁରୁ । ନିର୍ଜୀବ ଅବସ୍ଥାରେ ପଡ଼ି ରହିଥିବା ମହିଳାଟିର ପତର ଶଯ୍ୟା ନିକଟରେ ବସି ରହିଲେ । ଦେହୁରିଙ୍କ କାନକୁ ଶୁଭିଲା ସେହି ଅସ୍ପଷ୍ଟ ଓ କ୍ଷୀଣ ଧ୍ୱନି 'ଉଁ' 'ହୁଁ' । ଆନନ୍ଦରେ ଅଧୀର ହୋଇ ସେ ସର୍ଦ୍ଦାରଙ୍କୁ କହିଗଲେ,

''ଦେଖିଲ, ମୋ କଥା ସତ ହେଲା । ମୁଁ କହିଥିଲି, ଦେହ ପୋଡ଼ିଗଲେବି ଜୀବନ ରହିଥାଇପାରେ । ଦେହ, ମୁହଁ, ସବୁ ପୋଡ଼ି ଯାଇଛି ସତ । ତଥାପି କହିଥିଲି, ପାଟି ଭିତରକୁ କିଛି କିଛି ପାଣି ଓ ଛେଳି ଦୁଧ ପୂରାଇ ପାରିଲେ ପ୍ରାଣଟା ରହିଯାଇପାରେ । ପ୍ରାଣ ଯଦି ରହିଥିବ, ଦିନେ ନା ଦିନେ ଚେତା ଫେରିବ । ପ୍ରାଣ ଥିଲା ବୋଲି ଦେହଟା ରହିଛି । ପ୍ରାଣ ନ ଥିଲେ, ଦେହ କେତେ ଦିନରୁ ପଚିସଢ଼ି ମାଟି ହୋଇଯାଇଥାନ୍ତା । ଏହି ଯେଉଁ ଧ୍ୱନିଟା ବାହାରୁଛି, ତାହା ହେଉଛି ବଞ୍ଚିଥିବାର ପ୍ରମାଣ ।''

ମାଝି ସର୍ଦ୍ଦାର ଗୁଣିଆ ଗୁରୁଙ୍କୁ ପଚାରିଲେ, ''ହାଡ଼ ପାଖରୁ ପୋଡ଼ା ମାଂସଗୁଡ଼ିକ ଖସି ପଡ଼ିବ ଯଦି, ଦେହ ନ ଥିବା ମଣିଷର ଜୀବନ ରହିବ କେଉଁ ଆଧାର ଭିତରେ ?''

''ମାଂସଗୁଡ଼ାକ ଖସିଯିବାର ଥିଲେ ଅନେକ ଆଗରୁ ଖସି ପଡ଼ିଥାନ୍ତା । ଏତେ ପର୍ଯ୍ୟନ୍ତ ହାଡ଼ଗୁଡ଼ିକ ସାଙ୍ଗରେ ଲାଗି ରହିପାରନ୍ତା ନାହିଁ । ହାଡ଼ ଓ ମାଂସକୁ ଲଗାଇ ରଖିବା ପାଇଁ ମୁଁ ମଝେ ମଝେ ଦେହ ଉପରେ ତେଲ ପକାଉଛି ।''

''ବହୁତ ଦିନ ହେଲା ଗୋଟା ଦେହଟାକୁ ପତ୍ର ଦେଇ ବାନ୍ଧି ରଖିଛନ୍ତି । ପ୍ରତିଦିନ ଶୁଖିଲା ପତ୍ରଗୁଡ଼ାକ କାଢ଼ିଦେଇ ପୁଣି ନୂଆ ପତ୍ର ବାନ୍ଧୁଛନ୍ତି । କେତେଦିନ ମଲା ଦେହଟାକୁ ଏହିପରି ବାନ୍ଧି ରଖିବେ ?''

''କେତେ ଦିନ ପାଇଁ ମୋ କାମ ଚାଲିଥିବ, ସେ କଥା କହିପାରିବି ନାହିଁ । ତେବେ ପୋଡ଼ା ମାଂସଗୁଡ଼ାକ ଶୁଖି ଯିବା ଯାଏଁ ଦେହଟାକୁ ପତ୍ରଦ୍ୱାରା ବାନ୍ଧି ରଖିବାକୁ ହେବ । ତୁମେ କ'ଣ ଭାବିଛ ଏଗୁଡ଼ାକ ଅଯଥା ପତ୍ର ? ନା, ଏଗୁଡ଼ିକର ଅଶେଷ ଗୁଣ

ଅଛି । କେଉଁ ପତ୍ରର କେଉଁ ଗୁଣ ମୋ ଗୁରୁଙ୍କ ପାଖରୁ ଶିଖିଛି । ଜଙ୍ଗଲ ମଧ୍ୟରେ ଏପରି ଗଛ ଓ ଲତା ରହିଛି ଯାହାର ଗୁଣ ଅନ୍ୟମାନଙ୍କୁ ଜଣା ନାହିଁ । ମୋତେ ବିଶ୍ୱାସ କର । ଏତେ ଦିନ ଗଲା, ଆଉ କିଛି ଦିନ ଧୈର୍ଯ୍ୟ ଧର । ଏହାଙ୍କୁ ମୁଁ ଭଲ କରି ଛାଡ଼ିବି । ପ୍ରାଣ ଥିଲା ବୋଲି ତ ଦେହଟାକୁ ବଞ୍ଚାଇ ରଖିଛି । ମଲା ମଣିଷ ବୋଲି ପୋଡ଼ି ଦେବାକୁ ନେଇ ଯାଉଥିଲ । କିନ୍ତୁ ମୁଁ ଦେଖିପାରି ଜାଣିନେଲି, ଭିତରେ ଜୀବନ ସତ୍ତା ରହିଛି । ଆମ ଦେହୁରିମାନଙ୍କର ବିଶ୍ୱାସ ଯେ ମଣିଷର ନିଶ୍ୱାସ ପ୍ରଶ୍ୱାସ ଚାଲିଥିବାଯାଏ ଚିକିତ୍ସା ଦରକାର ।''

ମାଝି ସର୍ଦ୍ଦାର ପାଟି କରି ଡାକିଲେ, ''ଆରେ କରାଳୀ, ଆରେ ଈଶା, ଦେହୁରି ଗୁରୁଙ୍କ କଥା ଶୁଣିପାରିଲ ? ଆମ ମା' ଭଲ ହୋଇଯିବେ । ଯେମିତି ସେବା କରୁଛ ସେମିତି ସେବା କରୁଥାଅ । ବେଳକୁ ବେଳ ଦୁଧ ପିଆଉ ଥାଅ, ପାଣି ପିଆଉଥାଅ ଓ ଗୁରୁଙ୍କ ଦେଇଥିବା ତେଲ ଓ ପତ୍ରରସ ଦେହ ସାରା ଲଗାଉଥାଅ ।''

କରାଳୀ ଜଣାଇଲା, ''ପୋଡ଼ା ମାଂସର ଗନ୍ଧ ଦିନକୁ ଦିନ କମି କମି ଆସୁଛି ।''

ଖୁସି ମନରେ ଗୁଣିଆ କହିଲେ, ''ପୋଡ଼ା ଗନ୍ଧ କମି କମି ଚାଲିଛି ମାନେ ମାଂସଗୁଡ଼ାକ ସତେଜ ହେଉଛି ।'' ନିଜେ ପରୀକ୍ଷା କରିବାପାଇଁ ସେ ଦେହସାରା ନାକ ଲଗାଇ ଆଘ୍ରାଣ କରିବାକୁ ଲାଗି ପଡ଼ିଲେ । ଆନନ୍ଦିତ ମନରେ ସର୍ଦ୍ଦାରଙ୍କୁ ବିଶ୍ୱାସ ଦେଲେ, ''ଆଉ ଗୋଟିଏ ବର୍ଷ ସମୟ ଦିଅ । ତୁମ ମା' ଗୁମ୍ଫା ଭିତରୁ ଚାଲି ଚାଲି ବାହାରିଯିବେ । ଅବଶ୍ୟ, ପୋଡ଼ି ଯାଇଥିବା ଦେହର କେତେକ ମାଂସ ଫେରି ପାଇବେ ନାହିଁ, ଯଥା, ନାକ, କାନ, ଓଠ ଓ ଦୁଇ ଗୋଡ଼ର ଅଙ୍ଗୁଳିଗୁଡ଼ିକ । ଆଖିପତା ପୋଡ଼ି ଯାଇଥିଲେ ହେଁ ଦୃଷ୍ଟିଶକ୍ତି ବୋଧହୁଏ କିଛି କିଛି ରହିଯିବ ।''

''ପ୍ରାଣ ରହିଲେ ହିଁ ଯଥେଷ୍ଟ । ଆମେ ତ ମା'ଙ୍କ ଦେହ ପୋଡ଼ିଦେବା ଲାଗି ନେଇ ଯାଉଥିଲୁଁ । କିନ୍ତୁ, ତାଙ୍କ ଆଖି ଦୁଇଟାକୁ ଦେଖି ଆପଣ କହିଲେ ଯେ ସେ ବଞ୍ଚିଛନ୍ତି । ସେତେବେଳେ ତେଜବାବୁଙ୍କ କଟାମୁଣ୍ଡ ଛୁଇଁ ଆମେମାନେ ଶପଥ ନେଇଥିଲୁଁ ଆମ ମା'ଙ୍କୁ ବଞ୍ଚାଇ ରଖିବାକୁ ପ୍ରାଣପଣ ଉଦ୍ୟମ କରିବୁଁ । ଆପଣ କହୁଛନ୍ତି ସେ ଚାଲିପାରିବେ । ସେତକ ଦେଖିଲେ ଆମେ ଜାଣିବୁ ଯେ ଠାକୁରାଣୀ ଆମର ଡାକ ଶୁଣିଛନ୍ତି ।''

ସର୍ଦ୍ଦାର ଓ ଦେହୁରିଗୁରୁ ଚାଲିଗଲେ । ଅନ୍ଧାରୁଆ ଗୁମ୍ଫା ମଧ୍ୟରେ ବସି ରହିଲେ ଦୁଇଜଣ ଆଦିବାସୀ ବାଳିକା, କରାଳୀ ଓ ଈଶା । ପତ୍ର ତିଆରି ଶେଯ ଉପରେ ଶୋଇ ରହିଥାନ୍ତି ଚେତନାହୀନ ମମତାଦେବୀ ।

ଅନେକ ଦିନ ପରେ । ଆଖି ବନ୍ଦ ଥିଲେ ମଧ୍ୟ ସେ ଅନୁଭବ କରିପାରିଲେ, ତାଙ୍କ ପାଟି ବାଟେ ଖାଦ୍ୟ ଖୁଆଇ ଦିଆଯାଉଛି । କାନକୁ ଶୁଭିଲା ଦୁଇଜଣ ବ୍ୟକ୍ତିଙ୍କ କଥାବାର୍ତ୍ତା ।

ଜଣେ କହିଲେ, ''ଦେହର ଶହେ ଭାଗରୁ ଅଶୀ ଭାଗ ପୋଡ଼ି ଯାଇଥିବା ଯେ କୌଣସି ମଣିଷକୁ ଡାକ୍ତରଙ୍କ ପାଖକୁ ନେଇ ଯାଇଥିଲେ ସେ ମୃତ ବ୍ୟକ୍ତି ବୋଲି ଘୋଷଣା କରି ତାହାଙ୍କୁ ପୋଡ଼ି ଦେବା ଲାଗି ଆଦେଶ ଦେଇଥାନ୍ତେ । କିନ୍ତୁ ଗିରିଜନମାନଙ୍କ ବିଶ୍ୱାସରେ ନିଶ୍ୱାସ ପ୍ରଶ୍ୱାସ ଚାଲିଥିଲା ପର୍ଯ୍ୟନ୍ତ ପ୍ରାଣ ରହିଥାଏ ଏବଂ ସେମାନଙ୍କ ପ୍ରଚଳିତ ପଦ୍ଧତି ଅନୁଯାୟୀ ସେମାନେ ଚିକିତ୍ସା କରନ୍ତି, ବର୍ଷ ପରେ ବର୍ଷ ଯେ ପର୍ଯ୍ୟନ୍ତ ରୋଗୀ ଆରୋଗ୍ୟ ଲାଭ ନ କରିଥାଏ । ମମତାଦେବୀଙ୍କ ପାଇଁ ସେହି କାର୍ଯ୍ୟ ହିଁ ସେମାନେ କରୁଛନ୍ତି । ଯଦିଚ ବାହାରର ଲୋକମାନେ ଜାଣନ୍ତି ଯେ ସେ ମରିଯାଇଛନ୍ତି, ତଥାପି ଆଦିବାସୀ ଦେହୁରିମାନେ ନିଜ ବିଶ୍ୱାସରେ ଅଟଳ ଅଛନ୍ତି ।''

ଅନ୍ୟ ଜଣେ ବ୍ୟକ୍ତିଙ୍କ ବକ୍ତବ୍ୟ ଥିଲା, ''ଆଜି ମଧ୍ୟରାତ୍ରିରେ ଦେଶ ସ୍ୱାଧୀନ ହେବ । ଏହି ମହିଳାଙ୍କ ସ୍ୱାମୀ ଦେଶ ପାଇଁ ସହିଦ ହୋଇଥିଲେ । ଏହାଙ୍କ ପୁଅ ମଧ୍ୟ ସହିଦ ହେଲେ । ଆଜି ଏ ଯଦି ମୃତ୍ୟୁ ସହିତ ଲଢ଼ୁ ନ ଥାନ୍ତେ, ତେବେ ସ୍ୱାଧୀନତା ଆସିବା ଦେଖି ନିଜ ସ୍ୱାମୀ ଓ ପୁଅର ମୃତ୍ୟୁପାଇଁ ଗର୍ବ ଅନୁଭବ କରିଥାଆନ୍ତେ । କିନ୍ତୁ ଏହାଙ୍କ ଭାଗ୍ୟ ଖରାପ । ସ୍ୱାଧୀନତା ଦେଖିବା ତ ଦୂରର କଥା, ବଞ୍ଚିବେ କି ମରିବେ ସେ କଥା କେହି କହିପାରିବେ ନାହିଁ ।''

ଉଭୟ ବ୍ୟକ୍ତି ଚାଲିଗଲେ । ମମତା ଅନୁଭବ କରିପାରିଲେ, ସତେ ଯେପରି ତାଙ୍କର ଚେତନା ଶକ୍ତି ଫେରିଆସୁଛି । ସହସା ଜଣାଗଲା, ତେଜସ୍ୱୀର କଟାମୁଣ୍ଡ ତାଙ୍କ ପାଦ ପାଖରେ ପଡ଼ିରହିଛି । ଏକାଗ୍ର ଚିତ୍ତରେ ସ୍ମରଣ ଶକ୍ତି ଫେରାଇ ଆଣିବା ଲାଗି ପ୍ରୟାସ କଲେ । ଜାଣିପାରିଲେ, ଅନେକ କଥା ମନେ ପଡ଼ିଯାଉଛି । ଆଖି ଫିଟାଇବାକୁ ଇଚ୍ଛା ହେଲା । କିନ୍ତୁ ଆଖି ଦୁଇଟି ଉପରେ ପଟି ବନ୍ଧା ରହିଛି ବୋଲି ବୁଝିପାରିଲେ । ସହସା ଅନେକ ପ୍ରକାର ଆଶଙ୍କା ଭିତରେ ମନଟି ବୁଡ଼ିଗଲା । ଉଠିପାରିବି ? ଦେଖିପାରିବି ? ଚାଲି ପାରିବି ? କଥା କହି ପାରିବି ? ହାତଗୋଡ଼ ବ୍ୟବହାର କରି ହେବ ? କେତେ କାଳ ପଡ଼ି ରହିଥିବି ? କେଉଁଠାରେ ଅଛି ? କିଏ ମୋର ଯତ୍ନ ନେଉଛି ?

ଅସଂଖ୍ୟ ପ୍ରଶ୍ନ ବାଣରେ ମନ ଅଥୟ ହୋଇ ଉଠିଲା । ମନେପଡ଼ିଲା ଝିଅ କରୁଣାର ମୁଖ । ମନେପଡ଼ିଲା ସ୍ୱରାଜ ଓ ସ୍ୱାଧୀନର ରୂପ । ସେମାନେ ଏବେ କ'ଣ

କରୁଥିବେ ! କେଉଁଠାରେ ଥିବେ ! କିପରି ଥିବେ ! ବୋଧ ହେଲା, ତେଜସ୍ୱୀର ମୃତ୍ୟୁ ବିଷୟ ସେମାନେ ନିଶ୍ଚୟ ଜାଣିଥିବେ । ଜାଣିଥିବେ, ସେମାନଙ୍କ ମା' ମଧ୍ୟ ମରିଯାଇଛି ।

ଅଭିମାନ ଆସିଲା ଈଶ୍ୱରଙ୍କ ଉପରେ । କାହିଁକି ସେ ବଞ୍ଚାଇ ଦେଲେ ! ଦେହ ସହିତ ପ୍ରାଣଟି ପୋଡ଼ିଗଲା ନାହିଁ କାହିଁକି ? ଭଗବାନ୍ କେଡ଼େ ନିର୍ଦ୍ଦୟ ଓ ନିଷ୍ଠୁର ! ନା, ଏଣିକି ଆଉ ଈଶ୍ୱର ବିଶ୍ୱାସ କରିବା ଅନାବଶ୍ୟକ । ତାଙ୍କର ଯଦି ଦୟା ନାହିଁ, ତାଙ୍କୁ ଦୟାମୟ ବୋଲି କହିବା ବୃଥା ।

ଦୁଃଶ୍ଚିନ୍ତା ଓ ଦୁଃଖରେ ମମତା ଜର୍ଜରିତ ହୋଇ ପଡ଼ିଲେ । କିନ୍ତୁ, ଅସହାୟ ଓ ନିରୁପାୟ । ଏହାହିଁ ହେଉଛି ଯାହାକୁ କୁହାଯାଏ ମନୁଷ୍ୟର ଭାଗ୍ୟ ! ଜଣେ ହତଭାଗିନୀର ଭାଗ୍ୟ ଆଉ ବା କ'ଣ ହୋଇପାରିଥାନ୍ତା, ନିଜକୁ ପ୍ରଶ୍ନ କରିବାକୁ ଲାଗିଲେ ।

ମାଝି ସର୍ଦ୍ଦାର ଓ ଦେହୁରି-ଗୁଣିଆଙ୍କ ଗୁମ୍ଫା ମଧ୍ୟରେ ପ୍ରବେଶ କରିବା ଜଣାପଡ଼ିଲା । ସର୍ଦ୍ଦାର କହିଲେ, ''ଆମେ ଆଜି ସ୍ୱାଧୀନତା ପାଳନ କରିବୁ ଆମ ମା'ଙ୍କ ଗୁମ୍ଫା ସାମନାରେ । ପର୍ବତ ଉପରେ ଜଳାଇବୁ ନିଆଁ । ସାରା ଶୀରିଖଣ୍ଡ ରାଇଜର ଲୋକମାନେ ଜାଣିବେ ଦେଶ ସ୍ୱାଧୀନ ହେଲା । ରଜାଟା ଯାଇ ଦିଲ୍ଲୀରେ କହି ଆସିଲାଣି ତା' ରାଜ୍ୟ ଏବେ ଦେଶ ସହିତ ମିଶିଗଲା । ଆମ ତେଜସ୍ୱୀବାବୁଙ୍କ ଜୀବନ ଗଲା ଆମମାନଙ୍କୁ ରଜାଙ୍କ ଅତ୍ୟାଚାରରୁ ରକ୍ଷା କରିବାପାଇଁ । ସେ ସହିଦ ହେବା ଫଳରେ ରଜାର ସିଂହାସନ ଗଲା । ନିଜ ବଂଶ ସହିତ ସେ କଲିକତାରେ ରହିବ ବୋଲି ପଳାଇଗଲାଣି । ନିଜ ଉଆସରେ ରହିଥିଲେ ଆମମାନଙ୍କ ହାତରେ ସବଂଶେ ମରିଥାନ୍ତା ।''

ଦେହୁରି ଗୁରୁ କହିଲେ, ''ଖୋଦ୍ ସମ୍ରାଟ୍‌ଙ୍କ ସାମ୍ରାଜ୍ୟ ଉଡ଼ିଗଲା ସହିତ ରଜା ମହାରାଜାମାନଙ୍କ ସିଂହାସନ ମଧ୍ୟ ଉଡ଼ିଗଲା । ଆରେ, କଥାରେ ପରା ଅଛି ଶିଳ ଶିଳପୁଆ ଗଗନେ ଉଡୁଛି, ଶିମୁଳି ତୂଳା କହେ, ମୋତେ ରଖ । ସବୁ ଲୋକଙ୍କୁ ଏକାଠି କରି ଏହି ପର୍ବତ ଶିଖରରେ ନିଆଁ ଜାଳି ଆମେ ସ୍ୱାଧୀନତା ଘୋଷଣା କରିବା ।''

ହଠାତ୍ ମମତାଦେବୀ ନିଜ ଡାହାଣ ହାତଟି ଉପରକୁ ଉଠାଇ ରଖି ଅଙ୍ଗୁଳି ଦେଖାଇଲେ । ଗଦ୍ ଗଦହୋଇ ଦେହୁରି କହିଲେ, ''ମାଝି, ଦେଖ, ଦେଖ ମା' ତାଙ୍କ ହାତ ଉଠାଇ ପାରିଲେଣି ।

ଦୁହେଁ ପାଖକୁ ଦୌଡ଼ି ଆସିଲେ । ଧୀର କଣ୍ଠରେ ମମତା କହିଲେ, ''ପର୍ବତ ଉପରେ ନିଆଁ ଜାଳ ନାହିଁ । ଜଙ୍ଗଲକୁ ମାଡ଼ିଯିବ ।''

ଦେହୁରି ପାଟି କରି ଉଠିଲେ, ''ଆରେ ସମସ୍ତେ ଶୁଣ । ମା' କଥା କହିପାରିଲେଣି ।''

''ମା'ଙ୍କ ଆଦେଶ ପାଳନ କରିବାକୁ ହେବ ।'' କହିଲେ ସର୍ଦ୍ଦାର ।

ସେତେବେଳକୁ ମମତାଦେବୀଙ୍କ ଓଠ ଦୁଇଟା ପରୀକ୍ଷା କରି ଦେଖୁଥାନ୍ତି ଦେହୁରିଗୁରୁ । ''ପୋଡ଼ି ଯାଇଥିବା ନରମ ଓଠ ଦୁଇଟା ସମ୍ପୂର୍ଣ୍ଣ ଭାବରେ ଶୁଖିଯାଇଛି ବୋଲି ମା' କଥା କହିପାରିଲେ । ଆଜିର ପବିତ୍ର ରାତି ଲାଗି ଏହା ଗୋଟିଏ ଶୁଭ ସଙ୍କେତ । କିଛି ଦିନ ପରେ ଆଖିରୁ ପଟି କାଢ଼ି ଦେବି ।''

ମଧ୍ୟରାତ୍ରରେ ଗୁମ୍ଫାର ଚାରିପାଖରେ ରୁଣ୍ଡ ହୋଇଗଲେ ଶହ ଶହ ଗିରିଜନ । ଆବାଳବୃଦ୍ଧବନିତା ଘନ ଘନ ଜୟଧ୍ୱନି ଦେବାକୁ ଲାଗିଲେ,

''ଭାରତ ମାତା କି ଜୟ''

''ସ୍ୱାଧୀନ ଭାରତ କି ଜୟ''

''ମହାତ୍ମା ଗାନ୍ଧୀ କି ଜୟ''

''ମା' ମମତାଦେବୀ କି ଜୟ''

''ସହିଦ ତେଜସ୍ୱୀ ଜିନ୍ଦାବାଦ''

''ଅମର ରହେ ସହିଦ ତେଜସ୍ୱୀ''

''ଇନ୍‌କିଲାବ ଜିନ୍ଦାବାଦ୍‌'' ।

ନିଶ୍ଚଳ ଭାବରେ ଶୋଇ ରହିଥାଆନ୍ତି ମମତାଦେବୀ । ଦଳ ଦଳ ନରନାରୀ ଗୁମ୍ଫାଦ୍ୱାରରୁ ଚାହିଁ ଦେଖୁଥାନ୍ତି ତାଙ୍କର ଅବସ୍ଥା । ମାଟିର ପ୍ରଦୀପଟିଏ ମିଞ୍ଜି ମିଞ୍ଜି ହୋଇ ଜଳୁଥାଏ ଗୁମ୍ଫାର ଗହନ ଗର୍ଭରେ ।

ସର୍ଦ୍ଦାରଙ୍କ ଆଦେଶ ମାନି ଲୋକମାନେ ତଳକୁ ଚାଲିଲେ । ଦୂରରୁ ଆସିଥିବା ଜଣେ ଯୁବକ ଅନ୍ୟ ଜଣେ ଯୁବବନ୍ଧୁଙ୍କୁ ପଚାରିଲେ, ''ପର୍ବତ ଉପରୁ ନିଆଁ ଜଳିଥିଲେ ଚାରିଦିଗକୁ ଦିଶିଥାନ୍ତା । ମା' ମନା କଲେ କାହିଁକି ?''

ପଛରୁ ଜଣେ ବୟସ୍କ ବ୍ୟକ୍ତି ଉତ୍ତର ଦେଲେ, ''ଧନ୍ୟ ମା'ଙ୍କର ବିବେକ ଓ ବୁଦ୍ଧି । ପବନରେ ଗଛରୁ ଗଛକୁ ନିଆଁ ଡେଇଁ ଯାଇଥାନ୍ତା । ଜଙ୍ଗଲରେ ନିଆଁ ଲାଗିଲେ ମାଇଲ

ମାଇଲ ବ୍ୟାପୀ ଅଞ୍ଚଳ ପୋଡ଼ି ଯାଇଥାନ୍ତା । ସେପରି ଭୟଙ୍କର ନିଆଁ କେହି ଲିଭାଇ ପାରନ୍ତି ନାହିଁ । ସ୍ୱାଧୀନତା ପାଳନର ଅର୍ଥ ନୁହେଁ ଯେ ଦେଶର ବୃକ୍ଷରାଜି ପୋଡ଼ିଦେବା କିମ୍ବା ପ୍ରାକୃତିକ ପରିବେଶ ନଷ୍ଟ କରିବା । ମା' ଯଥାର୍ଥ ଆଦେଶ ଦେଇଛନ୍ତି ।''

ମମତାଦେବୀଙ୍କ ଜିନ୍ଦାବାଦ ଧ୍ୱନିରେ ଅରଣ୍ୟ ଓ ଆକାଶ ମୁଖରିତ ହୋଇ ଉଠିଲା । ସେତେବେଳେ ତାଙ୍କ ମାନସ ଚକ୍ଷୁରେ ସେ ଦେଖିପାରୁଥାନ୍ତି ପୁଅ ତେଜସ୍ୱୀର ରକ୍ତରଞ୍ଜିତ କଟା ମୁଣ୍ଡଟି । ସତେ ଯେପରି ସେ ଡାକୁଥାଏ, ''ମା', ମା', ମା' ।''

## ।। ୨୧ ।।

କେତୋଟି ମାସ ବିତିଗଲା । ସୂର୍ଯ୍ୟୋଦୟ ପରେ ପର୍ବତ ଶିଖରର ଗୁମ୍ଫା ଭିତରକୁ ପ୍ରବେଶ କଲା ନବରବିର ଆଲୋକ ରେଖା । ସେଥିପୂର୍ବରୁ ପ୍ରତିଦିନ ପରି ଦୁଇଜଣ ଗିରିଜନ ବାଳିକା, କରାଳୀ ଓ ଈଶା, ମମତାଦେବୀଙ୍କ ବାସି ବିଛଣାରୁ ପୁରୁଣା ପତ୍ରଗୁଡ଼ାକ ବାହାର କରି ସଜ ପତ୍ରଗୁଡ଼ିକ ଥାକ ପରେ ଥାକ ରଖି ନୂତନ ଶଯ୍ୟା ତିଆରି କରିଦେଲେ । ସେହିପରି ସାରା ଅଙ୍ଗପ୍ରତ୍ୟଙ୍ଗରୁ ଶୁଖି ଯାଇଥିବା ଔଷଧୀୟ ପତ୍ରଗୁଡ଼ିକ ଅତ୍ୟନ୍ତ ସତର୍କତା ସହିତ କାଢ଼ିଦେଇ ସଜ ପତ୍ରଗୁଡ଼ାକ ସଜାଇ ରଖି ଲତାଦ୍ୱାରା ବାନ୍ଧି ଦେଲେ । ତାହାପରେ ତାଙ୍କର ମୁହଁ ଧୋଇଦେଇ ତଳ ସ୍ଥାନରୁ ଦୁଧ ଓ ଖାଦ୍ୟ ଆଣିବାକୁ ବାହାରି ଗଲେ । ଦେହୁରିଗୁରୁ ଏବଂ ମାଝି ସର୍ଦ୍ଦାର ଆସିବା ପୂର୍ବରୁ କରାଳୀ ଓ ଈଶା ଦ୍ୱାରା ଏହି ସମସ୍ତ କାର୍ଯ୍ୟ ସମ୍ପାଦନ କରିବା ଜରୁରୀ ଥାଏ ।

ସେଦିନ ସକାଳେ କରାଳୀ ଫଳ ଓ ଦୁଧ ଧରି ଗୁମ୍ଫା ଭିତରକୁ ପଶିଲା ବେଳେ ବାହାରେ ଛିଡ଼ା ହୋଇଥିବା ଈଶାକୁ ଲକ୍ଷ୍ୟକରି ଉଚ୍ଚ କଣ୍ଠରେ ଜଣାଇଲା, ''ଶୁଣିଲୁଣି ରେ ଈଶା, ଗତକାଲି ସଞ୍ଜବେଳେ ମହାତ୍ମା ଗାନ୍ଧୀ ପ୍ରାର୍ଥନା କରୁଥିବାବେଳେ ଜଣେ ଲୋକ ତାଙ୍କୁ ଗୁଳି କରି ମାରିଦେଇଛି ।''

ପଦଟି ବାକ୍ୟ ଶେଷ ହେଲା ମାତ୍ରେ ପତ୍ର-ଶଯ୍ୟା ଉପରେ ପଡ଼ିରହିଥିବା ମମତାଦେବୀ ଯନ୍ତ୍ରଚାଳିତ ମଣିଷଟି ପରି ହଠାତ୍ ଉଠିବସି ଭାବ ଗଦ୍‌ଗଦ କଣ୍ଠରେ ପଚାରି ଦେଲେ, ''କ'ଣ କହିଲୁ କରାଳୀ ? ପୁଣି ଥରେ ମୋ ଆଗରେ ସେହି କଥା କହିଲୁ ?''

ଈଶା ଚିତ୍କାର କରିଉଠିଲା, ''ମା', ଉଠିଲ କିପରି ? କାହିଁକି ବସିଲ ? ଦେହୁରିଗୁରୁ ହଲ୍‌ଚଲ୍ ହେବାକୁ ମନା କରିଥିଲେ । ଶୋଇପଡ଼, ମା', ଶୋଇପଡ଼ । ନଚେତ୍, ଆମ ଦୁହିଁଙ୍କ ଉପରେ ମାଡ଼ ବସିବ । ସର୍ଦ୍ଦାର ବକିବେ ।''

''ଝିଅ; ମୁଁ ଗୁରୁଙ୍କ ଆଦେଶ ଭାଙ୍ଗିବାକୁ ଉଠି ନାହିଁରେ । କରାଳୀର କଥାଟି କାନରେ ପଡ଼ିଲାମାତ୍ରେ ମୋ ଅଜାଣତରେ ଉଠି ପଡ଼ିଛି । ବସିରହି ଶୁଣିବି ସେ କ'ଣ କହୁଥିଲା । କୁହ କରାଳୀ, କ'ଣ କହୁଥିଲ ?''

ଠିକ୍ ସେତିକିବେଳେ ପଶିଆସିଲେ ସର୍ଦ୍ଦାର ଓ ଗୁରୁ । ମମତା ବସିଥିବା ଦେଖି ସେମାନେ ଚମକି ଉଠିଲେ । ବଜ୍ର ଗମ୍ଭୀର ସ୍ୱରରେ ଗୁଣିଆ-ଗୁରୁ ପ୍ରଶ୍ନ କଲେ, ''କିଏ ତୁମକୁ ଉଠାଇ ବସାଇ ଦେଲା ?''

ଅପ୍ରସ୍ତୁତ ଭାବରେ ମମତା ଉତ୍ତର ଦେଲେ, ''ଗୁରୁଜୀ, କରାଳୀ ମୁହଁରୁ ଗୋଟିଏ ଅଶୁଭ କଥା ଶୁଣି ମୁଁ ନିଜ ଅଜାଣତରେ ବସି ପଡ଼ିଛି । ମୋତେ ସେମାନେ କେହି ଉଠାଇ ନାହାନ୍ତି, ମୁଁ ନିଜେ ଉଠିଛି ।''

ସର୍ଦ୍ଦାର ପାଖରେ ବସି ପଡ଼ିଲେ । ଦୁଃଖପୂର୍ଣ୍ଣ ମନରେ କହିଲେ, ''ମା', ଯେଉଁ ଖବରଟି ଶୁଣି ଉଠିପଡ଼ିଲ, ତାହା ସତ୍ୟ । ମହାତ୍ମା ଆଉ ଇହଧାମରେ ନାହାନ୍ତି । ଗତକାଲି ରାତିରେ ଗୋଟିଏ ଦୂର ବଜାରକୁ ଯାଇଥିଲି । ଶହ ଶହ ଲୋକ ରେଡ଼ିଓରୁ ସମ୍ବାଦ ଶୁଣି କାନ୍ଦୁଥିବାର ଦେଖିଆସିଲି । ଆଜି ସାରାଦିନ ଦେଶବାସୀ ଉପବାସ ପାଳନ କରିବେ ଏବଂ ସନ୍ଧ୍ୟାବେଳେ ନଦୀରେ ସ୍ନାନ କରିବେ ବୋଲି ଘୋଷଣା କରାଯାଇଛି । ଆମ ପଲ୍ଲୀରେ ମଧ ସମସ୍ତଙ୍କୁ ଉପବାସ ରହିବାପାଇଁ କହିଆସିଛି ।''

''ଯିଏ ବିଦେଶୀ ସାମ୍ରାଜ୍ୟ ଭାଙ୍ଗିଥିଲେ, କେବଳ ସେହି ସିନା ସ୍ୱଦେଶୀ ରାଜ୍ୟ ଗଠନ କରିପାରିଥାନ୍ତେ ! ତାଙ୍କ କାମ ଆଉ କିଏ କରିପାରିବ ?'' କାନ୍ଦୁଥିବା ଅବସ୍ଥାରେ କହିଲେ ମମତା ।

''ନା, ମା', ନା । ମହାତ୍ମା ଅନେକ ଭଲ ଭଲ ଶିଷ୍ୟ ରଖିଯାଇଛନ୍ତି । ସେହିମାନେ ଦେଶକୁ ଚଳାଇନେବେ ।''

''ସବୁ ଶିଷ୍ୟମାନେ ତାଙ୍କୁ ବାପୁ ବୋଲି ଡାକୁଥିଲେ । ତାଙ୍କ କଥା ମାନୁଥିଲେ । ଆଜି ବାପୁ ନ ଥିଲାବେଳେ ପୁଅମାନଙ୍କୁ କଡ଼ା ନଜରରେ ରଖିବ କିଏ ? ଜଣେ ମହାତ୍ମାଙ୍କୁ ସମସ୍ତେ ଭୟ କରୁଥିଲେ ବୋଲି ସ୍ୱାଧୀନତା ସଂଗ୍ରାମ ଠିକ୍ ଭାବରେ ଚାଲିପାରିଲା ଓ ଇଂରେଜମାନେ ପଳାଇଲେ । ସେ ନ ଥିଲାବେଳେ ସ୍ୱାଧୀନ ଭାରତକୁ ଆଗେଇ ନେବ କିଏ ?''

ଏତିକିବେଳେ ଦେହୁରି ବିରକ୍ତ ହୋଇ ମମତାଦେବୀଙ୍କୁ ଧମକ୍ ଦେଲେ, ''କଥା ବନ୍ଦ କର । ଓଠ ଶୁଖିଯାଇଥିଲା । ପାଟି ଖୋଲିଲେ ପୁଣି ଫାଟି ଯାଇପାରେ । ମୋ

ଅନୁମତି ନ ନେଇ ବିଛଣାରୁ ଉଠି ବସିପଡ଼ିଲ କାହିଁକି ? ଆଚ୍ଛା, ଯଦି ବସିପାରିଲ, ଏବେ ଛିଡ଼ା ହୋଇପାରିବ ? ଚେଷ୍ଟାକର । ମୁଁ ଦେଖିବାକୁ ଇଚ୍ଛା କରୁଛି ।''

ଗୁରୁଙ୍କ ଆଦେଶ ଶୁଣି କରାଳୀ ସଙ୍ଗେ ସଙ୍ଗେ ମମତାଦେବୀଙ୍କ ଗୋଡ଼ ଦୁଇଟା ଉପରେ ବନ୍ଧା ହୋଇଥିବା ପତ୍ରଗୁଡ଼ାକ କାଢ଼ି ପକାଇଲା । ଦୁଇ ହାତ ଉପରେ ଭରା ଦେଇ ମମତା ଧୀରେ ଧୀରେ ଶଯ୍ୟା ଉପରେ ଦୁଇ ଗୋଡ଼ରେ ଛିଡ଼ା ହୋଇଗଲେ । ଦେହୁରି କରାଳୀକୁ କହିଲେ, ''ଆଖି ଦୁଇଟିରୁ ପଟିଗୁଡ଼ାକ କାଢ଼ିଦିଅ । ଦେଖିବି, ଦୃଷ୍ଟିଶକ୍ତି ଫେରିଆସିଛି କି ?''

ପଟି କାଢ଼ି ଦେଲାକ୍ଷଣି ମମତାଦେବୀ ଦେଖିପାରିଲେ ନିଜର ଗୋଡ଼ ଦୁଇଟି । ଦୁଃଖରେ କାନ୍ଦି ଉଠି ପଚାରିଲେ, ''ଏ କ'ଣ ମୋର ନିଜର ଗୋଡ଼ ? ନା, ମୋର ଗୋଡ଼ ନୁହେଁ, ଦୁଇଖଣ୍ଡି ପୋଡ଼ା କାଠ ପରି ଦିଶୁଛି କାହିଁକି ?''

''ଛିଡ଼ା ହୋଇପାରିଲ ଦେଖି ଖୁସି ହେଲି । ତୁମର ଦୁଇଟିଯାକ ଗୋଡ଼ ପାଉଁଶ ହୋଇ ଯାଇଥାଏ । ଯାହାହେଉ, ପଚା ଚମଡ଼ା ଓ ମାଂସ ଶୁଖିଯାଇଛି । ସେଗୁଡ଼ିକ ଶୁଖିଲା ଚମଡ଼ା ପରି ହାଡ଼ ସହିତ ଯୋଡ଼ି ହୋଇଯାଇଛି । ସେତିକି ହିଁ ଯଥେଷ୍ଟ । ଠାକୁରାଣୀ ଆମର ଡାକ ଶୁଣିପାରିଛନ୍ତି । ଦୟା ଅଜାଡ଼ି ଦେଇଛନ୍ତି । ପୋଡ଼ାକାଠ ପରି ଦିଶୁଥିଲେ ମଧ୍ୟ ଗୋଡ଼ ଦୁଇଟି ବ୍ୟବହାର କରିପାରିବ । ସେଥିପାଇଁ ନିଜ କପାଳକୁ ଧନ୍ୟବାଦ ଦିଅ ଓ ଭଗବାନ୍‌ଙ୍କୁ ଜୁହାର ଦିଅ,'' ହସି ହସି କହିଲେ ଦେହୁରି ଗୁରୁ ।

ସର୍ଦ୍ଦାର ଓ ଦେହୁରି ପରସ୍ପର ପ୍ରତି ଆନନ୍ଦରେ ଚାହିଁ ରହିଲେ । ମମତା ଚାହିଁ ରହିଥାନ୍ତି ନିଜର କଦର୍ଯ୍ୟକାର ପାଦ ଦୁଇଟିକୁ । ଦିଶୁଥାଏ କୌଣସି କୁଷ୍ଠରୋଗୀର ପାଦ ପରି ।

''କରାଳୀ, ମୋ ହାତ ଦୁଇଟା ଉପରୁ ପତ୍ରଗୁଡ଼ିକ ଖସାଇଦିଅ ।'' ବିକଳ ଭାବରେ ଅନୁରୋଧ କଲେ ମମତା । ଗୁରୁଙ୍କ ଇଙ୍ଗିତ ପାଇ କରାଳୀ ଓ ଈଶା ତାଙ୍କର ଦୁଇ ହାତ ଉପରୁ ପତ୍ରବନ୍ଧନୀ ଫିଟାଇ ଦେଲେ । ଆଖିକୁ ବିଶ୍ୱାସ କରି ନ ପାରି ଦେଖିଲେ ହାତ ଦୁଇଟି ଭଲ ଅଛି । ପୋଡ଼ାକାଠ ପରି ଦିଶୁ ନାହିଁ । ଗୁରୁଙ୍କୁ ପ୍ରଶ୍ନ କଲେ, ''ହାତ ଦୁଇଟି ପୋଡ଼ା କାଠପରି ଦିଶୁ ନାହିଁ କାହିଁକି ? ଯଦି ହାତ ଦୁଇଟିକୁ ଭଲ କରିଦେଲେ ତେବେ ଗୋଡ଼ ଦୁଇଟିକୁ ଭଲ କରିଦେଇଥିଲେ ମୁଁ ନିଜକୁ କୁଷ୍ଠରୋଗୀ ବୋଲି ଭାବୁ ନ ଥାନ୍ତି ।''

ସହାସ୍ୟ ବଦନରେ ଗୁରୁ ଉତ୍ତର ଦେଲେ, ''ହାତ ଦୁଇଟିକୁ ଭଗବାନ୍ ଭଲ ରଖି ଦେଇଛନ୍ତି । ତୁମ ଦେହ ଉପରେ ନିଆଁ ଲଗାଇ ଶତ୍ରୁମାନେ ହାତ ଦୁଇଟା ଉପରକୁ

ଧରି ଟାଣି ନେଇଯାଇଥିଲେ ବୋଲି ସେଗୁଡ଼ିକ ପୋଡ଼ିଯାଇ ନ ଥିଲା । ଅଥଚ ଛାତି, ପେଟ, ଗୋଡ଼ ଓ ମୁହଁ ଓ ସାରା ଦେହଟି ପୋଡ଼ି ପାଉଁଶ ପ୍ରାୟ ହୋଇଯାଇଥାଏ । ସବୁ ଈଶ୍ୱରଙ୍କ ଇଚ୍ଛା ।''

ଦେହୁରି ଓ ସର୍ଦ୍ଦାରଙ୍କ ମୁଖକୁ ଚାହିଁ ରହି ମମତା ବିକଳ ଭାବରେ ନିବେଦନ କଲେ, ''ଆପଣମାନଙ୍କୁ ଝାପ୍‌ସା ଝାପ୍‌ସା ଭାବରେ ଦେଖିପାରୁଛି । ନିଜର ମୁହଁର ଅବସ୍ଥା ଦର୍ପଣରେ ଦେଖିବାଲାଗି ପ୍ରବଳ ଇଚ୍ଛା ହେଉଛି । ଦୟାକରି ସେଥିପାଇଁ ବ୍ୟବସ୍ଥା କରିଦିଅନ୍ତୁ ।''

ସର୍ଦ୍ଦାର ତତ୍‌କ୍ଷଣାତ ଗୁମ୍ଫା ବାହାରକୁ ଦୌଡ଼ି ଚାଲିଗଲେ । କିଛି ସମୟ ପରେ ଭଙ୍ଗା ଆଇନାଟିଏ ହାତରେ ଧରି ମମତାଙ୍କ ଆଗରେ ଛିଡ଼ା ହୋଇ କହିଲେ, ''ମା', ଗୋଡ଼ ଓ ଦେହ ପରି ମୁହଁଟି ମଧ୍ୟ ପୋଡ଼ିଯାଇଥିଲା । ବରଂ ନ ଦେଖିଲେ ଭଲ ।''

ସର୍ଦ୍ଦାରଙ୍କ ହାତରୁ ଅଇନାଖଣ୍ଡିକ ଟାଣିନେଇ ମମତା ନିଜ ମୁହଁ ଆଗରେ ଧରି ରଖିଲେ । ''ମୁଁ କାହାକୁ ଦେଖୁଛି ? ଗୋଟାଏ ରାକ୍ଷସୀ ? ପ୍ରେତିନୀ ? ଡାହାଣୀ ? ଭୂତିନୀ ? ନା, ଏ ମୁହଁ ମୁଁ ଦେଖିପାରିବି ନାହିଁ । ମରି ଯାଇଥିଲେ କେଡ଼େ ଭଲ ହୋଇଥାନ୍ତା ! ଗୁରୁଜୀ, ସର୍ଦ୍ଦାର, ମୋତେ ବଞ୍ଚାଇ ରଖିଛ କାହିଁକି ?'' ଛାତି ଫଟାଇ କାନ୍ଦିବାକୁ ଲାଗିଲେ ମମତା ।

ଗୁରୁ ସାନ୍ତ୍ୱନା ଦେଇ କହିଲେ, ''ଶୁଣ । ଦେହଟା ଅସାର । ପ୍ରାଣଟା ହିଁ ସାର ବସ୍ତୁ । ପ୍ରାଣ ଅଛି ବୋଲି, ଆତ୍ମା ରହିଛି । ତୁମ ଦେହ ସହିତ ଆତ୍ମା ତ ପୋଡ଼ିଯାଇ ନାହିଁ ! ଆତ୍ମାକୁ ନେଇ ବଞ୍ଚି ରହିବ । କାନ୍ଦୁଛ କାହିଁକି ?''

କୋହ ବନ୍ଦ କରି ନ ପାରି ମମତା ଉଚ୍ଚ ସ୍ୱରରେ କିଛି କହିବାପାଇଁ ଉଦ୍ୟତ ହେଲାବେଳକୁ ଦେହୁରି ଗୁରୁଙ୍କ ଧମକ ଶୁଣି ଥମିଗଲେ । ''ଦୁଇଟା ଓଠର ଏପାଖରୁ ଅଧେ ଓ ସେ ପାଖର ଅଧେ ପୋଡ଼ି ହୋଇଯାଇଛି । ଯେତିକି ଜାଗା ଖୋଲା ଅଛି, ସେତିକି ଯଥେଷ୍ଟ । ଖାଦ୍ୟପେୟ ପଶିବାପାଇଁ ଭଗବାନ୍ ସେତିକି ପଥ ଛାଡ଼ିଛନ୍ତି । ବଡ଼ପାଟିରେ କଥା କହିବାକୁ ଯଦି ଚେଷ୍ଟା କରିବ, ଓଠ ଦୁଇଟାର ପୋଡ଼ିଯାଇଥିବା ସ୍ଥାନ ଫାଟିଯିବ । ରକ୍ତ ଝରିବ । ପୋଡ଼ିଯିବା ସ୍ଥାନ ଥରେ ଫିଟିଗଲେ, ଆଉ ଭଲ କରିପାରିବି ନାହିଁ । ତେଣୁ ଯାହା କିଛି କଥାବାର୍ତ୍ତା କରିବ, ଧୀର ସ୍ୱରରେ । ଆଜି ନୁହେଁ, ସବୁଦିନ ପାଇଁ ।''

ଅତି ଧୀର ସ୍ୱରରେ ମମତା କାନ୍ଦି କାନ୍ଦି ପଚାରିଲେ, ''ମୋ ପୋଡ଼ା ମୁହଁ ଓ ପୋଡ଼ା ଦେହ ମଧ୍ୟରେ ପ୍ରାଣଟାକୁ ରଖିଲେ କାହିଁକି ? ଏପରି ଦେହଟାକୁ ବଞ୍ଚାଇ ନ ରଖି ମାରି ଦେଇଥିଲେ ଭଲ ହୋଇଥାନ୍ତା ବୋଲି ଭାବିଲେ ନାହିଁ କାହିଁକି ?''

ଗୁରୁ କ୍ରୋଧାନ୍ୱିତ ହୋଇ ଉଠିଲେ । ରାଗ ସମ୍ଭାଳି ନ ପାରି ଅଭିଯୋଗ କଲେ, ''ତୁମ ପ୍ରାଣରକ୍ଷା କରିପାରିଲି ବୋଲି ମୋ ଉପରେ ରାଗୁଛ ? ମୁଁ କିନ୍ତୁ ଉପଲକ୍ଷ୍ୟ ମାତ୍ର ! ଜୀବନ ଓ ମରଣ ଠାକୁରଙ୍କ ଉପରେ ନିର୍ଭର କରେ । ମୋର କର୍ତ୍ତବ୍ୟ ଚିକିତ୍ସା କରିବା । କର୍ତ୍ତବ୍ୟ ହିଁ ଧର୍ମ । ସେହି ଧର୍ମ ମୁଁ ପାଳନ କରିଛି । ଭଗବାନ୍‌ଙ୍କ ଇଚ୍ଛା ତୁମେ ବଞ୍ଚି ରହିବ । ସେଥିପାଇଁ ପାଉଁଶ ଭିତରୁ ଜୀବନ ପାଇଲ । ହଁ, ମୁହଁ ଓ ଦେହ ବୀଭତ୍ସ ହୋଇଯାଇଛି । କିନ୍ତୁ, ବୁଦ୍ଧି ଓ ଚିନ୍ତାଶକ୍ତି ତ ଠିକ୍ ରହିଛି । ତାହା ନ ଥିଲେ, ମହାତ୍ମା ଗାନ୍ଧୀଙ୍କ ମୃତ୍ୟୁ ସମ୍ବାଦ ଶୁଣି ଶଯ୍ୟାରୁ ଉଠି ପାରି ନ ଥାନ୍ତ କିମ୍ବା ନିଜର କୁରୂପ ଦେଖି ଦୁଃଖରେ ଏତେ ଦୀର୍ଘ ସମୟପାଇଁ ନିଜ ଗୋଡ଼ରେ ଛିଡ଼ା ହୋଇପାରି ନ ଥାନ୍ତ । ଲୋକେ ତୁମକୁ କୁଷ୍ଠରୋଗୀ ବୋଲି ଭାବିପାରନ୍ତି । କିନ୍ତୁ କୁଷ୍ଠରୋଗୀମାନେ ମଧ୍ୟ ମଣିଷ । ସେମାନେ ନିଜ ଗୋଡ଼ରେ ଚାଲି ଚାଲି ଭିକ୍ଷା ମାଗି ମାଗି ବଞ୍ଚି ରହିଛନ୍ତି । ତୁମର କଦର୍ଯ୍ୟ ରୂପ ସତ୍ତ୍ୱେ ମଣିଷ ପରି ବଞ୍ଚି ରହିପାରିବ, ଏହାହିଁ ମୋତେ ଆନନ୍ଦ ଦେଉଛି ।''

ମମତା ଅଧିକରୁ ଅଧିକତର କାନ୍ଦୁଥିବା ଦେଖି ମାଝି ସର୍ଦ୍ଦାର ପାଖକୁ ଆସି ସାନ୍ତ୍ୱନା ଦେଲେ, ''ମା' ତୁମର ଏ ରୂପ କେହି ଦେଖି ପାରିବେ ନାହିଁ । ଆମେ ତୁମ ପାଇଁ ଚାଳଘରଟିଏ ତିଆରି କରିଛୁ । ଜୀବନସାରା ସେହି ଘରେ ରହିବ । ଆମେ ସମସ୍ତେ ତୁମର ସେବା କରିବୁ । ତୁମେ ହେଉଛ ଆମ ବନବାସୀମାନଙ୍କର ମା' । କିଛି ଚିନ୍ତା ନ କରି ପୁଣି ଶୋଇପଡ଼ । ଈଶା କଦଳୀ ଓ ଦୁଧ ଧରି ଫେରି ଆସିଲାଣି ।''

ମମତା ପୁନର୍ବାର ଶଯ୍ୟାଶାୟୀ ହେଲେ । କହିଲେ, ''ଦେଶବାସୀ ଆଜି ଦିନଟି ଉପବାସରେ କଟାଇବେ । ମୁଁ ମଧ୍ୟ ଅନଶନରେ ରହିବି ।'' ନିଜର ଦୁଇ ଓଠ ଉପରେ ହାତ ବୁଲାଇ ଜାଣିପାରିଲେ ମଝିଭାଗରେ ଗୋଟିଏ ଛୋଟ ଗାତ ରହିଛି । ସେହି ବାଟରେ କିଛି କିଛି ଖାଇବା ସମ୍ଭବ । କିନ୍ତୁ ଉଚ୍ଚ ସ୍ୱରରେ କଥା କହିବା ଅସମ୍ଭବ ।

ମହାତ୍ମା ଗାନ୍ଧୀଙ୍କ ମହାପ୍ରୟାଣ ବିଷୟ ଚିନ୍ତା କରିବାଦ୍ୱାରା ନିଜର ଦୁର୍ଦ୍ଦଶା ଭୁଲି ଯିବାକୁ ଲାଗିଲେ । ଜଣେ ମହାପୁରୁଷଙ୍କ ଜୀବନ ନେବାପାଇଁ ହାତ ଗଲା କାହାର ! ଆଖିରୁ ଧାର ଧାର ହୋଇ ଲୁହ ଝରୁଥିବା ଦେଖି ଈଶା ଓ କରାଳୀର କଥାବାର୍ତ୍ତା ଶୁଣାଗଲା । ଜଣେ କହୁଥାଏ, ''ଗୁରୁଙ୍କ କଥା ଶୁଣିଛି । କାନ୍ଦି କାନ୍ଦି ଆଖିରୁ ଲୁହ

ଗଡ଼ାଇଲେ ଚାହିଁବା ଓ ଦେଖିବା ବଳ ଆପେ ଆପେ ବଢ଼ିଯିବ । ମା', ଆଖି ବନ୍ଦକରି କାନ୍ଦୁଛନ୍ତି ।'' ''ସେ ଯେତେ ପାରିବେ କାନ୍ଦୁଥାନ୍ତୁ । ମୁଁ ନଈରେ ଗାଧୋଇଆସେ ।''

ନିଶାର୍ଦ୍ଧର ଗଭୀର ନୀରବତା ମଧ୍ୟରେ ମମତାଙ୍କ ମନେପଡ଼ିଲା, ସର୍ଦ୍ଦାରଙ୍କ କହିଥିବା କଥା - ''ଚାଳଘର ତିଆରି ସରିଛି, ଜୀବନ ସାରା ସେହିଠାରେ ରହିବାକୁ ହେବ । ମନେପଡ଼ିଲା ଦେହୁରିଗୁରୁଙ୍କ ବାକ୍ୟ - ଲୋକେ ତୁମକୁ କୁଷ୍ଠରୋଗୀ ବୋଲି ଭାବିପାରନ୍ତି, କିନ୍ତୁ ସେମାନେ ମଧ୍ୟ ମଣିଷ ପରି ବଞ୍ଚିଛନ୍ତି ।''

ମନ ଭାସିଗଲା ଅସୀମ ସାଗର ସଦୃଶ ଅଦୃଷ୍ଟ ଦିଗକୁ । ବାପା କହୁଥାନ୍ତି, ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଟାଣିଲେ ତେଣିକି ଯାଇ । କେଉଁ ପ୍ରକାର ଭବିଷ୍ୟତ ଦିଗକୁ ମୋତେ ଦଇବ ଟାଣି ନେଇଯିବ, ଶଙ୍କିତ ହୋଇଉଠିଲେ ମମତାଦେବୀ । କୁଷ୍ଠରୋଗୀ ରୂପରେ ଭିକ ମାଗି ମାଗି ଜୀବନ ବିତାଇବି ! ଅଥବା, ସରଳ ବନବାସୀମାନଙ୍କ ଉପରେ ସାରା ଜୀବନ ନିର୍ଭର କରି ବଞ୍ଚିରହିବି ! ଆତ୍ମହତ୍ୟା କରିବା ଏକ ମହାପାପ ବୋଲି ଶାସ୍ତ୍ର କହିଛି । ସେପରି କାର୍ଯ୍ୟ ଯଦି କରି ନ ପାରିବି, ତେବେ ବଞ୍ଚିରହି କେଉଁପ୍ରକାର କାର୍ଯ୍ୟଦ୍ୱାରା ଜୀବନକୁ ସାର୍ଥକ କରିପାରିବି !

ସହସା ମନେପଡ଼ିଗଲା, ତିନଜଣ ପିଲାଙ୍କ କଥା । କିପରି ଥିବ ଝିଅ କରୁଣା ! କିପରି ଥିବେ ସ୍ୱରାଜ ଓ ସ୍ୱାଧୀନ ! ସେମାନେ ନିଶ୍ଚୟ ବିଶ୍ୱାସ କରିଥିବେ ଯେ ସେମାନଙ୍କ ମା' ମରିଯାଇଛି ! କିନ୍ତୁ ମା'ର କ'ଣ ଏହା କର୍ତ୍ତବ୍ୟ ନୁହେଁ କି ନିଜ ପିଲାମାନଙ୍କୁ ଖୋଜି ଖୋଜି ବାହାର କରିବା ? ସେମାନଙ୍କ କାର୍ଯ୍ୟକଳାପ ଓ ଅବସ୍ଥା ଅନୁସନ୍ଧାନ କରିବା !

ମମତାଙ୍କ ମାତୃପ୍ରାଣ ପ୍ରକମ୍ପିତ ହୋଇଉଠିଲା । କେଉଁ ପ୍ରକାର ଦେହ ଓ ମୁହଁ ଧରି ନିଜ ସନ୍ତାନସନ୍ତତିଙ୍କ ସମ୍ମୁଖରେ ଛିଡ଼ା ହୋଇ ପାରିବି ? ସେମାନେ କ'ଣ ମା' ବୋଲି ଡାକି ଡାକି ପାଖକୁ ଆସିବେ ? ନାନାପ୍ରକାର ଦୁଃଶ୍ଚିନ୍ତା ମଧ୍ୟରେ ମମତାଦେବୀ ଅଦୃଷ୍ଟ ରୂପକ ସାଗରର କୂଳ ଦେଖିପାରିଲେ ନାହିଁ । ନା, ଅକୂଳ ସାଗରରେ ଭାସି ଚାଲିଥିବି ଯେଉଁ ପଥରେ ଅଦୃଷ୍ଟ ଲହରୀ ନେଇ ଯାଉଥିବ ।

ପ୍ରଭାତ ସମୟକୁ ତାତ୍ତ୍ୱିକ ସ୍ୱପ୍ନ ରାଇଜରୁ ମମତାଙ୍କ ମନ ଫେରିଆସିଲା ବାସ୍ତବ ସାଂସାରିକ ଜୀବନଧାରାକୁ । ଅନୁମାନ କରିନେଲେ, ଗିରିଜନମାନେ ତାଙ୍କର ଛାଡ଼ିଆସିଥିବା ପୁଅଝିଅମାନଙ୍କ କଥା ଜାଣନ୍ତି ନାହିଁ । ସେମାନେ କେବଳ ଜାଣନ୍ତି ତାଙ୍କର ସ୍ୱାମୀ ତପସ୍ୱୀବାବୁଙ୍କ ସହିଦ ହୋଇଥିବା ବିଷୟ ଏବଂ ସ୍ୱଚକ୍ଷୁରେ ଦେଖିଥିବା ପୁଅ ତେଜସ୍ୱୀର ନିର୍ମମ ହତ୍ୟା ଦୃଶ୍ୟ । ତାହାପରେ କେତେବର୍ଷ ବିତିଗଲାଣି ଅଜ୍ଞାନ

ଓ ଅସୁସ୍ଥ ଅବସ୍ଥାରେ । ଗୁମ୍ଫା ଭିତରେ ଲୁଚାଇ ରଖି ସେମାନେ ବର୍ଷ ପରେ ବର୍ଷ ଚିକିତ୍ସା ଦ୍ୱାରା ପ୍ରାଣରକ୍ଷା କରିଦେଇଛନ୍ତି । ଧନ୍ୟ ସେମାନଙ୍କର ଧର୍ମ ବିଶ୍ୱାସ, ଧନ୍ୟ କର୍ତ୍ତବ୍ୟ ନିଷ୍ଠା ଏବଂ ଧନ୍ୟ ପରୋପକାର ପ୍ରବୃତ୍ତି !

ମନେପଡ଼ିଲା, କରୁଣାର ବୟସ ବୃଦ୍ଧି କଥା । କବିତାଦେବୀ ନିଶ୍ଚୟ ତା'ର ପ୍ରକୃତ ମାତା ରୂପେ କର୍ତ୍ତବ୍ୟ ପାଳନ କରିଥିବେ । ଯଥା ସମୟରେ ସୁପାତ୍ର ସହିତ ବିବାହ କରାଇ ଦେଇଥିବେ । ସ୍ୱରାଜ ଓ ସ୍ୱାଧୀନ ମଧ୍ୟ ପାଠ ପଢ଼ା ଶେଷ କରି ନିଜ ନିଜ ଗୋଡ଼ରେ ଛିଡ଼ାହୋଇ ପାରିଥିବେ । ପୁଅଝିଅମାନେ ଅବଶ୍ୟ ଭାବିନେଇଥିବେ ଯେ ତେଜସ୍ୱୀ ସହିତ ମା' ମଧ୍ୟ ମରିଯାଇଛି । ଗାଁ ଲୋକମାନେ ସେହି କଥା ଜାଣିଥିବେ । ଆତ୍ମୀୟସ୍ୱଜନ ଓ କଂଗ୍ରେସକର୍ମୀମାନେ ତାହାହିଁ ବିଶ୍ୱାସ କରିଥିବେ ।

ଅନ୍ତରାତ୍ମା ପ୍ରଶ୍ନ ଉଠାଇଲା, ଆରୋଗ୍ୟ ଲାଭ ପରେ ନିଜର ପୁଅଝିଅଙ୍କୁ ଦେଖିବାଲାଗି ନ ଯିବା ହେବ ମାତୃତ୍ୱ ପ୍ରତି ଅବମାନନା । କାହିଁକି ବା ନ ଯିବେ ? ନିଜର ପରିଚୟ ନ ଦେଇ ସେମାନଙ୍କୁ ଦୂରରୁ ଦେଖିପାରିଲେ ମାତୃପ୍ରାଣ ପରିତୃପ୍ତ ହେବ । କୁଷ୍ଠରୋଗିଣୀ ଅଥବା ଭିଖାରୁଣୀ ଭାବରେ ମଧ୍ୟ ସେମାନଙ୍କୁ ଦୂରରୁ କିମ୍ବା ନିକଟରୁ ଦେଖିପାରିବା ସମ୍ଭବ । ପାଷାଣ ତରଳିଗଲା ପରି ମମତାଙ୍କ ପ୍ରାଣ ପିଣ୍ଡରେ ଏକ ଅସ୍ୱାଭାବିକ ପ୍ଲାବନ ସୃଜିତ ହେଲା ।

ବିଗଳିତ କରୁଣାର ସ୍ରୋତସ୍ୱିନୀ ମଧ୍ୟରେ ପୁଣି ଜଳିଉଠିଲା ମାନସିକ ଦାବାଗ୍ନି । କେଉଁ ପ୍ରକାର ବୀଭତ୍ସ ଓ କୁତ୍ସିତ ରୂପ ନେଇ ଦେଶବାସୀଙ୍କ ସମ୍ମୁଖରେ କହିପାରିବି ଯେ ମୁଁ ଶିବାନନ୍ଦବାବୁଙ୍କ କନ୍ୟା ମମତା ? କେଉଁ ମୁହଁରେ ପରିଚୟ ଦେବି, ମୁଁ ସହିଦ ତପସ୍ୱୀବାବୁଙ୍କ ଧର୍ମପତ୍ନୀ ମମତା ? କେଉଁ ସାହସରେ କହିବି, ମୁଁ ସେହି ବୀରପୁତ୍ର ତେଜସ୍ୱୀର ଜନନୀ ମମତା !

ପୁନର୍ବାର ମନ ମଧ୍ୟରେ ପ୍ରବଳ ଝଡ଼ଝଞ୍ଜା ! କେତେଦିନ ଏହି ଦରିଦ୍ର ଗିରିଜନମାନଙ୍କ ଉପରେ ବୋଝ ହୋଇ ରହିବି ? ମୃତ୍ୟୁ ପର୍ଯ୍ୟନ୍ତ ସେମାନେ ପାଳନ କରିବେ ସତ୍ୟ । କିନ୍ତୁ ଯେଉଁମାନେ ଚିରଦିନ ଦଳିତ ଓ ଅବହେଳିତ ଅବସ୍ଥାରେ ଦୀନଦୁଃଖୀ ଭାବରେ ଜୀବନଯାପନ କରୁଛନ୍ତି, ସେହି ଅସହାୟ ମଣିଷମାନଙ୍କର ସାହାଯ୍ୟ ଓ ସେବା ଭୋଗକରି ମୃତ୍ୟୁପର୍ଯ୍ୟନ୍ତ ଆରାମରେ ରହିବା ଉଚିତ ହେବ ନାହିଁ ।

ସଂକଳ୍ପ ନେବାକୁ ଇଚ୍ଛା ହେଲା - ପର୍ବତ ତଳେ ବହି ଯାଉଛି ଖରସ୍ରୋତା ସ୍ରୋତସ୍ୱିନୀ । ତାହାର ଅଗାଧ ଗର୍ଭରେ ଝାସ ଦେଲେ, ରକ୍ଷା ପାଇଯାଇଥିବା ପ୍ରାଣଟି ଚିରଦିନପାଇଁ ନିର୍ବାପିତ ହୋଇଯିବ ।

## ॥ ୨୨ ॥

କେତେକ ସପ୍ତାହ ପରେ ଦିନେ ପ୍ରଭାତ ସମୟରେ ଦେହୁରି ଗୁରୁ ଗୁମ୍ଫା ଭିତରକୁ ଆସି ମମତାଙ୍କର ସମସ୍ତ ଶରୀର ପରୀକ୍ଷା କରି ଦେଖିଲେ । ଆତ୍ମସନ୍ତୋଷ ଲାଭ କରି ସେ କରାଳୀ ଓ ଈଶାକୁ ଆଦେଶ ଦେଲେ, ''ମା'ଙ୍କ ଦେହରେ ଏଣିକି ଆଉ ପତ୍ରଗୁଡ଼ାକ ବାନ୍ଧିବ ନାହିଁ । ଦେଖିବ, ଦେହରେ ଯେପରି ମୁକ୍ତ ପବନ ଲାଗିବ । ତାଙ୍କ ହାତରେ ଖଣ୍ଡିଏ କାଠ ବା ବାଉଁଶ ବାଡ଼ି ଧରାଇଦେଇ ପ୍ରତିଦିନ ସକାଳେ ଓ ସନ୍ଧ୍ୟାରେ ଗୁମ୍ଫା ବାହାରକୁ ନେଇ ହାତ ଧରି ଧରି ବୁଲାଇବ ଓ ଚଲାଇବ । କିଛି ଦିନ ବିତିଲା ପରେ ତାଙ୍କୁ ଧରି ଧରି ପର୍ବତ ତଳକୁ ନେଇଯାଇ ସେଠାରେ ଏକାକୀ ଚାଲିବାକୁ କହିବ । ନଦୀ କୂଳେ କୂଳେ ଚାଲିପାରିଲେ ଭଲ ହେବ । ତେଣେ ପ୍ରତିଦିନ ବେଶି ବେଶି ଖାଦ୍ୟ ଓ ଫଳ ଖାଇବାକୁ ଦେବ ଏବଂ ବେଶି ବେଶି ଦୁଧ ପିଇବାକୁ କହିବ । ମୁଁ କେତେକ ମାସ ପାଇଁ ଗୋଟିଏ ଦୂରବର୍ତ୍ତୀ ଅଞ୍ଚଳକୁ ଯାଉଛି । ତୁମ ମା' ବର୍ତ୍ତମାନ ସମ୍ପୂର୍ଣ୍ଣ ସୁସ୍ଥ ବୋଲି ଭାବିନେବ ।''

ଗୁମ୍ଫା ଭିତରୁ ଗୁରୁ ବାହାରିଗଲେ ।

''ଈଶା, ଅଇନା ଖଣ୍ଡିକ ମୋ ମୁହଁ ପାଖକୁ ଆଣିଲୁ ?'' ନିର୍ଦ୍ଦେଶ ଦେଲେ ମମତା ।

ପୁଣି ଥରେ, ଅନେକ ସମୟ ଧରି ମମତା ନିଜର ମୁଖମଣ୍ଡଳଟିକୁ ଅଇନାରେ ଚାହିଁରହିଲେ । କେଶହୀନ ଖପୁରିଟି ମସୃଣ ମୁଗୁନି ପଥର ପରି ଦିଶୁଥାଏ । ନାକ ବୋଲି ପ୍ରତ୍ୟଙ୍ଗଟି ମୁହଁରେ ନ ଥାଏ, ରହିଥାଏ ନାସିକାର ରନ୍ଧ୍ର ଦୁଇଟି । କାନ ଦୁଇଟା ନ ଥାଏ, କିନ୍ତୁ ଶ୍ରବଣ ଶକ୍ତି ପାଇଁ ଗାତ ଦୁଇଟି ରହିଥାଏ । ଆଶ୍ଚର୍ଯ୍ୟ ହୋଇ କହି ପକାଇଲେ, ''ମୋ ହାତ ଦୁଇଟି ପୋଡ଼ି ଯାଇ ନାହିଁ । କିନ୍ତୁ ମୁହଁ ନ ଥିଲେ ହାତର ମୂଲ୍ୟ କ'ଣ ?''

''ମା' ମୁଁ ଆଖିରେ ଦେଖିଛି । ଦେହଟି ହୁ ହୁ ଜଳୁଥିଲାବେଳେ ସେମାନେ ତୁମର ହାତ ଦୁଇଟା ଧରି ଘୋଷାରି ନେଇ ମୁହଁ ଉପରେ ନିଆଁ ଲଗାଇ ଦେଲେ । ସେହି ସମୟରେ ସର୍ଦ୍ଦାର ଦଳବଳ ସହ ପହଞ୍ଚିଯିବାରୁ ଗୁଣ୍ଡାମାନେ ପଳାଇଗଲେ,'' କହିଲା ଈଶା ।

କିଛି ଦିନ ଲାଗି ମମତା ସକାଳେ ଓ ସନ୍ଧ୍ୟାରେ ଗୁମ୍ଫା ବାହାରେ ବିଚରଣ କଲେ । ତାହାପରେ ପ୍ରତିଦିନ ପ୍ରଭାତ ସମୟରେ ପର୍ବତ ତଳକୁ ଆସିପାରିଲେ ଏବଂ ବାଡ଼ି ଧରି ଉପରକୁ ଉଠିପାରିଲେ । ଥରେ ଥରେ ନଦୀ କୂଳରେ ବସି ରହି ନିଜ ମସ୍ତକ ଓ

ମୁଖର ପ୍ରତିବିମ୍ବ ପ୍ରତି ଚାହିଁ ରହି ଭାବୁଥାଆନ୍ତି ଯେ ନିଜର ପିତାମାତା କିମ୍ବା ପୁତ୍ରକନ୍ୟା ମଧ୍ୟ କଳ୍ପନା କରିପାରିବେ ନାହିଁ ଯେ ସେହି ମହିଳାଜଣକ ହେଉଛନ୍ତି ମମତା ।

ଆସିଗଲା ଏକ ପୂର୍ଣ୍ଣିମା ତିଥି । ଗିରିଜନମାନଙ୍କର ବାର୍ଷିକ ଉତ୍ସବ ଦିବସ । ସର୍ଦ୍ଦାର ଓ ଗାଁ ଲୋକେ ଆସିଗଲେ । ସନ୍ଧ୍ୟାବେଳେ ସେମାନେ ନେଇଗଲେ ମମତାଦେବୀଙ୍କୁ ସେମାନଙ୍କ ଠାକୁରାଣୀ ପୀଠ ନିକଟକୁ । ସେଠାରେ ତାଙ୍କୁ ନୂଆ ଲୁଗା ପିନ୍ଧାଇ ଓ ମୁଣ୍ଡ ଉପରେ କଳାରଙ୍ଗର ଓଢ଼ଣା ରଖି ବସାଇ ଦିଆଗଲା । ଆରମ୍ଭ ହେଲା ପୂଜା ଅର୍ଚ୍ଚନା । ପୂଜା ଶେଷରେ ଚାଲିଲା ଆଦିବାସୀ ଯୁବକ ଯୁବତୀମାନଙ୍କର ନୃତ୍ୟ । ବାଦ୍ୟଧ୍ୱନିର ତାଳ ସହିତ ମିଶିଯାଉଥାଏ ସେମାନଙ୍କର ଅଙ୍ଗଭଙ୍ଗୀ ।

ପର୍ବ ପାଳନ ଶେଷ ହେଲା ପରେ ସମସ୍ତେ ବିଦାୟ ନେଲେ । ମମତା ଓ ସର୍ଦ୍ଦାର ବସିରହିଲେ ଏକାକୀ । କିଛି ସମୟ ଦେବୀଙ୍କ ଉଦ୍ଦେଶ୍ୟରେ ପ୍ରାର୍ଥନା କଲା ପରେ, ସର୍ଦ୍ଦାର ମମତାଙ୍କୁ ଉଠିବାକୁ କହିଲେ । ସେହି ସୁଯୋଗରେ ମମତା ହଠାତ୍ ଧରିପକାଇଲେ ମାଝି ସର୍ଦ୍ଦାରଙ୍କ ଦୁଇଟି ପାଦ । କହିଗଲେ, ''ପୁଅ, ମୋ ପ୍ରାଣ ରକ୍ଷା କରିଛ । ଏବେ ମୋର ଏକାନ୍ତ ଅନୁରୋଧଟିଏ ରକ୍ଷା କରିବ ବୋଲି ଦେବୀଙ୍କ ଆଗରେ ଜବାବ ଦିଅ ।''

''ଯାହା କହିବ ମାନିବି । ଦେବୀଙ୍କ ଆଗରେ ଶପଥ କରୁଛି ।''

''ଥରେ ମାତ୍ର ମୋତେ ଏକାକୀ ଛାଡ଼ିଦିଅ । ମୁଁ ଚାଲିବା ଶକ୍ତି ପାଇଯାଇଛି । ମୋ ଦେହକୁ ବଳ ଆଣିଦେଇଛ । କିଛିଦିନପାଇଁ ନିଜ ଜନ୍ମସ୍ଥାନରେ ବୁଲିଆସିବାକୁ ଇଚ୍ଛା ହେଉଛି ।''

ତଟସ୍ଥ ଅବସ୍ଥାରେ ସର୍ଦ୍ଦାର ଦେବୀ ମୂର୍ତ୍ତି ଦିଗକୁ ଚାହିଁ ରହି ଉତ୍ତର ଦେଲେ, ''ଶପଥ ଭାଙ୍ଗିପାରିବି ନାହିଁ । ତୁମର ଇଚ୍ଛାରେ ବାଧା ଦେବି ନାହିଁ । ମା', ତୁମକୁ ତୁମ ଗାଁ ଲୋକ ଖୋଜିବାକୁ ଆସିଥିଲେ । ସେତେବେଳକୁ ଆମେ ତୁମକୁ ନେଇ ଗୁମ୍ଫାମଧ୍ୟରେ ଲୁଚାଇ ରଖିଥିଲୁ । ଭାବିଥିଲୁ, ତୁମର ଜୀବନ ରହିବ ନାହିଁ । କହିଥିଲୁ, ତୁମେ ମରିଯାଇଛ । ରଜାଙ୍କ ଚରମାନଙ୍କୁ ଠକାଇବା ଲାଗି ପ୍ରଚାର କରିଦେଇଥିଲୁ ଯେ ତୁମର ଦେହଟିକୁ ଚିତାରେ ପୋଡ଼ି ଦିଆଯାଇଛି । ତୁମ ଗାଁ ଲୋକଙ୍କ ନିକଟରୁ ଶୁଣିଥିଲି, ତୁମର ପୁଅ ଝିଅ ଅଛନ୍ତି । ଶୁଣିଥିଲି, ସେମାନେ କଲିକତା ସହରରେ ପାଠ ପଢୁଛନ୍ତି । ବୋଧହୁଏ ସେହିମାନଙ୍କୁ ଦେଖିବାଲାଗି ତୁମର ପ୍ରାଣ କାନ୍ଦୁଛି । ମୁଁ ଜବାବ ଦେଉଛି, ଦିନେ ରାତିରେ ତୁମକୁ ନେଇ ଆମ ପାଖ ଷ୍ଟେସନରେ ଗାଡ଼ିରେ ବସାଇ ଦେଇ ଆସିବି । ସେଠାରୁ କଲିକତା ଯାଇପାରିବ । ଟିକଟ କିଣିଦେବି ।''

କୃତକୃତ୍ୟ ମନ ଓ ଉଦ୍‌ଗ୍ରୀବ ଚିତ୍ତରେ ମମତା ସର୍ଦ୍ଦାରଙ୍କ ପ୍ରତିଶ୍ରୁତ୍ ରାତିଟି ପ୍ରତି ଅପେକ୍ଷା କରି ରହିଲେ । ଦିନେ ସକାଳେ ଦେଖିଲେ, ତାଙ୍କର ସେବା କରିବାକୁ ଆସି କରାଳୀ ଓ ଈଶା ନିଜ ନିଜ କୋହ ଚାପିରଖି, ଆଖିରେ ପଣତ ଦେଇ ନୀରବରେ ଛିଡ଼ା ହୋଇ ରହିଛନ୍ତି । ''କ'ଣ ହୋଇଛି ରେ ? ଆଖି ପୋଛୁଛ କିଆଁ ?'' ପଚାରିଲେ ମମତା ।

''ମା' ତୁମେ ଆମକୁ ଛାଡ଼ି ଚାଲିଯିବ ? ସର୍ଦ୍ଦାର କହୁଥିଲେ, ଆଜି ସନ୍ଧ୍ୟାପରେ ତୁମକୁ ତମ ଘର ପାଖକୁ ପଠାଇଦେବେ ।'' କହିଲା କରାଳୀ ।

''ଦୁଇ ଝିଅ ଆସ, ମୋ ପାଖରେ ବସ । ମୋ କଥା ଶୁଣ ।''

ଦୁହେଁ ପାଖକୁ ଆସିଲାକ୍ଷଣି ମମତା ଉଭୟ ବାହୁରେ ସେମାନଙ୍କୁ କୁଣ୍ଢାଇ ଧରିଲେ । ସ୍ନେହ, ଶ୍ରଦ୍ଧା ଓ କୃତଜ୍ଞତାର ଭାବପ୍ରବଣତା ତାଙ୍କୁ ଅଥୟ କରିପକାଇଲା । ଭାବିଗଲେ, ସମ୍ପୂର୍ଣ୍ଣ ଅପରିଚିତା ଦୁଇଟି ସରଳମନା ଆଦିବାସୀ ଝିଅ ବର୍ଷ ବର୍ଷ ଯାବତ୍ ତାଙ୍କର ସେବା କରିଗଲେ କିପରି ? କେଉଁପ୍ରକାର ମନୋଭାବ ସହ ! ପ୍ରତିଦାନରେ କିଛି ପାଇବା ପାପ ସେମାନଙ୍କ ମନକୁ ସ୍ପର୍ଶ ମଧ୍ୟ କରି ନାହିଁ ! ଏହାହିଁ ହେଉଛି ପ୍ରକୃତ ମାନବିକତ୍ୱ, ଏହାହିଁ ମନୁଷ୍ୟର ପୁଣ୍ୟ । ନିଜର ଆତ୍ମୀୟସ୍ୱଜନମାନେ ମଧ୍ୟ ଏପରି ସେବା କରିପାରିବେ କି ନାହିଁ ସେଥିରେ ସନ୍ଦେହ ଜାତ ହେଲା । ମନରେ ବିଶ୍ୱାସ ଆସିଗଲା ଯେ ପ୍ରକୃତ ପ୍ରାକୃତିକ ମଣିଷ ହେଉଛନ୍ତି ଦୁର୍ଗମ ପାର୍ବତ୍ୟାଞ୍ଚଳ ଓ ଅରଣ୍ୟାନୀ ମଧ୍ୟରେ ବାସ କରୁଥିବା ଗିରିଜନମାନେ । ତଥାକଥିତ ଶିକ୍ଷା ଓ ସଭ୍ୟତାର ଆଲୋକ ପଶିପାରି ନାହିଁ ବୋଲି ବୋଧହୁଏ ସେମାନେ ଅକୃତ୍ରିମ ମନୁଷ୍ୟ ଭାବରେ ଜୀବନଧାରଣ ନ କରି ପରମ ସୁଖ ଶାନ୍ତି ଭୋଗ କରିପାରୁଛନ୍ତି ।

''ମୋ ମା' ଦୁଇଜଣ, ମୋ ପାଇଁ ଦୁଃଖ କର ନାହିଁ । ମୁଁ ଚାଲିଯାଉଛି ସତ । ଦେଶର ସ୍ୱାଧୀନତାପାଇଁ ମୋ ସ୍ୱାମୀ ଓ ପୁଅ ଜୀବନ ଦେଲେ । ମରଣ ମୁହଁରୁ ମୋତେ ତୁମେମାନେ ବଞ୍ଚାଇ ରଖିଲ । ଯେଉଁ ସ୍ୱାଧୀନତା ଲାଗି ଏତେ ଲଢ଼ାଇ ହେଲା, ସେହି ସ୍ୱାଧୀନ ଦେଶର ରୂପ ଦେଖିବାକୁ ଇଚ୍ଛା ହେଲା ବୋଲି ମୁଁ ଯାଉଛି । ସେଥିପାଇଁ ସର୍ଦ୍ଦାର ମୋତେ ରେଳଗାଡ଼ିରେ ବସାଇ ଦେଇ ଆସିବେ ।''

''ମା', ଆମେ ବି ସ୍ୱାଧୀନତା ପାଇଛୁ । କାହିଁ, ରେଳଗାଡ଼ି ତ ଏ ଆଡ଼କୁ ଆସୁ ନାହିଁ,'' କହିଲା କରାଳୀ ।

''ନିଶ୍ଚୟ ଆସିବ, ଦିନେ ନା ଦିନେ ରେଳଗାଡ଼ିରେ ବସି ତୁମେମାନେ ବାହାର ଜାଗାଗୁଡ଼ିକୁ ଯିବା ଆସିବା କରିବ । ବିଦେଶୀମାନେ ଆମ ଦେଶର ସବୁ ଧନ ନିଜ

ଦେଶକୁ ନେଇ ପଳାଉଥିଲେ । ଏବେ ସେମାନେ ହଟି ଯାଇଛନ୍ତି । ତେଣୁ, ସବୁ ଧନସମ୍ପତ୍ତି ଏବେ ଆମ ଲୋକଙ୍କର । ସମସ୍ତେ ସମାନ ଭାବରେ ତାହା ଭୋଗ କରିବେ ।''

ଈଶା ପଚାରିଲା, ''ମା', ତୁମେ ସହରକୁ ଯିବ ? ଶୁଣିଲି, ସବୁଠାରୁ ବଡ଼ ସହର । ସେଠାରେ ସ୍ୱାଧୀନତାର ଚେହେରା ଦେଖିବ ?''

''ହଁ, ମା' ମୁଁ କଲିକତା ସହରକୁ ଯିବି । ଏତେବେଳକୁ ସେଠାକାର ଅବସ୍ଥା ବଦଳି ଯାଇଥିବ ।''

ଦୁଇ ବାଳିକାଙ୍କ କପାଳରେ ମମତା ଚୁମ୍ବନ ଦେଲେ । ସେମାନେ ଫଳ ଖୁଆଇ ଓ ଦୁଧ ପିଆଇ ଗୁମ୍ଫା ଗର୍ଭରୁ ବାହାରିଗଲେ । ମମତା ନିଜର ପୁରୁଣା ଲୁଗାଗୁଡ଼ିକ ସହିତ ସଦ୍ୟ ମିଳିଥିବା ନୂଆଲୁଗା ଓ କଳା ଆବରଣଟିକୁ ସଜାଇ ରଖିଲେ । ମଧ୍ୟାହ୍ନ ବେଳକୁ ଭାତ ଓ ପରିବା ସିଝା ଆସିଗଲା । କରାଳୀ କହିଲା, ''ସର୍ଦ୍ଦାର କହିଛନ୍ତି, ଖାଇସାରି ନିଘୋଡ଼ ନିଦରେ ଶୋଇପଡ଼ିବ । ସାରାରାତି ଉଜାଗର ରହି ଦଶକୋଶ ବାଟ ଚାଲିବାକୁ ହେବ । ଏତେ ବାଟ ବଣ ଭିତରେ ତୁମକୁ ଚାଲିବାପାଇଁ କଷ୍ଟ ହେବ । ତେଣୁ, ଆମେ ଦୁଇଜଣ ସାଙ୍ଗରେ ଯିବୁ ବୋଲି ଜିଦ୍ ଧରିବାରୁ ସର୍ଦ୍ଦାର ସେଥିରେ ରାଜି ହୋଇଛନ୍ତି ।''

ପରିତୃପ୍ତ ମନରେ ଖାଇସାରି ଶୋଇଲା ବେଳେ ମମତାଙ୍କ ଆଖି ଆଗରେ ଭାସି ଯାଉଥାଏ କଲିକତା ସହରର ଦୃଶ୍ୟ, କବିତାଦେବୀଙ୍କ ବାସଗୃହ ଏବଂ ସେଥିସଙ୍ଗେ କରୁଣା, ସ୍ୱରାଜ ଓ ସ୍ୱାଧୀନର ଉଜ୍ଜ୍ୱଳ ମୁହଁଗୁଡ଼ିକ ।

ରାତି ଆସିଗଲା ପରେ ପରେ ବାଁ ହାତରେ ଲଣ୍ଠନଟିଏ ଓ ଡାହାଣ ହାତରେ ସୁଲମ୍ବ ବର୍ଚ୍ଛାଟିଏ ଧରି ପହଞ୍ଚିଗଲେ ସର୍ଦ୍ଦାର । ସାଙ୍ଗରେ ଥାଆନ୍ତି କରାଳୀ ଓ ଈଶା । ହାତରେ ଆଣିଥାନ୍ତି ରାତ୍ରିଭୋଜନ । ମମତା ଖାଉଥିବା ବେଳେ ସେମାନେ ପାଖରେ ବସି କାନ୍ଦୁଥାନ୍ତି । ଈଶା କହିଲା, ''ମା', ନିଜ ପୁଅଝିଅକୁ ପାଇଗଲା ପରେ ତୁମେ ଆମକୁ ଭୁଲିଯିବ । ଆମେ କିନ୍ତୁ ତୁମକୁ ବରାବର ମନେ ରଖିଥିବୁ, ମରିବା ପର୍ଯ୍ୟନ୍ତ ।''

ମମତା ବୁଝାଇଲେ, ''ତୁମମାନଙ୍କୁ ଭୁଲିଯିବା ଅପେକ୍ଷା ବରଂ ନରକରେ ରହିବାକୁ ଭଲ ପାଇବି । ତୁମେମାନେ କଷ୍ଟ କରି, ଘୃଣା ନ କରି ମୋ ଜୀବନ ରଖିଦେଲ ବୋଲି ଆଜି ପୁଅଝିଅଙ୍କୁ ଦେଖିବାକୁ ଯାଇପାରୁଛି । ଠାକୁରାଣୀଙ୍କ ଦୟା ହେଲେ ଦିନେ ତୁମ

ଦୁଇଜଣଙ୍କୁ ମୋ ପୁଅଝିଅଙ୍କ ଘରକୁ ନେଇଯିବି । ସେମାନଙ୍କୁ କହିପାରିବି, ତୁମେ ଦୁଇଜଣ ହେଉଛ ମୋର ପ୍ରକୃତ ଝିଅ ଓ ମା' । ରେଳଗାଡ଼ି ଚଢ଼ିବ, ସହର ଦେଖିବ, ଅନେକ ନୂଆ ନୂଆ ଜାଗା ବୁଲିବ ।''

ସେମାନଙ୍କ ଆଖିରୁ ଲୁହ ପୋଛି ଦେଉଥିଲାବେଳେ ସର୍ଦ୍ଦାରଙ୍କ ଡାକ ଶୁଭିଲା, ''ଡେରି କର ନାହିଁ । ଶୀଘ୍ର ବାହାରି ଆସ । ଅନେକ ବାଟ । ସକାଳ ବେଳକୁ ଗାଡ଼ି ଲାଗିବ ।''

ଦୁର୍ଗମ ଜଙ୍ଗଲ ପଥରେ ସର୍ଦ୍ଦାର ଆଗେଇ ଚାଲିଥିଲାବେଳେ କରାଳୀ ଓ ଈଶାର କାନ୍ଧ ଉପରେ ନିଜର ଦୁଇ ବାହୁ ରଖି ମମତା ଦ୍ରୁତ ପଦକ୍ଷେପରେ ଆଗେଇ ଚାଲିଲେ । ରାତିକ ମଧ୍ୟରେ ଦଶ କୋଶ ବାଟ ଅତିକ୍ରମ କରିବା ଅତୀବ କଷ୍ଟକର ଥିଲେ ମଧ୍ୟ ଅସାଧ୍ୟ ଜଣାଗଲା ନାହିଁ । ''ମା', ତୁମେ ଏତେ ଦୂର ବାଟ ଚାଲିପାରିବ ବୋଲି କେବେ ଭାବି ପାରି ନ ଥିଲି । ଅଳ୍ପ ଦୂର ଯାଇ ଫେରିପଡ଼ିବ ଜାଣି ତୁମ ଚାଳଘରଟି ସଫା କରି ରଖିଥିଲି ।'' କହିଲେ ମାଝି ସର୍ଦ୍ଦାର ।

ଆଦିବାସୀ ରାଇଜଟି ସେତେବେଳକୁ ମିଶି ଯାଇଥାଏ ପାର୍ଶ୍ୱବର୍ତ୍ତୀ ସରକାରୀ ଜିଲ୍ଲା ସହିତ । ଅବଶ୍ୟ ପାହାଡ଼ ଓ ଜଙ୍ଗଲମୟ ଅଞ୍ଚଳ ଥିବାଯୋଗୁଁ ଉଭୟ ସ୍ଥାନ ମଧ୍ୟରେ ଥିବା ପୂର୍ବକାଳର ପାର୍ଥକ୍ୟ ଏବେ ମଧ୍ୟ ଆଗପରି ରହିଥାଏ ।

ସର୍ଦ୍ଦାର କଲିକତା ପର୍ଯ୍ୟନ୍ତ ଟିକଟଟିଏ କିଣି ମମତାଙ୍କ ହାତରେ ଧରାଇଦେଲେ । ଦୁଇଗୋଟି ଆଠଅଣି ଦେଲେ ବାଟରେ ଖର୍ଚ୍ଚ କରିବାପାଇଁ । ପ୍ରଭାତ ସମୟରେ ପ୍ରଚଣ୍ଡ ଶବ୍ଦ କରି ଛୋଟିଆ ଜନଶୂନ୍ୟ ପ୍ଲାଟଫର୍ମ ଭିତରକୁ ପଶିଆସିଲା ପ୍ରକାଣ୍ଡ ଖଣ୍ଡିଏ ରେଳଗାଡ଼ି । ଈଶା ଓ କରାଳୀ ଆଶ୍ଚର୍ଯ୍ୟ ଭାବରେ ଦେଖୁଥାନ୍ତି ସେହି ଅଦ୍ଭୁତ ଯନ୍ତ୍ର । ମମତା ସର୍ଦ୍ଦାରଙ୍କ ପାଦ ସ୍ପର୍ଶ କରିବା ସହ କରାଳୀ ଓ ଈଶା ମୁଣ୍ଡରେ ଚୁମ୍ବନ ଦେଇ ଉଠିପଡ଼ିଲେ ଗାଡ଼ିର ଗୋଟିଏ ତୃତୀୟ ଶ୍ରେଣୀ ଡବା ଭିତରକୁ । ଗାଡ଼ି ଛାଡ଼ିଲା ବେଳେ ସର୍ଦ୍ଦାର କାନ୍ଦୁଥାନ୍ତି । ଈଶା ଓ କରାଳୀର ଆଖି ଉପରେ ରହିଥାଏ ପଣତ କାନି ।

ଟ୍ରେନ୍ ଚାଲିଲା ପୂର୍ବ ଦିଗକୁ । ମେଜିଆ ଉପରେ ବସିରହି ମମତା ଭାବିବାକୁ ଲାଗିଲେ କଲିକତା ସହର ଏକ ନୂତନ ରୂପରେ ସ୍ୱାଧୀନତାର ମର୍ଯ୍ୟାଦା ପ୍ରଦର୍ଶନ କରୁଥିବ । ରାସ୍ତାଘାଟର ଅବସ୍ଥା ପୂର୍ବପରି ଅପରିଷ୍କାର-ଅପରିଚ୍ଛନ୍ନ ନ ଥିବ । ସ୍ୱାଧୀନତା ସଂଗ୍ରାମୀମାନେ ଏବେ ଦେଶସେବକ ଭାବରେ ନୂତନ ଭୂମିକାରେ ଅବତୀର୍ଣ୍ଣ ହୋଇ ସାରିଥିବେ । ସ୍ୱାଧୀନ ଦେଶର ମୁକ୍ତ ନାଗରିକମାନେ ନୂତନ ପ୍ରେରଣାରେ ଦେଶ ଗଠନ

କାର୍ଯ୍ୟରେ ଲାଗି ପଡ଼ିଥିବେ । ବ୍ରିଟିଶ ଯୁଗର ନାଲି ପଗଡ଼ିବାଲା ପୁଲିସ ଏବେ ନ ଥିବେ । ସେମାନଙ୍କ ସ୍ଥାନରେ ଦେଖିବାକୁ ମିଳିବ ଏକ ସାଧାରଣତନ୍ତ୍ରର ନୂତନ ପୁଲିସବାହିନୀ ଯେଉଁମାନଙ୍କ କର୍ତ୍ତବ୍ୟ ହୋଇଥିବ ନାଗରିକମାନଙ୍କର ସୁରକ୍ଷା । ସାହେବମାନଙ୍କ ସମୟର ନିଷିଦ୍ଧ ସ୍ଥାନଗୁଡ଼ିକ ହୋଇଯାଇଥିବ କଲିକତାବାସୀଙ୍କ ଭ୍ରମଣ ଲାଗି ମୁକ୍ତ ପ୍ରାଙ୍ଗଣ । ମହାନଗରୀର ଜନରାଶି ପୂର୍ବପରି ନିର୍ଜୀବ ଅବସ୍ଥା ପରିବର୍ତ୍ତେ ସତେଜ ଅବସ୍ଥା ଧାରଣ କରିଥିବେ । ସେଥିସଙ୍ଗେ ଆସି ଯାଇଥିବ ନୈତିକ ମୂଲ୍ୟବୋଧ, ନୂତନ ଶିକ୍ଷା ଦୀକ୍ଷା ଏବଂ ଶାନ୍ତିମୟ ପରିବେଶ ।

ଚିନ୍ତା କରିବାକୁ ଲାଗିଲେ କଲିକତାରେ ନିଜର କାର୍ଯ୍ୟସୂଚୀ ବିଷୟ । ପ୍ରଥମେ ନିଶ୍ଚୟ ଚାଲି ଚାଲି ଯିବାକୁ ହେବ କବିତାଦେବୀଙ୍କ ଘରକୁ । ସେଠାରେ ନିଜର ପରିଚୟ ଦେବାକୁ ସାହସ ହେଲା ନାହିଁ । ତଥାପି ସାହସ କଲେ । ନିଜର ମୁଖମଣ୍ଡଳ ଆବୃତ ରଖି ଘଟି ଯାଇଥିବା ସମସ୍ତ ବୃତ୍ତାନ୍ତ ବର୍ଣ୍ଣନା କଲେ ତାଙ୍କ କଣ୍ଠସ୍ୱରରୁ ସେ ଜାଣିପାରିବେ ବୀଭତ୍ସମୁଖୀ ମହିଳାଟି ହେଉଛନ୍ତି ମମତା । ଝିଅ କରୁଣା ଯଦି ଶାଶୁଘରକୁ ନ ଯାଇ କବିତାଙ୍କ ପାଖରେ ରହିଥିବ, ନିଜ ମା'ର କଥା ଶୁଣିପାରିଲେ ଦୌଡ଼ି ଆସି କୁଣ୍ଢାଇ ଧରିବ । ଯଥାଶୀଘ୍ର ପହଞ୍ଚି ଯିବେ ସ୍ୱରାଜ ଓ ସ୍ୱାଧୀନ । ମମତା ଆନନ୍ଦରେ ଅଧୀର ହୋଇ ଉଠିଲେ ।

ଗାଡ଼ି ଚାଲିଥାଏ । ବିକଳାଙ୍ଗ ବାଳକଟିଏ ଛିଣ୍ଡା ପେଣ୍ଟଟିଏ ପିନ୍ଧି ଖୋଲା ଦେହରେ ରେଳଡବାର ପ୍ରତ୍ୟେକ ବେଞ୍ଚ ଓ ସିଟ୍ ତଳେ ପଡ଼ିଥିବା ମଇଳା ଜିନିଷଗୁଡ଼ିକ ଓ ଜମା ହୋଇଯାଉଥିବା କୋଇଲାଗୁଣ୍ଡ ଓ ଧୂଳି ମଳି ସଫା କରିବା ଲାଗି ଆଣ୍ଠେଇ ପଡ଼ି ବା ଶୋଇପଡ଼ି କାମ କରିଯାଉଥାଏ । କେହି କେହି ଯାତ୍ରୀ ତା' ହାତରେ ଗୋଟିଏ ଗୋଟିଏ ପଇସା ଧରାଇ ଦେଉଥିଲେ । କିନ୍ତୁ ଆଉ କେହି କେହି ମାରିବାପାଇଁ ହାତ ଉଠାଉଥିଲେ । ଜଣେ ଭଦ୍ରବ୍ୟକ୍ତିଙ୍କ ପୋଷାକରେ ପିଲାଟିର ମଇଳା ହାତଟି ଲାଗିଗଲା କ୍ଷଣି ସେ ଥାପଡ଼ଟିଏ ବସାଇଦେଲେ । ସେସବୁ ପ୍ରତି ଭ୍ରୂକ୍ଷେପ ନ କରି ପିଲାଟି ମଇଳା ସଫା କରିବାରେ ଲାଗିଥାଏ ଏବଂ ତଳେ ପଡ଼ିଥିବା ଛିଣ୍ଡା ପାଉଁରୁଟି କିମ୍ବା ଅନ୍ୟପ୍ରକାର ଉଚ୍ଛିଷ୍ଟ ନିର୍ବିକାର ଚିତ୍ତରେ ଖାଇଯାଉଥାଏ । ପଇସାଗୁଡ଼ାକ ରଖୁଥାଏ ପେଣ୍ଟ ପକେଟରେ । ସ୍ୱାଧୀନ ଦେଶର ମଧ୍ୟ ମଣିଷ ପିଲାର ଏପରି ଦୁର୍ଦ୍ଦଶା ଦେଖି ମମତା ଅନୁମାନ କରିନେଲେ ଯେ ଦେଶର ଦାରିଦ୍ର୍ୟ ଯେଉଁପରି ଥିଲା ସେହିପରି ରହିଛି । ବରଂ ବଢ଼ିଯାଇଛି ।

ମଧ୍ୟାହ୍ନ ବେଳକୁ ବଡ଼ ଷ୍ଟେସନଟିରେ ଗାଡ଼ି ଅଟକିବ ବୋଲି ଗତି ମନ୍ଥର ହେବା ଦେଖି ପିଲାଟି ପ୍ଲାଟଫର୍ମକୁ ଯିବାଲାଗି ଉଦ୍ୟତ ହେଲା । ମମତା ତାକୁ ପାଖକୁ ଡାକି ଗୋଟିଏ ଆଠଅଣି ଧରାଇ ଦେଇ କାନପାଖରେ କହିଲେ, ''ବାବା, ନେ ଏଇ ଆଠଅଣା ପଇସା । ଷ୍ଟେସନରେ ଜଳଖିଆ ଖାଇବୁ ।'' ଖୁସି ମନରେ ପିଲାଟି ଆଠଅଣିଟିକୁ ନିଜ ବାଁ ପାପୁଲିରେ ଚାପି ରଖିଲା ।

ଗାଡ଼ି ରହିବାମାତ୍ରେ ପିଲାଟି ତଳକୁ ଡେଇଁପଡ଼ିବା କ୍ଷଣି ତାକୁ ଧରି ପକାଇଲା ଜଣେ ପ୍ରକାଣ୍ଡକାୟ ବ୍ୟକ୍ତି । ପ୍ରଥମେ ପକେଟରେ ଥିବା ପଇସାଗୁଡ଼ିକ କାଢ଼ି ନେଇ ହାତରେ ଲୁଚାଇ ରଖିଥିବା ଆଠଅଣିଟିକୁ ଛଡ଼ାଇ ନେଲା ପରେ ଗାଲରେ ଶକ୍ତ ଚଟକଣାଟାଏ ବସାଇ ଦେଲାବେଳେ ଲୋକଟାର ଗର୍ଜନ ଶୁଭିଲା, ''ବଦମାସ୍, ହାତରେ ପଇସା ଲୁଚାଇ ରଖିବାକୁ ଶିଖିଗଲୁଣି ? ଫେରିଲା ପରେ ରାତିରେ ତୋର ବିଚାର ହେବ ।'' ମମତା ଦେଖିପାରିଲେ ସେହି ଅଦ୍ଭୁତ ଦୃଶ୍ୟ । ଭାବିଲେ, ପିଲାଟିକୁ ଜଳଖିଆ ଖାଇବା ଲାଗି ଆଠଅଣିଟା ଦେଇଥିଲି, କିନ୍ତୁ ବଦଳରେ ଖାଇଲା ମାଡ଼ !

ଗାଡ଼ି ଛାଡ଼ିଲା ବେଳକୁ ବାଳକଟି ପୁଣି ଥରେ ଡବା ଭିତରକୁ ଉଠିଆସି ମମତାଙ୍କ ନିକଟରେ ବସି ପଡ଼ିଲା । ସେତେପର୍ଯ୍ୟନ୍ତ ସେ ନିଜ ଗାଲଟିକୁ ଆଉଁଶୁ ଥାଏ । ଆଖିରୁ ଲୁହ ଶୁଖି ନ ଥାଏ ।

''ମୋ ପୁଅଟି ପରା ! ତୋର ନାମ କ'ଣ ? ସେ ଲୋକଟା କିଏ ? ପଇସା ଛଡ଼ାଇ ନେଲା କାହିଁକି ?''

ସ୍ନେହରେ ପିଲାଟିର ମୁଣ୍ଡ ଉପରେ ଚୁମ୍ବନ ଦେଲାବେଳେ ସେ କାନ୍ଦି କାନ୍ଦି କହିଲା, ''ସେ ହେଉଛନ୍ତି ଆମର ଜଣେ ମୁନିବ । ଆମକୁ କାମରେ ଲଗାଏ । ଯାହା ପଇସା ମିଳେ, ସବୁ ଛଡ଼ାଇ ନିଏ । ହେଲେ, ରାତିରେ ମୁଠାଏ ଖାଇବାକୁ ଦିଏ, ଶୋଇବାପାଇଁ ଜାଗା ଦିଏ ଓ ସକାଳେ ମୁଠାଏ ମୁଢ଼ି ଖୁଆଇ ସାରାଦିନ ପାଇଁ କାମ କରିବାକୁ ପଠାଏ । ମୋପରି ଆଉ କେତେଜଣ ପିଲାଙ୍କୁ ସେ ରଖିଛି । ମୋର ନାମ ଦେଇଛି କେମ୍ପା, କାରଣ ମୁଁ ଛୋଟା । ଗୋଟିଏ ଗୋଡ଼ ଭାଙ୍ଗି ଦେଇଛି । ଜଣେ ପିଲାର ଆଖି ଫୁଟାଇ ଦେଇଛି । ଆମକୁ ଭିକ ମାଗି ପଇସା ଆଣିବାକୁ ହୁଏ । ଦିନେ ଦିନେ ରେଳ ଡବାରେ ଝାଡୁ ମାରିବାକୁ ପଠାଯାଏ । ସେ ଲୋକର ନାମ ଜାଣି ନାହିଁ । ତାଙ୍କୁ ତା ନିଜ ଲୋକମାନେ ଦାଦା ବୋଲି ଡାକନ୍ତି । ତା' ଉପର ମାଲିକକୁ ବଡ଼ଦାଦା ବୋଲି କହନ୍ତି ।''

ଏତକ କହି ପିଲାଟି ପୁଣି ଝାଡୁ ଦେବାକୁ ଲାଗିଗଲା ଓ ବିକଳ ଭାବରେ ଗୋଟିଏ ଗୋଟିଏ ପଇସା ମାଗି ପକେଟରେ ରଖିଲା ।

ମମତା ଚିନ୍ତାଗ୍ରସ୍ତ ଭାବରେ ବସିରହିଥାନ୍ତି । ଭାବୁଥାନ୍ତି, ହତଭାଗ୍ୟ ବାଳକଟି କଥା । ମନକୁ ଆସୁଥାଏ ଅନେକ ପ୍ରଶ୍ନ । ପିଲାଟିର କ'ଣ ବାପା ମା' ନ ଥିବେ ! କିମ୍ବା ସେ ଏକ ପରିତ୍ୟକ୍ତ ପିଲା ! ଅନାଥ ଭାବରେ ଯାହାର ପିଲାକାଳ ବିତିଯିବ, ସେ ବା କିପରି ସ୍ୱାଧୀନ ଦେଶର ନାଗରିକ ହୋଇ ଜୀବନ କଟାଇବ ! ପିଲାଟି ଯେଉଁ ସମୟରେ ପାଠ ପଢ଼ିବା ଉଚିତ ସେହି ବୟସରେ ସେ ଭିକ ମାଗି ଜୀବନଧାରଣ କରୁଛି ! ହାୟ, ମୋ ଦେଶ !

ସନ୍ଧ୍ୟାର ଅଳ୍ପ ସମୟ ପୂର୍ବରୁ ରେଳଗାଡ଼ି ହାବଡ଼ା ଷ୍ଟେସନରେ ପ୍ରବେଶ କଲା । ମମତା ସେହି ପିଲାଟିର ହାତ ଧରି ଡବା ଭିତରୁ ପ୍ଲାଟଫର୍ମ ଉପରକୁ ଓହ୍ଲାଇ ଆସିଲେ ।

ହଠାତ୍ ସେହି ଦାଦାଜଣକ ପୁଣି ସେହି ପିଲାଟିର ପକେଟରୁ ପଇସାଗୁଡ଼ିକ କାଢ଼ି ନେବା ସମୟରେ ତା'ର ଆଖି ପଡ଼ିଗଲା ମମତାଙ୍କ ହାତଗୋଡ଼ ଓ ମୁହଁ ଉପରେ । ପାଖରେ ଛିଡ଼ା ହୋଇଥାଏ ଅନ୍ୟ ଜଣେ ଦୁର୍ଦ୍ଦାନ୍ତ ମଣିଷ । ମମତା ଠିକ୍ କରିଥାନ୍ତି, ଚାଲି ଚାଲି ପହଞ୍ଚିଯିବେ କବିତାଦେବୀଙ୍କ ଘରେ । କିନ୍ତୁ ଅକସ୍ମାତ୍ ସ୍ତମ୍ଭିତ ହୋଇ ଶୁଣିଲେ ଦାଦାର ଧମକ - ''ଏ ବୁଢ଼ୀ, ଚାଲ୍ ଆମ ସାଙ୍ଗରେ । ତୋ ମୁହଁ ଦେଖିଲେ ଲୋକଙ୍କର ଦୟା ହେବ, ଭିକ ଦେବେ । ଆମ ଛାଉଣିରେ ଖାଇବାକୁ ଓ ଶୋଇବାକୁ ଦିଆଯାଏ । ଚାଲ୍, ଆମ ସାଙ୍ଗରେ ।''

ଅନ୍ୟ ଲୋକଟା କର୍କଶ ଭାଷାରେ କହିଲା, ''ଏଇ ମାଇକିନିଆଟାର ନାକ ନାହିଁ, କାନ ନାହିଁ, ଓଠ ନାହିଁ । କିନ୍ତୁ ଏଇଟା କୁଷ୍ଠରୋଗୀ ନୁହେଁ । ୟା'କୁ ହାତଛଡ଼ା କରିବା ନାହିଁ ।''

କେମ୍ପା କହିପକାଇଲା, ''ସେ ତାଙ୍କ ସାଙ୍ଗ ଘରକୁ ଯିବେ ବୋଲି ଆସିଛନ୍ତି ।''

''ଚୁପ୍'' ବୋଲି ଧମକ ସହ ଦାଦା ତା' ପିଠିରେ ଦୁଇଟି ଚାପୁଡ଼ା ବସାଇଦେଲା । ପ୍ଲାଟଫର୍ମରେ ଅସଂଖ୍ୟ ଯାତ୍ରୀଙ୍କର ଯାତାୟାତ ଓ କୋଳାହଳ ମଧ୍ୟରେ କେହି ଯେପରି କୌଣସି କଥା ଶୁଣିପାରୁ ନ ଥାନ୍ତି କିମ୍ବା କୌଣସି ବ୍ୟକ୍ତିର ଦୁଃଖଦୁର୍ଦ୍ଦଶା ଦେଖିପାରୁ ନ ଥାନ୍ତି । ମମତା କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥାରେ ଇତସ୍ତତଃ ହେବା ଦେଖି ଦାଦାଜଣକ ତାଙ୍କ କାନ ପାଖରେ ଧମକ ଦେଇ କହିଲା, ''ଶୁଣ୍ ଖେନ୍ଦି, ନାଣ୍ଡିମୁଣ୍ଡୀ, ଅନ୍ଧୁଣୀ, ତୁ ଯଦି ଆମ ସାଙ୍ଗରେ ନ ଯିବୁ, ଷ୍ଟେସନରୁ ବାହାରି ପଡ଼ିଲେ, ତୋତେ ମାରିଦେଇ

ଗଙ୍ଗାକୁ ଫୋପାଡ଼ି ଦେବି । ତୋର ପୁଣି ସାଙ୍ଗ କିଏବେ ? ଆମ ଜାଗାରେ ଏହିପରି ପିଲାମାନଙ୍କ ସାଙ୍ଗରେ ରହିବୁ, ଆମ କଥା ମାନି ଚଳିବୁ । ବଞ୍ଚିରହିବା ପାଇଁ ଖାଇବାକୁ ମିଳିବଟି !''

ଅସହାୟା ମମତା ବାଧ୍ୟହୋଇ ଦୁଇ ଦାଦାଙ୍କ ମଧ୍ୟସ୍ଥଳରେ ଚାଲିଲେ । କ୍ରେମ୍ପା ଚାଲିଥାଏ ପଛରେ । ମର୍ମାହତ ମମତା ଦେଖିଯାଉଥାନ୍ତି ନିୟତିର ଖେଳ । ଷ୍ଟେସନରେ ପୁଲିସ କର୍ମକର୍ତ୍ତାମାନେ ବୁଲୁଥାଆନ୍ତି । ଦାଦାମାନଙ୍କ ଦିଗକୁ ହସି ହସି ଚାହିଁବା ଥିଲା ସେମାନଙ୍କର କର୍ତ୍ତବ୍ୟ । ଶହ ଶହ ଲୋକ ଟିକଟ ନ ଦେଇ ଅନାୟାସରେ ବାହାରି ଚାଲିଯାଉଥାନ୍ତି । ଗେଟ୍ ପାଖରେ ଛିଡ଼ା ଥିବା ରେଳ କର୍ମଚାରୀମାନେ ଟିକଟ ମାଗିବା ପରିବର୍ତ୍ତେ କାହାରି କାହାରି ହାତରୁ ହାତଗୁଞ୍ଜା ନେଇ ସନ୍ତୁଷ୍ଟ ଥାଆନ୍ତି । ଷ୍ଟେସନ ବାହାରକୁ ଆସି ହାବଡ଼ା ପୋଲ ଉପରେ ଜନ ସମୁଦ୍ର ମଧ୍ୟରେ ଦେହରକ୍ଷୀ ପରି ଚାଲିଥିବା ଦାଦାମାନଙ୍କ ହାତରୁ ଖସିଯିବାର ସୁଯୋଗ ଦେଖିପାରିଲେ ନାହିଁ । ସେତେବେଳେ ଅଦୃଷ୍ଟ ନାମକ ଶବ୍ଦଟି ବାରମ୍ବାର ମନେପଡୁଥାଏ । ସେହି ଅଦୃଷ୍ଟ ପଥରେ ଅଗ୍ରସର ହେବା ବିନା ତାଙ୍କ ସମ୍ମୁଖରେ ଅନ୍ୟ କୌଣସି ବିକଳ୍ପ ନ ଥାଏ ।

## ॥ ୨୩ ॥

ସନ୍ଧ୍ୟାବେଳର ଝାପ୍‌ସା ଅନ୍ଧକାର ମଧ୍ୟରେ ଗଙ୍ଗା କୂଳରେ ଦେଖିବାକୁ ମିଳିଲା କେଉଁ ଅଜ୍ଞାତ ସମୟର ଧ୍ୱଂସପ୍ରାପ୍ତ ପକ୍କା କୋଠାଟିଏ । ବୋଧହୁଏ ଇଷ୍ଟଇଣ୍ଡିଆ କୋମ୍ପାନୀ ଅମଳର ବଣିକ-ବ୍ୟବସାୟୀମାନଙ୍କର ପରିତ୍ୟକ୍ତ କେନ୍ଦ୍ର । କୋଠରି ପରେ କୋଠରି ଭାଙ୍ଗି ପଡ଼ିଥିଲା ବେଳେ ପଛ ପଟରେ ରହିଯାଇଥାଏ ମାଟି ତଳେ ଥିବା ଗୋଦାମ ଘରଟି । ମଝେ ମଝେ ଭିତରକୁ ପଶିଆସେ ନଈର ଜୁଆର ଜଳ । ବାହାରକୁ ଭଗ୍ନସ୍ତୂପ ପରି ଦେଖାଯାଉଥିବା ମାଲ୍ ଗୋଦାମଟାର କେଉଁ ଏକ ଅଦୃଶ୍ୟ ସ୍ଥାନରେ ରହିଯାଇଥିବା ଅର୍ଦ୍ଧଭଗ୍ନ ଗୋଟିଏ କୋଠରି ଥାଏ ଦାଦାମାନଙ୍କର ଆଡ୍ଡାସ୍ଥଳୀ ଓ ଅଭାଗା ପିଲାମାନଙ୍କର ଆଶ୍ରୟସ୍ଥଳୀ ଅଥବା ବନ୍ଦିଶାଳା ।

ସୁଡ଼ଙ୍ଗ ପଥରେ ମମତାଦେବୀଙ୍କୁ ନିଆଗଲା ସେହି ସ୍ଥାନକୁ । ପ୍ରାୟ ଆଠ ଦଶଜଣ ବିକଳାଙ୍ଗ ପିଲା ନିଶ୍ଚଳ ଭାବରେ ସେଠାରେ ବସିରହିଥାନ୍ତି । ମମତାଙ୍କୁ ଧରି ଆଣିଥିବା ଦାଦାଜଣକ ତାଙ୍କ ମୁନିବଙ୍କ ଆଗକୁ ଆସି କହିଲା, ''କଲିକତାରେ ଭିକ ମାଗି ବଞ୍ଚିବାପାଇଁ ଆସିଥିବା ଏହି ମାଇକିନିଆଟାକୁ ଷ୍ଟେସନରୁ ଧରି ଆଣିଛି । କୁଷ୍ଠରୋଗୀ

ନୁହେଁ, ଦିଶୁଛି ସେହିପରି । ରାସ୍ତା ଉପରେ ଭଙ୍ଗା ଥାଳିଆ ଦେଇ ବସାଇଦେଲେ ଲୋକେ ତା' ମୁହଁ ଦେଖି ପଇସା ଫୋପାଡ଼ିବେ ।''

ମମତା ଭାବିଲେ, ଏପରି ପାଷଣ୍ଡଗୁଡ଼ାକ ଆଗରେ ପାଟି ଖୋଲିବା ଉଚିତ ନୁହେଁ । ସେମାନେ ଯାହା କହିବେ, ତାହା ମାନିନେବା ବର୍ତ୍ତମାନପାଇଁ ଠିକ୍ ହେବ । ତାଙ୍କର ଦୃଷ୍ଟି ପଡୁଥାଏ ସନ୍ତସନ୍ତିଆ ମେଜିଆ ଉପରେ ବସି ରହିଥିବା ପିଲାମାନଙ୍କ ଉପରେ । ମୁନିବ ବଡ଼ ପାଟିରେ ହୁକୁମ୍ ଜାରି କଲେ, ''ତୋର ନାମ ହେବ ଖେନ୍ଦି । ଦେଖୁଛୁ, ମୁଁ ଏହି ଅନାଥ ପିଲାଗୁଡ଼ାଙ୍କୁ ବଞ୍ଚାଇ ରଖିବା ଲାଗି କେତେ କଷ୍ଟ କରୁଛି । ଖାଇବାକୁ ନ ପାଇ ମରିଯାଇଥାନ୍ତେ । ଏଠାରେ ଆଣି ରଖିଛି ବୋଲି ବଞ୍ଚିଛନ୍ତି । ତୁ ମଧ୍ୟ ଏହିଠାରେ ରହିବୁ । ଖାଇବାକୁ ଦିଆଯିବ । ରାତିରେ ପିଲାଗୁଡ଼ିକଙ୍କର ହେପାଜତ କରିପାରିବୁ । ଦିନବେଳା ଯେଉଁଠାରେ ନେଇ ତୋତେ ବସାଇ ଦିଆଯିବ, ସେହିଠାରେ ସନ୍ଧ୍ୟାପର୍ଯ୍ୟନ୍ତ ବସି ରହି ହାତ ପତାଇ ଭିକ ମାଗିବୁ । ତୋ ମୁହଁ ଦେଖିଲେ ବାବୁମାନଙ୍କର ଦୟା ହେବ ।''

କାନ୍ଥ ପାଖରେ ଶୋଇବା ଲାଗି ଛିଣ୍ଡା ମସିଣାଟିଏ ପକାଇ ଦିଆଗଲା । ମୁନିବ କାର୍ଯ୍ୟବ୍ୟସ୍ତ ଅଛନ୍ତି କହି ଚାଲିଗଲେ । ଦୁଇଜଣ ଦାଦା ପିଲାମାନଙ୍କୁ ଜଗି ରହିବା ପାଇଁ ରହିଲେ । ସେମାନଙ୍କ ଧାରଣା ହୋଇଥାଏ, ମମତାର ଓଠ ନାହିଁ, ତେଣୁ ସେ ବୋବା; କାନ ନାହିଁ ତେଣୁ ସେ କାଲ ଏବଂ ଆଖିପତା ନ ଥିବାରୁ ସେ ଅନ୍ଧ ।

ରାତ୍ରି ପ୍ରାୟ ପହରେ ବେଳକୁ ପିଲାମାନଙ୍କ ଖାଇବାପାଇଁ ମାଟି ଉପରେ ଶାଳପତ୍ର ପଡ଼ିଲା । ବାହାରର କୌଣସି ସ୍ଥାନରୁ ହାଣ୍ଡିଏ ଭାତ ଓ ଲୋଟାଏ ଡାଲି ଆସିଥାଏ । ଜଣେ ଦାଦା ଅଭ୍ୟାସଗତ ଭାବେ ମେଞ୍ଚାଏ ମେଞ୍ଚାଏ ଶୁଖିଲା ଭାତ, ଟିକିଏ ଟିକିଏ ଡାଲି ଓ ଖଣ୍ଡିଏ ଖଣ୍ଡିଏ ତେନ୍ତୁଳି ପ୍ରତ୍ୟେକ ପତ୍ର ଉପରେ ଥୋଇଦେଇ ଖାଇବାକୁ ଆଦେଶ ଦେଲେ । ଶୃଙ୍ଖଳାଗତ ଭାବେ ପିଲାମାନେ ନିଜ ନିଜ ଛିଣ୍ଡା ପେଣ୍ଟ କାଢ଼ି ରଖି ଖଣ୍ଡିଏ ଖଣ୍ଡିଏ ମଇଳା ଗାମୁଛା ପିନ୍ଧି ଖାଇବାକୁ ବସିଗଲେ । କାହାରି ପାଟିରେ ଭାଷା ନ ଥାଏ ।

ମମତାଦେବୀଙ୍କ ପାଇଁ ମଧ୍ୟ ପତ୍ର ପଡ଼ିଲା । ଦାଦା ଖଣ୍ଡିଏ ଛିଣ୍ଡା ମଇଳା ଲୁଗା ଧରାଇଦେଇ ହୁକୁମ୍ ଦେଲେ, ''ଯେଉଁ ଲୁଗାଟା ପିନ୍ଧିଛୁ ସେଇଟା ମୁଣ୍ଡତଳେ ତକିଆ କରି ଶୋଇବୁ । ଏଇଟା ପିନ୍ଧି ଶୋଇବୁ ଓ ଭିକ ମାଗିବାକୁ ଯିବୁ ।''

ମମତା ଅନୁଭବ କଲେ, ଭୋକ ଲାଗିଥିଲାବେଳେ ଯାହା ମିଳିଲେ ମଧ୍ୟ ଖାଇବାକୁ ହୁଏ । ଜାଣିପାରିଲେ, ରାସ୍ତା କଡ଼ର କୌଣସି ବାଜେ ହୋଟେଲରୁ ଆଗ ଦିନର ବଳକା ବାସି ଭାତ ଓ ଡାଲି ସମସ୍ତଙ୍କୁ ଖାଇବାକୁ ଦିଆଯାଇଛି ।

ଦିନ ସାରା ପରିଶ୍ରମ କରିଥିବା ପିଲାଗୁଡ଼ାକ ଗାଢ଼ ନିଦରେ ଶୋଇପଡ଼ିଲେ । କେବଳ ଦାଦା ଦୁଇଜଣ ଗୋଟିଏ କୋଣରେ ବସି ପଇସା ଗଣୁଥାନ୍ତି । ମୁନିବଙ୍କ ପାଇଁ ମୁଖ୍ୟ ଅଂଶଟି ଗଣି ରଖି, ବାକିତକ ନିଜ ନିଜ ମଧ୍ୟରେ ଭାଗ କରିବାବେଳେ ଝଗଡ଼ା ଲାଗି ଯାଉଥାଏ । ମିଞ୍ଜି ମିଞ୍ଜି ଲଣ୍ଠନଟାଏ ପାଖରେ ଜଳୁଥାଏ । ଜଣେ ଦାଦା ପକେଟରୁ ସୁନାଚେନ୍‌ଟିଏ କାଢ଼ି ଅନ୍ୟ ଜଣକୁ ଦେଖାଇ ଦାବି କଲା, ''ଏଇଟା ମୋର'' ମୁନିବକୁ କହିବୁ ନାହିଁ । ମୁଁ ସେହି କଣା ପିଲାଟାକୁ ପଠାଇ ଭିଡ଼ ଭିତରେ ଛିଡ଼ା ହୋଇଥିବା ଜଣେ ମହିଳାର କୁନି ଝିଅଟି ଗଳାରୁ ଟାଣି ଆଣିପାରିଛି ।''

''ଏବେ ମୁଁ ବି ଦୁଇ ତିନିଟା ପିଲାଙ୍କୁ ଚୋରି କରିବାକୁ ଶିଖାଇବି । ଭିକ ମାଗି ମାଗି କେତେ ପଇସା ମିଳୁଛି ? ଚୋରି କରିପାରିଲେ କେତେ ଲାଭ ହେବ । ଏଇ ଯେଉଁ ମାଇକିନିଆଟା ଆଜି ମିଳିଛି, ତାକୁ ତାଲିମ ଦେଇ କାଳୀମନ୍ଦିରକୁ ପଠାଇବି । ମହିଳାମାନଙ୍କର ଭିଡ଼ ଲାଗିଥିଲା ବେଳେ ମୁହଁରେ ଲୁଗା ଘୋଡ଼ାଇ ସେ ପଶିବ । ପ୍ରତିଦିନ ଗୋଟାଏ ଦୁଇଟା ଚେନ୍ ଚୋରି କରିପାରିବ । ତୋ କାମରେ ତାହାକୁ ଲଗାଇ ପାରିବୁ ନାହିଁ । ତାକୁ ମୁଁ ଆଣିଛି,'' କହିଲା, ଜଣେ ଦାଦା ।

କଥା କହୁଁ କହୁଁ ସେମାନେ କିଛି ସମୟ ଗଞ୍ଜା ଟାଣି ଟାଣି ଶେଷରେ ବସିଥିବା ଜାଗାରେ ଶୋଇ ପଡ଼ିଲେ । ନାକ ଭିତରୁ ଶବ୍ଦ ବାହାରୁଥାଏ ଯେପରି ରେଳଗାଡ଼ି ଚାଲିଛି ।

ବିଗତ ରାତିରେ ମମତା ଶୋଇ ପାରି ନ ଥିଲେ, ଚାଲିଥିଲେ ଜଙ୍ଗଲ ମଧ୍ୟରେ । ପରିଶ୍ରାନ୍ତ ଅବସ୍ଥାରେ ମଧ୍ୟ ଏପରି ଗୋଟିଏ ଅସ୍ୱାଭାବିକ ରାତ୍ରିରେ ନିଦ୍ରାର ପ୍ରଶ୍ନ ନ ଥାଏ । ଅନେକ ଚିନ୍ତା ପରେ ଠିକ୍ କରିନେଲେ, ଭିକ ମାଗିବା ବାହାନାରେ କବିତାଦେବୀଙ୍କ ପ୍ରଗଳିରେ ନିଶ୍ଚୟ ପହଞ୍ଚି ପାରିବେ । ନିଜର ପରିଚୟ ନ ଦେଇ ମଧ୍ୟ ସେଠାରେ ସେ ଦୂରରୁ ଦେଖିପାରିବେ କରୁଣାକୁ । ଆଖପାଖ ପଡ଼ିଶାମାନଙ୍କ ନିକଟରୁ ସ୍ୱରାଜ ଓ ସ୍ୱାଧୀନ କେଉଁଠାରେ ଅଛନ୍ତି ତାହା ସନ୍ଧାନ କରିବା ସମ୍ଭବ ହେବ । କିଛି ନ ହେଲେ ବି ଡକ୍ଟର ରାୟଙ୍କ ବାସସ୍ଥଳୀରେ ପହଞ୍ଚି ତାଙ୍କ କର୍ମଚାରୀମାନଙ୍କ ନିକଟରୁ ସହିଦ ତପସ୍ୱୀବାବୁଙ୍କ ସନ୍ତାନସନ୍ତତିମାନଙ୍କ ବିଷୟରେ ବିସ୍ତାରିତ ସମ୍ବାଦ ସଂଗ୍ରହ କରିହେବ ।

ନିଜର ଜୀବନ ପ୍ରତି ଅନ୍ତର୍ଦୃଷ୍ଟି ନିକ୍ଷେପ କରି ମମତା ବିଶ୍ୱାସ ସୃଷ୍ଟି କଲେ ଯେ ମହାଗିରି ଶିଖରର ଗୁମ୍ଫା ମଧ୍ୟରୁ ଗଙ୍ଗା କୂଳର ଗହ୍ୱର ପର୍ଯ୍ୟନ୍ତ ଗତି କରିବା ହେଉଛି ବିଧିର ବିଧାନ । ଯେଉଁ ବିଧାତା ଏତେପ୍ରକାର ଦୁଃଖ ଦେଇପାରୁଛନ୍ତି, ସେହି ପୁଣି

ସୁପ୍ରସନ୍ନ ହେଲେ ନିଜର ଝିଅ ଓ ପୁଅମାନଙ୍କୁ ଦେଖି ପରମ ଭାଗ୍ୟବତୀ ହୋଇପାରିବି । ମନେପଡ଼ିଲା ବାପାଙ୍କର ଶାସ୍ତ୍ର ବାକ୍ୟଟି - 'ଚକ୍ରବତ୍ ପରିବର୍ତ୍ତନ୍ତେ ସୁଖାନିଚ ଦୁଃଖାନିଚ ।' ଯଦି ଜନ୍ମ ସମୟରୁ ଏକାଦିକ୍ରମେ ଦୁଃଖ ପରେ ଦୁଃଖ ଭୋଗ କରିବା ଲଲାଟରେ ଲେଖା ରହିଛି, ତେବେ ସେହି ଲଲାଟରେ ମଧ୍ୟ ଲେଖାଥାଇପାରେ ଏହାପରେ ସୁଖମୟ ଦିନଗୁଡ଼ିକ ଆସିଯିବ । ମନସ୍ଥ କଲେ ଯେ ପ୍ରଥମେ ଝିଅପୁଅମାନଙ୍କୁ ନିଜର ପରିଚୟ ଦେବେ ନାହିଁ । ସେମାନେ ମଧ୍ୟ ଅନୁମାନ କରିପାରିବେ ନାହିଁ ଯେ ସେ ହେଉଛନ୍ତି ସେମାନଙ୍କର ଗର୍ଭଧାରିଣୀ ଜନନୀ । କିନ୍ତୁ ଦିନ ଆସିପାରେ ଯେତେବେଳେ ତାଙ୍କର କଣ୍ଠସ୍ୱର ବାରିପାରି ଏବଂ ତାଙ୍କ ଦୁଃଖମୟ ଜୀବନ ବୃତ୍ତାନ୍ତ ଶୁଣିସାରି ସେମାନେ ଆନନ୍ଦରେ ତାଙ୍କୁ ଗ୍ରହଣ କରିନେବେ । ଜଣେ ମା'ର ଦୁଃଖ କେବଳ ସନ୍ତାନସନ୍ତତିମାନେ ହିଁ ଯଥାର୍ଥ ଭାବେ ଉପଲବ୍ଧି କରିପାରିବେ ବୋଲି ତାଙ୍କର ଧାରଣା ବଦ୍ଧମୂଳ ହେଲା ।

ସୂର୍ଯ୍ୟୋଦୟ ପୂର୍ବରୁ ଜଣେ ଦାଦା ନିଜ ଗୋଡ଼ରେ ଗୋଇଠା ମାରି ମାରି ପ୍ରତ୍ୟେକ ପିଲାକୁ ନିଦରୁ ଉଠାଇଦେଲା । ସେତେବେଳକୁ ମମତା ଗଙ୍ଗାରୁ ସ୍ନାନ କରି ମଇଳା ଲୁଗାଖଣ୍ଡିକ ପିନ୍ଧି ଭିକ୍ଷା ଯାତ୍ରାରେ ବାହାରିବା ଲାଗି ପ୍ରସ୍ତୁତ ହୋଇ ବସିଥାନ୍ତି । ପିଲାମାନେ ନଦୀରୁ ଫେରିଲା ପରେ ପ୍ରତ୍ୟେକଙ୍କ ହାତରେ ମୁଠାଏ ଲେଖାଏଁ ମୁଢ଼ି ଅଜାଡ଼ି ଦିଆଗଲା । ସେତକ ଖାଇ ସେମାନେ ସନ୍ଧ୍ୟା ପର୍ଯ୍ୟନ୍ତ ରେଳଡବାରେ ଝାଡୁମାରି ପଇସା ଆୟ କରିବେ କିମ୍ବା ବାଟରେ ବୁଲି ବୁଲି ବିକଳ ସ୍ୱରରେ ଭିକ ମାଗିବେ । ମମତାଙ୍କ ହାତରେ ମଧ୍ୟ ଦିଆଗଲା ମୁଠାଏ ମୁଢ଼ି ।

ମମତାଙ୍କ ଦୃଷ୍ଟିଶକ୍ତି କମ୍ ବୋଲି ଅନୁମାନ କରି ଜଣେ ଦାଦା କେମ୍ପାକୁ ଆଦେଶ ଦେଲା, ''ତୁ ସେହି ଅନ୍ଧୁଣୀ ବୁଢ଼ୀଟାକୁ ବାଟ ଦେଖାଇବୁ ।''

ମମତା ଓ କେମ୍ପାକୁ ସାଙ୍ଗରେ ନେଇ ଦାଦା ପହଞ୍ଚିଲା ମହାନଗରର କୌଣସି ଏକ ରାଜପଥର ଗୋଟିଏ କୋଣରେ । ଫୁଟ୍‌ପାଥ ଉପରେ ବସି ରହିବାକୁ ମମତାଙ୍କୁ ଇଙ୍ଗିତ ଦିଆଗଲା । ଆଗରେ ରଖାଗଲା ଭଙ୍ଗା ସିଲଭର୍ ପାତ୍ରଟିଏ । ଉପରକୁ ହାତ ଉଠାଇ ପାପୁଲିଟିକୁ ଖୋଲି ରଖିବାକୁ ଶିଖାଇ ଦିଆଗଲା । ଫୁଟପାଥର ଅପର ପାଖରେ ଭିକ୍ଷାପାତ୍ର ଧରି ଛିଡ଼ା ରହିଲା କେମ୍ପା । ''ଗୋଟିଏ ପଇସା, ବାବୁ ଗୋଟିଏ ପଇସା'' ବୋଲି କେମ୍ପାର ଚିତ୍କାର ମମତାଙ୍କ କାନ ପର୍ଯ୍ୟନ୍ତ ଭାସି ଆସୁଥାଏ ।

ରାସ୍ତା ଉପରେ ଜନସାଧାରଣଙ୍କ ଯାତାୟାତ ସମୟରେ ମମତା ଦେଖିପାରୁଥାନ୍ତି କେହି କେହି ବଦାନ୍ୟ ବ୍ୟକ୍ତି ତାଙ୍କ ପାତ୍ର ଉପରକୁ କିଛି ଦୂରରୁ ଦୁଇଅଣି ବା ଚାରିଅଣିଟିଏ

ଫୋପାଡ଼ି ଦେଉଥାନ୍ତି । ଥାଳି ଉପରେ ଠକ୍ ଠକ୍ ଶବ୍ଦ ହେଉଥାଏ । ତାଲିମ ଅନୁଯାୟୀ ଦୁଇ ଚାରିଥର ସେପରି ଶବ୍ଦ ଶୁଣିଲା ପରେ ପଇସାଗୁଡ଼ାକ ଉଠାଇ ନେଇ ନିଜ ଛିଣ୍ଡା ଲୁଗାର ପଣତ କାନିରେ ବାନ୍ଧି ରଖିବାକୁ ହେଉଥାଏ ।

''ମା', ସନ୍ଧ୍ୟା ହେଲାଣି, ଏବେ ଚାଲ,'' ପାଖକୁ ଆସି କୋମଳ କଣ୍ଠରେ କହିଲା କେମ୍ପା । ମମତା ଉଠିଲେ । ଉଭୟେ ଆଶ୍ରୟ ସ୍ଥଳରେ ପହଞ୍ଚିଲା କ୍ଷଣି ଛୋଟଦାଦା ମମତାର ଲୁଗା ଗଣ୍ଠି ଫିଟାଇ ମୁନିବଙ୍କ ସମ୍ମୁଖରେ ହର୍ଷ ଉତ୍‌ଫୁଲ୍ଲିତ ଚିତ୍ତରେ ଘୋଷଣା କଲେ, ''ବାବୁ, ଏଇଟା ଗୋଟାଏ ସୁଲକ୍ଷଣୀ ଭିକାରୁଣୀ । ଏଇଟାର ମୁହଁ ଦେଖି ଲୋକେ ପଇସା ଫୋପାଡ଼ିଛନ୍ତି, ଢେର ପଇସା । ଚାରିଅଣି, ଦୁଇଅଣି ଗୁଡ଼ାଏ ପଡ଼ିଛି ।''

ତେଣେ କେମ୍ପା ପକେଟରୁ କମ୍ ପଇସା ବାହାରିବାରୁ ତା ଗାଲରେ ବସିଗଲା ଦୁଇଟା ଶକ୍ତ ଚଟକଣା । ମାଡ଼ ଖାଇ ସେ କାନ୍ଦି ପକାଇଲା । ତେଣେ ମୁନିବ ବୁଦ୍ଧି ପ୍ରୟୋଗ ପୂର୍ବକ ଆଦେଶ ଦେଲେ, ''ଫୁଟପାଥିରେ କୁଲି ଓ ମାମୁଲି ଲୋକମାନେ ଯିବାଆସିବା କରନ୍ତି । ସେମାନେ ଇଆର ଚେହେରା ଦେଖି ବେଶି ପଇସା ଦେଇପାରିବେ ନାହିଁ । କାଲି ପାଖରୁ ଯାକୁ ରାଜପଥ ଉପରେ ବଡ଼ ବଡ଼ ବାବୁମାନଙ୍କ ଦୁଆର ଆଗରେ ଛିଡ଼ା କରାଅ । କେମ୍ପା ପାଟିକରି ପଇସା ମାଗିବ । ଦରଜା ଖୋଲିଲେ ବାବୁ ବାବୁଆଣୀମାନେ ଯା ମୁହଁକୁ ଚାହିଁ ବେଶି ବେଶି ପଇସା ଦାନ କରିବେ । କିଛିଦିନ ପାଇଁ ଏହି ପରୀକ୍ଷା କରାଯାଉ । ତା' ପରେ କୌଣସି ମନ୍ଦିର ଆଗରେ ଏହାକୁ ନେଇ ଶୁଆଇଦେବା । ମୁମୂର୍ଷୁ ଅବସ୍ଥାରେ ପଡ଼ିଥିବା ଦେଖି ପୂଜାଲାଗି ଆସୁଥିବା ଲୋକେ ପଇସା ଦାନ କରିବେ ।''

ତହିଁ ପରଦିନ ପ୍ରଭାତ କାଳରେ ମମତାର ହାତଧରି କେମ୍ପା ନେଇଗଲା ଗୋଟିଏ ସମ୍ଭ୍ରାନ୍ତ ବସ୍ତି ଦିଗକୁ । ସେ ଜାଣିଥାଏ, ମା'ଙ୍କର ଅଳ୍ପ ଅଳ୍ପ ଦୃଷ୍ଟିଶକ୍ତି ଅଛି ଏବଂ ସେ ଲଘୁ ସ୍ୱରରେ କଥା ମଧ୍ୟ କହିପାରନ୍ତି । କହିଲା, ''ମା', ତୁମେ ଯେଉଁ ଜାଗାକୁ ଯିବ ବୋଲି କଲିକତା ଆସିଥିଲ, ସେହି ଜାଗାକୁ ଚାଲ । ମୁଁ ଧରି ଧରି ନେଇଯିବି । ବାଟରେ ବଡ଼ଲୋକଙ୍କ ଘର ଯଦି ପଡ଼ିବ, ସେଠାରେ ଭିକ ପାଇଁ ମୁଁ ରଡ଼ି ଛାଡ଼ିବି ।''

ମମତା ସ୍ମରଣ କରିପାରିଲେ କବିତାଦେବୀଙ୍କ ବାସଗୃହ ଦିଗକୁ ଯାଇଥିବା ରାସ୍ତା । ଗଙ୍ଗା କୂଳର ହାବଡ଼ା ପୋଲ ଦିଗକୁ ଚାହିଁ ସେ ନିଜର ଗତିପଥ ନିର୍ଦ୍ଧାରଣ କରିବାକୁ ସମର୍ଥ ହୋଇପାରିଲେ । ଚଞ୍ଚଳ ପଦକ୍ଷେପରେ କେମ୍ପାର ହାତ ଧରି ସେ ଚାଲିଲେ ମ୍ୟୁନିସିପାଲିଟିର ଆବର୍ଜନା ଢାଳିବା ସେହି ପ୍ରକାଣ୍ଡ ପଡ଼ିଆ ଦିଗକୁ

ଯେଉଁଠାରେ ଥାଏ କବିତାଦେବୀଙ୍କ ବାସସ୍ଥାନ । ଭାଗ୍ୟକୁ ଜଣେ ପଥଚାରୀବାବୁ ତାଙ୍କ ମୁହଁର ଶୋଚନୀୟ ଅବସ୍ଥା ଦେଖି ଗୋଟିଏ ଟଙ୍କା କାଢ଼ି କେମ୍ପା ହାତରେ ଧରାଇ ଦେଲେ । ସେହିପରି ଆଉଜଣଙ୍କ ପାଖରୁ ମିଳିଲା ଗୋଟିଏ ଆଠଅଣି । ଜଣେ ଧର୍ମପରାୟଣା ବୃଦ୍ଧା ମନ୍ଦିରକୁ ପୂଜା ଲାଗି ଯାଉଥିଲେ । ପୁଣ୍ୟ ଅର୍ଜନ ଆଶାରେ ଏକାଥରକେ ତିନିଗୋଟି ଟଙ୍କା ଥଳିରୁ କାଢ଼ି ମମତାଙ୍କ ହାତରେ ଥିବା ଥାଳି ଉପରେ ରଖିଦେଲେ ।

ପ୍ରାୟ ମଧ୍ୟାହ୍ନ ବେଳକୁ ଦୂରରେ ଦିଶିଲା ସେହି ପୂର୍ବପରିଚିତ ମ୍ୟୁନିସିପାଲିଟି ପଡ଼ିଆ । କିନ୍ତୁ କୁଆଡ଼େ ଗଲା ପଡ଼ିଆ ପାଖକୁ ଲାଗିଥିବା ଗଳି ପ୍ରଗଳି ! କବିତାଦେବୀଙ୍କ ବାସସ୍ଥଳୀ ପାଖରେ ପହଞ୍ଚିଲା ବେଳକୁ ଘରଟିର ପତ୍ତା ମଧ୍ୟ ନ ଥାଏ ଏବଂ ତାଙ୍କ ଘରକୁ ଲାଗିଥିବା ଅନ୍ୟ ଘରଗୁଡ଼ିକର ଚିହ୍ନବର୍ଣ୍ଣ ଦେଖିବାକୁ ମିଳିଲା ନାହିଁ । ଚକିତ ଅବସ୍ଥାରେ ମମତା ଚାରି ଦିଗକୁ ବାରମ୍ବାର ଚାହିଁ ଦେଖି ଶେଷରେ କେମ୍ପାର କାନ ପାଖରେ କହିଲେ, ‘‘ବାବା, ମୋପାଇଁ ଟିକିଏ କଷ୍ଟ କରିବାକୁ ହେବ । ପଡ଼ିଆ ଆଡ଼କୁ ଯାଉଥିବା ଲୋକମାନଙ୍କୁ ପଚାରିବୁ, ସହିଦ ଦୀପ୍ତିମାନ ସରକାରଙ୍କ ବାସଗୃହଟି ଏହିଠାରେ ଥିଲା । ତାଙ୍କ ଘରକୁ ଲାଗିଥାଏ ଅନେକ ଘର । ଆଜି ସେହି ବସ୍ତିଟା ଏଠାରେ ନାହିଁ କାହିଁକି ?’’

ମମତା ଛିଡ଼ା ହୋଇ ରହିଲେ । ଛୋଟା ବାଳକଟି ଲୋକମାନଙ୍କ ପାଖକୁ ଯାଇ ଖବର ସଂଗ୍ରହ କଲା । ଫେରିଆସି ଜଣାଇଲା, ‘‘ମା’, ସେମାନେ କହୁଛନ୍ତି, କଲିକତାରେ ଭୟଙ୍କର ଦଙ୍ଗା-ହାଙ୍ଗାମା ସମୟରେ ଏହି ବସ୍ତିରେ ନିଆଁ ଲଗାଇ ସବୁ ଘରଗୁଡ଼ାକ ପୋଡ଼ି ଦିଆଯାଇଥିଲା । ସମସ୍ତେ ଘରଦ୍ୱାର ଛାଡ଼ି ପଳାଇଥିଲେ । ହାଣକାଟରେ ଅନେକ ଲୋକ ମରିଥିଲେ । ସରକାର ଏବେ ଏହି ଅଞ୍ଚଳ ଦଖଲ କରିନେଇଛି । ଏଠାରେ ଗୋଟିଏ ବଜାର ବସିବ ।’’

ମମତା ବିଚଳିତ ପ୍ରାଣରେ କବିତାଦେବୀଙ୍କ ଘରପିଣ୍ଡା ଥିବା ସ୍ଥାନରେ ମାଟି ଉପରେ ବସିପଡ଼ିଲେ । ମନରେ ଆଶଙ୍କାପୂର୍ଣ୍ଣ ଦାରୁଣ ପ୍ରଶ୍ନ । କୁଆଡ଼େ ପଳାଇଥିବେ କବିତାଦେବୀ ! କେଉଁଠାରେ ଥିବ ମୋ କରୁଣା ! ହାୟ ମୋର ଦେଶ !

## ।। ୨୪ ।।

ରାତିରେ ବିଛଣା ଧରିଲା ସମୟରେ ମମତା ଆଶା ବାନ୍ଧିଲେ ଯେ ସବୁ ସମସ୍ୟାର ସମାଧାନ ହୋଇଯିବ କେବଳ ଡକ୍ଟର ରାୟଙ୍କ ବାସଭବନରେ ପହଞ୍ଚିଗଲେ । ନିଜେ ସିନା ତାଙ୍କ ଆଗରେ ଛିଡ଼ା ହେବେ ନାହିଁ କିମ୍ବା ପରିଚୟ ଦେଇପାରିବେ ନାହିଁ, କିନ୍ତୁ

କେମ୍ପାକୁ ପଠାଇ ଡାକ୍ତରବାବୁଙ୍କ କର୍ମଚାରୀମାନଙ୍କ ପାଖରୁ ଜାଣିହେବ ସହିଦ ଦୀପ୍ତିମାନ ସରକାରଙ୍କ ପତ୍ନୀ ଏବେ କେଉଁ ସ୍ଥାନରେ ଅଛନ୍ତି ଏବଂ ତାଙ୍କର ବନ୍ଧୁ ସହିଦ ତପସ୍ୱୀବାବୁଙ୍କ ସନ୍ତାନସନ୍ତତିଗୁଡ଼ିକ କିପରି ଅଛନ୍ତି ।

ଦାଦାମାନେ ସେମାନଙ୍କର ନୂତନ ଆୟକାରିଣୀ ଭିଖାରୁଣୀ ପ୍ରତି ସନ୍ତୁଷ୍ଟ ରହିଥିବା ସଙ୍କେତ ମିଳୁଥାଏ ପଇସା ଗଣତି ସମୟରେ । କେମ୍ପା ଅନ୍ଧୁଣୀବୁଢ଼ୀକୁ ରାସ୍ତା ଦେଖାଇବା ଆବଶ୍ୟକ ବୋଲି ମୁନିବଙ୍କର ମଧ୍ୟ ହୃଦ୍‌ବୋଧ ହୋଇଥାଏ ।

ତହିଁ ପରଦିନ ପ୍ରଭାତରେ କେମ୍ପାର ହାତଧରି ମମତାଦେବୀ ଚାଲିଲେ ଡକ୍ଟର ରାୟଙ୍କ ବାସଭବନ ଅଭିମୁଖେ । ଆତ୍ମପ୍ରତ୍ୟୟ ଆସି ଯାଇଥାଏ ଯେ ସମସ୍ତ ବିଷୟ ଅବିଳମ୍ବେ ଜଣା ପଡ଼ିଯିବ । ପୂର୍ବ ସ୍ମୃତିରୁ ଅନୁମାନ କରିନେଲେ ନିଜର ଗନ୍ତବ୍ୟ ପଥ । ଅନେକ ଦୂରରୁ ଦିଶିଲା ପାର୍କଟିର ବୃକ୍ଷଗୁଡ଼ିକ । ପାର୍କଟି ନୂତନ ଆକାର ଧାରଣ କରିଥାଏ । ନୂତନ ନୂତନ ପୁଷ୍ପଶୋଭିତ ଚାରାଗୁଡ଼ିକ ମୁଣ୍ଡଟେକି ଉଠୁଥାନ୍ତି ।

ମମତା ଓ କେମ୍ପା ରାସ୍ତା ଅତିକ୍ରମ କରି ଗେଟ୍ ଦିଗକୁ ପ୍ରଥମ ଭଡ଼ାଟି ପକାଇଲା ବେଳକୁ ଦୌଡ଼ିଆସିଲେ ଦୁଇଜଣ ଲାଠିଧାରୀ ପୁଲିସ । ଜଣେ ପାଟି କଲା, ''ଆବେ ଛୋଟା, ଆବେ କୁଷ୍ଠରୋଗୀ, ପାଦେ ଆଗେଇବୁ ଯଦି ଲାଠି ବସିଯିବ । ଡାକ୍ତରବାବୁଙ୍କ ପାଖକୁ ଆସୁଛ ରୋଗ ଦେଖାଇବା ପାଇଁ ! ହଇରେ ଗଧ, ସେ ଏବେ ରାଜ୍ୟର ଶାସନକାମ ସମ୍ଭାଳିବେ ନା ତୁମ ଦିଇଟାର ଚିକିତ୍ସା କରିବେ ? ଯା, ପଳାଇ ଯା ।''

ସତକୁ ସତ ପାଟି କରୁ କରୁ ପୁଲିସଟା ଲାଠି ବୁଲାଇ ବୁଲାଇ ଦୌଡ଼ିଆସିଲା ଉଭୟଙ୍କ ନିକଟକୁ । ଭୟରେ କେମ୍ପା କହି ପକାଇଲା, ''ବାବୁ, ମାର ନାହିଁ, ମାର ନାହିଁ । ଆମେ ପଳାଇ ଯାଉଚୁ ।''

ମମତାଦେବୀଙ୍କ ହାତଧରି କେମ୍ପା ତାଙ୍କୁ ଅନେକ ଦୂରକୁ ଟାଣି ନେଇ ଚାଲିଗଲା । ଶ୍ରାନ୍ତ ଅବସ୍ଥାରେ ମମତାଦେବୀ ବସିପଡ଼ିଲେ ପାର୍କଟିର ଅପର ପାଖରେ । ଗାଲରେ ହାତ ଦେଇ ସେ କାନ୍ଦୁଥିବା ଦେଖି କେମ୍ପା ପ୍ରାଣରେ ମଧ୍ୟ ଦୟା ଆସିଲା । ପାଖରେ ବସିପଡ଼ି ସେ କହିଲା, ''ମା', ଅତି ବଡ଼ ବଡ଼ ଲୋକଙ୍କ ଘର ଆଗରେ ପୁଲିସ ଜଗିଥାଏ । ସେମାନେ କିଛି କଥା ଶୁଣନ୍ତି ନାହିଁ । କିନ୍ତୁ ମାଡ ଦେବାକୁ ଜାଣନ୍ତି । ତୁମେ ଏଠାକୁ କାହିଁକି ଆସିଲ ! ଦେଖୁଛ, ଗେଟ୍ ଭିତରକୁ ଧଳା ଧଳା ମୋଟର ଗାଡ଼ି ପଶୁଛି । ସେଥିରୁ ବାବୁମାନେ ବାହାରୁଛନ୍ତି । ଆମେ ସେଠାକୁ କିପରି ଯାଇଥାନ୍ତେ କହିଲ ?''

ମମତା ଭାବୁଥାନ୍ତି ଅନ୍ୟ ଏକ ପ୍ରସଙ୍ଗ । ପୂର୍ବେ ଶୁଣିଥାନ୍ତି, ଏହି ଡାକ୍ତରବାବୁଙ୍କ ଗେଟ୍ ଆଗରେ ସୂର୍ଯ୍ୟୋଦୟ ପୂର୍ବରୁ ଭିଡ଼ ଜମି ଯାଇଥାଏ ଦୀନଦୁଃଖୀ ରୋଗୀମାନଙ୍କର । ସମସ୍ତଙ୍କର ସେ ଥାନ୍ତି ପୂଜ୍ୟ ଓ ନମସ୍ୟ ବ୍ୟକ୍ତି । ସାଧାରଣ ଲୋକେ ତାଙ୍କୁ ଦେବତୁଲ୍ୟ ମନୁଷ୍ୟ ଭାବରେ ସମ୍ମାନ ଦେଉଥାନ୍ତି । ସେତେବେଳେ ତାଙ୍କ ଘର ଆଗରେ ବା ନିକଟରେ ପୁଲିସମାନଙ୍କୁ ଦେଖିବାକୁ ମିଳୁ ନ ଥାଏ । କିନ୍ତୁ କ'ଣ ହେଲା ସ୍ୱାଧୀନତା ପରେ । ପୁଲିସ ଭୟରେ ଯେଉଁ ବ୍ୟକ୍ତି ଥରେ ଅନ୍ଧାରରେ ଲୁଚି ଲୁଚି ଆସିଥିଲେ କବିତାଦେବୀଙ୍କ ସହିତ ସାକ୍ଷାତ୍ କରି ଦୀପ୍ତିମାନ ଓ ତପସ୍ୱୀଙ୍କର ମୃତ୍ୟୁ ସମ୍ବାଦ ଦେବାଲାଗି, ଆଜି ସେ ନିଜେ ଅଛନ୍ତି ପୁଲିସ ପ୍ରହରୀମାନଙ୍କ ଚକ୍ରବ୍ୟୂହ ମଧ୍ୟରେ !

''ମା', ଏଥର ଉଠ । କ'ଣ ଭାବୁଛ ?'' ପଚାରିଲା କେମ୍ପା ।

''ସୂର୍ଯ୍ୟ ପଶ୍ଚିମରେ ଉଦୟ ହେଉଛନ୍ତି ବୋଲି ଦେଖିପାରୁଛି, କିଛି ଭାବୁ ନାହିଁ,'' ଉତ୍ତର ଦେଲେ ମମତା ।

ଘରକୁ ଘର ବୁଲି ବୁଲି କିଛି ପଇସା ସଂଗ୍ରହ ନ କଲେ କେମ୍ପା ମାଡ଼ ଖାଇବ ବୋଲି ମମତା ଅନୁମାନ କରିପାରିଲେ । ଦୀର୍ଘଶ୍ୱାସ ତ୍ୟାଗ କରି ଉଠିଲେ ଏବଂ ଅଗ୍ରସର ହେଲେ ଭିକ୍ଷା ମାଗିବା ଲାଗି । ଘର ପରେ ଘର ଭିକ ମାଗି ମାଗି ଚାଲିଥିଲା ବେଳେ ମମତା ଏପରି କୌଣସି ଗୋଟିଏ ସ୍ଥାନରେ ପହଞ୍ଚିଗଲେ ଯେଉଁ ସ୍ଥାନଟି ପରିଚିତ ବୋଲି ଜଣାଗଲା । ପ୍ରଶସ୍ତ ପ୍ରାଙ୍ଗଣ ମଧ୍ୟରେ ଦିଶୁଥାଏ ବିରାଟ ଏକ ଅଟ୍ଟାଳିକା । ଏକାଗ୍ର ଚିତ୍ତରେ ଚାହିଁରହିଥିଲାବେଳେ ହଠାତ୍ ମନେପଡ଼ିଗଲା, ଏହି କଲେଜରେ ଉଚ୍ଚଶିକ୍ଷା ଲାଭ କରୁଥିଲେ ସ୍ୱରାଜ ଓ ସ୍ୱାଧୀନ । କେମ୍ପାକୁ ପଚାରିଲେ, ''ଭିତରକୁ ଯାଇପାରିବୁ ?'' ସେ ଉତ୍ତର ଦେଲା ''ହଁ, ଯାଇପାରିବି ।''

ଧୀର ସ୍ୱରରେ ଅନେକ ସମୟ ବୁଝାଇ କହିଲେ, ''ଏଇ ଘରଟା ଗୋଟାଏ କଲେଜ । ପିଅନମାନଙ୍କୁ ପଚାରିବୁ, ସ୍ୱରାଜ ଓ ସ୍ୱାଧୀନ ନାମକ ଯେଉଁ ଦୁଇ ଭାଇ ଏଠାରେ କିଛି ବର୍ଷ ଆଗେ ପାଠ ପଢୁଥିଲେ, ସେମାନେ ଏବେ କେଉଁଠି ଅଛନ୍ତି । ପିଅନ ଓ ଦରୱାନମାନେ ଯଦି କହି ନ ପାରିବେ, ତେବେ ଜଣେ କିରାଣିବାବୁଙ୍କ ପାଖକୁ ଯାଇ ପଚାରିବୁ । କହିବୁ, ସେହି ଦୁଇଭାଇଙ୍କର ଜଣେ ପୀଡ଼ିତ ସମ୍ପର୍କୀୟ ଏ କଥା ପଚାରିବାକୁ ପଠାଇଛନ୍ତି ।''

ଗେଟ୍ ଖୋଲା ଥାଏ । ଛାତ୍ରଛାତ୍ରୀମାନେ ଯିବାଆସିବା କରୁଥାନ୍ତି । କେମ୍ପା ନିର୍ଭୟରେ ଭିତରକୁ ଚାଲିଗଲା । ମମତା ଉତ୍କଣ୍ଠା ସହ ଅପେକ୍ଷା କଲେ । ତାଙ୍କ ଅବସ୍ଥା

ଦେଖି ଛାତ୍ରଛାତ୍ରୀମାନେ କିଛି କିଛି ପଇସା ଓ ଏପରିକି ଟଙ୍କା ପକେଟରୁ ବାହାର କରି ତାଙ୍କ ଥାଳି ଉପରେ ରଖି ଦେଉଥାନ୍ତି । କୌଣସି କୌଣସି ଛାତ୍ରର ମୁହଁକୁ ଚାହିଁ ସତେଯେପରି ସେ ଦେଖିପାରୁଥାନ୍ତି ନିଜ ପୁଅମାନଙ୍କ ରୂପ ।

ଅନେକ ବିଳମ୍ବରେ କେମ୍ପା ଫେରିଆସି ବର୍ଣ୍ଣନା କଲା, ''ମା', ପିଅନମାନେ କିଛି କହିପାରିଲେ ନାହିଁ । କିରାଣି କହିଲା, ''ଆଗେ ଟଙ୍କା ରଖି, ପଛେ ପୁରୁଣା ଛାତ୍ରଙ୍କ କଥା ପଚାରିବୁ, ମୋତେ ପୁରୁଣା କାଗଜପତ୍ର ବାହାର କରି ସେମାନଙ୍କ ନାମଧାମ ବାହାର କରିବାକୁ ସମୟ ଲାଗିବ । କିନ୍ତୁ, ମୋର ଛିଣ୍ଡା ପେଣ୍ଟ ଓ ଛୋଟା ଗୋଡ଼ ଦେଖି ବାହାରେ ଛିଡ଼ା ହୋଇଥିବା ଜଣେ ମାଷ୍ଟରବାବୁ ଦୟାକରି ଦୁଇଟଙ୍କା ଦେଲେ । ତାଙ୍କ ଗୋଡ଼ ଧରିପକାଇ ସ୍ୱରାଜ ଓ ସ୍ୱାଧୀନ ନାମକ ଦୁଇ ପିଲାଙ୍କ କଥା ପଚାରିବାକୁ ଆସିଥିଲି ବୋଲି ଜଣାଇଲି । ହସି ହସି ସେ ଉତ୍ତର ଦେଲେ, 'ଆରେ, ସେହି ଦୁଇ ପୁରାତନ ଛାତ୍ର ଆମ କଲେଜର ଗୌରବ । ସ୍ୱରାଜ ହେଲାଣି ପାର୍ଲିଆମେଣ୍ଟ ମେହମ୍ବର । ସ୍ୱାଧୀନ ହେଲାଣି ଆୟେସ ।''

ମମତାଦେବୀଙ୍କ ଆଖିରୁ ଆନନ୍ଦାଶ୍ରୁ ଝରି ପଡ଼ିଲା । କେମ୍ପାକୁ କୁଣ୍ଢାଇ ଧରି ତା ମୁଣ୍ଡରେ ଚୁମ୍ବନ ଦେଉ ଦେଉ କହିଲେ, ''ବାବା, ତୁ ମୋ ଆଗରେ ଆଉ କେମ୍ପା ନୁହେଁ, ତୁ ହେଉଛୁ ମୋ ପାଇଁ କୃଷ୍ଣ ।''

''ମା', ତମ ଥାଳିରେ ଗୁଡ଼ାଏ ଟଙ୍କା, ଅଧୁଲି ଓ ଚାରଣି ପଡ଼ିଛି । ଲୁଗାରେ ବାନ୍ଧି ରଖ ।''

''ନା, ତୁ ସେଥିରୁ ଅଧେ ନେଇ ପକେଟରେ ରଖିଦେ, ମାଡ଼ରୁ ରକ୍ଷା ପାଇଯିବୁ ।'' ''ମା ମୋତେ ମାଷ୍ଟରବାବୁ ଦୁଇଟଙ୍କା ଦେଇଛନ୍ତି । ସେତକ ପାଇଲେ ଦାଦା ଖୁସି ହେବ ।''

ସଞ୍ଜ ହେବା ଦେଖି ଉଭୟେ ଗଙ୍ଗାକୂଳକୁ ଫେରିଲେ । କୃଷ୍ଣର ମୁଣ୍ଡ ଉପରେ ଘନ ଘନ ଚୁମ୍ବନ ଦେଲାବେଳେ ମମତା ଭାବିଲେ, ଯେଉଁ ପବିତ୍ର ମାଟିରେ ଏହିପରି ସଦ୍ ସ୍ୱଭାବର ବାଳକମାନେ ଜନ୍ମି ପାରିଛନ୍ତି, ସେପରି ଦେଶର ଆକାଶରେ ସୂର୍ଯ୍ୟ ଚିରଦିନ ପୂର୍ବରେ ଉଇଁବେ, ପଶ୍ଚିମରେ ନୁହେଁ । ଡକ୍ଟର ରାୟ ନିଜ ମୁଣ୍ଡ ଉପରକୁ ବିରାଟ ଦାୟିତ୍ୱ ନେଇଥିବାରୁ ହୁଏତ ଚିକିତ୍ସା କାମ ଛାଡ଼ି ଦେଇଥିବେ । ତେଣୁ ତାଙ୍କ ଉପରେ ଅଭିମାନ କରିବା କିମ୍ବା ତାଙ୍କ ପରି ବ୍ୟକ୍ତିଙ୍କୁ ଭୁଲ ବୁଝିବା ଉଚିତ ନୁହେଁ ।

ଗୋଦାମ ଘରର ଗାତ ଭିତରେ ପଶିଲାକ୍ଷଣି ମୁନିବ ମମତାଦେବୀଙ୍କ ଲୁଗାର ଗଣ୍ଠି ଫିଟାଇ ଆଶ୍ଚର୍ଯ୍ୟାନ୍ୱିତ ଅବସ୍ଥାରେ ଟଙ୍କାଗୁଡ଼ିକୁ ଚାହିଁରହିଲେ । ଅଧସ୍ତନ ଦୁଇ

ଦାଦାଙ୍କୁ ଡାକି କହିଲେ, ''ଖେନ୍ଦିର ମୁହଁ ଦେଖି ବାବୁମାନେ ପଇସା ବଦଳରେ ଟଙ୍କା ପକାଇଲେଣି । ଆଜି ରାତିରେ ଏହାକୁ ଭଲ ଖାଇବାକୁ ଦିଅ ।''

ଯେଉଁ ପିଲାମାନେ କମ୍ ପଇସା ଆଣିଥାନ୍ତି ସେମାନଙ୍କ ପିଠିରେ ବସିଲା ବେତର ଚାବୁକ । କାନ୍ଦିବାପାଇଁ ସାହସ ନ ଥାଏ । ଯନ୍ତ୍ରଣା ଭୋଗ କରି ଭୟରେ ସେମାନେ ନିଜ ନିଜ ଜାଗାରେ ବସିପଡୁଥାନ୍ତି । ଜଣେ ଦାଦା ପାଟିକରି ଧମକ ଦେଲା, ''ଆବେ ପାଜିଗୁଡ଼ାକ ! ଯେତିକି ଖାଉଛ ସେତିକି ପାଇଁ ଯଦି ପଇସା ନ ଆଣିବ, କାଲି ପାଖରୁ ଭାତ ବଦଳରେ ବେତ ଖାଇବ । ବିକଳ ଭାବରେ କାନ୍ଦି କାନ୍ଦି ଲୋକଙ୍କ ପଛରେ ଦୌଡ଼ି ଦୌଡ଼ି ପଇସାଟିଏ ନ ମାଗିଲେ, ନିଜକୁ ଛୋଟା, କଣା ଓ ରୋଗୀ ବୋଲି ନ ଜଣାଇଲେ, ବାପ ମା' ନାହିଁ ବୋଲି ନ କହିଲେ, କିଏ କାହିଁକି ଦୟା କରିବ ? କେତେଥର ଏକା କଥା ତାଲିମ୍ ଦେବି ? ଏଣିକି ମାଡ଼ ଖାଇଲେ ଭିକ ମାଗିବାକୁ ଶିଖିବ ।''

ରାତିରେ ଶୋଇଲା ପରେ ମମତା ଚିନ୍ତା କଲେ, ସ୍ୱରାଜ ନେତା ହୋଇ ଯଦି ପାର୍ଲିଆମେଣ୍ଟ ଗଲାଣି, ସେ ଦିଲ୍ଲୀରେ ଥିବ । ସ୍ୱାଧୀନ ଆଇ.ଏ.ଏସ. ଅଫିସର ଭାବରେ ଗୋଟିଏ ବଡ଼ ସହରରେ ଚାକିରି କରୁଥିବ । ତେଣୁ ସେମାନଙ୍କୁ ଯେବେ ହେଲେ ବି ଦେଖିହେବ । କିନ୍ତୁ ପ୍ରଥମେ କରୁଣାକୁ ଆବିଷ୍କାର କରିବା ହେବ ତାଙ୍କର ପ୍ରଧାନ କର୍ତ୍ତବ୍ୟ । ଝିଅପାଇଁ ତାଙ୍କ ମାତୃହୃଦୟ ଅଧୀର ହୋଇଉଠିଲା । ଅନୁମାନ କଲେ, କବିତାଦେବୀ ନିଶ୍ଚୟ ଏହି କଲିକତା ସହଉରେ ତାହାର ବିବାହ କରାଇଥିବେ । ଶାଶୁ ଘରେ ରହିଥିବ । ପ୍ରତିଦ୍ଦିନ ଭିକ ମାଗିଲା ବେଳେ ଭିନ୍ନ ଭିନ୍ନ ଅଞ୍ଚଳକୁ ଯାଇ ସେ କରୁଣାକୁ ଖୋଜିବା ଲାଗି ଉଦ୍ୟମ ଚଳାଇବେ ବୋଲି ସଂକଳ୍ପ ନେଲେ ।

ସହସା ମନେପଡ଼ିଗଲା ଗୋଟିଏ ବିଷୟ । କବିତାଦେବୀ ଯେଉଁ ସ୍କୁଲରେ ଶିୟୟିତ୍ରୀ ଥିଲେ ସେହି ସ୍ଥାନକୁ ସେ ଥରେ ଯାଇଥିଲେ । ଯଦି ସ୍ୱରାଜ ଓ ସ୍ୱାଧୀନର କଲେଜ ପ୍ରାଙ୍ଗଣ ଦେଖି ସ୍ଥାନଟିକୁ ଚିହ୍ନିପାରିଲେ, ତେବେ କବିତାଦେବୀଙ୍କ ସ୍କୁଲ ଘରଟି ଖୋଜି ପାଇବା ଅସମ୍ଭବ ହେବ ନାହିଁ । ଦଗ୍ଧୀଭୂତ ବସ୍ତି ପାଖରୁ କିଛି ଦୂର ବାଟ ହେଲେ ବି ସେଠାକୁ ପଚାରି ପଚାରି ଯାଇହେବ । ସେଠାରେ କବିତାଦେବୀଙ୍କ ସାକ୍ଷାତ୍ ମିଳିପାରେ । ନ ହେଲେ ମଧ୍ୟ ଅନ୍ୟ ଶିକ୍ଷୟିତ୍ରୀମାନେ ତାଙ୍କ ନୂଆ ଠିକଣା ଦେଇପାରିବେ । କବ୍ିତାଦେବୀଙ୍କୁ ପାଇଗଲେ, କରୁଣାକୁ ଅତି ସହଜରେ ପାଇଯିବେ ବୋଲି ଆଶା ଆସିଲା ।

ନିଦ ଲାଗି ଆସୁଥିବା ସମୟରେ ସେ ଶୁଣିପାରିଲେ ମୁନିବ ଓ ଦାଦାମାନଙ୍କ କଥାବାର୍ତ୍ତା । ମୁନିବ କହିଲେ, ''ଖେନ୍ଦିକୁ କାଲି କାଳୀମନ୍ଦିରକୁ ପଠାଇଲେ ଭଲ ହେବ । ମହିଳାମାନଙ୍କର ଭୀଷଣ ଭିଡ଼ ହେବ । କିପରି ଭାବରେ ସୁନା ହାର ଓ କାନଫୁଲ ଚୋରି କରାଯାଏ, ତାକୁ ସକାଳେ ଶିଖାଇଦିଅ । ଆଜି ସେହିଠାରୁ ଟେମ୍ପା ଓ ଚେମା ଗହଣା ଚୋରି କରିପାରିଛନ୍ତି । ଆଗାମୀ କାଲି ସେମାନେ ସେଠାକୁ ଗଲେ ଧରା ପଡ଼ିଯିବେ । ତେଣୁ ଖେନ୍ଦି ଗଲେ ସବୁଠାରୁ ଭଲ ହେବ ।''

ଜଣେ ଦାଦା ମତ ଦେଲା, ''ଚୋରି କରିସାରିଲା ପରେ ଖେନ୍ଦି ଦୌଡ଼ି ପଳାଇପାରିବ ନାହିଁ । ଯଦି ଧରାପଡ଼ିଯାଏ, ପୁଲିସ ହାତରୁ ମାଡ଼ ଖାଇଲେ ସିଧାସଳଖ ଆମର ଲୁଚିଥିବା ଜାଗା ଦେଖାଇଦେବ । ବୁଢ଼ୀଟା ବେଶି ବେଶି ପଇସା ଆଣିପାରୁଛି ସେତିକିରେ ଆମେ ଖୁସି ରହିବା ।''

''ଠିକ୍ କଥା କହିଛୁ । ଚୋରି ବିଦ୍ୟା ତାକୁ ଶିଖାଇବା ନାହିଁ । ସେଥିରେ ବିପଦ ଅଛି । ମୋର ମନେହୁଏ ଅନ୍ଧୁଣୀ ବୁଢ଼ୀଟାକୁ ଏକାକୀ ଭିକ ମାଗିବା ଦେଖିଲେ ଲୋକଙ୍କର ବେଶି ଦୟା ହେବ । ସାଙ୍ଗରେ କେମ୍ପାକୁ ଦେଖିଲେ ସମସ୍ତେ ଜାଣିପାରିବେ ଯେ ବୁଢ଼ୀଟାର ପରିବାର ଅଛି ବା ତାକୁ ପାଳିବା ଲାଗି ଛୋଟା ପିଲାଟା କାମ କରୁଛି ।'' ଗମ୍ଭୀର ଭାବରେ କହିଲେ ମୁନିବ ।

ଦାଦା କହିଲା, ''କେମ୍ପା ସାଙ୍ଗରେ ନ ଗଲେ ଖେନ୍ଦି ରାସ୍ତା ପାଇବ ନାହିଁ । ଆଖିକୁ ଦେଖାଯାଉ ନାହିଁ । ଟ୍ରାମ ଗାଡ଼ି ଆଗରେ ପଡ଼ିଯାଇପାରେ ।''

''ରାସ୍ତା ଡେଇଁଲା ବେଳେ ଗାଡ଼ି ଆଗରେ ପଡ଼ି ମରିବ ଯଦି ମରୁ । କେତେବେଳେ ଯଦି ଆମ ଆଡ୍ଡା କଥା କେହି ପୁଲିସବାଲାକୁ କହିଦେବ, ଆମର ସର୍ବନାଶ ଘଟିବ । ଟଙ୍କା ବେଶି ଆଣୁଥିଲେ ସୁଦ୍ଧା ବୁଢ଼ୀଟା ଗୋଟିଏ ରିସ୍କ,'' ରାୟ ଦେଲେ ମୁନିବ ।

ରାତି ପାହି ଆସିଲା । ଜଣେ ଦାଦା ହୁକୁମ ଦେଲା, ''କେମ୍ପା ରେଳଡବା ସଫା କରିବାକୁ ଯିବ । ଖେନ୍ଦି ବାଡ଼ି ଧରି ଧୀରେ ଧୀରେ ରାସ୍ତା ପାର ହୋଇ ଧନୀ ଇଲାକାରେ ଘର ଘର ଭିକ ମାଗିବ । କଲିକତାର ରସ୍ତାଘାଟ ଚିହ୍ନିବା ନ ଚିହ୍ନିବା ସମାନ । କୋଠାଘର ଦେଖି ନିଜର ମୁହଁ ଦେଖାଇବ । ରାସ୍ତା ଅନ୍ଦାଜ କରି ଫେରି ଆସିପାରିବ ।''

କେମ୍ପା କହିପକାଇଲା, ''ଏକାକୀ ଗଲେ ସେ ଫେରିପାରିବ ନାହିଁ । ମୁଁ ସାଙ୍ଗରେ ଗଲେ ଫେରାଇ ଆଣିପାରିବି ।'' ''ଚୁପ୍ କର୍'' ବୋଲି କହି ଦାଦା ଥାପଡ଼ଟିଏ ବସାଇ ହୁକୁମ୍ ଦେଲା, ''ଷ୍ଟେସନକୁ ଦୌଡ଼ିଯା । ଗାଡ଼ିଗୁଡ଼ିକ ଛାଡ଼ିବା ବେଳ ହେଲାଣି ।''

ମମତାଦେବୀଙ୍କ ହୃଦ୍‌ବୋଧ ହେଲା, ଦୃଷ୍ଟିଶକ୍ତି କ୍ଷୀଣ ହେଲେ ବି ସେ ସହରର ଫୁଟପାଥ୍ ଉପରେ ଚାଲିପାରିବେ ଏବଂ ଘରଦ୍ୱାର ଦେଖିପାରିବେ । ସେଥି ସହ ଆନନ୍ଦିତ ହେଲେ ଯେ ଏକାକୀ ଗଲେ ଅନୁମାନଦ୍ୱାରା କବିତାଦେବୀଙ୍କ ସ୍କୁଲ ଘର ପର୍ଯ୍ୟନ୍ତ ଚାଲି ଯାଇ ପାରିବେ ।

ଗହ୍ୱର ମଧ୍ୟରୁ ବାହାରି ଆସି ସେ କେମ୍ପାର ମୁଣ୍ଡ ଉପରେ ଚୁମ୍ବନ ଦେଲେ । କିନ୍ତୁ ପିଲାଟି ଦୌଡ଼ି ଚାଲିଗଲା ଷ୍ଟେସନ ଦିଗକୁ ।

ମମତାଦେବୀ ପ୍ରଥମେ ଚାଲିଲେ ଦୀପ୍ତିମାନ ସରକାର ରହିଥିବା ଧ୍ୱଂସପ୍ରାପ୍ତ ବସ୍ତି ପର୍ଯ୍ୟନ୍ତ । ସ୍ମରଣଶକ୍ତି ଜାଗ୍ରତ କରି ସେଠାରୁ ଆଗେଇ ଚାଲିଲେ କବିତାଦେବୀଙ୍କ ବିଦ୍ୟାଳୟ ଦିଗକୁ । ଦୂରରୁ ଶୁଭିଲା ସ୍କୁଲ ଛୁଟି ହେବାର ବାରମ୍ବାର ଘଣ୍ଟିଧ୍ୱନି । ରାସ୍ତା ଅତିକ୍ରମ କରି ସ୍କୁଲ ଘର ଦିଗକୁ ଭଲରୂପେ ଚାହିଁରହି ଆନନ୍ଦିତ ହେଲେ ଯେ ତାହାହିଁ ହେଉଛି କବିତାଦେବୀଙ୍କ ବିଦ୍ୟାଳୟ । ଆଶାନ୍ୱିତ ହୋଇଉଠିଲେ, କବିତାଦେବୀଙ୍କୁ ସେହିଠାରେ ପାଇଁଯିବେ ।

ଗେଟ୍ ପାରହୋଇ ବାହାରି ଆସୁଥାନ୍ତି ଅଳ୍ପ ବୟସ୍କ ଛାତ୍ରଛାତ୍ରୀମାନେ । ବାହାରେ ଅପେକ୍ଷା କରିଥାନ୍ତି ଅଭିଭାବକମାନେ କିମ୍ବା ସେମାନଙ୍କ ପ୍ରେରିତ ଦାସଦାସୀ, ପିଲାମାନଙ୍କୁ ସାଙ୍ଗରେ ନେଇଯିବାପାଇଁ । ଭିଡ଼ ଭାଙ୍ଗିଗଲା ପରେ ମମତା ଧୀର ପଦକ୍ଷେପରେ ସ୍କୁଲ ପ୍ରାଙ୍ଗଣ ମଧ୍ୟରେ ପ୍ରବେଶ କଲେ । ସାହସ କରି ଉଠିଲେ ବାରଣ୍ଡା ଉପରକୁ । ସେଠାରେ ଛିଡ଼ା ରହିଥାନ୍ତି ତିନିଜଣ ଶିକ୍ଷୟିତ୍ରୀ । ମୁଣ୍ଡରେ ଆବରଣ ରଖି ମମତା ପହଞ୍ଚିଲେ ସେମାନଙ୍କ ସମ୍ମୁଖରେ । କାକୁତିଭରା ଭାଷାରେ ନିବେଦନ କଲେ, ‘‘ମା, କବିତାଦେବୀଙ୍କର ଜଣେ ବୃଦ୍ଧ ସମ୍ପର୍କୀୟ ମୋତେ ପଠାଇଛନ୍ତି ତାଙ୍କ ସହିତ ସାକ୍ଷାତ୍ କରିବା ଲାଗି । ତାଙ୍କୁ ଭେଟିବା ପାଇଁ ଆପଣମାନଙ୍କ ସାହାଯ୍ୟ ପ୍ରାର୍ଥନା କରୁଛି ।’’

ଦୁଃଖଭରା କଣ୍ଠରେ ଜଣେ ଶିକ୍ଷୟିତ୍ରୀ ଜଣାଇଲେ, ‘‘କବିତାଦିଦୀ ଅନେକ ଦିନରୁ ଆମ ସମସ୍ତଙ୍କୁ ଛାଡ଼ି ପରଧାମକୁ ବିଦାୟ ନେଲେଣି । ତାଙ୍କ ଆତ୍ମୀୟ ବୋଧହୁଏ ଏତେ ପର୍ଯ୍ୟନ୍ତ ସେହି ଦୁଃସମ୍ବାଦ ପାଇ ନାହାନ୍ତି ।’’

ମମତା ବିବ୍ରତ ଅବସ୍ଥାରେ ତଳେ ବସି ପଡ଼ିବା ଦେଖି ଶିକ୍ଷୟିତ୍ରୀ ଜଣକ କହିଲେ, ‘‘ଏଠାରେ ଏପରି ଭାବରେ ବସିଲ କାହିଁକି ? ଆସ, ଭିତରକୁ ଆସ ।’’

.ତାଙ୍କ ପଛେ ପଛେ ଚାଲିଲେ ମମତା । ଶିକ୍ଷୟିତ୍ରୀଙ୍କ ଦୃଷ୍ଟି ପଡ଼ିଗଲା ତାଙ୍କ ହାତ ଓ ଗୋଡ଼ ଉପରେ । ପଚାରିଦେଲେ, ‘‘ତୁମର ଏପରି ଅବସ୍ଥା କାହିଁକି ?’’

‘‘ହାଣ୍ଡିଶାଳରେ ଭାତ ରାନ୍ଧୁଥିଲାବେଳେ ଶାଢ଼ିରେ ନିଆଁ ଲାଗି ଗଲା । ସାରା ଦେହଟା ପୋଡ଼ିଯାଇଛି ।’’ ଏହା କହି ମମତା ତାଙ୍କ ମୁହଁ ଉପରୁ ଓଢ଼ଣା ଉଠାଇ ଦେଲେ ।

ତାଙ୍କ ବୀଭତ୍ସ ମୁଖମଣ୍ଡଳ ଦେଖି ଶିକ୍ଷୟିତ୍ରୀ ଚମକି ଉଠି ଅନ୍ୟ ଦୁଇ ସଙ୍ଗିନୀଙ୍କୁ ଭିତରକୁ ଡାକିଲେ । ‘‘ଦେଖ ଏହି ମହିଳାଙ୍କ ଅବସ୍ଥା । ଆମେ ମଧ୍ୟ ଚୁଲି ପାଖରେ ଭାତ ରାନ୍ଧୁଛୁ । କେବେ ଆମର ବି ଏପରି ଅବସ୍ଥା ହୋଇପାରେ ।’’

ମମତାଙ୍କୁ ସେମାନେ ଗୋଟିଏ ଚେୟାରରେ ବସାଇ ଥଣ୍ଡାପାଣି ପିଇବାକୁ ଦେଲେ । ଜଣେ ଦୁଃଖ ପ୍ରକାଶପୂର୍ବକ ଜଣାଇଲେ, ‘‘କବିତାଦେବୀ ଥିଲେ ଆମମାନଙ୍କ ସମବୟସ୍କା । ତଥାପି ସେ ଥିଲେ ସମସ୍ତଙ୍କର ଦିଦୀ । ତାଙ୍କ ସ୍ୱାମୀ ସହିଦ ହେବା ପରେ ସେ ଥାଆନ୍ତି ଏକାକିନୀ । ଦଙ୍ଗାହାଙ୍ଗାମା ବେଳେ ବସ୍ତିରେ ଥିବା ବାସଗୃହଟା ପୋଡ଼ିଗଲା ପରେ ସେ ଅନ୍ୟତ୍ର ଘରଟିଏ ଭଡ଼ା ନେଇ ରହିଥିଲେ । ଗୋଟିଏ ପର ଘରର ଝିଅକୁ ନିଜର ପାଳିତା କନ୍ୟା ରୂପେ ଆଦର କରୁଥିଲେ । କିନ୍ତୁ ତାଙ୍କ ପରି ଦେବୀତୁଲ୍ୟା ମହିଳାଙ୍କୁ ବିଧି କ୍ୟାନସର ରୋଗ ଆଣିଦେଲା । ପ୍ରାୟ ଏକ ବର୍ଷ ଅସହ୍ୟ ଯନ୍ତ୍ରଣା ଭୋଗକରି ଶେଷରେ ପ୍ରାଣ ଛାଡ଼ିଲେ ।’’

ମର୍ମାହତ ମମତାଦେବୀଙ୍କ ମୁଖରୁ ବାହାରି ପଡ଼ିଲା ପ୍ରଶ୍ନଟିଏ, ‘‘ତାଙ୍କର ସେହି ପାଳିତା କନ୍ୟାଟି ଭଲ ଅଛି ତ ?’’

ପଛରେ ବସିଥିବା ଜଣେ ବୃଦ୍ଧା ମହିଳା ଉତ୍ତର ଦେଲେ, ‘‘କବିତାଦିଦୀଙ୍କ ପାଳିତା କନ୍ୟାଟି ମଧ୍ୟ ଗୋଟିଏ ଅଭାଗିନୀ । ତା’ର ନାମ କରୁଣା । ସେହି ଝିଅର ବିବାହ ଉପଲକ୍ଷେ ଦିଦୀ ମୋତେ ନିମନ୍ତ୍ରଣ କରିଥିଲେ । ମୁଁ ଯାଇଥିଲି ।’’

ଅକସ୍ମାତ୍ ସର୍ପଦଂଶନରେ ଆହତ ହେଲାପରି ଅସହ୍ୟ ଯନ୍ତ୍ରଣା ମଧ୍ୟରେ କାନ୍ଦି ପକାଇ ମମତା ପ୍ରଶ୍ନ କଲେ, ‘‘ମା, ଆପଣଙ୍କ ପାଦ ଧରୁଛି । କରୁଣା ଝିଅଟିକୁ ଅଭାଗିନୀ ବୋଲି କାହିଁକି କହିଲେ ସେ କଥା ଦୟାକରି ମୋତେ କହନ୍ତୁ ! ସେହି ଝିଅର ଜଣେ ବୃଦ୍ଧ ଓ ପୀଡ଼ିତ ଆତ୍ମୀୟ ପ୍ରକୃତପକ୍ଷେ ମୋତେ ପଠାଇଥିଲେ ସେହି କରୁଣା ବିଷୟ ଜାଣିବାପାଇଁ । ସେଥିପାଇଁ କବିତାଦେବୀଙ୍କ ଠିକଣା ଜାଣିବା ଉଦ୍ଦେଶ୍ୟରେ ଏଠାକୁ ଆସିଥିଲି ।’’

ବୃଦ୍ଧା ବର୍ଣ୍ଣନା କଲେ, ‘‘ଝିଅଟିକୁ ଅଭାଗିନୀ ବୋଲି କହିବା ପଛରେ କାରଣ ରହିଛି । କବିତାଦିଦୀଙ୍କ ସନ୍ତାନସନ୍ତତି ନାହିଁ ବୋଲି ଜାଣି ଅନ୍ୟ ଗୋଟିଏ ଅଞ୍ଚଳର ଜଣେ ମହିଳା ତା’ ନିଜ ଝିଅକୁ ଆଣି ତାଙ୍କ ନିକଟରେ ରଖିଦେଇ ଏକାଥରକେ ଯେ

ଚାଲିଗଲା, ଆଉ କେବେହେଲେ ନିଜ ଝିଅକୁ ଦେଖିବାଲାଗି ଫେରିଲା ନାହିଁ । କବିତା ଦିଦୀଙ୍କ କ୍ୟାନସର ରୋଗ ଜଣାପଡ଼ିଲା ପରେ ସେ ସେହି ଝିଅଟିକୁ ଶୀଘ୍ର ବିବାହ କରାଇ ଦେବାଲାଗି ବର ଖୋଜିଲେ । ନିଜେ ତ ଥିଲେ ଶଯ୍ୟାଶାୟୀ ଓ ମୃତ୍ୟୁମୁଖୀ । ଜଣେ ମଧ୍ୟସ୍ଥର କଥାରେ ପଡ଼ି ଗୋଟାଏ ଅପଦାର୍ଥ ଯୁବକ ହାତରେ ଝିଅଟିକୁ ବାନ୍ଧି ଦେଲେ । ଝିଅଟି ମେଟ୍ରିକ ପଢ଼ିଥିଲା । ଦେଖିବାକୁ ଅତି ସୁନ୍ଦର । ଗୁଣ ମଧ୍ୟ ଅତି ଉତ୍ତମ ବୋଲି କବିତାଦିଦୀ କହୁଥାନ୍ତି ।''

''ତାହାପରେ କ'ଣ ହେଲା ?'' ଉତ୍କଣ୍ଠିତ ଚିତ୍ତରେ ପଚାରିଲେ ମମତା ।

''ବିବାହ ବେଦୀ ଉପରକୁ ଉଠିଲା ବେଳେ ମୁଁ ଦେଖି ପାରିଥିଲି ବରଟା ମଦ ପିଇ ମାତାଲ ଅବସ୍ଥାରେ ନିଜର ଗୋଡ଼ ପକାଇ ପାରୁ ନାହିଁ । ବୈଦିକ ମନ୍ତ୍ର ଉଚ୍ଚାରଣ ସହ ହାତ ଗଣ୍ଠି ପକାଉଥିବା ସମୟରେ ବରର ବ୍ୟବହାର ଦେଖି ବ୍ରାହ୍ମଣ ପୁରୋହିତ ବିରକ୍ତ ହେଉଥିଲେ । କନ୍ୟା ସମର୍ପଣ ସମୟରେ କବିତାଦେବୀ କାନ୍ଦୁଥିଲେ ।''

''ତା' ପରେ ?''

''ବର କନ୍ୟା ବିଦାୟ ନେଉଥିଲା ବେଳେ କବିତାଦିଦୀ ବରର ବାପକୁ ଅନୁନୟ ବିନୟ ସହ ନିବେଦନ କରୁଥିବା ମୁଁ ଶୁଣିଛି ଯେ ଝିଅଟି ତାଙ୍କର ଏକମାତ୍ର ଭରସା । ରୋଗଶଯ୍ୟାରେ ସେବା କରିବା ପାଇଁ କେହି ନାହିଁ । ତେଣୁ କରୁଣାକୁ ଶୀଘ୍ର ପଠାଇ ଦେବେ । ସେତିକିବେଳେ ବରଟା ନିଜେ ପାଟି କରି କହିଲା, ''ମୋର ସ୍ତ୍ରୀ ହେଲା ପରେ ତୁମ ଘରେ ସେ ରହିପାରିବ ନାହିଁ ।'' ବରର ଏପରି କଥା ଶୁଣି କବିତାଦିଦୀ ଓ କରୁଣା ଉଭୟେ କାନ୍ଦୁଥିବା ଦୃଶ୍ୟ ମୁଁ ଦେଖିଛି । ମା' ପାଖରୁ ବିଦାୟ ନେଲାବେଳେ ଝିଅଟିର କରୁଣ କ୍ରନ୍ଦନ ମୁଁ ସହ୍ୟ କରିପାରିଲି ନାହଁ । ବିବାହର କିଛି ଦିନ ପରେ ଦିଦୀ ମୃତ୍ୟୁବରଣ କଲେ । ତାଙ୍କର ଇଚ୍ଛା ଥିଲା, କରୁଣା ମୁଖାଗ୍ନି ଦେବ । କିନ୍ତୁ ସେହି ଶେଷ ଇଚ୍ଛା ସଫଳ ହେଲା ନାହିଁ । ଆମେ ସମସ୍ତେ ଶବ ସତ୍କାର ଲାଗି ଯାଇଥିଲୁ ।''

ମମତା ନିର୍ବାକ ଭାବରେ ବସିରହି ସବୁ କଥା ଶୁଣିଲେ । ଶିକ୍ଷୟିତ୍ରୀମାନେ ବିଦାୟ ନେବାକୁ ଉଠିଲା ସମୟରେ ପଚାରିଲେ, ''କରୁଣା କେଉଁଠାରେ ଅଛି ? ତା' ଶାଶୁଘର ଏଠାରୁ କେତେ ଦୂରରେ ? ଠିକଣା ଜାଣିପାରିଲେ ମଙ୍ଗଳ ହୁଅନ୍ତା ।''

ବୃଦ୍ଧା ମହିଳା ଥିଲେ ସ୍କୁଲର ହେଡ୍‌କିରାଣି । ସେ ବତାଇ ଦେଲେ, ''ଆମ ସ୍କୁଲ ପାଖରୁ ବାଟ ବେଶି ନୁହେଁ । ଗେଟ୍ ସାମନାରୁ ସିଧା ପୂର୍ବ ଦିଗକୁ ଚାଲିଯିବ । ଯେଉଁଠାରେ ଭଙ୍ଗା ମସ୍‌ଜିଦ୍‌ଟିଏ ଦେଖିପାରିବ, ସେଠାରୁ ଦକ୍ଷିଣ ଦିଗକୁ ଯାଇଥିବା ରାସ୍ତାରେ ଗଲେ ଗୋଟିଏ ବଡ଼ ବଟଗଛ ପଡ଼ିବ । ସେହି ବଟଗଛ ପଛରେ ଯେଉଁ

ଏକାତାଲା ପକ୍କା ଘରଟା ରହିଛି, ସେହିଟା ହେଉଛି କରୁଣାର ଶାଶୁଘର । ଶ୍ୱଶୁର ବୁଢ଼ା ବଞ୍ଚିଛି । ଶାଶୁଟା ଘରର ମାଲିକାଣୀ । ପୁଅଟା ଲୋକଙ୍କୁ ଠକି ଠକି ଟଙ୍କା ଆୟ କରୁଛି ଓ ମଦ ପିଉଛି । ତା' ଭାଇଗୁଡ଼ାକ ବି ବାଲୁଙ୍ଗା । ଆଖପାଖ ପଡ଼ୋଶୀମାନେ ଅବଶ୍ୟ ଭଦ୍ର । ଜାଗାଟା ମନ୍ଦ ନୁହେଁ ।''

ମମତା ଉଠିଲେ । ଶିକ୍ଷୟିତ୍ରୀମାନେ ବିଦାୟ ନେଲେ । ବୃଦ୍ଧା ମହିଳାଟି ଗେଟ ପର୍ଯ୍ୟନ୍ତ ଆସି ଅଙ୍ଗୁଳିଦ୍ୱାରା ପୂର୍ବ ଦିଗକୁ ଲମ୍ବି ଯାଇଥିବା ରାସ୍ତାଟି ଦେଖାଇ ଦେଲେ ।

ମମତାଦେବୀଙ୍କ ଛାତି ଥରୁଥାଏ । ହତଭାଗିନୀ ଝିଅକୁ କିପରି ଅବସ୍ଥାରେ ଦେଖିବେ ସେହି ଚିନ୍ତା ମନକୁ ଅଥୟ କରିଦେଉଥାଏ । ସାହସ ବାନ୍ଧିଲେ, ପରିଚୟ ନ ଦେଇ ସୁଦ୍ଧା ଥରେମାତ୍ର କଥାବାର୍ତ୍ତା ଲାଗି ସୁଯୋଗ ମିଳିଲେ ଝିଅକୁ ବୁଝାଇ ସମସ୍ତଙ୍କ ଅଜାଣତରେ ନେଇ ଚାଲିଯିବେ ଦିଲ୍ଲୀ, ତା' ଭାଇ ସ୍ୱରାଜ ପାଖକୁ । ସେ ପାର୍ଲିଆମେଣ୍ଟ ଗଲାଣି । ଭଉଣୀ କଥା ଭାଇ ବୁଝିବ ।

ଦୂରରୁ ଦିଶିଲା ମସଜିଦ୍‌ର ଭଙ୍ଗା କାନ୍ଥ ।

## ।। ୨୫ ।।

ମସଜିଦ୍ ନିକଟରୁ ଦକ୍ଷିଣ ଦିଗକୁ ଚାଲି ଚାଲି କିଛି ବାଟ ଗଲା ପରେ ମମତା ଦେଖିପାରିଲେ ପ୍ରକାଣ୍ଡ ଗୋଟିଏ ବଟ ଗଛ । ସୂର୍ଯ୍ୟ ବୁଡ଼ିବା ସମୟ ହୋଇ ନ ଥାଏ । ଝିଅର ମୁହଁ ଦେଖିବା ଆଶାରେ ହତଭାଗିନୀ ମା'ଙ୍କର କ୍ଷୀଣ ଦୃଷ୍ଟିଶକ୍ତି ସତେଜ ହୋଇଉଠିଲା । ପୂର୍ବକାଳର କେଉଁ ବଦାନ୍ୟ ବ୍ୟକ୍ତି ପଥଶ୍ରାନ୍ତ ପଥିକମାନଙ୍କ ବିଶ୍ରାମ ଲାଗି ହୁଏତ ବଟବୃକ୍ଷର ଚାରିପଟରେ ମାଙ୍କଡ଼ାପଥରର ମଞ୍ଚଟିଏ ତିଆରି କରିଦେଇଥିଲେ । ଅଧାଅଧି ଭାଙ୍ଗିଯାଇଥିଲେ ମଧ୍ୟ ବସିବା ଲାଗି କିଛି ଅଂଶ ରହିଥାଏ ।

ମମତା ସେହିଠାରେ ବସିପଡ଼ିଲେ । ସକାଳ ପାଖରୁ ଟୋପାଏ ପାଣି ସୁଦ୍ଧା ପେଟରେ ପଡ଼ି ନ ଥାଏ । ରହିଥାଏ କେବଳ ମାନସିକ ଶକ୍ତି । ଦେଖିଲେ, ସେହି ବଟଗଛଟିକୁ ଲାଗି ରହିଛି ଗୋଟିଏ ଘରର ପାଚେରି । ପ୍ରାଚୀରର ଅଳ୍ପ ଦୂରରେ ଥାଏ ଏକତାଲା ବିଶିଷ୍ଟ ଗୋଟିଏ ପୁରୁଣା ପକ୍କାଘର । ଅଥଚ, ସେହି ଘରଟିର ଉଭୟ ପାର୍ଶ୍ୱରେ ଛିଡ଼ା ହୋଇଥାଏ ଧାଡ଼ି ପରେ ଧାଡ଼ି ଦୁଇ କିମ୍ବା ତିନିତାଲା ବିଶିଷ୍ଟ ନୂତନ ଗୃହମାନ । କରୁଣାର ଘରଟିକୁ ଚାହିଁରହି ଅନୁମାନ କଲେ, ପୁରୁଣା ଘର ପରିଚୟ

ଦେଉଛି ପୁରାତନ ବଂଶର ବୁନିଆଦି । ହୁଏତ କଲିକତାର କେଉଁ ଜଣେ ପୁରୁଣା ବାସିନ୍ଦା ଘରଟି ନିର୍ମାଣ କରିଥିଲେ । ଏବେ ନୂତନ ବାସିନ୍ଦାମାନେ ପାର୍ଶ୍ୱବର୍ତ୍ତୀ ଜାଗାଗୁଡ଼ିକରେ ନୂତନ ଢଙ୍ଗର ସୌଧମାନ ନିର୍ମାଣ କରି ଗଲେଣି । ମନେହେଲା, କବିତାଦେବୀ ନିଶ୍ଚୟ କରୁଣାପାଇଁ ବୁନିଆଦି ବଂଶଟିଏ ଖୋଜିଥିଲେ ।

ପାଚେରି ବାହାରେ ବଟ ଗଛ । ଗଛ ପାଖରେ ଥାଏ ଗୋଟିଏ ପୁରୁଣାକାଳିଆ କୂଅ । କୂଅ ପାଖକୁ ଲାଗିଥାଏ ଘରର ଫାଟକ । କୂଅ ଚାରିପଟରେ ଥାଏ ବାଉଁଶ କଣ୍ଟାର ବେଢ଼ା । ଜଣା ଯାଉଥାଏ, କୂଅଟି ଘରୋଇ ବ୍ୟବହାର ପାଇଁ ।

ଅନ୍ୟମନସ୍କ ଭାବରେ ବସିରହିଥିବା ସମୟରେ ମମତାଦେବୀ ଜାଣିପାରିଲେ ନାହିଁ ଯେ ସୂର୍ଯ୍ୟାସ୍ତ ପରେ ଆସିଗଲାଣି ସନ୍ଧ୍ୟାକାଳର ଅନ୍ଧକାର । ସହସା ଚମକି ଉଠି ଦେଖିଲେ, ଶାଢ଼ି ପିନ୍ଧି ବାଁ ହାତରେ ଲଣ୍ଠନଟି ତଳକୁ ଧରି ଓ ଡାହାଣହାତ ଉପରକୁ ଉଠାଇ ପାପୁଲି ଉପରେ ଅଇଁଠା ବାସନଗୁଡ଼ାକ ଧରି ଘର ଭିତରୁ ଓ ଫାଟକ ଡେଇଁ ବାହାରି ଆସୁଛି ଜଣେ ଅଳ୍ପବୟସ୍କା ମହିଳା । ''ଏହି ତ ମୋ ଝିଅ'', ଅନ୍ତର ମଧ୍ୟରେ ଚିତ୍କାର କରିଉଠିଲେ ମମତା ।

ଝିଅଟି ବାସନଗୁଡ଼ାକ ତଳେ ରଖି ଦଉଡ଼ିରେ ବନ୍ଧାଥିବା ବାଲତିଟିକୁ କୂଅ ଭିତରକୁ ଛାଡ଼ିଲା । ଦୁଇ ହାତରେ ଟାଣି ଟାଣି ପାଣି ଭର୍ତ୍ତି ବାଲତିଟି ଉପରକୁ ଉଠାଇ ମାଟି ଉପରେ ରଖିଲା । ବାସନ ମାଜିବାକୁ ବସିପଡ଼ିବା ସମୟରେ ଘରର ପିଣ୍ଡା ଉପରୁ ଶୁଭିଲା ଜଣେ ମହିଳାଙ୍କର କର୍କଶ ବାଣୀ, ''ଆରେ ବୋହୂ, ତୋ ଶ୍ୱଶୁରଙ୍କର ପିକଦାନିଟା ନେବାକୁ ଭୁଲିଗଲୁ ! କଫ ଉଛୁଳି ପଡ଼ିଲାଣି । ଆ, ଶୀଘ୍ର ନେଇ ପରିଷ୍କାର କରି ମାଜି ଆଣେ ।'' ସେତେବେଳେ ଗୋଟିଏ କୋଠରି ଭିତରୁ ଶୁଭୁଥାଏ ଘନ ଘନ କାଶ ଓ କଫ ପକାଇବା ଶବ୍ଦ । କରୁଣା ସଙ୍ଗେ ସଙ୍ଗେ ଘର ଭିତରକୁ ଫେରିଗଲା ।

ଲଣ୍ଠନଟି କୂଅ ତଳେ ରହିଥାଏ । ପାଖରେ ଥୁଆ ହୋଇଥାଏ ଗୁଡ଼ାଏ ଅଇଁଠାବାସନ ଓ ପାଣିଭରା ବାଲତି । ମନ୍ତ୍ରଚାଳିତ ଭାବରେ ମମତା ଚାଲିଗଲେ କୂଅ ପାଖକୁ । ବସିପଡ଼ିଲେ ବାସନଗୁଡ଼ାକ ମାଜିବାପାଇଁ । ଭୁଲିଗଲେ ନିଜର ବୀଭତ୍ସ ମୁଖମଣ୍ଡଳ ଓ କଦର୍ଯ୍ୟ ଅଙ୍ଗ ପ୍ରତ୍ୟଙ୍ଗ କଥା । କିଛି ସମୟ ପରେ କରୁଣା କଫ ଭର୍ତ୍ତି ପିକଦାନି ପୋଖରୀରେ ପରିଷ୍କାର କରି ଫେରିଲା ବେଳକୁ ବାସନଗୁଡ଼ାକ ମଜା ହୋଇ ରହିଥାଏ । ସେତେବେଳକୁ ମମତାଦେବୀ ପୁଣି ଥରେ ବାଲତି ଭର୍ତ୍ତିକରି ପାଣି ଉଠାଉଥାନ୍ତି କୂଅ ଭିତରୁ ।

''ଆରେ, ତୁ କିଏ ? ଓଃ ବୁଝିଲି, ମୁଠାଏ କିଛି ଖାଇବୁ ବୋଲି ମୋ କାମଟା କରିଦେଇଛୁ । ଏତେ ଶୀଘ୍ର ଏତେଗୁଡ଼ାଏ ବାସନ ମାଜିଦେଲୁ ! ହେଉ, ଗଛ ତଳେ ବସିଥା । ଖାଇବା ଜିନିଷ ଆଣି ଦେଉଛି ।''

ଲଣ୍ଠନର ନିଷ୍ପ୍ରଭ ଆଲୋକରେ କନ୍ୟା କରୁଣାର କୋମଳ ମୁହଁଟିକୁ ମୁହୂର୍ତ୍ତ ପାଇଁ ଦେଖିପାରି ମମତା ପ୍ରକୃତରେ ଯେପରି ହାତରେ ପାଇଗଲେ ଆକାଶର ଚନ୍ଦ୍ରମା । ଆଖିରୁ ଝରି ଯାଉଥାଏ ଲୋତକଧାରା । ଅନ୍ତରାତ୍ମା କାନ୍ଦି ଉଠୁଥାଏ, ହାୟ ମୋର ଦୁଃଖିନୀ ଝିଅ କରୁଣା ! ନିଜକୁ ସାନ୍ତ୍ୱନା ଦେଲେ, ଭଗବାନ୍ ଝିଅକୁ ବଞ୍ଚାଇ ରଖିଛନ୍ତି, ସେତିକି ହିଁ ଯଥେଷ୍ଟ । ଦେଶର ଚାରିଆଡ଼େ ଅସଂଖ୍ୟ କରୁଣା ନିଜ ନିଜ ଶାଶୂ ଘରେ ଏହିପରି କାମ କରି ବଞ୍ଚିଥିବେ ! ''ମୋ କରୁଣା ବଞ୍ଚିଛି । ତା'କୁ ମୁଁ ଦେଖିପାରିଛି । ସେଥିପାଇଁ ମୋ ବଞ୍ଚିରହିବା ସାର୍ଥକ ହୋଇଛି । ଭଗବାନ୍ ଧନ୍ୟ ତୁମର ଦୟା'', ଅନ୍ତର ମଧ୍ୟରେ ପ୍ରତିଧ୍ୱନିତ ହେଲା ଏହି କେତୋଟି ଶବ୍ଦ ।

''ଆ, ଦୁଆରକୁ ଆ । ଏହିଠାରେ ଖାଇବାକୁ ଦେବି,'' ବାରଣ୍ଡା ଉପରେ ଛିଡ଼ା ରହି ଡାକିଲା କରୁଣା ।

''ମା', ଏହି ଗଛ ତଳେ ବସି ଖାଇବି । ଯାହା ଦେବ, ଏହିଠାରେ ଦିଅ ।'' କ୍ଷୀଣ ସ୍ୱରରେ ଉତ୍ତର ଦେଲେ ମମତା ।

''ଗଛ ତଳେ ସାପ ଅଛି । ପିଣ୍ଡା ଉପରକୁ ଚାଲି ଆ ।''

ମମତା ବାରଣ୍ଡା ଉପରକୁ ଉଠିଲେ । ସ୍ଥାନଟି ଅପରିଷ୍କାର ଦିଶୁଥାଏ । ତଳେ ପଡ଼ିଥିବା ଝାଡୁଟିଏ ଧରି ସେ ବାରଣ୍ଡାଟି ଝଟାଇ ଦେଉଥିବା ବେଳେ ବାହାରି ଆସିଲେ କରୁଣାର ଶାଶୁ, ପଙ୍କଜିନୀଦେବୀ । ଲଣ୍ଠନ ବତିଟିକୁ ତେଜାଇ ଦେଇ ଉଜ୍ଜ୍ୱଳ ଆଲୋକରେ ସେ ମମତାଙ୍କ ଆପାଦମସ୍ତକ ଅବଲୋକନ କରୁଥିଲାବେଳେ, ମମତା ମଧ୍ୟ ଦେଖିପାରୁଥାନ୍ତି ସେହି ମହିଳାଙ୍କ ମୂର୍ତ୍ତି । ଶୁଭ୍ରକେଶୀ ପ୍ରୌଢ଼ାଙ୍କ ଆଗ ଦାନ୍ତ ଦୁଇଟା ଓଠ ଉପରକୁ ବାହାରି ପଡ଼ିଥାଏ । ବେକରେ ଝୁଲୁଥାଏ କାରୁକାର୍ଯ୍ୟମଣ୍ଡିତ ସୁନା ହାର ଓ କାନରେ ବଡ଼ ବଡ଼ ସୁନା ଫୁଲ ।

''ଛିଃ, ଛିଃ, ଛିଃ, ଆରେ ତୋତେ ଯଦି ବଡ଼ରୋଗ ଧରିଛି, ଆମ ବାସନରେ ହାତ ଦେଲୁ କାହିଁକି ? ବାହାରି ଯା, ସର୍ବନାଶୀ,'' ପାଟି କରି ଉଠିଲେ କରୁଣାର ଶାଶୁ ।

''ନା, ମୁଁ କୁଷ୍ଠରୋଗୀ ନୁହେଁ । ଭାତ ରାନ୍ଧୁଥିଲାବେଳେ ଶାଢ଼ି ଓ ଚଦରରେ ନିଆଁ ଲାଗିଗଲା । ଦେହଟା ପୋଡ଼ିଗଲା । ଲଣ୍ଠନରେ ଭଲ କରି ଦେଖନ୍ତୁ, ଜାଣିପାରିବେ

ବଡ଼ରୋଗ ନୁହେଁ । ଦୁଇଟା ହାତ ଦେଖନ୍ତୁ, ପରିଷ୍କାର ଅଛି । ଭଦ୍ର ବଂଶର ବୋହୂ ଥିଲି । ମୁହଁ ଦେଖାଇ ନ ପାରି ଭିକ ମାଗି ମାଗି ବଞ୍ଚିଛି ।''

ପଙ୍କଜିନୀଦେବୀ ଲଣ୍ଠନଟିକୁ ପୂରାମାତ୍ରାରେ ଜଳାଇ ମହିଳାଟିର ଗୋଡ଼ ପାଖରୁ ମୁଣ୍ଡ ପର୍ଯ୍ୟନ୍ତ ବାରମ୍ବାର ନିରୀକ୍ଷଣ କଲେ । ଶେଷରେ ତାଙ୍କର ବିଶ୍ୱାସ ହେଲା, ମାଇକିନିଆଟା ପ୍ରକୃତପକ୍ଷେ କୁଷ୍ଠରୋଗୀ ନୁହେଁ, ପୋଡ଼ା ଦେହ ଯୋଗୁଁ ସେହିପରି ଦିଶୁଛି । ପଚାରିଲେ, ''ଆମ ଘରେ ଚାକରାଣୀ ରହିବୁ ? ଖାଇବାକୁ ଦିଆଯିବ । କିନ୍ତୁ ବେତନ ଦେଇପାରିବା ନାହିଁ । କାମ ଭିତରେ ବାସନ ମାଜିବୁ, କୂଅରୁ ପାଣି ଉଠାଇ ଚୌବଚା ଭର୍ତ୍ତି କରିବୁ, ଘରଦ୍ୱାର ଝାଡୁ ମାରିବୁ ।''

ମମତା ତରତରରେ ଉତ୍ତର ଦେଲେ, ''ଏ ସବୁ କାମ ଖୁସିରେ କରିବି । ରନ୍ଧାବଢ଼ା କାମ ବି ଭଲଭାବରେ ଜାଣିଛି ।''

''ନା, ନା, ରାନ୍ଧିବା କାମ ବୋହୂ କରିବ । ତୁ ଚୁଲି ପାଖକୁ ଯାଇପାରିବୁ ନାହିଁ । ପୁଅମାନେ ତୋ ହାତରୁ ଖାଇବେ ନାହିଁ । ବାନ୍ତି କରିଦେବେ । ଆଗେ କହ, ବିନା ବେତନରେ ରହିବୁ କି ନାହିଁ ?''

''ମୋର ବେତନ ଦରକାର ନାହିଁ । ଦରକାର, ପେଟକୁ ମୁଠାଏ ଦାନା ଓ ପିଠିକୁ ଖଣ୍ଡିଏ କନା ।''

କରୁଣା ସିଲଭର ବାଟିରେ ମୁଢ଼ି ଭର୍ତ୍ତିକରି ବାହାରି ଆସିବା ଦେଖି ଶାଶୁ ଆଦେଶ ଦେଲେ, ''ନେଇ ଯା, ମୁଢ଼ି ଦରକାର ନାହିଁ । ସେ ଚାକରାଣୀ ରହିବ ବୋଲି କହିଲାଣି । ଭାତ ରନ୍ଧା ସରିଲେ ଏକା ଥରକେ ଖାଇବ । ଏବେ ତାକୁ ଖଣ୍ଡିଏ ମସିଣା ଦେ । ବାରଣ୍ଡାରେ ଶୋଇଥାଉ । କୁଷ୍ଠରୋଗୀ ନୁହେଁ, ପୋଡ଼ାମୁହାଁ ।''

କରୁଣା ଭିତରକୁ ଚାଲିଗଲା ପରେ ପଙ୍କଜିନୀଦେବୀ ମମତାଙ୍କୁ ସତର୍କ କରାଇ ଦେଲେ, ''ତୋ ଗେନସା ମୁହଁ ଦେଖିଲେ ପୁଅମାନେ ବାହାର କରିଦେବେ । ସବୁବେଳେ ମୁହଁ ଘୋଡ଼ାଇ ରଖିବୁ । ତଥାପି ସେମାନଙ୍କ ନଜର ପଡ଼ିଯିବା ସମ୍ଭବ । ତେଣୁ ତୋତେ ଗେନସି ବୋଲି ଡାକିବି । ପ୍ରଥମରୁ ସେମାନେ ଓ ସେମାନଙ୍କ ସାଙ୍ଗମାନେ ଜାଣିଯିବେ ଯେ ତୁ ଗୋଟାଏ ଗେନସା ଚାକରାଣୀ ।''

ଶାଶୁ ଭିତରକୁ ଚାଲିଗଲେ । ବିନା ବେତନରେ ଚାକରାଣୀଟାଏ ପାଇଗଲେ ବୋଲି ତାଙ୍କ ମନରେ ଆନନ୍ଦ ଜାତ ହୋଇଛି ବୋଲି ମମତାଦେବୀ ଅନୁଭବ କରିପାରିଲେ । କରୁଣା ଖଣ୍ଡିଏ ପୁରୁଣା ଶତରଞ୍ଜି ଧରି ବାହାରି ଆସିବା ବେଳକୁ

ମମତାଦେବୀ ଝାଡୁଧରି ବାରଣ୍ଡାତଳ ଅଗଣାଟିକୁ ସଫା କରୁଥାନ୍ତି । ତାହା ଦେଖି ପଙ୍କଜିନୀଦେବୀ ବାହାରି ଆସି ବୋହୂ ପ୍ରତି ଲକ୍ଷ୍ୟ ରଖି କହିଗଲେ,

''ଯେତେଗୁଡ଼ାଏ ଚାକରାଣୀ ରଖିଲିଣି, ସମସ୍ତେ ପ୍ରଥମେ କେତେଦିନ ମନଦେଇ ସବୁ କାମ କରିପକାନ୍ତି । ତା' ପରେ ଅସଲ ସ୍ୱଭାବଟା ବାହାରି ପଡ଼େ । ଡାକିଲେ ଶୁଣିବେ ନାହିଁ, ଶୋଇଲେ ଉଠିବେ ନାହିଁ, କାମଦାମ ନ କରି ପେଟ ଭର୍ତ୍ତି କରି ଖାଇବେ ଏବଂ ଶେଷରେ ଗାଳିଦେଇ ବାହାରିଯିବେ । ଏ ଗେନସୀଟା ଭଲ କରି ଖାଇବ ବୋଲି କାମ କରିବାକୁ ଲାଗିପଡ଼ିଛି । ତା ପାଇଁ ଶୋଇବା ଜାଗାଟା ମୋ ଝରକା ବାହାରେ କରିବୁ ନାହିଁ । ତୁ ଜାଣିଛୁ ମୋ ବେଡ଼୍‌ରୁମ୍ ବାହାରେ କେହି ଶୋଇଲେ ମୋତେ ନିଦ ହୁଏ ନାହିଁ । ବରଂ ତୋ ଶ୍ୱଶୁରଙ୍କ ଝରକା ପାଖରେ ଶତରଞ୍ଜିଟା ରଖି ଦେ । ସେ ରାତିସାରା କାଶି କାଶି କଫ ବାହାର କରନ୍ତି । ଚାକରାଣୀଟା ସେହି ଝରକା ପାଖରେ ଶୋଇଲେ ବାଧ୍ୟହୋଇ ସକାଳେ କଫହାଣ୍ଡିଟା ନେଇ ଗଡ଼ିଆରେ ଧୋଇ ଆଣିବ ।''

''ମା', ସେ କାମଟା ମୁଁ କରିଆସୁଛି ଓ କରୁଥିବି । ନୂଆ ଝିଅଟା ଘୃଣା କରିପାରେ,'' ଧୀର କଣ୍ଠରେ କହିଲା କରୁଣା ।

ରାଗିଉଠି ପଙ୍କଜିନୀଦେବୀ ବୋହୂ ପ୍ରତି ଗାଳିବର୍ଷଣ କଲେ, ''କ'ଣ କହିଲୁ, ଚାକରାଣୀ ପୁଣି କଫ ସଫା କରିବ ନାହିଁ ? ଆରେ, ତୁ ଜାଣିଛୁ, ପ୍ରତିଦିନ ସକାଳେ ତୁ କଫହାଣ୍ଡି ସଫା କରୁ ବୋଲି ମୋ ପୁଅମାନେ ତୋ ହାତରୁ ଜଳଖିଆ ଖାଆନ୍ତି ନାହିଁ ! ମୋତେ ପରଟା ତିଆରି କରିବାକୁ ହୁଏ ! ମୁଁ ବୁଢ଼ୀ ହେଲିଣି । ମୋର ଆଉ ଜଳଖିଆ ତିଆରି କରିବାପାଇଁ ବଳ ଅଛି ? କାଲିଠାରୁ ସେ କାମ ତୁ କରିବୁ । ପ୍ରଥମରୁ ଚାକରାଣୀଟାକୁ ମୁହଁ ଦେବୁ ନାହିଁ, ବୁଝିଲୁ ! ମୁଁ ଜାଣେ ସବୁ ଚାକରାଣୀଗୁଡ଼ାକୁ ତୁ ମୁହଁ ଦେଇଥାଉ ।''

ନିରୁତ୍ତର ରହି କରୁଣା ରାନ୍ଧିବାପାଇଁ ଚାଲିଗଲା । ମମତାଦେବୀ ଅଗଣାରୁ ଉଠିଆସି ଶତରଞ୍ଜି ପଡ଼ିଥିବା ସ୍ଥାନରେ ବସି ପଡ଼ିଲେ । ଝରକାର ଭିତର ପଟରୁ ଶୁଭୁଥାଏ ଘନ ଘନ କାଶ ଓ ଖଙ୍କାରି ଖଙ୍କାରି ବାହାରକରି କଫ ପକାଇବା ଶବ୍ଦ ।

ରାତ୍ରି ପ୍ରାୟ ପ୍ରହରେ ବେଳକୁ ଖଣ୍ଡିଏ ପଥୁରି ଥାଳିରେ ଗରମଭାତ, ଅଳ୍ପ ଡାଲି ଓ ପରିବା ତରକାରି ଧରି କରୁଣା ବାହାରି ଆସିଲା । ଘର ଭିତରେ ଜଳୁଥାଏ ଗୋଟିଏ ମାତ୍ର ପୁରୁଣା ଲଣ୍ଠନ । ବାରଣ୍ଡା ଉପରେ ଥାଳିଟି ରଖିଦେଇ କରୁଣା ପଚାରିଲା, ''ଝିଅ, ଅନ୍ଧାରରେ ଖାଇପାରିବୁ ?''

ଆକାଶରେ ଭଗ୍ନଚନ୍ଦ୍ର ହସୁଥାନ୍ତି । ସେହି ଦିଗକୁ ଅଙ୍ଗୁଳି ଦେଖାଇ ମମତା ଉତ୍ତର ଦେଲେ, ''ମା', ଭଗବାନ୍ ଯେଉଁ ଆଲୋକ ଦେଇଛନ୍ତି ତା' ଆଗରେ ଅନ୍ଧାର ବୋଲି କିଛି ନାହିଁ । ମୋତେ ସବୁ ଖାଦ୍ୟ ଦେଖାଯାଉଛି ।''

ଗୋଟିଏ ମୁହୂର୍ତ୍ତ ପାଇଁ ଥାଳି ରଖିବା ଲାଗି ନଇଁ ପଡ଼ିଥିବା କରୁଣାର ମୁଖ ପ୍ରତି ଦୃଷ୍ଟି ନିବଦ୍ଧ ରଖି ଚନ୍ଦ୍ରାଲୋକରେ ଦେଖିପାରିଲେ ନିଜ ଝିଅର ରୂପଟି । ମାତୃପ୍ରାଣର ଅପାର ସ୍ନେହ ଝରିପଡ଼ିଲା ଲୋତକ ଧାରାରେ । କରୁଣା ଚାଲିଯାଇଥାଏ । ଖାଇଲାବେଳେ ମମତାଦେବୀଙ୍କ ମନେହେଉଥାଏ, ସେ ଉପଭୋଗ କରୁଛନ୍ତି ଅମୃତର ସ୍ୱାଦ ।

ଖାଇସାରି ପଥୁରି ଥାଳିଟି ଧୋଇବା ଲାଗି ସେ ଚାଲିଗଲେ ଗଡ଼ିଆ ଘାଟକୁ । ଆଣ୍ଠୁଏ ପାଣିରେ ଛିଡ଼ା ରହିଥିବା ବେଳେ ଦେଖିପାରିଲେ ତିନିଜଣ ଯୁବକଙ୍କ ଗୃହ ପ୍ରବେଶ । ଜାଣିପାରିଲେ, ସେମାନଙ୍କ ମଧ୍ୟରୁ ଜଣେ ହେଉଛନ୍ତି କରୁଣାର ସ୍ୱାମୀ ଏବଂ ଅନ୍ୟ ଦୁଇଜଣ ତାଙ୍କର ଭାଇ ।

ବାରଣ୍ଡା ଉପରକୁ ଉଠିଆସିଲା ବେଳକୁ ଭିତରୁ ଶୁଭୁଥାଏ ଗର୍ଜନ ତର୍ଜନ ।

''ମାଛ ଝୋଳ ନ ଥିଲେ ମୁଁ ଭାତ ଖାଇପାରେ ନାହିଁ ବୋଲି ତୁ ଜାଣିଛୁ । ସନ୍ଧ୍ୟାବେଳେ ବଜାରରୁ ମାଛ ଆଣିଲୁ ନାହିଁ କାହିଁକି ?''

କରୁଣାର ଉତ୍ତର ଶୁଭିଲା, ''ପଇସା ଦେଇ ଯାଇଥିଲେ ଆଣିଥାନ୍ତି ।''

''ମା'ଙ୍କ ପାଖରେ ପଇସା ଅଛି । ମାଗିଲୁ ନାହିଁ ?''

''ମା' କହିଥିଲେ, ମାଛ ଆଣିଥାନ୍ତି ।''

ପଙ୍କଜିନୀଦେବୀଙ୍କ କଣ୍ଠରୁ କଠୋର ଭାଷା ବାହାରିଗଲା, ''ବୋହୂ, ସବୁ ଦୋଷ ମୋ ଉପରକୁ ଲଦି ଦେଉଛୁ ? ଆରେ, ଶାଢ଼ି ପିନ୍ଧି, ବଜାର ଥଳି ଧରି, ମୋତେ ପଇସା ମାଗିଥିଲେ ସିନା ଦେଇଥାନ୍ତି !''

ଆସନ ଉପରେ ବସି ଖାଉଥିବା ଅବସ୍ଥାରେ କରୁଣାର ଶ୍ୱଶୁରମହୋଦୟ ସମସ୍ତଙ୍କୁ ଶାନ୍ତ ରହିବାକୁ ଉପଦେଶ ଦେଲେ ।

ଗାଢ଼ ନିଦ୍ରା ମଧ୍ୟରେ ସେହି ଶୋକ ଓ ସୁଖମୟ ରଜନୀରେ ମମତାଦେବୀ ସ୍ୱପ୍ନ ଦେଖିଲେ, କବିତାଦେବୀ ପାଖରେ ବସି ପ୍ରାଣସ୍ପର୍ଶୀ ସ୍ୱରରେ ଗୀତଟିଏ ଗାଉଛନ୍ତି -

''ବାଂଲାର ବଧୂ, ବୁକେ ତା'ର ମଧୁ,
ନୟନେ ନୀରବ ଭାଷା,
କତ ସୀତା ସତୀ ଘରାନେ ତାହାର,
ଗୋପନେ ବେନ୍ଧେଛେ ବାସା -''

ନିଦ ଭାଙ୍ଗିଗଲା । ସ୍ୱପ୍ନ ବି ହଜିଗଲା । ବିଛଣା ଉପରେ ମମତାଦେବୀ ବସିରହିଲେ । କନ୍ୟା କରୁଣାର କରୁଣ ମୁଖଟିକୁ ବକ୍ଷ ମଧ୍ୟରେ ଦର୍ପଣ ରୂପେ ରଖି ଚାହିଁରହିଲେ ଅର୍ଦ୍ଧଚନ୍ଦ୍ରର ଶୋଭା ପ୍ରତି । ନୀଳ ଆକାଶର ନିର୍ମଳ ଗର୍ଭରେ ଚନ୍ଦ୍ରମା ଧରିଥାନ୍ତି ସ୍ୱର୍ଗୀୟ ଆଲୋକ । ପ୍ରତିବିମ୍ବ ପଡ଼ିଥାଏ ଗଡ଼ିଆ ପାଣି ଉପରେ । ପଙ୍କିଳ ଜଳ ଉପରେ ମଧ୍ୟ ପ୍ରତିବିମ୍ବଟି ଉଦ୍‌ଭାସିତ ହୋଇଉଠିଥାଏ । ଦୂରରେ ଦିଶୁଥାଏ ଦିଗ୍‌ବଳୟ । ସବୁଜ ବୃକ୍ଷରାଜିର ରାତ୍ରିକାଳୀନ କୃଷ୍ଣରଙ୍ଗ ମଧ୍ୟ ଆକର୍ଷଣୀୟ ଆକାର ଧାରଣ କରିଥାଏ । ନିକଟରେ ଛିଡ଼ା ରହିଥାଏ ପ୍ରକାଣ୍ଡ ବଟବୃକ୍ଷ । ଅନେକ ଦିନର ସାକ୍ଷୀ ରୂପେ ବୃକ୍ଷଟି ଦେଖିଥିବ ଅସଂଖ୍ୟ ପଥିକର ଯାତ୍ରା । ବିଶାଳ ମହିଦ୍ରୁମ ଭାବେ ଦେଇଥିବ ଅନେକାନେକ ପଥଶ୍ରାନ୍ତ ମନୁଷ୍ୟଙ୍କୁ ଶୀତଳ ଛାୟା । ବୃକ୍ଷଟିର ଘନଘଞ୍ଚ ପତ୍ର ସମାହାର ଦେଖି ମୁଗ୍ଧ ହେଲେ ।

ଧରିତ୍ରୀ ଓ ପ୍ରକୃତି ଯଦି ଚିରନ୍ତନ ସୌନ୍ଦର୍ଯ୍ୟରେ ପରିପୂର୍ଣ୍ଣ ରହିପାରିଛନ୍ତି, ଈଶ୍ୱର କାହିଁକି ମନୁଷ୍ୟର ସ୍ୱଭାବ ଓ ଚରିତ୍ରକୁ ସେହିପରି ଆଶୀର୍ବାଦ ଦେଇପାରିଲେ ନାହିଁ । ଚନ୍ଦ୍ରପରି ନିର୍ମଳ ହୋଇପାରିଥାନ୍ତା ମନୁଷ୍ୟର ସ୍ୱଭାବ । ଆକାଶ ପରି ମହାନ ହୋଇପାରିଥାନ୍ତା ମନୁଷ୍ୟ ସମାଜର ହୃଦୟ । କିନ୍ତୁ କାହିଁକି ସୃଷ୍ଟିର ବ୍ୟତିକ୍ରମ ! ଗୋଟିଏ ଦିଗରେ ଉଦାର ଓ ସହନଶୀଳ ପ୍ରକୃତି, ଅନ୍ୟ ଦିଗରେ ମନୁଷ୍ୟ ହୃଦୟର ଅନୁଦାର ଓ ଅସହନୀୟ ପ୍ରକୃତି ! ଉଭୟ ବିପରୀତମୁଖୀ ଗତିଧାରା ମଧ୍ୟରେ ଚିର ଧାବମାନ ଧରିତ୍ରୀ ତିଷ୍ଠି ରହିଛି ।

ଅସଂଖ୍ୟ ପ୍ରଶ୍ନର ଲହରୀ ମଧ୍ୟରେ ଭାସି ଚାଲିଥାଏ ମମତାଦେବୀଙ୍କ ମନ । ଉଷାକାଳ ଆସିଗଲା । କରୁଣାର ଶ୍ୱଶୁରଙ୍କ ଘରେ ପ୍ରବେଶ କରି ମେଜିଆ ଉପରେ ପଡ଼ିଥିବା କଫ ପରିଷ୍କାର କରି ହାଣ୍ଡି ଭର୍ତ୍ତି ହୋଇଥିବା କଫ ନିଃସଙ୍କୋଚ ଚିତ୍ତରେ ବାହାରକୁ ନେଇଗଲେ । ଭାବୁଥାନ୍ତି, କେଉଁ ପ୍ରକାର ମନୋଭାବ ସହ ପ୍ରତିଦିନ ସେହିପରି କାର୍ଯ୍ୟ କରିଯାଉଥାଏ କରୁଣା ! ହୁଏତ ପୀଡ଼ିତ ଶ୍ୱଶୁରଙ୍କ ସେବାକାର୍ଯ୍ୟକୁ ସେ ବ୍ରତ ରୂପେ ମାନିନେଇ ଆନନ୍ଦ ଚିତ୍ତରେ କର୍ତ୍ତବ୍ୟ ପାଳନ କରିଯାଉଛି । ଝିଅଟିର

ହୃଦୟ ଯଦି ସ୍ୱଚ୍ଛଳ ଓ ପବିତ୍ର, ସେହିପରି ହୃଦୟ ଅନ୍ୟମାନଙ୍କ ନିକଟରେ ଦେଖିବାକୁ ମିଳୁ ନାହିଁ କାହିଁକି !

ଅଧିକ କିଛି ନ ଭାବି ସେ ଲାଗିଗଲେ ନିଜର ବାସନ ମାଜିବା ଓ ଝାଡୁ ଦେବା କାମରେ । ଘର ଭିତରୁ ଶୁଭୁଥାଏ ପଙ୍କଜିନୀଦେବୀଙ୍କ ପୁଅମାନଙ୍କ ପ୍ରତି ଭର୍ତ୍ସନାବାଣୀ । କରୁଣା ଲାଗିପଡ଼ିଥାଏ ଜଳଖିଆ ପ୍ରସ୍ତୁତ କରିବାକୁ ।

ଗୋଟିଏ ଅସୁଖୀ ପରିବାରର ପରିଚୟ ପାଇଲା ପରେ ମମତାଦେବୀଙ୍କ ମନେହେଲା, ଅନେକ ପରିବାରର ଅବସ୍ଥା ମଧ୍ୟ ଏହିପରି ହୋଇଥିବା ଅସମ୍ଭବ ନୁହେଁ । ସଂସାରରେ ଯଦି ଶାନ୍ତି ନାହିଁ ଏବଂ ଜୀବନ ଯଦି ବିଷାଦମୟ, ତେବେ କବି କାହିଁକି ଲେଖିଥିଲେ - ‘‘ମରିତେ ଚାହିନା ଆମି ସୁନ୍ଦର ଭୁବନେ !’’

## ॥ ୨୬ ॥

ସୁଖ ଓ ଶୋକର ବିପରୀତମୁଖୀ ସ୍ରୋତର ଘାତ ପ୍ରତିଘାତ ମଧ୍ୟରେ ବିତିଗଲା ତିନିଟି ମାସ । ମମତାଦେବୀଙ୍କୁ ସୁଖ ମିଳୁଥାଏ, ନିଜ ଝିଅର ପରିଶ୍ରମ ଲାଘବ କରିପାରୁଥିବା ଯୋଗୁଁ । ଅପରପକ୍ଷରେ ଝିଅ ପ୍ରତି ନିର୍ଯାତନା ଦେଖି ମାତୃହୃଦୟ ସହ୍ୟ କରିପାରୁ ନ ଥାଏ । ଶୀର୍ଣ୍ଣକାୟା କନ୍ୟାର ଶୋକାତୁର ମୁହଁଟି ଆଣି ଦେଉଥାଏ ଗଭୀର ଦୁଃଖ । ଶାଶୁଙ୍କର ଅବାରିତ ଗାଳିବର୍ଷଣ, ସ୍ୱାମୀଙ୍କର ନିର୍ମମ ବ୍ୟବହାର ଏବଂ ଦେବରମାନଙ୍କର କଟୁ ଭର୍ତ୍ସନା ଅକାତର ଚିତ୍ତରେ ସହିଯାଉଥାଏ କରୁଣା । ପ୍ରତିବାଦ କରିବା ଶକ୍ତି ତା ନିକଟରେ ଥାଏ ନାହିଁ । ଶୈଶବ କାଳରେ ଯେଉଁପରି ଶାନ୍ତ, ଶିଷ୍ଟ ଥାଏ ଗୃହିଣୀ ଭାବରେ ମଧ୍ୟ ସେହି ସ୍ୱଭାବ ଅକ୍ଷୁଣ୍ଣ ରଖିଥାଏ । ଦିନେ ଦିନେ ରାତିରେ ମମତାଦେବୀଙ୍କ କର୍ଣ୍ଣକୁହରରେ ପ୍ରବେଶ କରୁଥାଏ ଶଯ୍ୟାକକ୍ଷ ମଧ୍ୟରୁ କନ୍ୟାର କ୍ରନ୍ଦନ ଧ୍ୱନି ।

ମମତା ଭାବୁଥାନ୍ତି, ଝିଅକୁ ନରକ ଯନ୍ତ୍ରଣାରୁ ଉଦ୍ଧାର କରିବା ଲାଗି ତାକୁ ସାଙ୍ଗରେ ନେଇ ପଳାଇଯିବେ । କିନ୍ତୁ ଜଣେ ବୀଭତ୍ସରୂପିଣୀ ଚାକରାଣୀ ସାଙ୍ଗରେ ପଳାଇ ଯିବାଲାଗି କରୁଣା ବା ସାହସ କରିବ କିପରି ? ଗୋପନରେ ମା’ ବୋଲି ପରିଚୟ ଦେଇ ଭାଇ ପାଖକୁ ନେଇଯିବାକୁ ଚେଷ୍ଟା କଲେ ସୁଦ୍ଧା ବାଟରେ ଧରାପଡ଼ିଯିବାର ଭୟ ରହିଥାଏ ଏବଂ ଧରାପଡ଼ିଗଲା ପରେ କଳଙ୍କିନୀ ଆଖ୍ୟାଦେଇ ଶାଶୁ ଓ ସ୍ୱାମୀ ଯେ ନିଶ୍ଚୟ ତାକୁ ମାରିଦେବେ ଏଥିରେ ସନ୍ଦେହର ଅବକାଶ ନ ଥାଏ । ସରଳମନା

ଝିଅ ବରଂ କଷ୍ଟଭୋଗ କରି ମରିଯିବ, କିନ୍ତୁ ସ୍ୱାମୀ ଘର ଛାଡ଼ି କୌଣସି ପ୍ରକାରେ ଚାଲିଯାଇପାରିବ ନାହିଁ ବୋଲି ମମତାଦେବୀ ଅନୁଭବ କରିପାରୁଥାନ୍ତି ।

କରୁଣାର ଭାଇମାନେ କାହିଁକି ଯେ ଭଉଣୀକୁ ଦେଖିବାକୁ କିମ୍ବା ନେଇ ଯିବାକୁ ଆସୁ ନାହାନ୍ତି ସେ କଥା ଭାବିଲା ବେଳେ ପ୍ରାଣରେ ଗଭୀର ଆଘାତ ପାଉଥାନ୍ତି । ତଥାପି, ଅସହାୟ ଅବସ୍ଥାରେ ଦେଖିଯାଉଥାନ୍ତି ଝିଅର ଦୁର୍ଦ୍ଦଶା ଓ ଦୁଃଖ ।

ଗୋଟିଏ ଦିନର ସକାଳ ସମୟର ଘଟଣା । ଶାଶୁ ପଙ୍କଜିନୀଦେବୀ ନିଦରୁ ଉଠିପଡ଼ି ପାଟିକରି ତିନିପୁଅଙ୍କୁ ପାଖକୁ ଡାକିଲେ । ବଡ଼ପୁଅ ହେମନ୍ତ ହେଉଛନ୍ତି କରୁଣାର ସ୍ୱାମୀ ଏବଂ ତାଙ୍କ ତଳ ଦୁଇଭାଇ ଶରତ ଓ ବସନ୍ତ ଥିଲେ ସେତେ ପର୍ଯ୍ୟନ୍ତ ଅବିବାହିତ । ତିନିପୁଅ ମା'ଙ୍କ ସମ୍ମୁଖରେ ହାଜର ହେଲାପରେ ବୁଢ଼ୀ ଘୋଷଣା କଲେ, "ତୁମ ବାବା ମୁଣ୍ଡରେ ତ ବୁଦ୍ଧି ବୋଲି କିଛି ନାହିଁ । ତୁମେମାନେ ମଧ୍ୟ ସେହିପରି ବୋକା ହେଲ ! ବୋହୂଟା ବି କିଛି କଥା ମନେରଖି ପାରୁ ନାହିଁ । ସବୁ ଦାୟିତ୍ୱ ରଖିଦେଇଛ ମୋହରି କାନ୍ଧରେ ! ଆରେ, ଆଜି ସନ୍ଧ୍ୟାରେ ପରା ଶରତକୁ ଦେଖିବାପାଇଁ ଚିତ୍ତରଞ୍ଜନ ଘୋଷ ଓ ତାଙ୍କ ସ୍ତ୍ରୀ ହାରାମଣୀଦେବୀ ଆସିବେ ! ସେମାନଙ୍କ ସାଙ୍ଗରେ ମଧ୍ୟସ୍ଥ ହାରାଧନବାବୁ ବି ଆସିବେ । କନିଆଟିଏ ଖୋଜି ଖୋଜି ଅଧାମରା ହେଲିଣି । ଆମ ଘର ନାମ ଶୁଣିଲେ କନ୍ୟାପିତାମାନେ କୁଆଡ଼େ ନାକ ଟେକୁଛନ୍ତି ବୋଲି ହାରାଧନବାବୁ କହୁଥିଲେ । ଯାହାହେଉ, ଶେଷରେ ଚିତ୍ତରଞ୍ଜନବାବୁ ପ୍ରସ୍ତାବ ଗ୍ରହଣ କରି ଆଜି ସସ୍ତ୍ରୀକ ଆମ ଘର ଓ ବରକୁ ଦେଖିବାଲାଗି ଆସିବେ । ସେମାନଙ୍କ ଚର୍ଚ୍ଚା ବିଷୟ କେହି ଭାବୁଛ ?"

ହେମନ୍ତ ଉତ୍ତର ଦେଲେ, "ଚିତ୍ତ ଘୋଷ କେଉଁ ଗୋଟାଏ ବିରାଟ ଲୋକ ଯେ ତାଙ୍କ ଚର୍ଚ୍ଚାପାଇଁ ସକାଳେ ସକାଳେ ଗାଳି ଶୁଣିବାକୁ ହେଲା ? କୁହ, କ'ଣ କରିବା ?"

"ଗଣତିରେ ସେମାନେ ତିନିଜଣ, ତୁମେ ତିନିଜଣ, ମୁଁ ଓ ମୋ ଭଉଣୀ । ଏହି ଆଠଜଣଙ୍କ ପାଇଁ ପଲାଉ, ମାଂସ ଝୋଳ, ମାଛଭଜା ଇତ୍ୟାଦି, ଇତ୍ୟାଦି ଅନ୍ତତଃପକ୍ଷେ ଦଶ, ବାର ପ୍ରକାର ଆଇଟେମ୍ ରାନ୍ଧିବାକୁ ପଡ଼ିବ । ତୁ ହେମନ୍ତ ଯା, ଭଲ ଖାସି ମାଂସ ଓ ତଟକା ରୋହି ମାଛ ନେଇ ଆସିବୁ । ଆଉ ତଟକା ତଟକା ପରିବା ।"

ପୁଅ ହାତକୁ ଟଙ୍କା ଦେଇ ପଙ୍କଜିନୀଦେବୀ ଡାକିଲେ ବୋହୂକୁ ! ଆଦେଶ ଦିଆଗଲା , "ରାନ୍ଧିବା ଦାୟିତ୍ୱ ତୋର । ମୁଁ ଭାତ ଖାଇସାରି ତୋ ଶ୍ୱଶୁରକୁ ନେଇ ମୋ ଭଉଣୀ ଘରେ ଛାଡ଼ି ଦେଇ ସନ୍ଧ୍ୟାପରେ ଫେରିବି । ତା' ପୂର୍ବରୁ ରନ୍ଧାକାମ ଶେଷ କରି ସବୁ ରେଡି କରି ରଖିଥିବୁ ।"

ଲାଜଭରା ମୁଖରେ ବରପାତ୍ର ଶରତ ପଚାରିଲେ, ''ମା', ବାବା ଘରେ ନ ଥିଲେ ବିବାହ ବିଷୟରେ ସେମାନେ କାହା ସାଙ୍ଗରେ କଥାବାର୍ତ୍ତା ଫାଇନାଲ୍ କରିବେ ?''

ପଙ୍କଜିନୀଦେବୀ ରାଗିଉଠି ଯୁକ୍ତି ବାଢ଼ିଲେ, ''ଆରେ ବୋକା, ତୋ ବାବା ସେମାନଙ୍କ ପାଖରେ ଖାଇବାକୁ ବସି କାଶି କାଶି କଫ ବାହାର କଲେ ସେମାନେ ଆମ ଘରେ ଝିଅ ଦେବେ ? ଶ୍ୱାସରୋଗୀର ପୁଅକୁ ଶ୍ୱାସ ହୁଏ ବୋଲି ଲୋକେ କହନ୍ତି । ସେହି କଥା ଭାବିଚିନ୍ତି ତାଙ୍କୁ ମୋ ଭଉଣୀ ଘରେ ରାତିକ ପାଇଁ ରଖିଦେଇ ଆସିବି । ବୁଝିପାରିଲୁ ?''

ସାନପୁଅ ବସନ୍ତ ଜଣାଇଲା, ''ଆମେ ଆମ କାମକୁ ବାହାରି ଯାଉଛୁଁ । ସନ୍ଧ୍ୟା ପରେ ଫେରିବୁଁ । ଶତରଭାଇଙ୍କୁ ସ୍ନୋ ପାଉଡର ମଖାଇ ରଜାପୁଅ ବେଶରେ ନେଇଆସିବି ।''

''ପ୍ରଥମେ ତିନି ଭାଇ ବଜାରରୁ ରନ୍ଧା ସରଞ୍ଜାମ ସବୁ ଆଣି ବୋହୂ ଆଗରେ ରଖିଦେଇ ନିଜ ନିଜ କାମକୁ ଯାଅ,'' ଆଦେଶ ଦେଲେ ପଙ୍କଜିନୀଦେବୀ ।

ପ୍ରାୟ ଦୁଇଘଣ୍ଟା ପରେ ଥଳି ଭର୍ତ୍ତି ମାଛ, ମାଂସ, ଚାଉଳ ଓ ପରିବା ଆଣି କରୁଣା ଆଗରେ ସ୍ୱାମୀ ଓ ଦୁଇ ଦେବର ରଖିଦେଲା ବେଳେ ଝିଅର ମୁହଁଟି କିପରି ହଠାତ୍ ବିମର୍ଷ ଦେଖାଗଲା, ତାହା ଦେଖିପାରିଲେ ମମତାଦେବୀ ।

ଭାଇମାନେ ସକାଳଠାରୁ ସନ୍ଧ୍ୟାପର୍ଯ୍ୟନ୍ତ କେଉଁ ଗୋଟାଏ କୋମ୍ପାନିରେ କାମ କରନ୍ତି । ମଧ୍ୟାହ୍ନ ଭୋଜନ ଲାଗି ଆସନ୍ତି ନାହିଁ । ତେଣେ ଦିନ ଦି' ପ୍ରହର ବେଳେ ଖାଇସାରି ଏବଂ ବୋହୂକୁ ସମସ୍ତ ପ୍ରକାର ଖାଦ୍ୟପେୟ ପ୍ରସ୍ତୁତ କରି ରଖିବାକୁ ଆଦେଶ ଦେଇ ପଙ୍କଜିନୀଦେବୀ ବୃଦ୍ଧ ସ୍ୱାମୀଙ୍କ ସହ ରିକ୍ସାରେ ବସି ଚାଲିଗଲେ ନିଜ ଭଉଣୀ ଘରକୁ ।

ବାରଣ୍ଡା ଦରଜା ବନ୍ଦ କରିଦେଲା ପରେ ଭିତରେ ରହିଲେ ଚାକରାଣୀ ମମତାଦେବୀ ଓ ଝିଅ କରୁଣା । ମା' ଶୁଣିପାରିଲେ ଝିଅ ନିଜକୁ ନିଜେ କହୁଥିବା କେତୋଟି ଅସ୍ପଷ୍ଟ ଶବ୍ଦ । ''କାଲିଠାରୁ ଦେହ ତାତିଛି । ମ୍ୟାଲେରିଆ ଜ୍ୱର ଭଲ ହେଉ ନାହିଁ । ଏତେସବୁ ରାନ୍ଧି ସାରିଲାବେଳକୁ ମରିଯାଇଥିବି ।'' ଦୀର୍ଘଶ୍ୱାସ ତ୍ୟାଗକରି ସେ ବସିପଡ଼ିଲା ବଜାର ଥଳିଗୁଡ଼ାକ ଫିଟାଇବା ପାଇଁ ।

ମମତା ପାଖକୁ ଆସି କହିଲେ, ''ମା', ମୋତେ ପଲାଉ, ମାଛ, ମାଂସ ଓ ସବୁପ୍ରକାର ଖାଦ୍ୟ ରାନ୍ଧିବା ଭଲ ଭାବରେ ଜଣାଅଛି । ଦେହ ସିନା ପୋଡ଼ିଯାଇଛି ।

କିନ୍ତୁ ରାନ୍ଧିବା କାମ ଭୁଲି ନାହିଁ । ତୁମେ ବିଛଣାରେ ଶୋଇପଡ଼ । ସନ୍ଧ୍ୟାପୂର୍ବରୁ ମୁଁ ସବୁ କାମ ଶେଷ କରିଦେବି । କେହି ଜାଣିପାରିବେ ନାହିଁ ମୁଁ ରାନ୍ଧିଛି ବୋଲି ।''

ତଟସ୍ଥ ହୋଇ କରୁଣା ଚାକରାଣୀ ମୁହଁକୁ ଚାହିଁରହିଲା । କହିଲା, ''ଗେନ୍‌ସିରେ, ମୋ ଦୁଃଖ ତୁ ବୁଝିପାରିବୁ ନାହିଁ । ତରକାରି ଟିକିଏ ଖରାପ ଲାଗିଲେ ମୋ ପିଠି ଫାଟିବ । ତୁ କିପରି ରାନ୍ଧିବୁ କହୁଛୁ ? ଜ୍ୱର ଧରିଥିଲେ ବି ମୋତେ ମରିପଡ଼ି ସବୁ କାମ ସାରିବାକୁ ପଡ଼ିବ ।''

''ମା', ଥରେ ପରୀକ୍ଷା କରି ଦେଖ । ବରଂ ଚେୟାରରେ ବସି ତୁମେ ମୋତେ ବତାଇଦିଅ । ମୁଁ ଆଗରୁ ସବୁପ୍ରକାର ଖାଦ୍ୟ ରାନ୍ଧୁଥିଲି । ଏବେ ବି ରାନ୍ଧିପାରିବି ।''

ଅଧିକ ଯୁକ୍ତିତର୍କର ସୁଯୋଗ ନ ଦେଇ ମମତାଦେବୀ ଥଳିଗୁଡ଼ିକରୁ ଜିନିଷଗୁଡ଼ାକ କାଢ଼ି ଯଥାସ୍ଥାନରେ ସଜାଡ଼ି ରଖିଲେ । କୋଇଲା ଚୁଲିରେ ନିଆଁ ଧରାଇଦେଇ ମାଛ, ମାଂସ ଓ ପରିବାଗୁଡ଼ିକ କାଟି ପକାଇଲେ । କରୁଣା ପାଖରେ ବସି ଦେଖୁଥାଏ । ଅତି ସୁନ୍ଦର ଭାବରେ ଚାକରାଣୀଟିର ରାନ୍ଧିବା କାମ ଦେଖି କରୁଣା କହି ପକାଇଲା, ''ଗେନ୍‌ସୀ, ତୁ ଯେପରି ତରତରରେ ରାନ୍ଧିପାରୁଛୁ, ମୋ ମା' ଠିକ୍ ଏହିପରି ଭାବରେ ରାନ୍ଧିପାରୁଥିଲେ । ମୋର ଦୁଇଜଣଯାକ ମା' ଥାନ୍ତି ସୁନ୍ଦର ରାନ୍ଧୁଣୀ ।''

''ଦୁଇଜଣ ମା' ?''

''ହଁ, ମୋତେ ଜନ୍ମ ଦେଇଥିଲେ ଜଣେ ମା' ଏବଂ ପାଳନ କରିଥିଲେ ଆଉ ଜଣେ ମା' । ଦୁଇଜଣଯାକ ରାନ୍ଧିବା କାମରେ ଧୁରନ୍ଧର ଥିଲେ ।

''ସେମାନେ ଭଲ ଅଛନ୍ତି ତ ?''

ବିକଳ ସ୍ୱରରେ କରୁଣା ଉତ୍ତର ଦେଲା, ''ନା, ସେମାନେ ସଂସାରରୁ ବିଦାୟ ନେଲେଣି । ଜଣେ ମା'ଙ୍କୁ ଚଣ୍ଡାଳମାନେ ବଣ ଭିତରେ ଜିଅନ୍ତା ପୋଡ଼ି ପକାଇଲେ ଏବଂ ଅନ୍ୟ ଜଣେ ମା'ଙ୍କୁ ଭଗବାନ୍ କ୍ୟାନ୍‌ସର ରୋଗରେ ମାରିଦେଲେ ।''

''ମା', ତୁମର ବାବା ଓ ଭାଇ ନାହାନ୍ତି ?''

କାନ୍ଦ କାନ୍ଦ ମୁହଁରେ କରୁଣା ଉତ୍ତର ଦେଲା, ''ମୋ ବାବା ଥିଲେ ଜଣେ ସ୍ୱାଧୀନତା ସଂଗ୍ରାମୀ । ସାହେବମାନେ ତାଙ୍କୁ ଫାଶୀକାଠରେ ଝୁଲାଇ ମାରିଦେଲେ । ମୋ ବଡ଼ଭାଇ ଥିଲେ ବାବାଙ୍କ ପରି ସାହସୀ । ରାଜାଙ୍କ ଲୋକମାନେ ତାଙ୍କୁ ହାଣି ପକାଇଲେ । ଆଉ ଦୁଇଜଣ ଭାଇ ଭଲ ଅଛନ୍ତି ।''

''ଭଲରେ ଥିବା ତୁମ ଭାଇମାନେ ତୁମକୁ ଦେଖିବାକୁ ଆସନ୍ତି ?''

''ମୋ ବିବାହ ପରେ ଥରେ ଆସିଥିଲେ । କିନ୍ତୁ ମୋ ଶାଶୁ ଓ ସ୍ୱାମୀ ସେମାନଙ୍କ ପ୍ରତି ଦୁର୍ବ୍ୟବହାର କରି ଚିରଦିନପାଇଁ ଆସିବାକୁ ବାରଣ କରିଦେଲେ । ସେମାନଙ୍କ ଦୋଷ ଥିଲା, ଯୌତୁକ ଦେଇ ନ ଥିଲେ । ମୋ ବାବା ନ ଥାନ୍ତି, ମା' ନ ଥାନ୍ତି, ଭାଇମାନେ ଆୟକ୍ଷମ ହୋଇ ନ ଥାନ୍ତି । କହିଲୁ ଗେନ୍‌ସୀ, ଯୌତୁକ କିଏ ଦେଇଥାନ୍ତା ? ମୋ ଜନ୍ମଦାୟିନୀ ମା' ମୋ ପାଇଁ ଯେଉଁ ସୁନାହାର ଓ ଚୁଡ଼ି ରଖି ଯାଇଥିଲେ, ସେଗୁଡ଼ିକ ବିକ୍ରିକରି ମୁଁ ପାଳିଥିବା ମା'ଙ୍କର କ୍ୟାନସର ଚିକିତ୍ସାରେ ଖର୍ଚ୍ଚ କରିଥିଲି । ତେଣୁ ସାଙ୍ଗରେ କିଛି ଧନସମ୍ପତ୍ତି ଆଣି ପାରିଲି ନାହିଁ । ଫଳରେ ବିବାହ ପାଖରୁ ଏପର୍ଯ୍ୟନ୍ତ ଲାଞ୍ଛନା ଭୋଗ କରୁଛି ।''

''ଭାଇମାନେ ଏବେ ଚାକିରି କିମ୍ବା ବ୍ୟବସାୟ କଲେଣି ?''

''ହଁ, ଜଣେ ଭାଇ ରାଜନୀତିରେ ଖୁବ୍ ବଡ଼ ହେଲେଣି ଏବଂ ଶିଳ୍ପପତି ବନିଗଲେଣି । ଆଉ ଜଣେ ଜିଲ୍ଲା କଲେକ୍ଟର କିମ୍ବା ସେକ୍ରେଟାରୀ ଅଛନ୍ତି ।''

''ସେମାନେ ଭଉଣୀ ପାଇଁ ଟଙ୍କା ପଠାନ୍ତି ?''

''ପ୍ରତି ମାସରେ ସେମାନେ ମୋ ଲାଗି ପ୍ରଚୁର ଟଙ୍କା ପଠାନ୍ତି । ଟଙ୍କା ମୋ ନାମରେ ଆସେ । କିନ୍ତୁ ମୋ ସ୍ୱାମୀ ପୋଷ୍ଟଅଫିସରୁ ଆଣନ୍ତି । ମୋତେ ପଇସାଟିଏ ବି ଦିଅନ୍ତି ନାହିଁ । ମୋ ଭାଇମାନଙ୍କ ଟଙ୍କାରେ ଏ ଘର ଚଳୁଛି । ବେପରୁଆ ଭାବରେ ଶାଶୁ ଓ ସ୍ୱାମୀ ଖର୍ଚ୍ଚ କରନ୍ତି ।''

''ତୁମେ ହେମନ୍ତବାବୁଙ୍କୁ କିଛି କୁହ ନାହିଁ ।''

''ଗେନ୍‌ସୀ, କ'ଣ ମାଡ଼ ଖାଇ ମରିବାକୁ କହୁଛୁ କିରେ ? ଯେଉଁମାନେ ମଦ ପିଅନ୍ତି, ନିଶାଦ୍ରବ୍ୟ ସେବନ କରନ୍ତି, ଗଞ୍ଜା ଟାଣନ୍ତି, ଜୁଆ ଖେଳନ୍ତି, ସେମାନଙ୍କୁ ଭଗବାନ୍ ମଧ୍ୟ ଭଲବାଟକୁ ଆଣିପାରନ୍ତି ନାହିଁ । ମୁଁ ତ ଗୋଟିଏ ଛାର ସ୍ତ୍ରୀ ।''

କରୁଣା ଆଉ କିଛି ନ କହି ଧମକ ଦେଲା, ''ଗେନସୀ, ତୁ ଅନେକ କଥା ପଚାରିଗଲୁ, ମୁଁ ଅନେକ କଥା ବକ୍‌ବକ୍ କରିଗଲି । କାନ୍ଥର ବି କାନ ଅଛି । ତୁ ଯଦି କୁଆଡ଼େ କିଛି କହିପକାଇବୁ, ମୋତେ ମାରି ପକାଇବେ । ଖବରଦାର୍, ମୁଁ ଯାହା କହିଲି, ନିଜ ପେଟ ଭିତରେ କଥାଗୁଡ଼ାକ ରଖିବୁ । ମୋ ରାଣ ରହିଲା ।''

କରୁଣା ଜ୍ୱରରେ ଥରି ଥରି ନିଜ ବିଛଣାରେ ଶୋଇବାକୁ ଚାଲିଗଲା । ମମତାଦେବୀ ମନଦେଇ ରାନ୍ଧିବାକୁ ଲାଗିପଡ଼ିଲେ ।

ସନ୍ଧ୍ୟାପୂର୍ବରୁ ପନ୍ଦର ପ୍ରକାର ଖାଦ୍ୟ ପ୍ରସ୍ତୁତ କରି ଏବଂ ସେଗୁଡ଼ିକ ଯଥାସ୍ଥାନରେ ସଜାଇ ରଖି ମମତାଦେବୀ କରୁଣାର ଶଯ୍ୟାପାଖକୁ ଆସିଲା ବେଳକୁ ସେ କମ୍ପରେ ଥରୁଥାଏ । ଧୀରେ ଧୀରେ ଚଦର ତଳେ ହାତ ପୂରାଇ ଝିଅର ଗୋଡ଼ ଦୁଇଟା ସ୍ପର୍ଶ କରି ଜାଣିପାରିଲେ, ଦେହରେ ପ୍ରବଳ ଉତ୍ତାପ । ''ମା', ଖଣ୍ଡିଏ ତଉଲିଆ ଥଣ୍ଡା ପାଣିରେ ବୁଡ଼ାଇ କପାଳରେ ରଖିଲେ ଉତ୍ତାପ କମିଯାଇପାରେ । ଯଦି ମୋ ହାତଦୁଇଟାକୁ ଘୃଣା ନ କରିବ, ମୁଁ ଜଳପଟି ଦେବି ଓ ଗୋଡ଼ଦୁଇଟା ଘଷିଦେବି । ଆରାମ ମିଳିବ ।'' ସଜଳ ଆଖିରେ ଚାହିଁରହି କରୁଣା କହିଲା, ''ତୋର ଇଚ୍ଛା ।''

ସନ୍ଧ୍ୟା ପରେ ପରେ ବାହାର ଦରଜାରେ ଧକ୍କା ମାରିବା ଶବ୍ଦ ଶୁଣି ମମତାଦେବୀ ଦୌଡ଼ିଗଲେ କବାଟ ଫିଟାଇ ଦେବାପାଇଁ । ପଙ୍କଜିନୀଦେବୀଙ୍କ ସାଙ୍ଗରେ ଆସିଥାନ୍ତି ତାଙ୍କର ଭଉଣୀ କାକଳୀଦେବୀ । ଶାଶୁଙ୍କ ଫେରିବା ସଙ୍କେତ ପାଇଲା କ୍ଷଣି କରୁଣା ରୋଷେଇ ଘର ମଧ୍ୟରେ ପ୍ରବେଶ କରି ସାରିଥାଏ । ''ଆରେ, ବୋହୂ, ଦୁଇଟା ପ୍ଲେଟରେ ଆମ ଦୁଇଙ୍କ ହାତରେ ସବୁ ଆଇଟେମ୍‌ରୁ ଚାମଚେ ଚାମଚେ ରଖିଲୁ ! ଚାଖି ଦେଖିବା ଭଲ ଲାଗୁଛି ନା ଖରାପ ଲାଗୁଛି ।''

କରୁଣା ଦୁଇଟା ପ୍ଲେଟ ଆଣିବା ପୂର୍ବରୁ ଚାକରାଣୀଟା ସାହାଯ୍ୟ କରିବାକୁ ଆସୁଥିବା ଦେଖି ପଙ୍କଜିନୀଦେବୀ ଆଦେଶ ଦେଲେ, ''ଗେନ୍‌ସୀ, ତୁ ଯା, ଅନ୍ଧାରରେ ବାହାରେ ବସିବୁ । କାହାରି ଆଗକୁ ବାହାରିବୁ ନାହିଁ ।'' ତା' ପରେ ନିଜେ ଦୁଇଟା ପ୍ଲେଟରେ ଖାଦ୍ୟଗୁଡ଼ିକ ରଖି, ଗୋଟିଏ ପ୍ଲେଟ ଭଉଣୀଙ୍କ ହାତରେ ପରଷି ଦେଇ, ନିଜେ ଚାଖିବାକୁ ଲାଗିଗଲେ ଓ କରୁଣା ପ୍ରତି ବିଦ୍ରୂପ କରି କହିଲେ, ''ଆରେ ବୋହୂ, ମୋତେ ଆଗରୁ କେବେ ଏପରି ସୁନ୍ଦର ରନ୍ଧା ଖୁଆଇ ନାହୁଁ କାହିଁକି ? ଓ, ବୁଝିଲି, ଶରତର ସ୍ତ୍ରୀ ଆସିଲେ ତା' ହାତରେ ରାନ୍ଧିବା ଦାୟିତ୍ୱ ଛାଡ଼ିଦେଇ ଗୋଡ଼ ଉପରେ ଗୋଡ଼ ରଖି ବସିବୁ ବୋଲି ତା' ଭାବି ଶ୍ୱଶୁର ଶାଶୁଙ୍କୁ ଆହାର-ମନ୍ତ୍ରଦ୍ୱାରା ବଶ କରିବା ଲାଗି ଆଜି ଏପରି ସୁନ୍ଦର ରାନ୍ଧିଛୁ !''

ଶାଶୁଙ୍କ ଶ୍ରୀମୁଖରୁ ଏପରି ପ୍ରଶଂସା ଶୁଣିପାରି କରୁଣାର ମନ ଗେନ୍‌ସୀ ପ୍ରତି କୃତଜ୍ଞତାରେ ଭରିଗଲା । ସେତିକିବେଳେ ପଶିଆସିଲେ ସ୍ୱାମୀ ହେମନ୍ତ ଓ ଦୁଇ ଦେବର । ସେମାନଙ୍କ ଆଗରେ ମଧ୍ୟ ପଙ୍କଜିନୀଦେବୀ କରୁଣାର ପ୍ରଶଂସା କଲେ ।

ଯଥାସମୟରେ ଆସିଗଲେ ମିଷ୍ଟର ଏବଂ ମିସେସ୍ ଘୋଷ ଓ ହାରାଧନବାବୁ । ବର ଦେଖିବା ପର୍ବ ଆରମ୍ଭ ହେବା ସମୟରେ ହାରାଧନବାବୁ ପ୍ରଶ୍ନ କଲେ, ''ବାବା ଜୀବନ ଶରତବାବୁ, ମୁଖମଣ୍ଡଳରୁ ପଣ୍ଡ୍ସ ପାଉଡରର ସୁଗନ୍ଧ ସାଙ୍ଗରେ ନିଶ୍ୱାସରୁ

ବାହାରୁଥିବା ଅନ୍ୟ ଏକ ବାସନା ମିଶିଯାଉଛି । ହୋଇପାରେ, ତାଡ଼ି ବା ବିଡ଼ିର ମହକ । ଆଜି ଗୋଟିଏ ସନ୍ଧ୍ୟାରେ ସେଗୁଡ଼ିକ ବର୍ଜନ କରିଥିଲେ କ'ଣ ଭଲ ହୋଇ ନ ଥାନ୍ତା ?''

ଏପରି କଦର୍ଯ୍ୟ ମନ୍ତବ୍ୟ ଶୁଣି ପଙ୍କଜିନୀଦେବୀ ରାଗ ସମ୍ଭାଳିପାରିଲେ ନାହିଁ । ପ୍ରତିବାଦ କରି କହିଲେ, ''ହାରାଧନବାବୁ, ମୋ ପୁଅ ପାଇଁ ଅନେକ ପ୍ରସ୍ତାବ ଆସୁଛି । କିନ୍ତୁ ଘୋଷ ମହାଶୟଙ୍କ ପରିବାର ପ୍ରତି ଆମର ସମ୍ମାନ ରହିଛି ବୋଲି ତାଙ୍କର ପ୍ରସ୍ତାବ ଗ୍ରହଣ କଲୁଁ । ସେମାନଙ୍କ ଆଗରେ ବରକୁ ଅପମାନ ଦେବା ଆପଣଙ୍କର ଉଚିତ ହେଲା ନାହିଁ । ଶରତର ବାବା ଆପଣଙ୍କ କଥା ବରଦାସ୍ତ କରିପାରି ନ ଥାନ୍ତେ । ଭାଗ୍ୟକୁ ସେ ଜରୁରୀ କାମରେ ବାହାରକୁ ଯାଇଛନ୍ତି ।''

ଶ୍ରୀମତୀ ଘୋଷ ତୁରନ୍ତ ସମାଧାନସୂତ୍ର ବ୍ୟାଖ୍ୟା କଲେ, ''କଥାରେ ଅଛି ବିବାହେ ବିଭ୍ରାଟ୍ । ଛୋଟ ଛୋଟ ବିଷୟକୁ କେନ୍ଦ୍ର କରି ବିବାହ ଭାଙ୍ଗିଯାଇଥାଏ । କିନ୍ତୁ ଆମ ଦୁଇ ପରିବାର ମଧ୍ୟରେ ଭଙ୍ଗାଭଙ୍ଗିର ପ୍ରଶ୍ନ ନାହିଁ । ଶରତ ବାବା ଜୀବନ ସୁନ୍ଦର ଓ ସ୍ୱାସ୍ଥ୍ୟବାନ । ହାରାଧନ ନିଜେ ଜଣେ ମଦଭକ୍ତ । ତା' କଥାରେ ଗୁରୁତ୍ୱ ଦେବା ସଂଗତ ନୁହେଁ ।''

ମିଷ୍ଟର ଘୋଷ ମୁଣ୍ଡ ଟୁଙ୍ଗାରି ସ୍ତ୍ରୀଙ୍କ ବକ୍ତବ୍ୟ ସହିତ ସହମତି ଜଣାଇ ନିଜ ଘଡ଼ିକୁ ଚାହିଁଲେ । ସୂଚନା ମିଳିଲା, ଭୋଜନ ଲାଗି ବ୍ୟଗ୍ର ।

କରୁଣା ସଙ୍ଗେ ସଙ୍ଗେ ଟେବୁଲ ଉପରେ ପ୍ଲେଟ୍‌ଗୁଡ଼ାକ ଥୋଇଲା ବେଳେ ପଙ୍କଜିନୀଦେବୀ ଶ୍ରୀମତୀ ଘୋଷଙ୍କୁ କହୁଥିବା ଶୁଣାଗଲା, ''ମୋ ଭଉଣୀ ରନ୍ଧାରନ୍ଧି କରିଛି । ବୋହୂର୍ ଦେହ ଭଲ ନାହିଁ ।''

ଖାଇବାକୁ ଆରମ୍ଭ କରି ଶ୍ରୀମତୀ ଘୋଷ ସ୍ପଷ୍ଟ ଭାବରେ ଘୋଷଣା କଲେ, ''ମୋ ଝିଅ ରୋଷାଇଶାଳ ଦେଖି ନାହିଁ । ଆଗରୁ ଜଣାଇ ଦେଉଛି, ଶାଶୁଘରେ ସେ ରାନ୍ଧିପାରିବ ନାହିଁ ।''

''ମୁଁ କ'ଣ ବୁଢ଼ା ହେବାଯାଏ ରାନ୍ଧୁଥିବି ! ବୋହୂମାନେ ନିଜ ନିଜ ପରିବାର ଲାଗି ରାନ୍ଧି ଶିଖିବା ଦରକାର । ଏ ଯୁଗରେ ପୂଝାରୀ, ଚାକର ପାଇବା ଗୋଟିଏ ଦାରୁଣ ସମସ୍ୟା,'' କହିଲେ ପଙ୍କଜିନୀଦେବୀ ।

ଭୋଜନ ଶେଷ ହେଲା । ଘୋଷ ଦମ୍ପତି ବିଦାୟ ନେଲେ । ହେମନ୍ତବାବୁ ମା'ଙ୍କୁ କୈଫିୟତ ମାଗିଲେ, ''ଯୌତୁକ ପ୍ରସଙ୍ଗ ଉଠାଇଲ ନାହିଁ କାହିଁକି ? ଝିଅଟା ତ୍ରିପଣ୍ଠ

କଳା । ବରମାନଙ୍କର ପସନ୍ଦଯୋଗ୍ୟା ନୁହେଁ । ଭଲ ଯୌତୁକ ଦେବେ ବୋଲି କହିଥିଲେ ସିନା ଆମେ ରାଜି ହୋଇଥାନ୍ତେ ।''

ପଙ୍କଜିନୀଦେବୀ ଉତ୍ତର ଦେଲେ, ''ମଧ୍ୟସ୍ଥ ହାରାଧନଟା ପ୍ରଥମରୁ ସର୍ବନାଶ କରିଦେଲା । ତାଡ଼ି, ବିଡ଼ି ପ୍ରଭୃତି ବାଜେ ଶବ୍ଦଗୁଡ଼ିକ କହି ବରର ବଜାର ଦର କମାଇଦେଲା । ସେପରି ଅବସ୍ଥାରେ ଯୌତୁକ ପ୍ରଶ୍ନ ଉଠାଇଥିଲେ କନ୍ୟାପକ୍ଷ ଯଦି ଝିଅ ଦେବାକୁ ମନା କରିଦେଇଥାନ୍ତେ, ଆମେ ଅପମାନରେ ପଡ଼ିଥାନ୍ତୁ !''

ବର ସ୍ୱୟଂ ମତ ପ୍ରକାଶ କଲେ, ''ଆଗେ ବିବାହ, ପରେ ଯୌତୁକ ଦାବି ! ମୁଁ ବିଡ଼ି ଟାଣିଲି କି ତାଡ଼ି ପିଇଲି ସେଥିରେ ହାରାଧନର କ'ଣ ଗଲା ? ସେଇ ଲୋକଟାକୁ ବିବାହ ପରେ ଉଚିତ ଶିକ୍ଷା ଦେବି । ସେ ଭୁଲିଗଲା, ମୁଁ ଜଣେ ଭଦ୍ରଘରର ପିଲା ।''

ମମତା ଦେଖୁଥାନ୍ତି, କରୁଣା ପାଟିରେ କିଛି ନ ଦେଇ ବିଛଣାରେ ଶୋଇଗଲା । ଝିଅଟି ପାଇଁ ସାଗୁ କିମ୍ବା ବାର୍ଲି ଟିକିଏ କରିଦେଇ ପାରିଥାନ୍ତେ । କିନ୍ତୁ ତାଙ୍କ ପାଇଁ ରୋଷାଇଶାଳ ଥାଏ ନିଷିଦ୍ଧ ସ୍ଥାନ ।

## ॥ ୨୭ ॥

ରାତି ପାହିଲା ଆଗରୁ ଗୁଡ଼ାଏ ଅଇଁଠା ବାସନ କୂଅ ପାଖରେ ବସି ମାଜୁଥିବା ସମୟରେ ମମତାଦେବୀ ଦେଖିଲେ ଜଣେ ଯୁବକ ସାଇକେଲରେ ଆସି ଶରତବାବୁଙ୍କୁ ଖବର ଦେଉଛି, ''ବିବାହ ବିଷୟ ପକ୍କା କରିବାପାଇଁ ଲଗ୍ନ ଠିକ୍ କରିବାକୁ ହାରାଧନବାବୁ ଅଳ୍ପ ସମୟ ପରେ ଆସିବେ । ଆସିଲେ ତମ ଘରେ ଜଳଖିଆ ଖାଇବେ ବୋଲି କହିଛନ୍ତି ।''

ଆନନ୍ଦରେ ଅଧୀର ହୋଇ ଶରତବାବୁ ପଙ୍କଜିନୀଦେବୀଙ୍କୁ ନିଦରୁ ଉଠାଇ ଶୁଭ ସମ୍ବାଦଟି ଦେଇଦେଲେ । ମମତା ରୋଷାଇ ଘର ପିଣ୍ଡାରେ ଥାଳି ବାଟିଗୁଡ଼ାକ ସଜାଇ ରଖୁଥାନ୍ତି । ଶୁଭିଲା ଶାଶୁଙ୍କ କଠୋର ଆଦେଶ, ''ଆରେ ବୋହୂ, ଶୀଘ୍ର ଶୀଘ୍ର ଲୁଚିଗୁଡ଼ାକ ଛାଣି ପକା । ମୋହନଭୋଗ ତିଆରି କର । ଆଳୁଦମ୍ ଓ ଖିରି ବି କରିଥା । ହାରାଧନବାବୁ ଜଳଖିଆ ଖାଇବେ ବୋଲି ଖବର ପଠାଇଛନ୍ତି ।''

''ମା' ମୁଁ ବିଛଣାରୁ ଉଠିପାରୁ ନାହିଁ । ସାରାରାତି ଜ୍ୱରରେ ଥରୁଛି । ଶରତକୁ ପଠାଇ ବଜାରରୁ ସିଙ୍ଗଡ଼ା, ନିମିକି, ଆଳୁଦମ୍ ଓ ରସଗୋଲା ଇତ୍ୟାଦି କିଣି ଆଣନ୍ତୁ । ମୁଁ ବରଂ ବାଢ଼ିଦେବି,'' ନିଜ ଶଯ୍ୟାକକ୍ଷରୁ ମିନତି ଜଣାଇଲା କରୁଣା ।

''ଆରେ ବୋହୂ, ମୋ ଜନ୍ମକାଳରୁ ତୋ ମୁହଁରୁ ଜ୍ୱର, ଜ୍ୱର, ଜ୍ୱର ଶବ୍ଦଟା ଶୁଣି ଶୁଣି କାଲ ହୋଇଗଲିଣି । ହେଉ ହେଲା । ଆଜି ସକାଳଓଳିଟା ପାଇଁ ଜ୍ୱରଟାକୁ ବାକ୍ସ ଭିତରେ ରଖିଦେଇ ଜଳଖିଆଗୁଡ଼ାକ ତିଆରି କରି ଦେ ।'' କହିଲେ ଶାଶୁ ।

ତଥାପି ବୋହୂର ବାହାରିବା ନ ଦେଖି ପଙ୍କଜିନୀଦେବୀ ହେମନ୍ତଙ୍କୁ ପାଟି କରି ଡାକିଲେ । ପୁଅ ହାଜର ହେଲା ପରେ ଆପତ୍ତି ଜଣାଇଲେ, ''ଶୁଣିଲୁ ତୋ ସ୍ତ୍ରୀ କ'ଣ କହୁଛି ? ଜଳଖିଆ ତିଆରି କରିପାରିବ ନାହିଁ । ଗତକାଲି ରନ୍ଧାବଢ଼ା କରିଥିଲାବୋଲି ଆଜି ଆମକୁ ଜବଦ୍ କରୁଛି । ଏବେ ଏବେ ହାରାଧନବାବୁ ଆସିଯିବେ । ଶରତର ବିବାହ ହୋଇଗଲା ବୋଲି ସମସ୍ତେ ଭାବିନିଅ । କିନ୍ତୁ ସେ କ'ଣ କିଛି ନ ଖାଇ ଫେରିଯିବେ ?''

ହେମନ୍ତବାବୁ କ୍ରୋଧାନ୍ୱିତ ହୋଇ ଉଠିବା ଦେଖି, ଶରତ ତତ୍‌କ୍ଷଣାତ୍ ପଶିଗଲା କରୁଣାର ବେଡ଼୍‌ରୁମ୍ ଭିତରକୁ । ''ବୌଦୀ, ତୁମର ହାତ ଗୋଡ଼ ଧରି ଅନୁନୟ କରୁଛି, ଟିକିଏ କଷ୍ଟ କର । ହାରାଧନ ଲୋକଟା ଅତିଶୟ ଖାଇବାଲୋଭୀ । ବଜାର ଜଳଖିଆ ଖାଇଲେ ନିନ୍ଦା କରିବ । ଗୋଟାଏ ଟାଉଟର । ମଧ୍ୟସ୍ଥ ଭାବରେ ବିବାହ ଭାଙ୍ଗିଦିଏ, ପୁଣି ଯୋଡ଼ିଦିଏ । ଲକ୍ଷପତି ପାଖରୁ ବସ୍ତିର ଦିନମଜୁରିଆ ପର୍ଯ୍ୟନ୍ତ ସମସ୍ତଙ୍କ ଘରେ ବରକନ୍ୟାର ସନ୍ଧାନ କରି ଯୋଗସୂତ୍ର ଭିଆଇଥାଏ । ମୁଁ ବଜାରରୁ ମିଠା କିଣିବାକୁ ଯାଉଛି । ତୁମେ କେତେଖଣ୍ଡ ଲୁଚି ଓ ଟିକିଏ ସୁଜି ଓ କିଛି ଆଳୁଦମ୍ ତିଆରି କରିଦିଅ ।''

''ଶରତ୍, ମୋ କପାଳରେ ହାତ ରଖିଲ ।'' ଅର୍ଦ୍ଧମୁଦ୍ରିତ ଆଖିରେ ଅନୁରୋଧ କଲା କରୁଣା ।

ମୁଣ୍ଡ ଉପରେ ହାତରଖି ଶରତ୍ ଚମକି ଉଠିଲେ । ''ନିଆଁ ପରି ତାତିଛି ! ତୁମେ ଜଳଖିଆ ତିଆରି କରିସାରିଲା ବେଳକୁ ମୁଁ ଡାକ୍ତର ଡାକିଆଣିବି । ପାଜି ହାରାଧନଟା ଆଜି ସକାଳେ ଆସିଯିବ ବୋଲି ଭାବି ନ ଥିଲି ।'' ଶରତ ତରତର ହୋଇ ମା'ଙ୍କ ପାଖରୁ ପଇସା ନେଇ ବଜାର ଚାଲିଗଲେ । କରୁଣା କାନ୍ଥ ଧରି ଧରି ପଶିଲା ରୋଷାଇଶାଳ ଭିତରେ । ମମତାଦେବୀ ଦେଖୁଥାନ୍ତି ଝିଅର ଅବସ୍ଥା ।

ବେଳ ଘଡ଼ିଏ ବେଳକୁ ଆସିଗଲେ ହାରାଧନବାବୁ । ଟେବୁଲ ଉପରେ ଗରମ ପୁରି, ପରଟା, ଆଳୁଦମ୍ ଓ ମିଷ୍ଟାନ୍ନ ଦେଖି ଲୋଭ ସମ୍ବରଣ କରିବା ତାଙ୍କ ପକ୍ଷରେ ସମ୍ଭବ ନ ଥାଏ । ଟେବୁଲର ଆଗ ପାଖରେ ବସିଗଲେ ଶରତ ଓ ତାଙ୍କ ମା' । ହେମନ୍ତ ଓ ବସନ୍ତ ଟେବୁଲ ପାଖକୁ ଆସିଲେ ନାହିଁ ।

ହାରାଧନବାବୁ ଖାଉଥାନ୍ତି, କଥାବାର୍ତ୍ତା ଚାଲିଥାଏ । ପଙ୍କଜିନୀଦେବୀ ପ୍ରଥମେ ଅସନ୍ତୋଷ ପ୍ରକାଶ କଲେ ଯେ ଗତ ରାତିରେ କନ୍ୟାର ପିତାମାତାଙ୍କ ସମ୍ମୁଖରେ ବରର ତାଡ଼ି ଓ ବିଡ଼ି ଅଭ୍ୟାସ ପ୍ରସଙ୍ଗଟି ଉଠାଇବା ଉଚିତ ନ ଥିଲା । ହାସ୍ୟରୋଳ ମଧ୍ୟରେ ହାରାଧନବାବୁ ଉତ୍ତର ଦେଲେ, ''ଘୋଷ ଦମ୍ପତି ବରର ଅଭ୍ୟାସ ବିଷୟ ବହୁତ ଆଗରୁ ଓ ଉତ୍ତମ ଭାବରେ ଜାଣିଥାନ୍ତି ବୋଲି କଥାଟା ସ୍ପଷ୍ଟ କରିଦେଲି । ଯେଉଁ କଥା ସେମାନେ ଜାଣିଛନ୍ତି, ସେହି କଥାଟା ଲୁଚାଇରଖିବା ମଧ୍ୟସ୍ଥ ହିସାବରେ ମୋର ଉଚିତ ହୋଇ ନ ଥାନ୍ତା । ଖୋଲା ମନରେ ମୁଁ କଥାବାର୍ତ୍ତା କରିଥାଏଁ ବୋଲି ମୋ ଉପରେ ସମସ୍ତଙ୍କର ବିଶ୍ୱାସ ରହିଛି ।''

''ହେଉ ହେଲା । ମିଷ୍ଟର ଓ ମିସେସ୍ ଘୋଷ ମୋ ପୁଅକୁ ଝିଅ ଦେବେ କି ନାହିଁ ଏବେ ଖୋଲାଭାବରେ କହନ୍ତୁ ।'' ପଚାରିଲେ ପଙ୍କଜିନୀଦେବୀ ।

''ବର ଖୋଜି ଖୋଜି ସାତ ବର୍ଷ ଗଲା । ଝିଅଟିର ରଙ୍ଗ ନାହିଁ କି ଢଙ୍ଗ ନାହିଁ । ସେଥିପାଇଁ ସେମାନଙ୍କର ଚିନ୍ତା । ତେଣେ ବୟସ ବଢ଼ିଚାଲିଛି । ଆପଣଙ୍କ ବଂଶର ମର୍ଯ୍ୟାଦା ରହିଛି । ପୁରାତନ ବଂଶ । ଶରତବାବୁ ଦେଖିବାକୁ ସୁନ୍ଦର ଓ ପ୍ରକୃତରେ ସ୍ୱାସ୍ଥ୍ୟବାନ୍ । ପୁଣି କୋମ୍ପାନୀରେ ଚାକିରି କରୁଛନ୍ତି । ତାଡ଼ି ବିଡ଼ି ହେଉ ବା ମଦ ଗଞ୍ଜା ହେଉ, ସେଗୁଡ଼ାକ ଏ ଯୁଗର ସାମାଜିକ କଳଚର । ସବୁକଥା ବିଚାର କରି ସେମାନେ ଶରତ ହାତରେ କନ୍ୟାଦାନ ପାଇଁ ରାଜି । କେବଳ ସେତିକି ନୁହେଁ । କହିଛନ୍ତି 'ଶୁଭସ୍ୟ ଶୀଘ୍ରମ୍' ଅର୍ଥାତ୍ ଯେତେ ଶୀଘ୍ର ସମ୍ଭବ, ବିବାହ ତାରିଖ ଠିକ୍ କରାଯିବା ଦରକାର,'' ଉତ୍ତର ଦେଲେ ହାରାଧନବାବୁ ।

''ମୋର କନ୍ୟା ଦେଖିବା ଦରକାର ନାହିଁ । ମୋ ବାବା ମା' ମଧ୍ୟ ଦେଖିବାକୁ ଯିବେ ନାହିଁ । କନ୍ୟାଟିଏ ମିଳିଲେ ହେଲା । କଥାରେ ଅଛି, ନଦୀ ଜଳ ପଛେ ହେଉ ଗୋଳିଆ, କୁଳ କନ୍ୟା ପଛେ ହେଉ କାଳିଆ,'' କହି ପକାଇଲେ ଶରତ ।

''ଚୁପ୍ କର୍, ତୋତେ କଥା କହିବାକୁ କିଏ କହିଲା ?'' ରାଗିଉଠିଲେ ପଙ୍କଜିନୀଦେବୀ । ତା' ପରେ ହସି ହସି ହାରାଧନବାବୁଙ୍କୁ ପଚାରିଲେ, ''ଯୌତୁକ ବିଷୟରେ କିଛି କହିଛନ୍ତି ?''

ପୁଣି ହାସ୍ୟରୋଳ ଖେଳାଇ ହାରାଧନବାବୁ ଉତ୍ତର ଦେଲେ, ''ବେଦୀ ଉପରେ କନ୍ୟାଦାନ ସହିତ ସ୍ୱର୍ଣ୍ଣଦାନ, ଭୂମିଦାନ, ବୃକ୍ଷଦାନ ଓ ଗାଭୀଦାନ ଇତ୍ୟାଦି ପ୍ରତିଶ୍ରୁତି କନ୍ୟାପିତାଙ୍କୁ ଦେବାକୁ ହୁଏ । ପ୍ରକୃତ ଯୌତୁକ ଦାବି କରାଯାଏ ଶାଶୁଘରେ କନ୍ୟା କିଛି ମାସ ରହିଲା ପରେ ।''

''ସେତେବେଳେ ଯଦି କନ୍ୟାପିତା ଆମ ଦାବିଗୁଡ଼ିକ ଗ୍ରହଣ ନ କରିବେ, ତେବେ ଆମେ କ'ଣ କରିପାରିବୁଁ ?'' ପଚାରିଲେ ପଙ୍କଜିନୀଦେବୀ ।

ଉତ୍ତର ଛଳରେ ତତ୍ତ୍ୱବାଣୀ ଶୁଣାଇଲେ ହାରାଧନ ଘୋଷ ଦସ୍ତିଦାର । ବିଚକ୍ଷଣତାର ପରିଚୟ ଦେଇ ବୁଝାଇ ଦେଲେ,

''ସମୟ ଥାଏ ଯେତେବେଳେ ଆମ ସମାଜରେ 'ସତୀଦାହ' ନାମକ କୁପ୍ରଥାଟିଏ ପ୍ରଚଳିତ ଥିଲା । ଆଠ ଦଶ ବର୍ଷର ବିଧବା ଝିଅକୁ ଷାଠିଏ, ସତୁରି ବର୍ଷର ବୁଢ଼ା ସ୍ୱାମୀର ମୁର୍ଦ୍ଦାର ସହିତ ଗୋଟିଏ ଚିତାରେ ଶୁଆଇ ପୋଡ଼ି ଦିଆଯାଉଥାଏ । ବିଦେଶୀ ଇଂରେଜମାନେ ମଧ୍ୟ ସେପରି ନୃଶଂସ ଦୃଶ୍ୟ ସହ୍ୟ କରିପାରିଲେ ନାହିଁ ଏବଂ ଆଇନ୍ ବଳରେ ସତୀପ୍ରଥା ଉଠାଇ ଦେଲେ । ଏ ଯୁଗରେ, 'ସତୀଦାହ' ପରିବର୍ତ୍ତେ ସମାଜରେ ଦେଖିବାକୁ ମିଳୁଛି 'ବଧୂଦାହ' ନାମକ ଏକ ନୂତନ ପ୍ରଥା । ଅର୍ଥାତ୍ ଯୌତୁକ ଆଣି ନ ଥିବା କିମ୍ୱା ଆଣିପାରୁ ନ ଥିବା ବୋହୂମାନଙ୍କୁ କିରୋସିନି ଢାଳି ପୋଡ଼ି ଦିଆଯାଉଛି । ଅଥଚ ଆମ ସ୍ୱଦେଶୀ ସରକାର କିଛି କରିପାରୁ ନାହାନ୍ତି । କେବଳ ଏହି ବଧୂଦାହ ଶବ୍ଦଟି ଶ୍ରୀମତୀ ଘୋଷଙ୍କ ଆଗରେ ଥରେ ଦୁଇଥର ଉଚ୍ଚାରଣ କଲେ ସେ ଭୟରେ ଆପଣଙ୍କର ସମସ୍ତ ଦାବି ମାନିନେବେ । ଯଥାସମୟରେ ଏହି କର୍ତ୍ତବ୍ୟ କରାଯିବ । ଆପଣ ବିନା ଚିନ୍ତାରେ ବିବାହ ତାରିଖ ଠିକ୍ କରି କନ୍ୟାଟିକୁ ନିଜ ଘରକୁ ନେଇଆସନ୍ତୁ ।''

ସୁପ୍ରସନ୍ନ ବଦନରେ ପଙ୍କଜିନୀଦେବୀ ପ୍ରଶ୍ନ କଲେ, ''ମୋ ବଡ଼ପୁଅର ବିବାହପାଇଁ ଆପଣ କନ୍ୟା ଠିକ୍ କରିଦେଇଥିଲେ । ତା' ଭାଇମାନେ ଏବେ ବଡ଼ ବଡ଼ ପଦବୀରେ ରହିଲେଣି । ଅନେକ ଟଙ୍କା ଆୟ କରୁଛନ୍ତି । କାହିଁ ମଧ୍ୟସ୍ଥଭାବରେ ଆପଣଙ୍କ ଯୌତୁକ ଆଦାୟ କର୍ତ୍ତବ୍ୟ ମୁଁ ଦେଖିପାରୁ ନାହିଁ ? ନୂତନ ସାମାଜିକ ପ୍ରଥା ବିଷୟ ସେମାନଙ୍କ ଆଗରେ ଉଚ୍ଚାରଣ କରୁ ନାହାନ୍ତି କାହିଁକି ?''

''ହଁ କରୁଣାର ଭାଇମାନେ ଇଚ୍ଛାକଲେ ଆପଣଙ୍କର ଏହି ପୁରୁଣା ଏକତାଲା ଘରଟି ଭାଙ୍ଗିଦେଇ ନୂଆ ଚାରିତାଲା କୋଠା ଉଠାଇ ଦେଇପାରିବେ । କିନ୍ତୁ ସେଥିପାଇଁ କରୁଣାକୁ ବାରମ୍ବାର ଚିଠି ଲେଖିବାକୁ ପଡ଼ିବ, ଆପଣଙ୍କୁ ମଧ୍ୟ ପତ୍ରଦ୍ୱାରା ଦୁଃଖ ବର୍ଣ୍ଣନା କରିବାକୁ ହେବ । ନଚେତ୍ ରେଳ ଭଡ଼ା ଦେଇ ମୋତେ ସେମାନଙ୍କ ନିକଟକୁ ପଠାଇବାକୁ ପଡ଼ିବ । ଥରେ 'ବଧୂଦାହ' ଶବ୍ଦଟି ଶୁଣିପାରିଲେ ସେମାନେ ଦୁଇମାସ ମଧ୍ୟରେ ଚାରିତାଲା କୋଠା ଛିଡ଼ା କରାଇ ଦେଇପାରିବେ । ତେବେ କରୁଣା ପରି ସାକ୍ଷାତ୍ ଲକ୍ଷ୍ମୀଟିକୁ ଆପଣଙ୍କ ଘରକୁ ଆଣିଦେଇଥିଲି ବୋଲି ଥରେ ସୁଦ୍ଧା ଆପଣଙ୍କ

ମୁହଁରୁ ପ୍ରଶଂସା ଶୁଣି ନାହିଁ, ଏହାହିଁ ମୋର ଦୁଃଖ । ଝିଅଟି ଦିନରାତି ଖଟି ଖଟି ମରୁଛି । ହେମନ୍ତ ନିଜ ସ୍ତ୍ରୀଙ୍କୁ ଆଖିରେ ଦେଖେ ନାହିଁ କିମ୍ବା ତା ଦୁଃଖ କଥା ବୁଝେ ନାହିଁ । ଯେ କୌଣସି ଯୌତୁକ ଠାରୁ ସୁଲକ୍ଷଣୀ ବୋହୂଟିଏ ସହସ୍ର ଗୁଣରେ ଭଲ । ଏକଥା ମୋ ନିଜ ଅଭିଜ୍ଞତାରୁ କହୁଛି ।''

ପଙ୍କଜିନୀଦେବୀ ନିରୁତ୍ତର ରହିଲେ । ପିଣ୍ଡା ଉପରେ ଛିଡ଼ା ହୋଇ ମମତାଦେବୀ ମୁଖ ଉପରେ ଆବରଣ ରଖି ସବୁ କଥା ଶୁଣିପାରୁଥିଲେ । ବଧୂଦାହ ଶବ୍ଦଟି ଶୁଣି ତାଙ୍କ ଛାତି ଥରିଉଠିଲା । ହୃଦୟ ମଧ୍ୟରେ ଦେଖାଦେଲା ଅସ୍ୱାଭାବିକ ଏକ ଭୀତିପ୍ରଦ ସ୍ପନ୍ଦନ । ଦେହଟି ଅବଶ ଜଣାଗଲା । ବସିପଡ଼ି ଭାବିଲେ, ''ସତେ କ'ଣ ମୋ ଝିଅକୁ ପୋଡ଼ି ମାରିଦେବେ ! ନା, ମୋ ପୁଅମାନଙ୍କୁ ଚିଠି ଲେଖି ଡାକି ପଠାଇବି । ପଙ୍କଜିନୀଙ୍କ ପାଦ ପାଖରେ ସେମାନେ ଯଥାସମ୍ଭବ ଧନ ସମ୍ପତ୍ତି ରଖିଦେଇ ଯିବେ ।''

ହାରାଧନବାବୁ ବିଦାୟ ନେଲେ । ତାଙ୍କ ପଛେ ପଛେ ହେମନ୍ତ ଓ ବସନ୍ତ କୌଣସି ସ୍ଥାନକୁ ବାହାରିଗଲେ । ଶରତ ତାଙ୍କ ବୌଦୀଙ୍କ ଜ୍ୱର ଦେଖିବା ଲାଗି ଜଣେ ପରିଚିତ ଡାକ୍ତରଙ୍କୁ ଡାକି ଆଣିବା ଉଦ୍ଦେଶ୍ୟରେ ବଜାର ଦିଗକୁ ରାସ୍ତା ଧରିଲେ ।

ପ୍ରାୟ ଏକ ଘଣ୍ଟା ପରେ ଜଣେ ଡାକ୍ତରଙ୍କୁ ସାଙ୍ଗରେ ଧରି ଶରତ ଫେରିଆସିଲା ବେଳକୁ ଶଯ୍ୟାକକ୍ଷ ଭିତରୁ ଶୁଭୁଥାଏ କରୁଣାର ଯନ୍ତ୍ରଣାକାତର ସ୍ୱର । ଝିଅ କ'ଣ କହୁଛି କିମ୍ବା କ'ଣ ମାଗୁଛି ତାହା ପଚାରିବା ଲାଗି ମମତାଦେବୀଙ୍କ ପ୍ରାଣ ବ୍ୟାକୁଳ ହେଉଥାଏ । ହୁଏତ, ପାଣି ପିଇବାପାଇଁ ଇଚ୍ଛା କରୁଥିବ । କିନ୍ତୁ ପଙ୍କଜିନୀଦେବୀଙ୍କ ଡରରେ ସେ କରୁଣାର ବେଡ୍‌ରୁମ୍ ପାଖକୁ ଯାଇ ନ ପାରି ପଥର ପରି ବସି ରହିଥାନ୍ତି ।

ଡାକ୍ତରବାବୁ ଭିତରକୁ ଗଲେ । ଅନେକ ସମୟ ରୋଗୀର ଦେହ ପରୀକ୍ଷା ପରେ ଘର ମଧ୍ୟରୁ ବାହାରକୁ ଆସି ଶରତକୁ କହିଲେ, ''ମୋର ସନ୍ଦେହ ହେଉଛି, ଜ୍ୱର ମସ୍ତିଷ୍କକୁ ଆକ୍ରମଣ କଲାଣି । ସହସା ହସ୍‌ପିଟାଲରେ ଭର୍ତ୍ତି କରିବା ଦରକାର କିମ୍ବା କୌଣସି ପ୍ରତିଷ୍ଠିତ ନର୍ସିଂହୋମ୍‌ରେ । ଏପରି ଜ୍ୱରର ଚିକିତ୍ସା କେବଳ ବିଶେଷଜ୍ଞମାନେ କରିପାରିବେ । ବିଳମ୍ବେ ବିପଦ ।''

ଡାକ୍ତରବାବୁଙ୍କ ପରାମର୍ଶ ବିଷୟ ଶରତ ତାଙ୍କ ମା'ଙ୍କୁ ଜଣାଇଲାବେଳେ ସେ ବିରକ୍ତି ପ୍ରକାଶ କରି କହିଲେ, ''ମୋତେ କାହିଁକି ହସ୍‌ପିଟାଲ କଥା କହୁଛୁ ? ଯାହାର ସ୍ତ୍ରୀ ତାକୁ କହ ।''

''ହେମନ୍ତଦା ବାହାରି ଗଲେଣି । ରାତିରେ ଫେରିବେ । କ'ଣ କରିବି, ବୁଦ୍ଧି ପାଉ ନାହିଁ । ସଙ୍ଗେ ସଙ୍ଗେ ହସ୍‌ପିଟାଲ ନେବି କିପରି ?''

''ନିଜର ବୁଦ୍ଧି ନାହିଁ ଯଦି ପରପାଖରୁ ଧାର ଆଣିବୁ ଯା । ମୋଟ ଉପରେ ମୋ ପାଖରୁ ଟଙ୍କା ମାଗୁଛୁ ! ଆରେ, ତା ଭାଇମାନଙ୍କ ପାଖରୁ ଟଙ୍କା ଆସିଛି କି ନାହିଁ ଆଗେ ପୋଷ୍ଟଅଫିସରୁ ବୁଝି ଆ ।''

ଶରତ ଦୌଡ଼ିଲେ ପୋଷ୍ଟ ଅଫିସକୁ । ଦିନ ଦଶଟା ପରେ ଫେରିଆସି ସମ୍ବାଦ ଦେଲେ, ''ଟଙ୍କା ଆସିଛି, କରୁଣା ବୌଦୀଙ୍କ ନାମରେ । ପୋଷ୍ଟମାଷ୍ଟର କହିଲେ, ହେମନ୍ତବାବୁଙ୍କ ଆଦେଶ ଅଛି କେବଳ କରୁଣାର ସ୍ୱାମୀ ଭାବରେ ସେ ସ୍ତ୍ରୀଙ୍କ ଟଙ୍କା ନେଇପାରିବେ, ଆଉ କାହାରିକୁ ଦିଆଯିବ ନାହିଁ ।'' ପଙ୍କଜିନୀଦେବୀ ନିଶ୍ଚଳଭାବେ ବସି ରହିଲେ ।

କୌଣସି ବନ୍ଧୁଙ୍କ ପାଖରୁ ଟଙ୍କା ଧାର କରିବା ଉଦ୍ଦେଶ୍ୟରେ ବାହାରକୁ ଆସିଲାକ୍ଷଣି ଶରତ ଆଗରେ ଛିଡ଼ା ହୋଇପଡ଼ିଲେ ମମତାଦେବୀ । ଅନୁରୋଧ କଲେ, ''ବାବା, ତୁମ ବୌଦୀଙ୍କ ଦୁଇ କାନରେ ଦୁଇଟା ସୁନା କାନଫୁଲ ରହିଛି । ମାଗିଲେ ସେ କାଢ଼ି କରି ଦେଇଦେବେ । ସେତକ ନେଇ କାହାରି ପାଖରେ ବିକ୍ରି କରି ଶୀଘ୍ର ଟଙ୍କା ଆଣିଲେ ରିକ୍ସାରେ ପକାଇ ତୁମ ବୌଦୀଙ୍କୁ ଡାକ୍ତରଖାନା ନେଇପାରିବ ।''

ଶରତ ପଶିଗଲେ କରୁଣାର ଶଯ୍ୟାକକ୍ଷରେ । ଡାକିଲେ, ''ବୌଦୀ, ବୌଦୀ ?''

କରୁଣାର ଚେତା ନ ଥାଏ । କୌଣସି ପ୍ରକାରେ କାନଫୁଲ ଦୁଇଟା କାଢ଼ିନେଇ ଶରତ ଦୌଡ଼ିଲେ ବଜାରକୁ । ପଙ୍କଜିନୀଦେବୀ ନିଜ କୋଠରିରେ ଗୋଡ଼ଦୁଇଟା ମେଲାରଖି ନିଜ ପାଇଁ ଗୁଣ୍ଡିପାନ ତିଆରି କରିବା ଲାଗି ବସିରହିଥାନ୍ତି । ସେହି ସୁଯୋଗରେ ମମତାଦେବୀ ଚାଲିଗଲେ କରୁଣା ପାଖକୁ । କପାଳରେ ହାତ ରଖିଲେ । ଝିଅର ଆଖି ଦୁଇଟି ମେଲା ଥାଏ । କପାଳଯାକ ଥଣ୍ଡା । କାନ ପାଖରେ ଡାକିଲେ, ''ମା', ମା' ?'' ଉତ୍ତର ମିଳିଲା ନାହିଁ । ହାତଗୋଡ଼ ଥଣ୍ଡା ପଡ଼ିଯାଇଥାଏ । ଦେହଟା ଶୀତଳ । ନିଶ୍ୱାସ ପ୍ରଶ୍ୱାସ ଚାଲୁ ନ ଥାଏ । ଝିଅର ଛାତି ଉପରେ କାନ ରଖି ଜାଣିପାରିଲେ, ସବୁ ନିସ୍ପନ୍ଦ । ବିକଳ ଭାବରେ କାନ୍ଦିଉଠିଲେ, ''ମା', କରୁଣା, ସତେ କ'ଣ ଚାଲି ଗଲୁ ? ମା' ଥରେ ମାତ୍ର ମୋ ମୁହଁକୁ ଚାହିଁ ଦେଖି, ମୁଁ ତୋ ମା' ଡାକୁଛି ।''

କରୁଣାର ଆଖି ଦୁଇଟା ଖୋଲା ରହିଥାଏ ଅନନ୍ତ ଶୂନ୍ୟ ଦିଗକୁ । ଶଯ୍ୟାତଳେ ବସିରହିଥାନ୍ତି ମା' ମମତା । ଆଖିରେ ଅଶ୍ରୁ ନ ଥାଏ । ଚୁମ୍ବନ ଦେଉଥାନ୍ତି ଝିଅର କପାଳ

ଓ ଗାଲରେ । ନିସ୍ତବ୍ଧ ଓ ନୀରବ ଭାବରେ ଚାଲିଆସିଲେ ଘର ମଧ୍ୟରୁ । ବସି ରହିଲେ ମଝି ବାହାରର ମାଟି ଉପରେ ।

ରିକ୍ସାଟିଏ ଦୁଆର ଆଗରେ ରଖି ଶରତ ପଶିଗଲେ ମା'ଙ୍କ ରୁମ୍‌କୁ । ଜଣାଇଲେ, ''ମା', ବୌଦୀଙ୍କୁ ଡାକ୍ତରଖାନା ନେଇଯାଉଛି । ଟଙ୍କା କିଛି ଧାର ଆଣିଛି ।''

ପଶିଗଲେ କରୁଣାର କୋଠରି ଭିତରକୁ । ''ବୌଦୀ,. ଉଠ । ଧରି ଧରି ନେଇଯିବି ରିକ୍ସା ପାଖକୁ ।'' କ୍ଷଣକ ମଧ୍ୟରେ ଚିତ୍କାର କରି ଉଠିଲେ, ''ମା', ମା', ଦୌଡ଼ିଆସ । ବୌଦୀ ମରିଗଲେଣି ।''

''ବୋହୂ ମରିଗଲା ? ଆରେ, ହେମନ୍ତ, ବସନ୍ତ ଦୁଇଟା କୁଆଡ଼େ ଗଲେ । ରାତିରେ ଫେରିଲା ପର୍ଯ୍ୟନ୍ତ ଘରେ ମଡ଼ା ରଖାଯିବ ନାହିଁ । ପାଖ ପଡ଼ିଶା ଓ ତୋ ସାଙ୍ଗମାନଙ୍କୁ ଡାକି ଆଣ । ସନ୍ଧ୍ୟା ଆଗରୁ ମଶାଣିକୁ ଶବ ନେବାକୁ ହେବ ।''

ପଙ୍କଜିନୀଦେବୀ ନିଜେ ବାହାରକୁ ଯାଇ ପଡ଼ୋଶୀମାନଙ୍କୁ ପାଟିକରି ଡାକିଲେ । ଶରତ ମଧ୍ୟ ନିଜ ସାଙ୍ଗମାନଙ୍କୁ ଡାକିଆଣିଲେ । ସମସ୍ତେ ଲାଗିପଡ଼ି ଶବାଧାରଟିଏ ତିଆରି କରିପକାଇଲେ । କଥା ଉଠିଲା, ମୁହଁରେ ନିଆଁ ଦେବ କିଏ ? ପଙ୍କଜିନୀଦେବୀ ମତ ଦେଲେ, ''ବଡ଼ଭାଇର ସ୍ତ୍ରୀ ମା'ଙ୍କ ସମାନ । ତେଣୁ ଶରତ ମୁଖାଗ୍ନି ଦେଲେ ଭଲ ହେବ ।'' ଶରତ ଅନିଚ୍ଛା ପ୍ରକାଶ କଲେ । ମା' ପୁଅ ମଧ୍ୟରେ ବାଦାନୁବାଦ ଚାଲିଥିଲା ବେଳେ ପୁରୋହିତ ଓ ବାରିକ ଆସି ପହଞ୍ଚିଗଲେ । ତେଣେ ଶବବାହକମାନେ ଆସିଗଲେ । କିନ୍ତୁ, ମୁଖାଗ୍ନି କିଏ ଦେବ, ସେ ବିଷୟରେ ସମାଧାନ ହୋଇପାରିଲା ନାହିଁ । ଶେଷରେ ମାଟି ଉପରୁ ଉଠିପଡ଼ି ମମତାଦେବୀ କହିଲେ, ''ମୁଁ ତାଙ୍କର ଚାକରାଣୀ ଥିଲି, ତେଣୁ ଝିଅପରି । ମୁଁ ତାଙ୍କ ମୁହଁରେ ନିଆଁ ଦେଇପାରିବି ।'' ବ୍ରାହ୍ମଣ ପଣ୍ଡିତ ରାଜି ହୋଇଗଲେ ।

ଶବାଧାରର ପଛେ ପଛେ ଚାଲିଲେ ମମତା । ମଶାଣିରେ ଚିତାରେ ନିଆଁ ଲଗାଇ ଝିଅର ମୁହଁ ଉପରେ ଧରି ରଖିଲେ ଜଳନ୍ତା କାଠ ଖଣ୍ଡିଏ । ଚାହୁଁ ଚାହୁଁ କରୁଣାର ଶବ ପୋଡ଼ିଯାଇ ପାଉଁଶରେ ପରିଣତ ହେଲା । କ୍ଷୁଦ୍ର ଚିତାଟି ମଧ୍ୟ ଅବିଳମ୍ବେ ଭସ୍ମୀଭୂତ ହେଲା ।

ନିଆଁ ଲିଭିଗଲା ପରେ ଶବଦାହକମାନେ ବିଦାୟ ନେଲେ । ନିର୍ବାପିତ ଚିତା ନିକଟରେ ବସିରହିଲେ ଏକାକିନୀ ମମତାଦେବୀ । ମୁଠାଏ ପାଉଁଶ ଉଠାଇ ଆଣି ନିଜ ପଣତ କାନିରେ ବାନ୍ଧିରଖି ସେଥିରେ ବାରମ୍ବାର ଚୁମ୍ବନ ଦେଲେ ।

ଅନ୍ଧକାର ମାଡ଼ିଆସିଲା । ମଶାଣିର ଗୋଟିଏ କୋଣରେ ବସିରହି ମମତା ଯେପରି ଏକ ପାଷାଣ ଖଣ୍ଡରେ ପରିଣତ ହୋଇଯାଇଥାନ୍ତି ।

## ।। ୨୮ ।।

ଅନ୍ଧକାରମୟ ମଶାଣିର ଗୋଟିଏ ସୀମାରୁ ଅନ୍ୟ ସୀମା ପର୍ଯ୍ୟନ୍ତ ଦୌଡ଼ି ଦୌଡ଼ି କିଏ ଜଣେ ପାଟିକରି ଡାକୁଥାଏ, ''ଗେନ୍‌ସୀ, କୁଆଡ଼େ ଗଲୁ, ଗେନସୀ, ଆ ମୋ ପାଖକୁ ଆ, ଘରେ ମା' ତୋତେ ଖୋଜୁଛନ୍ତି ।'' କଣ୍ଠସ୍ୱରଟି ଥାଏ ଶରତର । ସେ ଅନ୍ଧକାର ମଧ୍ୟରେ ଦେଖିପାରୁ ନ ଥାନ୍ତି ମଶାଣି ଉପରେ ଚିତ୍ ହୋଇ ପଡ଼ିରହିଥିବା ମମତାଦେବୀଙ୍କ ଶରୀର ।

ଅନେକ ରାତି ପର୍ଯ୍ୟନ୍ତ ଅର୍ଦ୍ଧଚେତନାହୀନ ଭାବରେ ପଡ଼ିରହିଥିବା ମମତାଦେବୀ ଶେଷରେ ମାଟି ଉପରୁ ଉଠିଲେ । ଧୀର ପଦକ୍ଷେପରେ ଝିଅର ଚିତା ନିକଟକୁ ଯାଇ କିଛି ସମୟ ନୀରବରେ ଛିଡ଼ା ହେଲେ । ଅନ୍ତର ମଧ୍ୟରେ କିଏ କହୁଥାଏ - ଆଜୀବନ ନିର୍ଯାତନା ଭୋଗ କରିବା ଅପେକ୍ଷା ଅକାଳ ମୃତ୍ୟୁ ବରଣ କରିବା ଶ୍ରେୟସ୍କର । ଭାବିଲେ, ଚିର ଦୁଃଖିନୀ ଝିଅର ସମସ୍ତ ପ୍ରକାର ଶାରୀରିକ ଓ ମାନସିକ ଯନ୍ତ୍ରଣା ଦୂର କରିବା ନିମନ୍ତେ ମଙ୍ଗଳମୟ ମୃତ୍ୟୁ ବୋଧହୁଏ ତା' ଜୀବନକାଳ ଉପରେ ପୂର୍ଣ୍ଣଚ୍ଛେଦ ଟାଣି ଦେଇଛନ୍ତି । ଚାଲିଲେ ଅନ୍ଧକାର ଭେଦ କରି ଭିନ୍ନ ଏକ ପଥରେ । ହାତରେ ଖଣ୍ଡିଏ ବାଡ଼ି ଓ ପଣତକାନିରେ ବନ୍ଧାଥିବା ଝିଅର ମୁଠାଏ ପାଉଁଶ ଥାଏ ଏକମାତ୍ର ସମ୍ବଳ ।

ଚାଲି ଚାଲି ପହଞ୍ଚିଲେ ପୂର୍ବ ପରିଚିତ ହାବଡ଼ା ଷ୍ଟେସନରେ । ଦିଲ୍ଲୀ ଅଭିମୁଖୀ ଗାଡ଼ିଟିର ଶେଷ ଡବାଟି ଭିତରେ ପଶିଯାଇ ବସି ପଡ଼ିଲେ ବାଥ୍‌ରୁମ୍ ପାଖରେ । ଭାବୁଥାଆନ୍ତି, ଡେଜର କଟାମୁଣ୍ଡ ଦେଖିଥିଲି, କରୁଣାର ଚିତା ଜଳିବା ଦେଖିଲି, ଏବେ ଦେଖିବି ପୁଅ ସ୍ୱରାଜକୁ । ସେ ପରା ମନ୍ତ୍ରୀ ହୋଇଛି, ନିଶ୍ଚୟ ଥିବ ରାଜଧାନୀ ଦିଲ୍ଲୀରେ ।

ରାତି ପାହିବା ଆଗରୁ ଦ୍ରୁତଗାମୀ ରେଳଗାଡ଼ିଟି ଗୋଟିଏ ବଡ଼ ଷ୍ଟେସନ ମଧ୍ୟରେ ପ୍ରବେଶ କଲା । ଦଳ ଦଳ ଲୋକ ପଶିଆସି ଡବାଟି ମଧ୍ୟରେ ଖୁନ୍ଦାଖୁନ୍ଦି ହୋଇ ବସିଗଲେ । ଅନେକ ଯାତ୍ରୀ ଛିଡ଼ା ହୋଇ ରହିଲେ । ଗାଡ଼ି ଛାଡ଼ିଲା । ଟିକଟ ଚେକର ଟିକଟ ଦେଖିବେ କହିବାରୁ ଜଣେ ଭଦ୍ରବ୍ୟକ୍ତି ତୀକ୍ଷ୍ଣ ସ୍ୱରରେ କହିଲେ, ''ରାଜଧାନୀରେ ରାଜନୈତିକ ର୍‍ୟାଲିରେ ଯୋଗଦେବାକୁ ଗଲାବେଳେ ଟିକଟ

କରାଯାଏ ନାହିଁ । ଆଉ ଥରେ ଯଦି ଟିକଟ ମାଗିବୁ, ଗାଡ଼ି ବାହାରକୁ ତୋତେ ଶୂନ୍ୟରେ ଟେକି ଫୋପାଡ଼ି ଦେବୁ ।'' ଅସହାୟ ଚେକାରବାବୁ ଦରଜା ପାଖରେ ଥିବା ନିଜ ସିଟ୍ ଉପରେ ବସିରହି ପ୍ରାତଃଭୋଜନ ଲାଗି ଟିଫିନ୍ ବାଟିଟି ଫିଟାଇଲେ । ପେଟଭର୍ତ୍ତି ଖାଇସାରିଲା ପରେ ମମତା ଦିଗକୁ ଚାହିଁ ଧମକ ଦେଲେ, ''ବିନା ଟିକଟରେ ଯାଉଛୁ ? ମୋ ଟିଫିନ ବାଟିଗୁଡ଼ାକ ବାଥ୍ରୁମ୍‌ରେ ଭଲକରି ଧୋଇଆଣ । ନ ହେଲେ ଆଗ ଷ୍ଟେସନରେ ତଳକୁ ଓହ୍ଲାଇ ଦେବି ।''

ମମତାଦେବୀ ଆଦେଶ ମାନିଲେ । ବାଥରୁମ୍ ଭିତରେ ପଶିଯାଇ ଦେଖିଲେ ଖଣ୍ଡିଏ ବାଟିରେ ଅଧାଖିଆ ପାଉଁରୁଟି ଓ କିଛି ଆଳୁଭଜା ରହିଯାଇଛି । ଭାବିଲେ ଦାରୁଣ କ୍ଷୁଧା ଯୋଗୁଁ ସେତକ ଖାଦ୍ୟ ଖାଇଦେବେ । କିନ୍ତୁ ମନେପଡ଼ିଗଲା, ଝିଅ ଜୀବନର ଶେଷ ରାତିର ଘଟଣା । ସମସ୍ତେ ଭୂରି ଭୋଜନ କରିଥିଲା ବେଳେ କିଛି ନ ଖାଇ ଶୁଖିଲା ମୁହଁରେ ଶୋଇପଡ଼ିଥିଲା କରୁଣା । ତା'ର ସୁକୋମଳ ଦେହ ମାଟିରେ ମିଶିଗଲା ପରେ ତା' ମା'ର କ୍ଷୁଧା ବୋଲି ଅନୁଭବ ଶକ୍ତି ରହିପାରିବ ନାହିଁ । ରୁଟିଖଣ୍ଡିକ ବାହାରକୁ ଫୋପାଡ଼ି ଦେଇ ସେ ଅଇଁଠା ବାଟିଗୁଡ଼ାକ ପରିଷ୍କାର କଲେ । ଆଖି ଆଗରେ ଭାସିଯାଉଥାଏ ଝିଅର ମୁହଁ । ଆଖିରୁ ଝରିଯାଉଥାଏ ଲୋତକ ଧାରା ।

ଗାଡ଼ି ଅନେକ ସ୍ଥାନରେ ଅଟକି ରହୁଥାଏ । ଦ୍ରୁତଗାମୀ ଆଖ୍ୟାଟି ଅବାନ୍ତର ଥାଏ । ଗୋଟିଏ ଦିନ ଓ ଗୋଟିଏ ରାତି ବିତିଗଲା ପରେ ଦିଲ୍ଲୀ ଷ୍ଟେସନରେ ଗାଡ଼ି ପହଞ୍ଚିବା ପୂର୍ବରୁ ଡବା ଭିତରୁ ଆରମ୍ଭ ହୋଇଗଲା ଜୟ ଜୟକାର ଧ୍ୱନି । ଗାଡ଼ି ଅଟକିଲା । ମମତାଦେବୀଙ୍କ ଅର୍ଦ୍ଧମୃତ ଦୁର୍ବଳ ଶରୀର ଉପର ଦେଇ ମାଡ଼ି ଚାଲିଗଲେ କେତେକ ଯାତ୍ରୀ । ପ୍ଲାଟଫର୍ମରେ ଲୋକାରଣ୍ୟ । ଜୀବନ ଧରି କୌଣସି ପ୍ରକାରେ ତଳକୁ ଆସି ଜାଣିପାରିଲେ, ଘଣ୍ଟା ଚକଟା ମଧ୍ୟରେ କରୁଣାର ଚିତାଭସ୍ମ ଟିକକ ପଣତ କାନିରୁ ଉଭେଇ ଯାଇଛି ।

ଦେହରେ ବଳ ବୋଲି କିଛି ନ ଥାଏ । ପାଣି ପିଇବାପାଇଁ ପାଇପ୍ ପାଖକୁ ଗଲାବେଳେ ଜଣେ ବ୍ୟକ୍ତି ପାଟି କଲେ - ''ହଇରେ ବୁଢ଼ୀ, ଅସ୍ତକୋଢ଼ି ! ଟେପ୍‌ରେ ତୋ ହାତ ଲାଗିଲେ ଆଉ କେହି ପାଣି ପିଇପାରିବେ ? ଯା, ସେଠାରୁ ପଳା ।''

ପ୍ଲାଟଫର୍ମ ବାହାରକୁ ଆସି ମମତାଦେବୀ ଅନୁମାନ କରିପାରିଲେ ନାହିଁ, କେଉଁଠାକୁ ଯିବେ ! କିଏ ବା କହିବ ମନ୍ତ୍ରୀମାନେ କେଉଁ ଅଞ୍ଚଳରେ ରହନ୍ତି । କହିଲେ ମଧ୍ୟ, ଜଣେ ମନ୍ତ୍ରୀଙ୍କର ମା' ବୋଲି ପରିଚୟ ଦେବା ସମ୍ଭବ ହେବ କି ! ପରିଚୟ ଦେଲେ ମନ୍ତ୍ରୀଙ୍କର ମର୍ଯ୍ୟାଦା ନଷ୍ଟ ହେବ ନାହିଁ ତ ?

କ୍ଷୁଧା ଆଗରେ ଶୋକ ଓ ଦୁଃଖ ଅଥବା ସୁଖ ଓ ସମ୍ଭୋଗ ବୋଲି କିଛି ନ ଥାଏ । ପାଖରେ ଦିଶିଲା ଚକଟେଗୁଡ଼ିଏ ଛୋଟ ଓ ବଡ଼ ହୋଟେଲ । କୌଣସି ଲୋକର ଉଚ୍ଛିଷ୍ଟ ମିଳିଲେ ମଧ୍ୟ ଖୁସିରେ ଖାଇପାରିବେ ବୋଲି ଇଚ୍ଛା ହେଲା । ଚାଲିଲେ ସେହି ଦିଗରେ । ଗୋଟିଏ ହୋଟେଲରୁ ବାହାରି ଆସୁଥିଲେ ଏକ ବିଦେଶୀ ଦମ୍ପତି । ବିଦେଶିନୀ ମହିଳାଙ୍କ ଆଖି ପଡ଼ିଗଲା ମମତାଦେବୀଙ୍କ ଛିଣ୍ଡା ଲୁଗା ଓ କୁତ୍ସିତ ମୁହଁ ଉପରେ । ଦୟାରେ ତରଳିଗଲାପରି ମନୋଭାବ ସହ ନିଜ ସ୍ୱାମୀଙ୍କୁ ଇଂରାଜୀରେ କହିଲେ, "I just can't stand the sight of such poverty ! Wherever you go, you see the hungry, the wretched, the diseased and the destitute children. Oh, it is horrible."

ସ୍ତ୍ରୀଙ୍କ ଉକ୍ତି ଶୁଣି ସ୍ୱାମୀ ପକେଟରୁ ଦୁଇଖଣ୍ଡ ନୋଟ୍ କାଢ଼ି ମମତାଦେବୀଙ୍କ ହାତକୁ ବଢ଼ାଇଦେଲେ । ଧରିନେଲା ପରେ ସେ ଭାବିଲେ ଯେ ତାଙ୍କ ପରି ଜଣେ ଦୁଃସ୍ଥା ମହିଳା ରାଜଧାନୀର ରାଜରାସ୍ତାରେ ଚାଲିବା ଉଚିତ ନୁହେଁ, କାରଣ ଆମ ଦେଶ ପ୍ରତି ବିଦେଶୀମାନଙ୍କ ମନରେ ଖରାପ ଧାରଣା ସୃଷ୍ଟି ହେବ । ସେତିକିବେଳେ ତାଙ୍କର ଦୃଷ୍ଟି ପଡ଼ିଲା ଅନ୍ୟ ଗୋଟିଏ ହୋଟେଲ ଆଗରେ ଥିବା ଏକ ପ୍ରକାଣ୍ଡ ଟିଣ ଡଷ୍ଟବିନ୍ ଉପରେ । ସେଥି ମଧ୍ୟରେ ପକାଯାଉଥିବା ଅଇଁଠାଗୁଡ଼ିକରୁ କିଛି ଖାଦ୍ୟ ସଂଗ୍ରହ କରିବା ଆଶାରେ କେତେଜଣ ଦୀନଦୁଃଖୀ ବାଳକବାଳିକାଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ଚାଲିଛି । ଗୋଟିଏ ପ୍ଲେଟରୁ ଉଚ୍ଛିଷ୍ଟଗୁଡ଼ାକ ଫୋପାଡ଼ି ଦେଲାବେଳକୁ ପିଲାଙ୍କ ଭିତରେ ଲାଗି ଯାଉଛି ଠେଲାପେଲା ଓ ମାଡ଼ପିଟ୍ ।

ମମତାଦେବୀଙ୍କୁ ଜଣାଥାଏ, ଅଧିକାଂଶ ଦିନ କରୁଣାର ଶାଶୁ, ଶ୍ୱଶୁର, ସ୍ୱାମୀ ଓ ଦେବରମାନେ ନିଜ ନିଜ ଥାଳି ବାଟିରେ ଯେଉଁ ଅଇଁଠା ଭାତ ଓ ତରକାରି ଛାଡ଼ିଯାଉଥାନ୍ତି, ତାହାହିଁ ଥାଏ ଝିଅର ଖାଦ୍ୟ । ଚିନ୍ତା କଲେ କିପରି ଘୃଣା ସହ ସେ ନିଜର କ୍ଷୁଧା ନିବାରଣ କରୁଥିଲା ! ସେପରି ଭାଗ୍ୟହୀନା ପକ୍ଷରେ ମୃତ୍ୟୁ ଥିଲା ଈଶ୍ୱରଙ୍କର ଆଶୀର୍ବାଦ ।

ରାସ୍ତା ପାଖ ଦୋକାନରୁ ଅଳ୍ପ କିଛି ଜଳଖିଆ ଖାଇ ମମତା ଗୋଟିଏ ଛୋଟ ଦୋକାନରୁ ଦୁଇଖଣ୍ଡି ଧୋତି କିଣିଲେ ଓ ସେଥିସହ କିଣିଲେ ମୁଣ୍ଡ ଢାଙ୍କିରଖିବା ଲାଗି କଳା ରଙ୍ଗର ଖଣ୍ଡିଏ ମୋଟା କପଡ଼ା । ସେତିକିରେ ଶହେଟଙ୍କିଆ ନୋଟ ଖଣ୍ଡିକ ଶେଷ ହୋଇ ନ ଥିଲା, ଅଥଚ ବାକି ପଇସା ଫେରାଇ ନ ଦେଇ ଦୋକାନୀ କୁଷ୍ଠରୋଗୀ ବୋଲି ଗାଳିଦେଇ ବାହାର କରିଦେଲା । ତଥାପି ହାତରେ ଥାଏ ଅନ୍ୟ ଖଣ୍ଡିଏ ଶହେ

ଟଙ୍କିଆ ନୋଟ । ପାର୍ଶ୍ୱବର୍ତ୍ତୀ ଗୋଟିଏ ସର୍ବସାଧାରଣ ବାଥ୍ରୁମ ଭିତରକୁ ଯାଇ ଛିଣ୍ଡା ଲୁଗା ପରିବର୍ତ୍ତେ ନୂଆ ଲୁଗା ପିନ୍ଧିଲେ । ଅନ୍ୟ ଖଣ୍ଡିଏ ନୂଆ ଲୁଗା ଓ ପୁରୁଣା ଲୁଗାଟିକୁ ଡାହାଣ ହାତରେ ଧରି ଏବଂ ନୋଟ ଖଣ୍ଡିକ ବାଁ ହାତ ପାପୁଲିରେ ରଖି ଅଳ୍ପଦୂର ଯିବା ପରେ ପଛରୁ ଶୁଣିଲା କୌଣସି ବ୍ୟକ୍ତିର ଧମକପୂର୍ଣ୍ଣ ଆଦେଶ, ''ଏ ବୁଢ଼ୀ, ଚୋରି କରିଛୁ । ସେହିଠାରେ ଛିଡ଼ା ରହିଥା ।''

ମମତା ଫୁଟ୍‌ପାଥ ଉପରେ ଛିଡ଼ା ରହିଲେ । ତାଙ୍କ ଆଗକୁ ଆସିଗଲେ ଜଣେ ପୁଲିସ୍ କନଷ୍ଟେବଲ । ବାଁ ହାତରୁ ନୋଟ ଖଣ୍ଡିକ ଟାଣି ନେଇ ଠେଙ୍ଗା ଉଠାଇଲେ ପିଟିବାପାଇଁ । ''ଚାଲ୍ ଥାନାକୁ । ଦିନବେଳେ ମୋ ଆଖି ଆଗରେ ଚୋରି !''

''ଆଜ୍ଞା ନା, ମୁଁ ଚୋରି କରି ନାହିଁ । ଜଣେ ସାହେବ ମୋତେ ଦୟାକରି ଟଙ୍କା ଦେଇଥିଲେ ।''

''ଏକାଥରକେ ବସାଇଦେବି ମାଡ଼ । ଥାନାକୁ ଯାଇ ମଜିବୁ ନା ନିଜ ରାସ୍ତା ଧରିବୁ ?'' ବଡ଼ ବଡ଼ ଆଖି ଦେଖାଇ ପଚାରିଲେ କନଷ୍ଟେବଲ ।

''ନା, ମୁଁ ମୋ ରାସ୍ତା ଧରିବି । ଦୟାକରି ଛାଡ଼ିଦିଅନ୍ତୁ । କେଉଁ ଅଞ୍ଚଳରେ ମନ୍ତ୍ରୀମାନେ ରହନ୍ତି ମୋତେ ବତାଇ ଦେଲେ ମୁଁ ସେହି ବାଟରେ ଚାଲିବି,'' କହିଲେ ମମତା ।

''ବୁଝିଲି ବୁଝିଲି । ମନ୍ତ୍ରୀ ଓ ଏମ୍.ପି.ମାନଙ୍କ ଇଲାକାରେ ଭିଖ ମାଗି ମାଗି ବୁଲିବୁ । ଭଲ କଥା । ରାସ୍ତା ପଚାରି ପଚାରି ଚାଲିଯା ପାର୍ଲିଆମେଣ୍ଟ ପର୍ଯ୍ୟନ୍ତ । ସେହି ଜାଗାର ପାଖ ଅଞ୍ଚଳରେ ଅଛନ୍ତି ମନ୍ତ୍ରିଦଳ । ତୋ ମୁହଁ ଦେଖିଲେ ସେମାନେ ଦୟା କରିବେ, ଯେମିତି ସାହେବଟା ଦୟାକଲା, ଯା, ଶୀଘ୍ର ପଳାଇ ଯା, ନ ହେଲେ ଥାନାକୁ ନେଇଯିବି ।''

ମମତାଦେବୀ ବେଗି ବେଗି ଚାଲି ପାରୁ ନ ଥାନ୍ତି । ରେଳଗାଡ଼ିରୁ ତଳକୁ ଆସିଲା ସମୟରେ ଝ୍ୟାଲି ଲାଗି ଆସିଥିବା କେଉଁ ଜଣେ ବ୍ୟକ୍ତି ତାଙ୍କ ହାତରୁ ବାଡ଼ିଖଣ୍ଡିକ ଛଡ଼ାଇ ନେଇଥିଲେ । ତଥାପି ଯେତେଦୂର ସମ୍ଭବ ଯଥାଶୀଘ୍ର ଗନ୍ତବ୍ୟସ୍ଥଳ ଦିଗକୁ ଅଗ୍ରସର ହେଲେ । ଜଣେ ପଥଚାରୀଙ୍କୁ ପଚାରିଲେ, ''ପାର୍ଲିଆମେଣ୍ଟ ଘର କେଉଁଠାରେ ?''

ଉତ୍ତର ପାଇଲେ, ''ରାଷ୍ଟ୍ରପତି ଭବନ ନିକଟରେ ।''

କେଉଁଠାରେ ରାଷ୍ଟ୍ରପତି ଭବନ, କେଉଁଠାରେ ପାର୍ଲିଆମେଣ୍ଟ, କେଉଁ ସ୍ଥାନରେ ମନ୍ତ୍ରୀମାନଙ୍କ ଘର, ଏହି ସମସ୍ତ କଥା ଚିନ୍ତା କଲାବେଳକୁ ମମତାଙ୍କ ମସ୍ତିଷ୍କ ଭାରାକ୍ରାନ୍ତ ହୋଇଉଠୁଥାଏ । ତେଣେ ଅତିଶୟ ଧୀର ଗତିରେ ଚାଲିଥିବା ଯୋଗୁଁ ପଛରୁ କେହି କେହି ଧକ୍କା ଦେଉଥାନ୍ତି । ଫୁଟପାଥ୍‌ରୁ ଓହ୍ଲାଇବା ସମ୍ଭବ ମଧ୍ୟ ନ ଥାଏ । କାରଣ ରାସ୍ତା ଉପରେ ଦେଖାଯାଉଥାଏ ଅବିରତ ମୋଟରଗାଡ଼ିର ସୁଅ । ଛକଗୁଡ଼ିକରେ ଗାଡ଼ିଗୁଡ଼ିକ ଅଟକି ଯାଉଥିବା ସ୍ଥାନରେ ଜୀବନ ବିପନ୍ନ କରି କେଉଁ ଅଜ୍ଞାତ ସ୍ଥାନରୁ ବାହାରି ପଡୁଥାନ୍ତି ଭିଖାରି ପିଲା ଏବଂ ଛୋଟ ଛୋଟ ଶିଶୁଙ୍କୁ କାଖରେ ଧରି ଦୁଃଖିନୀ ମହିଳାମାନେ । ମାଗୁଥାନ୍ତି ଗୋଟିଏ ଗୋଟିଏ ପଇସା । ବାବୁମାନେ ପକେଟରେ ହାତ ପୂରାଇବା ପୂର୍ବରୁ ଗାଡ଼ିଗୁଡ଼ିକ ଦ୍ରୁତ ଗତିରେ ଆଗେଇ ଯାଉଥାଏ । ନିରାଶ ହୋଇ ଭିଖାରି ଦଳ ଫେରି ଆସୁଥାନ୍ତି ଫୁଟ୍‌ପାଥ ଉପରକୁ । ସେହିମାନଙ୍କୁ ବାଟ ପଚାରି ପଚାରି ଧୀରେ ଧୀରେ ଚାଲିଥାନ୍ତି ମମତାଦେବୀ ।

ମଧ୍ୟାହ୍ନ ବେଳକୁ ଦେଖିଲେ ଗୋଟିଏ ବିଶାଳ ମନ୍ଦିର ସମ୍ମୁଖରେ ଦଳଦଳ ବୁଭୁକ୍ଷୁ ଲୋକଙ୍କ ଭିଡ଼ ଜମିଛି । ଶୁଣିଲେ, ମନ୍ଦିରଟି ହେଉଛି ଗୋଟିଏ ଗୁରୁଦ୍ୱାର । ସେଠାରେ ପ୍ରତିଦିନ ବିନା ମୂଲ୍ୟରେ ଧନୀ ବା ଦରିଦ୍ର ସମସ୍ତଙ୍କୁ ଖାଦ୍ୟ ମିଳେ । ନିଜର ମୁହଁ ଉପରେ କଳା କନା ରଖି କେତେଜଣ ମହିଳାଙ୍କ ସହିତ ମମତା ଗେଟ ଭିତରକୁ ପଶିଲେ । ପଂକ୍ତି ଭୋଜନ ଚାଲିଥାଏ । ଗୋଟିଏ ସ୍ଥାନରେ ବସିଯାଇ ସୁସ୍ୱାଦୁ ଖାଦ୍ୟମାନ ଖାଇଲା ବେଳେ ପାଖରେ ବସିଥିବା ଜଣେ ଭଦ୍ରମହିଳାଙ୍କୁ ପ୍ରଶ୍ନ କଲେ, ''ମା', ମନ୍ତ୍ରୀମାନେ ରାଜଧାନୀର କେଉଁ ଜାଗାରେ ରହନ୍ତି ?''

''ଏଠାରୁ ଅଳ୍ପ ଦୂରରେ ଗୋଟିଏ ବଡ଼ ଛକ ରହିଛି । ଛକ ପାଖରୁ ଗୋଟିଏ ଓସାରିଆ ରାସ୍ତା ଦୂରକୁ ଲମ୍ବିଯାଇଛି । ସେହି ରାଜପଥର ଦୁଇ ପାଖରେ ମନ୍ତ୍ରୀମାନଙ୍କର ବଡ଼ ବଡ଼ ଘର ଦେଖିବାକୁ ମିଳିବ । ଘରର ଫାଟକ ନିକଟରେ ଦଳ ଦଳ ପୁଲିସ୍ ଜଗିଥିବେ । ପ୍ରାଚୀର ଉପରେ ରହିଥିବ ଲୁହାତାରର ବାଡ଼ । ସେହି କୋଠିଗୁଡ଼ିକୁ କୁହାଯାଏ ବାଂଲୋ ।''

ଭୋଜନ ପରେ ମମତାଦେବୀ ଯଥାପଥରେ ପହଞ୍ଚିଗଲେ । ପ୍ରବଳ ଆଶା ନେଇ ଚାଲିଥାନ୍ତି, ପୁଅ ସ୍ୱରାଜକୁ ଦେଖିବେ ।

ପ୍ରାଚୀର ଘେରା ପଡ଼ିଆ କିମ୍ବା ବଗିଚା ମଧ୍ୟରେ ଦେଖିବାକୁ ମିଳୁଥାଏ ସୁନ୍ଦର ସୁନ୍ଦର ବାଂଲୋ ବା ବଙ୍ଗଳା । ଗୋଟିଏ ଘରର ଗେଟ୍ ଜଗିଥିବା ଜଣେ ପୁଲିସ କର୍ମଚାରୀଙ୍କୁ ପଚାରିଲେ, ''ଆଜ୍ଞା, ମନ୍ତ୍ରୀ ସ୍ୱରାଜବାବୁଙ୍କ ବାଂଲୋ ନମ୍ବରଟି କହିପାରିବେ ?''

''ଏହି ଘରର ନମ୍ବର ହେଉଛି ତିନି । ଆଠ ନମ୍ବର ବାଂଲୋଟି ସ୍ୱରାଜବାବୁଙ୍କର । ଘର ପରେ ଘର ଆଗକୁ ଚାଲିଗଲେ ପାଇଯିବୁ ।''

ତିନି ନମ୍ବର କୋଠି ପାଖରୁ ଆଠ ନମ୍ବର କୋଠି ପର୍ଯ୍ୟନ୍ତ ଦୂରତ୍ୱ କିଛି କମ୍ ନ ଥାଏ । ସେଠାରେ ପହଞ୍ଚିଲା ବେଳକୁ ସନ୍ଧ୍ୟା ଆସି ଯାଉଥାଏ । ଫାଟକ ନିକଟରେ ଜଗିଥାନ୍ତି ଚାରିଜଣ ବନ୍ଧୁକଧାରୀ ପୁଲିସ । ହଠାତ୍ ଖଣ୍ଡିଏ ପ୍ରକାଣ୍ଡ ଗାଡ଼ି ଗେଟ ପାଖରେ ପହଞ୍ଚିଲା କ୍ଷଣି ଦୁଇଜଣ କର୍ମଚାରୀ ଦୌଡ଼ିଆସି ଫାଟକ ଫିଟାଇ ଧରିଲେ । ଗାଡ଼ି ଭିତରେ ବସିଥିବା ବ୍ୟକ୍ତି କ'ଣ ମୋ ପୁଅ ସ୍ୱରାଜ ! ଗୋଧୂଳି ଆଲୋକରେ ସେହିପରି ରୂପଟି ଦେଖାଗଲା ବୋଲି ମମତାଦେବୀ ଅନୁମାନ କରିନେଲେ । ଗାଡ଼ିଟି ରହିଲା ପୋର୍ଟିକୋ ତଳେ । ସଙ୍ଗେ ସଙ୍ଗେ ପଛ ଦ୍ୱାର ଫିଟାଇ ଧରିଲେ ଜଣେ ଦୀର୍ଘକାୟ ବ୍ୟକ୍ତି । ବାହାରି ଚାଲିଗଲେ ମନ୍ତ୍ରୀ । ଗେଟ ପାଖକୁ ଫେରିଆସିଲେ ଗାଡ଼ି ଫିଟାଇଥିବା କର୍ମଚାରୀ ।

''ମନ୍ତ୍ରୀ ମହୋଦୟ ଭିତରକୁ ଗଲେ କି ?'' ଆବରଣ ତଳେ ମୁହଁଟିକୁ ଲୁଚାଇରଖି ସେ ପଚାରିଲେ ଜଣେ ପ୍ରହରୀକୁ ।

''ହଁ, ତାଙ୍କ ଭଉଣୀଙ୍କର ମୃତ୍ୟୁ ସମ୍ବାଦ ପାଇ ଆଜି ସକାଳେ ବିମାନରେ କଲିକତା ଯାଇ ସନ୍ଧ୍ୟାବେଳେ ଫେରିଆସିଲେ,'' ଉତ୍ତର ଦେଲେ ଜଣେ ଗାର୍ଡ଼ ।

''ମୁଁ ମନ୍ତ୍ରୀଙ୍କ ଅଞ୍ଚଳର ଲୋକ । ତାଙ୍କ ଘରେ ଚାକରାଣୀ ରହିବାକୁ ଆସିଛି । ସେ ମୋ ବାବାଙ୍କୁ ଜାଣନ୍ତି । ଦେଖା ପାଇଲେ ନିଜର ପରିଚୟ ଦେବି ।''

ଯେଉଁ କର୍ମଚାରୀ ମନ୍ତ୍ରୀଙ୍କ ଗାଡ଼ିରେ ଆସି ତାଙ୍କୁ ପୋର୍ଟିକୋ ତଳେ ଛାଡ଼ିଥିଲେ ସେହି ଲୋକଟି ଗେଟ୍ ପାଖରେ ଚେୟାର ପକାଇ ବସିଥାନ୍ତି । ହଠାତ୍ ଉଠିପଡ଼ି ସେ ପଚାରିଲେ, ''ନିଜ ମୁହଁକୁ ଲୁଚାଇ ରଖିଛୁ କାହିଁକି ? ମୋର ସନ୍ଦେହ ହେଉଛି ।'' ଏହା କହି ସେ ନିଜ ହାତରେ ମମତାଙ୍କ ମୁହଁ ଉପରୁ କଳା ଆବରଣ ଖଣ୍ଡିକ ଟାଣିନେଇ ଚମକି ଉଠି ଅନ୍ୟମାନଙ୍କୁ ଦେଖିବାପାଇଁ ଡାକିଲା । କହିଲା, ''ଏହି ସ୍ତ୍ରୀଲୋକଟାର ନାକ ନାହିଁ, କାନ ନାହିଁ ଏବଂ ମୁଣ୍ଡଟା ଖଣ୍ଡିଏ ପୋଡ଼ାକାଠ ପରି ଦିଶୁଛି ! ଇଏ ପୁଣି ସାହସ କଲାଣି ଆମ ମନ୍ତ୍ରୀଙ୍କ ଘରେ ଚାକରାଣୀ ରହିବ ! ମନ୍ତ୍ରୀଙ୍କ ଆଗକୁ ଏହାକୁ ନେଇଗଲେ ମୋର ଚାକିରି ଖଣ୍ଡିକ ଆଜି ରାତି ମଧ୍ୟରେ ଚାଲିଯିବ । ଯା, ଆଉ କାହା ଘରେ ରହିବୁ ।''

ଅନ୍ୟ ଜଣେ ପ୍ରହରୀ ମମତାଦେବୀଙ୍କ ମୁଖ ପ୍ରତି ଦୃଷ୍ଟି ରଖି ଜଣାଇଦେଲେ, ''ମନ୍ତ୍ରୀମାନଙ୍କ ପାଖରେ ସରକାରଙ୍କ ଦ୍ୱାରା ନିଯୁକ୍ତି ପାଇଥିବା ଲୋକମାନେ ଚାକର ବା ଚାକରାଣୀ ରହନ୍ତି । ତୋ ପରି ନୌକରାଣୀର ଏଠାରେ ସ୍ଥାନ ନାହିଁ । ଯା, ଗେଟ ପାଖରୁ ଶୀଘ୍ର ପଳାଇ ଯା ।''

ପ୍ରଥମ କର୍ମଚାରୀ ନିଜର ପରିଚୟ ଦେଇ କହିଲେ, ''ମୁଁ ମନ୍ତ୍ରୀଙ୍କ ଦେହରକ୍ଷୀ । ଏହି ବାଂଲୋ ପଛରେ ମୋର ଘର । ମୋ ସ୍ତ୍ରୀଙ୍କ ଦେହ ଅସୁସ୍ଥ ବୋଲି ମୁଁ ଗୋଟିଏ ନୌକରାଣୀ ଖୋଜୁଛି । ମୋ ଘରେ ରହିବୁ ? ବେତନ ଦେବି ।''

ବିନା ଦ୍ୱିଧାରେ ମମତାଦେବୀ ଉତ୍ତର ଦେଲେ, ''ଦୟାକରି ଆଶ୍ରୟ ଦେବେ ଯଦି ରହିବି । ସବୁକାମ କରିବି । ରାନ୍ଧିବା କାର୍ଯ୍ୟ ବି ଜାଣିଛି ।''

''କିନ୍ତୁ ଗୋଟିଏ କଥାରେ ରାଜି ହେବୁ ଯଦି ରଖିବି । ମନ୍ତ୍ରୀଙ୍କ ଗାଁ ପାଖରୁ ଆସିଛୁ ବୋଲି କାହାରି ପାଖରେ କହିବୁ ନାହିଁ । ସତ କହିଲୁ, ମନ୍ତ୍ରୀ କ'ଣ ତୋତେ ଜାଣନ୍ତି ? ସେ କ'ଣ ତୋତେ ଆସିବାକୁ କହିଥିଲେ ?''

''ଆଜ୍ଞା ନା, ସେ ମୋତେ ଜାଣନ୍ତି ନାହିଁ । ଗାଁ ପାଖର ସ୍ତ୍ରୀଲୋକ ବୋଲି ସାହସ କରି ଚାଲିଆସିଛି । ଘରପୋଡ଼ିରେ ମୋ ଦେହ ପୋଡ଼ିଯାଇଛି । ପୋଡ଼ାମୁହଁଟା ଦେଖାଇ କିଛି ସାହାଯ୍ୟ ମାଗିଥାନ୍ତି ଏବଂ ଦିଲ୍ଲୀ ସହର ଦେଖିଥାନ୍ତି । କିନ୍ତୁ ଆପଣ ଯଦି ରଖିବେ, ମନ୍ତ୍ରୀଙ୍କୁ ଭେଟିବାପାଇଁ ସାହସ କରିବି ନାହିଁ । ତାଙ୍କ ସହିତ ସାକ୍ଷାତ୍ କରିବା ଦରକାର ନାହିଁ ।''

ପୋର୍ଟିକୋ ପାଖରୁ ଜଣେ ଦରୱାନଙ୍କ ପାଟି ଶୁଭିଲା, ''ଦୁର୍ଜୟ ସିଂ, ସାହେବ କହିଲେ, ତୁ ଘରକୁ ଯାଇପାରୁ । ସାହେବ ଆଜି ଅନ୍ୟ କୁଆଡ଼େ ଯିବେ ନାହିଁ ।''

ଆନନ୍ଦିତ ମନରେ ଦୁର୍ଜୟ ସିଂ ମମତାଦେବୀଙ୍କୁ କହିଲେ, ''ମୋ ସାଙ୍ଗରେ ଆ । ଏହି ବାଂଲୋ ପଛରେ ମୋର ରହିବା ଘର ।''

ଦେହରକ୍ଷୀଙ୍କ ପଛେ ପଛେ ମମତା ଚାଲିଲେ । ବାଂଲୋ ପଛରେ ଥାଏ ଦୁଇ-କୋଠରି ବିଶିଷ୍ଟ କେତେଗୋଟି ବାସଗୃହ । ସେଥିରେ ରହନ୍ତି ମନ୍ତ୍ରୀଙ୍କ ଗାର୍ଡ଼ମାନେ । ପ୍ରତ୍ୟେକ ବାସଗୃହକୁ ଲାଗିଥାଏ ଗୋଟିଏ ଲେଖାଏଁ ଟିଣ ଘର । ଦୁର୍ଜୟ ସିଂ ତାଙ୍କ ସ୍ତ୍ରୀଙ୍କୁ ଡାକି କହିଲେ, ''ଅପର୍ଣ୍ଣା, ଏହି ମାଇକିନିଆଟା ଆମ ଘରେ ନୌକରାଣୀ ରହିବ ।''

ନୌକରାଣୀର ଦେହକୁ ଚାହିଁଦେଇ ଅପର୍ଣ୍ଣା ବିରକ୍ତି ପ୍ରକାଶ କରି କହିଲେ, ''ଗୋଟାଏ ଭଲ ମଣିଷ ପାଇଲ ନାହିଁ ? ଏଇଟା ଆମର କି କାମ କରିବ ?''

ସ୍ୱାମୀ ବୁଝାଇଲେ, ''ଦିଲ୍ଲୀ ସହରରେ ନୌକର ନୌକରାଣୀ ପାଇବା ସମ୍ଭବ ନୁହେଁ । ଦୈବାତ୍ ଏହି ସ୍ତ୍ରୀ ଲୋକଟା ମିଳିଯାଇଛି । ଖୋଦ୍ ମନ୍ତ୍ରୀଙ୍କ ଘରେ ରହିବ ବୋଲି ଆସିଥିଲା । କିନ୍ତୁ ମନ୍ତ୍ରୀଙ୍କ ମାନସମ୍ମାନ ଦୃଷ୍ଟିରୁ ତାଙ୍କ ଘରେ ନିଜର କଦାକାର ମୁହଁ ଧରି ରହିବା ଉଚିତ ହେବ ନାହିଁ ବୋଲି ଭାବିପାରି ଆମ ଘରେ ରହିବ କହୁଛି । କିଛିଦିନ ପାଇଁ ପରୀକ୍ଷା କରି ଦେଖିବା । ଟିଣ ଘରଟା ଫିଟାଇ ଦିଅ ।'' ଅପର୍ଣ୍ଣା ସେତେବେଳେ ବାତରୋଗରେ ଯନ୍ତ୍ରଣା ଭୋଗୁଥାନ୍ତି । ଆଣ୍ଠୁଗଣ୍ଠିରେ ବ୍ୟଥା ଯୋଗୁଁ ବିଛଣାରୁ ଉଠିପାରିଲେ ନାହିଁ । ସ୍ୱାମୀଙ୍କୁ ଇଙ୍ଗିତଦ୍ୱାରା ଟିଣ ସେଡ୍‌ର ଚାବିଟା ଦେଖାଇ ଦେଲେ ।

ଚାବି ଫିଟାଇଲା ବେଳେ ଦୁର୍ଜୟ ସିଂଙ୍କର ନଜର ପଡ଼ିଗଲା ମମତାଦେବୀଙ୍କ ଗୋରା ହାତ ଦୁଇଟି ଉପରେ । ସ୍ତ୍ରୀଙ୍କୁ ଜଣାଇଦେଲେ, ''ନୌକରାଣୀର ମୁହଁଟା ସିନା ନିଆଁରେ ପୋଡ଼ିଯାଇଛି, କିନ୍ତୁ ହାତ ଦୁଇଟା ପରିଷ୍କାର ଅଛି । ସବୁ କାମ ଜାଣିଛି ବୋଲି କହୁଛି ।''

ଅପର୍ଣ୍ଣାଙ୍କ କଷ୍ଟ ଦେଖି ଦୁର୍ଜୟ ସିଂ ନବନିଯୁକ୍ତ ନୌକରାଣୀକୁ ବରାଦ୍ କଲେ, ''ଦେଖିପାରୁଛୁ ମୋ ସ୍ତ୍ରୀଙ୍କ ଅବସ୍ଥା । ବାତର ପ୍ରକୋପ ପାଇଁ ଉଠି ପାରୁ ନାହାନ୍ତି । ସାବୁନରେ ହାତ ସଫାକରି ତାଙ୍କ ଗୋଡ଼ ଦୁଇଟା ଘଷି ଦେଲେ ସେ ଖୁସି ହୋଇ ତୋତେ ରଖିବେ । ଅଳ୍ପ ସମୟ ପରେ ନିଜେ ଉଠି ରୋଷେଇ ଘରେ ରୋଟି ତରକାରି ତିଆରି କରିବେ ।''

ମମତାଦେବୀ ହାତ ଦୁଇଟା ସଫାକରି ଓ ମୁହଁ ଉପରେ ଓଢ଼ଣା ରଖି ଅପର୍ଣ୍ଣାଙ୍କ ବିଛଣା ତଳେ ବସିଗଲେ । ପାଖରେ ଥିବା ବୋତଲରୁ ଆୟୁର୍ବେଦ ତେଲ ବାହାର କରି ତାଙ୍କର ଦୁଇ ଆଣ୍ଠୁ ଓ ଗୋଡ଼ ମାଲିସ୍ କରିବାକୁ ଲାଗିଲେ । ସେପରି ଆରାମଦାୟକ ତୈଳ ମର୍ଦ୍ଦନ ଯୋଗୁଁ ଅପର୍ଣ୍ଣାଙ୍କ ମନ ଉତ୍‌ଫୁଲ୍ଲିତ ହୋଇଉଠିଲା । ଅଧଘଣ୍ଟାଏ ପର୍ଯ୍ୟନ୍ତ ମାଲିସ୍ ଭୋଗ କଲା ପରେ ସ୍ୱାମୀଙ୍କୁ ଡାକି କହିଲେ, ''ଏଡ଼େ ସୁନ୍ଦର ଘଷାଘଷି ଜାଣିଛି ବୋଲି ଭାବି ନ ଥିଲି । ଆଣ୍ଠୁ ବଥା କମିଗଲାଣି । ତୁମକୁ ଓ ପିଲାମାନଙ୍କୁ ଭୋକ ଲାଗୁଥିବ । ମୁଁ ଶୀଘ୍ର ରୋଟି କରିଦେଉଛି, ଟିକିଏ ଅପେକ୍ଷା କର ।''

ଅପର୍ଣ୍ଣା ରାନ୍ଧିବା ଲାଗି ଉଠିପଡ଼ିବା ଦେଖି ମମତାଦେବୀ ଅନୁରୋଧ କଲେ, ''ମା' ଆପଣ ଶୋଇ ରହନ୍ତୁ । ମୁଁ ତରକାରି ରାନ୍ଧିଦେବି, ରୋଟି ତିଆରି କରିପାରିବି ।''

ହର୍ଷ ଉଦ୍‌ଫୁଲ୍ଲିତ ଚିତ୍ତରେ ଅପର୍ଣ୍ଣା ତା'ଙ୍କ ସ୍ୱାମୀଙ୍କୁ ନିର୍ଦ୍ଦେଶ ଦେଲେ, ''ରୋଷାଇଶାଳକୁ ନେଇ ଯାଅ । ରାନ୍ଧିବା ସଜ ଦେଖାଇ ଦିଅ । ଦେଖିବା, କିପରି ରାନ୍ଧିବ ।''

ଦୁର୍ଜୟ ସିଂ ଉତ୍ତର ଦେଲେ, ''ସେ ଆଜି ଆସି ପହଞ୍ଚିଲା । ଗୋଟିଏ ରାତି ବିଶ୍ରାମ ନେଉ । ମୁଁ ଯାଉଛି ରନ୍ଧାରନ୍ଧି କରିବି । ତୁମେ ଶୋଇଥାଅ ।''

ନମ୍ର କଣ୍ଠରେ ମମତାଦେବୀ କହିଲେ, ''ନା ବାବୁ, ମୁଁ ରାନ୍ଧିଦେବି । ମା' ଶୋଇଥାନ୍ତୁ । ମୋର ବିଶ୍ରାମ ଦରକାର ନାହିଁ ।''

ସ୍ୱାମୀ, ସ୍ତ୍ରୀ ଓ ଚାରିପିଲା ଖୁସି ମନରେ ମମତାଙ୍କ ରନ୍ଧାଖାଦ୍ୟମାନ ଖାଇଲେ ।

ଭୋଜନ ଶେଷ ହେଲା ପରେ ଦୁର୍ଜୟ ସିଂ ନୌକରାଣୀକୁ ତାରିଫ୍ ଜଣାଇଲେ । ସେଥିସଙ୍ଗେ କହିଲେ, ''ତୋ ନିଜର ନାମ ଯାହା ହୋଇଥାଉନା କାହିଁକି, ତୋତେ ଆମେ 'ଅନାମୀ' ନାମରେ ଡାକିବା ।''

ଟିଣ ସେଡ୍ ଭିତରକୁ ନେଇ ଦଉଡ଼ିଆ ଖଟଟିରେ ଶୋଇବାକୁ କହି ଦୁର୍ଜୟ ସିଂ ବାହାରିଗଲେ । ମମତା ନିଜକୁ ଭାଗ୍ୟବତୀ ମନେ କଲେ ଯେ, ସେ ନିଜ ପୁଅର ନିକଟବର୍ତ୍ତୀ ସ୍ଥାନରେ ଆଶ୍ରୟ ପାଇଯାଇଛନ୍ତି । ପୁଅକୁ ଦେଖିପାରିବେ ଏବଂ ଯଥାଅବକାଶରେ ନିଜର ପରିଚୟ ଦେଇପାରିବେ ବୋଲି ବିଶ୍ୱାସ ରଖି ଗାଢ଼ ନିଦରେ ଶୋଇପଡ଼ିଲେ ।

## ॥ ୨୯ ॥

ରାତି ପାହିବା ପୂର୍ବରୁ ମମତାଦେବୀ ବାସନଗୁଡ଼ାକ ମାଜି ଯଥାସ୍ଥାନରେ ସଜାଇ ରଖି ସାରିଥିଲେ । ଦୁର୍ଜୟ ସିଂ ଜାଣିପାରିଲେ ଯେ ନୌକରାଣୀଟା ପ୍ରକୃତରେ ଗୋଟିଏ କାମିକା ମହିଳା । ଦୂର ମଫସଲ ଅଞ୍ଚଳରୁ ପେଟ ପାଳିବାପାଇଁ ଦିଲ୍ଲୀ ଚାଲିଆସିଛି । ଯଦି ଆମ ଘରେ ମନ ଲାଗିଯିବ, ତେବେ ବେଶିଦିନ ରହିଯାଇପାରେ । ସେଥିପାଇଁ ମାଲିକ ମାଲିକାଣୀର ବ୍ୟବହାର ମଧ୍ୟ ଭଲ ହେବା ଉଚିତ ।

ଜଳଖିଆ ଶେଷ ହେଲା ପରେ ସଶ୍ରଦ୍ଧ କଣ୍ଠରେ ଦୁର୍ଜୟ ସିଂ ନୂତନ ନୌକରାଣୀକୁ କହିଲେ, ''ଅନାମୀ, କାଲି ସନ୍ଧ୍ୟାପାଖରୁ ସବୁକାମ କରୁଛୁ । ଏବେ ତୋତେ ଦିଲ୍ଲୀ ଦେଖିବାକୁ ପଠାଇବି । ମୋ ଗାଁ ପାଖ କଲେଜରୁ ଦଳେ ଛାତ୍ର ଆସି ଜଣେ ଏମ୍.ପି.ଙ୍କ ଘରେ ଅଛନ୍ତି । ତାଙ୍କ ସାଙ୍ଗରେ ଦୁଇଜଣ ଅଧ୍ୟାପକ ଆସିଛନ୍ତି । ରାଜଧାନୀର କେତେକ

ପ୍ରସିଦ୍ଧ ସ୍ଥାନ ଦେଖିବାକୁ ଯିବେ । ମୋର ଜଣେ ଲୋକ ସେମାନଙ୍କୁ ବାଟ ଦେଖାଇବାକୁ ଯାଉଛି । ତୁ ମଧ୍ୟ ସେମାନଙ୍କ ସାଙ୍ଗରେ ଯା । ମୁହଁଟି ଢାଙ୍କି ରଖିବୁ । କଥା କହିବୁ ନାହିଁ । ସମସ୍ତଙ୍କ ପଛେ ପଛେ ଚାଲିବୁ । ପାଖକୁ ଯିବୁ ନାହିଁ । ଅଧିକ ରାସ୍ତା ଚାଲି ନ ପାରିଲେ ମୋ ଲୋକ ସହିତ ଫେରିଆସିବୁ ।''

ମମତା ଖୁସି ହୋଇ ବାହାରିପଡ଼ିଲେ । ଦୂରତ୍ୱ ରକ୍ଷାକରି ଛାତ୍ର ଦଳର ପଛ ଧରିଲେ । କୋଟ୍, ସାର୍ଟ ଓ ଟାଇ ପିନ୍ଧିଥିବା ଦୁଇଜଣ ବ୍ୟକ୍ତିଙ୍କୁ ଛାତ୍ରମାନେ 'ସାର୍' ବୋଲି ସମ୍ବୋଧନ କରୁଥିଲେ ।

ଗୋଟିଏ ସୁଉଚ୍ଚ ପ୍ରାଚୀରର ନାଲି ଗେଟ୍ ନିକଟରେ ଛାତ୍ରମାନେ ଅଟକିଲେ । ଅଧ୍ୟାପକ ଦେଖାଇଦେଲେ, ଦୂରରେ ଯେଉଁ ଗୁମ୍ବଜଟି ଦେଖାଯାଉଛି ତାହା ହେଉଛି ରାଷ୍ଟ୍ରପତି ଭବନର ଚୂଡ଼ା ।

''ସାର୍, ଏପରି ସୁଦୃଢ଼ ଦୁର୍ଗ ରୂପକ ଭବନରୁ ରାଷ୍ଟ୍ରପତି ବାହାରକୁ ଯାଆନ୍ତି'' ପଚାରିଲା ଜଣେ ଛାତ୍ର ।

ଉତ୍ତର ମିଳିଲା, ''ହଁ, ଅଙ୍ଗରକ୍ଷୀମାନଙ୍କ ଗହଣରେ ମଧ୍ୟେ ମଧ୍ୟେ ବିଦେଶ ଗସ୍ତ ଲାଗି ବିମାନଘାଟି ପର୍ଯ୍ୟନ୍ତ ଯାଆନ୍ତି । ସେଠାରେ ମନ୍ତ୍ରୀମାନେ, ସେନାପତିମାନେ, ଅନେକ ପାର୍ଲିଆମେଣ୍ଟ ମେମ୍ବର ଓ ଉଚ୍ଚପଦସ୍ଥ କର୍ମଚାରୀମାନେ ଶୁଭକାମନା ଜଣାଇବା ଲାଗି ଆଗରୁ ଉପସ୍ଥିତ ଥାଆନ୍ତି । ସହାସ୍ୟ ବଦନରେ ସେମାନଙ୍କ ହାତରେ ଥିବା ଫୁଲତୋଡ଼ା ଛୁଇଁଦେଇ ଏବଂ ସମସ୍ତଙ୍କର ପ୍ରଣାମ ଗ୍ରହଣପୂର୍ବକ ନିମିଷ ମଧ୍ୟରେ ସ୍ୱତନ୍ତ୍ର ବିମାନ ମଧ୍ୟରେ ପ୍ରବେଶ କରନ୍ତି । ଦ୍ୱାରଦେଶରୁ ହାତ ହଲାଇ ଦେଇ ଅନ୍ତର୍ଦ୍ଧାନ ହୋଇଯାନ୍ତି ।''

''ବିଦେଶ ଭ୍ରମଣ ପରି ସ୍ୱଦେଶ ଭ୍ରମଣ ପାଇଁ ମଧ୍ୟ ରାଷ୍ଟ୍ରପତି ନିଶ୍ଚୟ ଯାଉଥିବେ ।''

''ହଁ, କୌଣସି କୌଣସି ବିଶ୍ୱବିଦ୍ୟାଳୟରେ ଦୀକ୍ଷାନ୍ତ ଭାଷଣ ଦେବା ଲାଗି କଦାଚିତ୍ ଯାଇଥାନ୍ତି ।''

''ସାର୍, ରାଷ୍ଟ୍ରର ସର୍ବୋଚ୍ଚ ମୁଖ୍ୟ ଭାବରେ ରାଷ୍ଟ୍ରପତି ଯଦି ଦେଶର ଦରିଦ୍ର ଜନସାଧାରଣଙ୍କ ଅବସ୍ଥା ସ୍ୱଚକ୍ଷୁରେ ଦେଖନ୍ତି ନାହିଁ, ତେବେ ତାଙ୍କ ପଦବୀର ମୂଲ୍ୟ କ'ଣ ?''

ଅନ୍ୟ ଜଣେ ସାର୍ ଉତ୍ତର ଦେଲେ, ''ରାଷ୍ଟ୍ରପତି ହେଉଛନ୍ତି ରାଷ୍ଟ୍ରର ମୁଖ୍ୟ । କିନ୍ତୁ ସେ ଜନପତି ବା ଜନତାର ମୁଖ୍ୟ ନୁହନ୍ତି । ତାଙ୍କର କାମ ହେଲା, ମନ୍ତ୍ରିମଣ୍ଡଳ ଯାହା କହିବେ ବା ଲେଖିବେ, ସେଥିରେ ସେ କେବଳ 'ହଁ' ମାରିବେ କିମ୍ବା ଦସ୍ତଖତ ବସାଇବେ । ସେଥିସହ ମନ୍ତ୍ରିମଣ୍ଡଳଦ୍ୱାରା ଲିଖିତ ଏବଂ ଅନୁମୋଦିତ ଭାଷଣଟି ପାର୍ଲିଆମେଣ୍ଟରେ ଥରେ ଦୁଇଥର ପାଠ କରିବେ । ସେତିକି ସାମ୍ବିଧାନିକ କର୍ତ୍ତବ୍ୟ ବିନା ତାଙ୍କର ବିଶେଷ କିଛି ଭୂମିକା ନାହିଁ । ଅଥଚ ତାଙ୍କର କେବଳ ମୋଗଲ ଉଦ୍ୟାନଟି ସୁଶୋଭିତ ରଖିବା ଲାଗି ରାଜକୋଷରୁ ଅଜସ୍ର ଅର୍ଥ ବ୍ୟୟ କରାଯାଉଛି । ତାଙ୍କ ଦାସଦାସୀ ଓ ପ୍ରହରୀମାନଙ୍କ ସଂଖ୍ୟା ଗଣିବା ମଧ୍ୟ ସମ୍ଭବ ନୁହେଁ । ସେ ବିଦେଶାଗତ ରାଷ୍ଟ୍ରଦୂତମାନଙ୍କୁ ସ୍ୱାଗତ କରନ୍ତି, କିନ୍ତୁ ଦେଶବାସୀଙ୍କ ଦୁଃଖଦୁର୍ଦ୍ଦଶା ଅନୁଭବ କରିବା ତାଙ୍କର ନୈତିକ କର୍ତ୍ତବ୍ୟ ବା କାର୍ଯ୍ୟସୂଚୀ ମଧ୍ୟରେ ନ ଥାଏ ।''

ଅନ୍ୟ ଜଣେ ସାର୍ ମତଦେଲେ, ''ରାଷ୍ଟ୍ରପତିଙ୍କ କଥା ଛାଡ଼ । ଇଂଲଣ୍ଡ ପରି ଗଣତାନ୍ତ୍ରିକ ଦେଶରେ ରାଜା କିମ୍ବା ରାଣୀ ଏବଂ ରାଜପରିବାରକୁ ରାଜକୀୟ ଢଙ୍ଗରେ ରଖିବାପାଇଁ ସେଠାକାର ରାଜକୋଷରୁ ଅଜସ୍ର ଅର୍ଥ ବ୍ୟୟ କରାଯାଉଛି । ବୋଧହୁଏ ସେଠାକାର ରାଜାଙ୍କ ଅନୁକରଣରେ ଆମ ଦେଶର ଗଣତନ୍ତ୍ରରେ ଜଣେ ରାଷ୍ଟ୍ରପତିଙ୍କୁ ରଖାଯାଇଛି । ପାର୍ଥକ୍ୟ ଏତିକି ଯେ, ଇଂଲଣ୍ଡ ଗୋଟିଏ ଧନୀ ରାଷ୍ଟ୍ର ଏବଂ ଭାରତ ହେଉଛି ଏକ ଦରିଦ୍ର ଦେଶ ।''

''ଏ ସବୁ କଥା ବି ଛାଡ଼ । ଦେଖୁ ନାହଁ, ସବୁ ରାଜ୍ୟର ଗଭର୍ଣ୍ଣର ବା ରାଜ୍ୟପାଳମାନଙ୍କର ରାଜଭବନ ଏବଂ ସେଠାକାର ବିଳାସିତାପୂର୍ଣ୍ଣ ରାଜକୀୟ ଆଡ଼ମ୍ବର । ମହାତ୍ମା ଗାନ୍ଧୀ କୁଆଡ଼େ କହୁଥିଲେ, ସ୍ୱାଧୀନ ଭାରତର ରାଜ୍ୟପାଳମାନେ ପ୍ରାସାଦ ମଧ୍ୟରେ ନ ରହି କୁଟୀର ମଧ୍ୟରେ ରହିବେ । ସେ ଅତୀତ ଯୁଗର ଚାଣକ୍ୟଙ୍କ ଉଦାହରଣ ଦେଉଥିଲେ । ଉପଦେଶ ଦେଉଥିଲେ, ଚାଣକ୍ୟ ଯେଉଁପରି କୁଟୀର ମଧ୍ୟରେ ବାସ କରି ଦରିଦ୍ରମାନଙ୍କ ଗୁହାରି ଶୁଣି ସମ୍ରାଟ୍‌ଙ୍କୁ ଜନହିତକର କାର୍ଯ୍ୟ ନିମନ୍ତେ ପରାମର୍ଶ ଦେଉଥିଲେ, ଆମ ଦେଶର ରାଜ୍ୟପାଳମାନେ ମଧ୍ୟ ସେହିପରି ଭାବରେ ସରଳ ଜୀବନଧାରଣପୂର୍ବକ ନିଜ ନିଜ ରାଜ୍ୟର ସରକାର ବା ମନ୍ତ୍ରିମଣ୍ଡଳକୁ ସଦୁପଦେଶ ଦେବେ । କୁଆଡ଼େ ଗଲା ଗାନ୍ଧୀଙ୍କ ଉପଦେଶ ? ସ୍ୱାଧୀନତା ପରେ ପରେ ସବୁ ରାଜ୍ୟରେ ନିର୍ମିତ ହେଲା ସୁରମ୍ୟ ରାଜଭବନ । ସେଥିରେ ରହିଲେ ଗଭର୍ଣ୍ଣର । କାମ ନାହିଁ, ମନ୍ତ୍ରୀମାନଙ୍କୁ ପରାମର୍ଶ ଦେବା ଶକ୍ତି ମଧ୍ୟ ନାହିଁ । ଅଥଚ ଅଯଥା ଗସ୍ତରେ

ଯାଇ ଲକ୍ଷ ଲକ୍ଷ ଟଙ୍କା ବରବାଦ୍ କରିବାକୁ କାତରତା ନାହିଁ । ପ୍ରଜାଙ୍କ ପାଳନ ସହିତ ତାଙ୍କର ସମ୍ପର୍କ ନ ଥାଇ ମଧ୍ୟ ସେ ହେଉଛନ୍ତି ରାଜ୍ୟପାଳ,'' କହିଲେ ଜଣେ ଅଧ୍ୟାପକ ।

ଛାତ୍ରମାନେ ହସିଉଠିଲେ । ପୁଣି ଏକ କଟୁ ମନ୍ତବ୍ୟ ଦେଲେ ଅଧ୍ୟାପକ ମହୋଦୟ, ''ସମ୍ବିଧାନ ନାମରେ ଧଳାହାତୀ ପୋଷିବା ହେଉଛି ଆମ ଗଣତନ୍ତ୍ରର ଆଦର୍ଶ । ଗଣଙ୍କ ଲାଗି ରଖାଯାଇଛି କୁମ୍ଭୀର-କାନ୍ଦଣା ।'' ପୁନର୍ବାର ହାସ୍ୟରୋଳ ଖେଳିଗଲା ।

ଜଣେ ଅଳ୍ପବୟସ୍କ ଛାତ୍ରର ପ୍ରଶ୍ନ ଶୁଭିଲା, ''ସାଧାରଣତନ୍ତ୍ରର ଆଦି ପର୍ବରେ ଯଦି ଅବକ୍ଷୟର ସୂତ୍ରପାତ ଦେଖିବାକୁ ମିଳିଲାଣି, ତାହାହେଲେ ଆଗାମୀ ଭବିଷ୍ୟତରେ ଗଣତନ୍ତ୍ରର ଅଧୋଗତି ବନ୍ଦ କରାଯିବ କିପରି ?''

ସାର୍ ଉତ୍ତର ଦେଲେ, ''ଗଣତନ୍ତ୍ରର ଗତି ନିର୍ଭର କରେ ଦେଶର ରାଜନେତା ଏବଂ ସେମାନଙ୍କ ଭୋଟଦାତାମାନଙ୍କ ମାନସିକ ଚେତନା ଓ ଚିନ୍ତାଶକ୍ତି ଉପରେ । ଜାତୀୟ ଚରିତ୍ର ସବଳ ନ ହେଲା ପର୍ଯ୍ୟନ୍ତ ସୁସ୍ଥ ରାଜନୈତିକ ପରମ୍ପରା ସୃଷ୍ଟି ହୋଇପାରିବ ନାହିଁ ।''

ଛାତ୍ର ଦଳ ପହଞ୍ଚିଲେ ପାର୍ଲିଆମେଣ୍ଟ ଭବନର ଗେଟ୍ ପାଖରେ । ଦୂରରୁ ଦିଶୁଥାଏ ଫକୀରବେଶୀ ମହାତ୍ମା ଗାନ୍ଧୀଙ୍କର ପ୍ରକାଣ୍ଡକାୟ ପ୍ରତିମୂର୍ତ୍ତି । ଉନ୍ମୁକ୍ତ ବକ୍ଷ ଦେଶ, ଚିନ୍ତାଗ୍ରସ୍ତ ବଦନ ଓ ଅର୍ଦ୍ଧ ନିମୀଳିତ ଚକ୍ଷୁଦ୍ୱୟ ମଧ୍ୟରୁ ସାଂକେତିକ ସୂଚନା ମିଳୁଥାଏ, ସତେଯେପରି ବିମର୍ଷ ଭାବରେ ସେ ଭାବୁଥାନ୍ତି ସ୍ୱାଧୀନ ଭାରତର ଲୋକପ୍ରତିନିଧିମାନଙ୍କର କର୍ତ୍ତବ୍ୟନିଷ୍ଠା, ଆଦର୍ଶବାଦ୍ ଏବଂ ମାନବିକ ମୂଲ୍ୟବୋଧ ବିଷୟ । ଜଣେ ଅଧ୍ୟାପକ ଅନ୍ୟ ଜଣଙ୍କୁ କହୁଥିବାର ଶୁଣାଗଲା, ''ଦେଖୁଛନ୍ତି, ଆମ ସଂସ୍କୃତିର ଦୁଇଟି ବିପରୀତ ମୁଖ । ଆମେ ଦେବଦେବୀଙ୍କ ମୂର୍ତ୍ତିପୂଜା କରିଥାଉ, ଅଥଚ ପାପକର୍ମ କରିବାକୁ କୁଣ୍ଠାବୋଧ ହୁଏ ନାହିଁ । ସେହିପରି ପାର୍ଲିଆମେଣ୍ଟ ସଦସ୍ୟମାନେ ଗାନ୍ଧୀଙ୍କ ପ୍ରତିମା ପୂଜା କରନ୍ତି, କିନ୍ତୁ ଗାନ୍ଧୀଙ୍କ ନୀତି ଓ ଆଦର୍ଶ ବିସର୍ଜନ ଦେବାକୁ ଆରମ୍ଭ କଲେଣି ।''

''ଏମାନେ ଭାରତୀୟ ସାଧାରଣତନ୍ତ୍ର ପାଇଁ ଆଇନ୍ ପ୍ରଣୟନ କରନ୍ତି, କିନ୍ତୁ ନିଜ ନିଜର ସ୍ୱାର୍ଥ ସାଧନ ନିମନ୍ତେ ଆଇନ୍ ଭଙ୍ଗ କରିବା କାର୍ଯ୍ୟରେ ଧୁରନ୍ଧର,'' ଉତ୍ତରଦେଲେ ଅନ୍ୟଜଣେ ।

''ଅତୀତ କାଳରେ ଦାର୍ଶନିକ ପ୍ଲାଟୋ ଯେଉଁ ସାଧରଣତନ୍ତ୍ର କଳ୍ପନା କରିଥିଲେ ତାହାର ଶାସକମାନଙ୍କୁ ସେ Philosopher-King ବା ଦାର୍ଶନିକ-ରଜା ନାମରେ

ଆଖ୍ୟାତ କଲେ । ସେମାନଙ୍କର ଧନସମ୍ପତ୍ତି, ଘରଦ୍ୱାର ଓ ପରିବାର ମଧ୍ୟ ରହିବ ନାହିଁ ବୋଲି ସେ ମତ ଦେଇଥିଲେ । କାରଣ ଦେଶସେବା ହିଁ ହେବ ସେମାନଙ୍କ ଜୀବନର ଏକମାତ୍ର ବ୍ରତ । ଆମ ସାଧାରଣତନ୍ତ୍ରରେ ସେପରି ଧାରଣା ସମ୍ଭବପର ହୋଇପାରିବ କି ?''

''କଳ୍ପନା-ପ୍ରସୂତ ରାଜନୈତିକ ଦର୍ଶନ ଓ ବାସ୍ତବ ରାଜନୀତି ମଧ୍ୟରେ ଆକାଶ-ପାତାଳ ପ୍ରଭେଦ ରହିବା ସ୍ୱାଭାବିକ । ପ୍ଲାଟୋଙ୍କ ଗୁରୁ ସକ୍ରେଟିସ୍ ସତ୍ୟ ଉପରେ ସର୍ବାଧିକ ଗୁରୁତ୍ୱ ଦେଉଥିଲେ ବୋଲି ତାଙ୍କ ସମୟର ଶାସକମାନେ ତାଙ୍କୁ ବିଷପାନ ଲାଗି ଆଦେଶ ଦେଇପାରିଥିଲେ । ସୁତରାଂ କଳ୍ପନାରାଜ୍ୟର ମନୁଷ୍ୟ ଏବଂ ବାସ୍ତବ ଜଗତର ମନୁଷ୍ୟ ଏକ ପ୍ରକାର ଚରିତ୍ର ଧାରଣ କରିପାରିବେ ନାହିଁ । ଆମ ସାଧାରଣତନ୍ତ୍ରର ଶାସକମାନେ ଧନସମ୍ପତ୍ତି ମୋହରେ ସମସ୍ତ ପ୍ରକାର ନୀତି, ଆଦର୍ଶ ଓ କର୍ତ୍ତବ୍ୟବୋଧ ଜଳାଞ୍ଜଳି ଦେବାକୁ ବସିଲେଣି । ଏମାନଙ୍କ ଘରଦ୍ୱାର ନ ରହିବା ବିଷୟ ଭୁଲିଯାଅ । ଗୋଟିଏ ପରିବର୍ତ୍ତେ ଦଶଗୋଟି ଅଟ୍ଟାଳିକା ରହିଲେ ସୁଦ୍ଧା ଏମାନେ ସନ୍ତୁଷ୍ଟ ହେବେ ନାହିଁ । ଆଉ ଯେଉଁ ପରିବାର କଥା ଉଲ୍ଲେଖ କଲ, ଏମାନେ ନିଜ ପରିବାରର ଆଗାମୀ ସାତପୁରୁଷ ଲାଗି ଅର୍ଥ ସଞ୍ଚୟ ପାଇଁ ବ୍ୟାକୁଳ । ପ୍ଲାଟୋଙ୍କ Philosopher-King ପରିବର୍ତ୍ତେ ଏମାନେ ହେଉଛନ୍ତି ଆରିଷ୍ଟୋଟଲଙ୍କ ବର୍ଣ୍ଣିତ Political Animal, Social Animal ନୁହନ୍ତି ।''

ଜଣେ ଛାତ୍ର ପ୍ରତିବାଦ ଧ୍ୱନି ଉଚ୍ଚାରଣ କଲେ, ''ସାର୍, ଆମ ଦେଶର ପ୍ରଧାନମନ୍ତ୍ରୀ ଜଣେ ମହାନ୍ ବ୍ୟକ୍ତି । ଗାନ୍ଧୀଙ୍କର ଯଥାର୍ଥ ରାଜନୈତିକ ଉତ୍ତରାଧିକାରୀ । ସେ ହେଉଛନ୍ତି ବାସ୍ତବ ପକ୍ଷରେ ଜଣେ Philosopher-King.''

ଅଧ୍ୟାପକ ଉତ୍ତର ଦେଲେ, ''ଏ ବିଷୟରେ ମୁଁ ତୁମ ସହିତ ଏକମତ । କିନ୍ତୁ ଏକଥା ମଧ୍ୟ କହିବି ଯେ ସେ ଅତ୍ୟଧିକ ଆଦର୍ଶବାଦୀ ଭାବରେ ରାଜନୈତିକ ବାସ୍ତବତା ହୃଦୟଙ୍ଗମ କରିବାକୁ ଉଦ୍ୟମ କରୁ ନାହାନ୍ତି । ଜଣେ ପ୍ରଧାନମନ୍ତ୍ରୀ ନିଷ୍କଳଙ୍କ ରହିବାର ଅର୍ଥ ନୁହେଁ ଯେ, ରାଜଧାନୀର ଅନ୍ୟ ମନ୍ତ୍ରୀମାନେ ଏବଂ ବିଭିନ୍ନ ରାଜ୍ୟର ଅସଂଖ୍ୟ ମନ୍ତ୍ରୀ, ସମସ୍ତେ ନିଷ୍କଳଙ୍କ ରହିବେ ! ପ୍ରଧାନମନ୍ତ୍ରୀ ମଧ୍ୟ ଅଗଣିତ ପ୍ରଶାସକ ଓ ଅମଲାମାନଙ୍କ ସାଧୁତା ବା ଅସାଧୁତା ବିଷୟ ଅନୁଧାନ କରିପାରିବେ ନାହିଁ । ତେଣେ ବ୍ୟବସାୟୀମାନଙ୍କ ଅସାଧୁତା ବଢ଼ି ଚାଲିଛି । ସ୍ୱାଧୀନତା ପ୍ରାପ୍ତିର ଦଶବର୍ଷ ପୂର୍ବେ ଯେଉଁ ବ୍ୟକ୍ତି ଘୋଷଣା କରିଥିଲେ ଯେ ସ୍ୱାଧୀନ ଭାରତରେ ଯେ କୌଣସି କଳାବଜାରୀକୁ ନିକଟତମ ବତିଖୁଣ୍ଟରେ ଝୁଲାଇ ଦିଆଯିବ, ଅର୍ଥାତ୍ ଫାଶୀଦଣ୍ଡ

ଦିଆଯିବ, ସେ କିନ୍ତୁ ପ୍ରଧାନମନ୍ତ୍ରୀ ହେଲା ପରେ ଦୁର୍ନୀତି ପାଇଁ ଜଣେ କୌଣସି ବ୍ୟକ୍ତିଙ୍କୁ କାରାଦଣ୍ଡ ଦେଲେଣି କି ? ଦଣ୍ଡଭୟ ନ ଥିବା ଯୋଗୁଁ ଦୁର୍ନୀତିର ସ୍ରୋତ ବ୍ୟାପି ଯିବା ଦେଖିବାକୁ ମିଳିଲାଣି । ପାର୍ଲିଆମେଣ୍ଟ ପ୍ରଥମେ ଦୁର୍ନୀତି ନିବାରଣ ଲାଗି ଆଇନ୍ ପ୍ରଣୟନ କରିବା ଆବଶ୍ୟକ । ସେଥିପାଇଁ ସେମାନେ ନିଜେ ଦୁର୍ନୀତିମୁକ୍ତ ହୋଇପାରିବେ କି ନାହିଁ ତାହାହିଁ ହେଉଛି ବହୁମୂଲ୍ୟର ପ୍ରଶ୍ନ ।''

ଅନ୍ୟ ଅଧ୍ୟାପକଜଣକ କହିଲେ, ''ନିର୍ବାଚନ ଜିଣି ପାର୍ଲିଆମେଣ୍ଟ ବା ବିଧାନସଭାକୁ ଆସିବା ଲାଗି ରାଜନେତାମାନଙ୍କର ଅର୍ଥ ଆବଶ୍ୟକ । ସେହି ଅର୍ଥ ଭରଣ-ପୂରଣ ନିମନ୍ତେ ଦୁର୍ନୀତିର ପ୍ରଶ୍ରୟ ନେବାକୁ ରାଜନେତାମାନେ ପ୍ରାୟତଃ ବାଧ୍ୟ ।''

ଜଣେ ଛାତ୍ର ପଚାରିଲା, ''ସାର୍, ଆମ ଦେଶର ଗଣତନ୍ତ୍ର ହେଉଛି ବିଶ୍ୱର ବୃହତ୍ତମ ଗଣତନ୍ତ୍ର । ଏହାର ମୂଳଭିତ୍ତି ସବଳ ରଖିବା ହେଉଛି ପାର୍ଲିଆମେଣ୍ଟର ଦାୟିତ୍ୱ । କିନ୍ତୁ ଏମାନେ ଯଦି ଗଣତନ୍ତ୍ରର ମର୍ଯ୍ୟାଦା ରକ୍ଷା ନ କରିବେ, ତେବେ ଭବିଷ୍ୟତରେ କ'ଣ ହେବ ?''

ଅଧ୍ୟାପକ ବୁଝାଇ ଦେଲେ, ''ସମସ୍ତ ପ୍ରକାର ଶାସନତନ୍ତ୍ର, ଯଥା, ରାଜତନ୍ତ୍ର, ସ୍ୱୈରତନ୍ତ୍ର ଏବଂ ଏକ-ଦଳୀୟ ଶାସନ ପ୍ରଥା ଅପେକ୍ଷା ଗଣତନ୍ତ୍ର ସହସ୍ର ଗୁଣରେ ଶ୍ରେୟସ୍କର । କିନ୍ତୁ ଗଣତନ୍ତ୍ରର ଦୋଷତ୍ରୁଟି ମଧ୍ୟ ରହିଛି । ମନେପକାଅ, ଟମାସ୍ ହବ୍ସ୍ କ'ଣ କହିଥିଲେ । ତାଙ୍କ ମତରେ ରାଜା ଯଦି ନିଃସ୍ୱାର୍ଥପର ଥିବେ, ଶାସନ କାର୍ଯ୍ୟ ଯଥାର୍ଥ ଭାବରେ ଚାଲିବ ଏବଂ ପ୍ରଜାମାନେ ସୁଖରେ ରହିବେ । ରାଜା ଯଦି ସ୍ୱାର୍ଥପର ହେବେ, ସେହି ସ୍ୱାର୍ଥ ଜଣେ ବ୍ୟକ୍ତି କିମ୍ବା ଗୋଟିଏ ପରିବାର ମଧ୍ୟରେ ସୀମିତ ରହିବ । ଗଣତନ୍ତ୍ରରେ ଅନେକ ରାଜା । ସେମାନେ ସ୍ୱାର୍ଥତ୍ୟାଗପୂର୍ବକ ଶାସନ କଲେ, ପ୍ରଜାଙ୍କର ସର୍ବବିଧ ମଙ୍ଗଳ ସାଧିତ ହୋଇପାରିବ । ଅପରପକ୍ଷରେ ଅନେକ ରାଜା ଯଦି ସମସ୍ତେ ସ୍ୱାର୍ଥପର ହେବେ, ତେବେ ଦେଶବାସୀଙ୍କ ଅବସ୍ଥା କ'ଣ ହେବ ? ଆମ ଦେଶର ଆବଶ୍ୟକତା ହେଉଛି ଜନ ସଚେତନତା । Eternal Vigilance is the Price of Liberty ସ୍ୱାର୍ଥପର ଏବଂ ଦୁର୍ନୀତିଗ୍ରସ୍ତ ନେତାମାନଙ୍କ ବିପକ୍ଷରେ ସ୍ୱର ଉତ୍ତୋଳନ କରିବା ସାହସ ଆମ ଦେଶବାସୀଙ୍କ ନିକଟରେ ନାହିଁ । ଏହାହିଁ ହେଉଛି ଭାରତୀୟ ସାଧାରଣତନ୍ତ୍ରର ଚରମ ଦୁର୍ଭାଗ୍ୟ ।''

ଛାତ୍ରମାନେ ଅଗ୍ରସର ହେଲେ ସର୍ବୋଚ୍ଚ ନ୍ୟାୟାଳୟ ଦିଗକୁ । ଅଧ୍ୟାପକ ଜଣାଇଲେ, ''ଶୁଣ ଛାତ୍ରମାନେ, ଆମେ ରାଷ୍ଟ୍ରପତିଙ୍କୁ, ମନ୍ତ୍ରୀମାନଙ୍କୁ ଏବଂ

ପାର୍ଲିଆମେଣ୍ଟ ମେମ୍ବରମାନ୍‌ଙ୍କୁ ନିନ୍ଦା କରି କରି ଏଠାକୁ ଆସିଗଲୁ । କିନ୍ତୁ ଏହି ପବିତ୍ର ପୀଠରେ ବିଚାରପତିମାନଙ୍କ ବିଷୟରେ ଗୋଟିଏ ଶବ୍ଦ ଉଚ୍ଚାରଣ କଲେ ଅଦାଲତ ଅବମାନନା ଅପରାଧରେ ଦଣ୍ଡିତ ହେବୁ । କେବଳ ଏହି ସର୍ବୋଚ୍ଚ ନ୍ୟାୟାଳୟ ନୁହେଁ, ରାଜ୍ୟର ହାଇକୋର୍ଟ କିମ୍ବା ଜିଲ୍ଲା ମହକୁମାର ନିମ୍ନ କୋର୍ଟ ଆଗରେ ମଧ୍ୟ ନ୍ୟାୟ ଅନ୍ୟାୟ ବା କୌଣସି ରାୟ ସମ୍ପର୍କରେ ପାଟି ଫିଟାଇବା ଅଧିକାର ନାହିଁ । ମାତ୍ର ଗୋଟିଏ ଦୁଃଖ ପ୍ରକାଶ କରିବି ଯେ, Justice Delayed is Justice Denied; Justice Hurried is Justice Buried. ବିଚାରପତିମାନେ ଯଦି କାଳକ୍ଷେପ ନ କରି ଯଥାଶୀଘ୍ର ସେମାନଙ୍କର ରାୟ ଶୁଣାଇ ଦିଅନ୍ତେ ତେବେ ଦରିଦ୍ର ଲୋକଙ୍କୁ ବର୍ଷ ପରେ ବର୍ଷ କୋର୍ଟ କଚେରି ଦୌଡ଼ି ଦୌଡ଼ି ସର୍ବସ୍ୱାନ୍ତ ହେବାକୁ ପଡ଼ନ୍ତା ନାହିଁ । ଗୋଟିଏ଼ ଗୋଟିଏ କେଶ୍ ପନ୍ଦର, କୋଡ଼ିଏ ବର୍ଷ ଚାଲିଥିବାର ଦୃଷ୍ଟାନ୍ତ ରହିଛି । ବିଳମ୍ବ ନୀତି ଯୋଗୁଁ ନିର୍ଦ୍ଦୋଷ ବ୍ୟକ୍ତିମାନେ ଦୀର୍ଘକାଳ ଲାଞ୍ଛନା ଭୋଗ କରିଥାନ୍ତି । ସେହିପରି, ଯଥା ଶକ୍ତି ଚିନ୍ତା ଓ ବୁଦ୍ଧି ପ୍ରୟୋଗ ନ କରି ତୁରନ୍ତ ଦଣ୍ଡବିଧାନ କରିବା ଦ୍ୱାରା ପ୍ରକୃତ ନ୍ୟାୟର ବ୍ୟତିକ୍ରମ ଘଟିପାରେ ।

ଛାତ୍ରମାନେ ଚାଲିଲେ ଲାଲକିଲ୍ଲା ଅଭିମୁଖେ । ଦୁର୍ଜୟ ସିଂଙ୍କ ପ୍ରେରିତ ଲୋକଟି ସହିତ ମମତାଦେବୀ ଫେରିଲେ ତାଙ୍କ ବାସସ୍ଥାନକୁ । ପହଞ୍ଚିଲା ବେଳକୁ ଅପର୍ଣ୍ଣା ରନ୍ଧା କାର୍ଯ୍ୟରେ ବ୍ୟସ୍ତ ଥାଆନ୍ତି । ତାଙ୍କ ହାତରୁ ଚଟୁଟି ଛଡ଼ାଇ ନେଇ ମମତା କହିଲେ, ''ମା', ଆପଣ ବିଶ୍ରାମ ନିଅନ୍ତୁ । ମୁଁ ରାନ୍ଧିବି । ବାବୁ ପଠାଇଥିଲେ ବୋଲି ଚାଲିଗଲି । ଅଧାବାଟରୁ ଫେରିଆସିଛି ।''

ଚାକରାଣୀର କର୍ତ୍ତବ୍ୟପରାୟଣତା ଦେଖି ଅପର୍ଣ୍ଣା ଆଶ୍ଚର୍ଯ୍ୟାନ୍ୱିତ ହେଲେ । ରାନ୍ଧିବା ସମୟରେ ମମତା ଚିନ୍ତା କରୁଥାନ୍ତି, ଅଧ୍ୟାପକ ଓ ଛାତ୍ରମାନେ ଯେଉଁପ୍ରକାର ମତାମତ ପ୍ରଦାନ କରୁଥାନ୍ତି ତାହା କ'ଣ ସତ୍ୟ ! ଜାଣିପାରିଲେ, ଦେଶର ରାଜନୈତିକ ବାତାବରଣ ଦୂଷିତ ହେବାକୁ ବସିଲାଣି, ରାଜନେତାମାନଙ୍କ ପ୍ରତି ସଚେତନ ନାଗରିକମାନେ ଘୃଣା କରିବାକୁ ଆରମ୍ଭ କଲେଣି ଏବଂ ମହାତ୍ମା ଗାନ୍ଧୀଙ୍କ ଯୁଗର ସଂଗ୍ରାମୀମାନେ ଯେଉଁ ପ୍ରକାର ସାଧାରଣତନ୍ତ୍ରର ସ୍ୱପ୍ନ ଦେଖିଥିଲେ, ତାହା ବିଡ଼ମ୍ବନାରେ ପରିଣତ ହେଲାଣି ।

ନିଜକୁ ଆଶ୍ୱାସନା ଦେଲେ, ଯଥାସମୟରେ ସୁଯୋଗ ଦେଖି ସେ ପୁଅ ସ୍ୱରାଜକୁ ଦେଶସେବା ଲାଗି ଉପଦେଶ ଦେଇପାରିବେ ।

## ।। ୩୦ ।।

କେତୋଟି ମାସ ମଧ୍ୟରେ ଦୁର୍ଜୟ ସିଂ ଓ ଅପର୍ଣ୍ଣା ଜାଣିପାରିଲେ ଯେ, ଅନାମୀ ବୋଲି ଯେଉଁ ମହିଳାଟି ନୌକରାଣୀ କାମ କରୁଛି ସେ ବାସ୍ତବିକ ଦୟାବତୀ ଓ ଗୁଣବତୀ । ଅକୁଣ୍ଠିତ ଚିତ୍ତରେ ସେ ସବୁ କାମ ମନପ୍ରାଣ ଦେଇ କରିଯାଏ । ଛୋଟପିଲାମାନଙ୍କ ସେବା, ରାନ୍ଧିବା ବାଢ଼ିବା, ବାସନ ମାଜିବା ଇତ୍ୟାଦି ସମସ୍ତ କାର୍ଯ୍ୟରେ ସେ ପାରଙ୍ଗମ । ଖାଇବା ଲୋଭ ତା' ପାଖରେ ନାହିଁ । ପିଲାମାନଙ୍କ ଲାଗି ମଧ୍ୟେ ମଧ୍ୟେ ଭଲ ଭଲ ଜଳଖିଆ ତିଆରି କଲେ ମଧ୍ୟ ନିଜେ ଶୁଖିଲା ରୋଟି ଖାଇ ସନ୍ତୁଷ୍ଟ ରହେ । ଦରମା ପ୍ରସଙ୍ଗ କେବେହେଲେ ଉଠାଏ ନାହିଁ । ନୌକରାଣୀର ଆନ୍ତରିକତାରେ ପାର୍ଶ୍ୱବର୍ତ୍ତୀ ପରିବାରଗୁଡ଼ିକର ସ୍ତ୍ରୀପୁରୁଷମାନେ ଦରକାର ବେଳେ କାମ କରିବାକୁ ଡାକିଲେ ଖୁସି ମନରେ ଯାଇ କାମ କରିଦିଏ, କିନ୍ତୁ ବକ୍‌ସିସ୍ ଯାଚିଲେ ନିଏ ନାହିଁ । କାହାରି ଘରର ମହିଳା ବା ପିଲାମାନଙ୍କର ପୀଡ଼ା ହେଲେ ସେମାନଙ୍କର ସେବା କରିବାକୁ ଭଲ ପାଏ । ସଂକ୍ଷେପରେ, ଜଣେ ନୌକରାଣୀର ଗୁଣରେ ମନ୍ତ୍ରୀଙ୍କ ବାଂଲୋର ପଛ ଘରଗୁଡ଼ିକରେ ଥିବା ପ୍ରହରୀମାନେ ସମସ୍ତେ ମୁଗ୍ଧ ଥିଲେ ।

କିନ୍ତୁ ସମସ୍ତଙ୍କ ଅଲକ୍ଷ୍ୟରେ ମମତାଦେବୀଙ୍କ ଲକ୍ଷ୍ୟ ରହିଥାଏ ନିଜର ପୁଅ ଉପରେ । ମନ୍ତ୍ରୀ ଭାବରେ ସ୍ୱରାଜ କ'ଣ କରୁଛି, ତାହାହିଁ ଥାଏ ତାଙ୍କର ପ୍ରଧାନ ଚିନ୍ତା । ସାକ୍ଷାତ୍ କରି ନିଜର ପରିଚୟ ଦେବାକୁ ବାରମ୍ବାର ଚେଷ୍ଟା କରି ବିଫଳ ହେଉଥାନ୍ତି । ସେହି ଦୁଃଖରେ ମନ ଭାଙ୍ଗି ପଡୁଥାଏ । ଦୂରରୁ ରହି ପୁଅ ପ୍ରତି ଦୃଷ୍ଟି ନିକ୍ଷେପ ମଧ୍ୟ ସମ୍ଭବ ହେଉ ନ ଥାଏ । ସଦାବେଳେ ବଡ଼ ବଡ଼ ନେତାମାନଙ୍କର ଯିବା ଆସିବା, ଅନୁଗତମାନଙ୍କ ଆଗମନ ଓ ବିଦାୟ, ଅଫିସରମାନଙ୍କ ସହିତ ଶାସନକାର୍ଯ୍ୟ ସମ୍ପର୍କରେ ଆଲୋଚନା ମଧ୍ୟରେ ମନ୍ତ୍ରୀଙ୍କ ବିରାମ ନ ଥାଏ । ଦିନେ ଦିନେ ମଧ୍ୟରାତ୍ରରେ ଅଫିସରୁ ମନ୍ତ୍ରୀ ଫେରୁଥାନ୍ତି । ଅନେକ ସମୟରେ ରାତି ପାହିବା ପୂର୍ବରୁ ଗସ୍ତରେ ବାହାରି ଯାଉଥାନ୍ତି ।

ଦେଖାକରି ନ ପାରିଲେ ସୁଦ୍ଧା, ମମତାଦେବୀଙ୍କ ମନରେ ଗର୍ବର ସୀମା ନ ଥାଏ ଯେ, ନିଜ ପିତାଙ୍କ ସୁପୁତ୍ର ରୂପେ ସ୍ୱରାଜ ଆଜି ହୋଇପାରିଛି ଦେଶର ଜଣେ ପ୍ରସିଦ୍ଧ ରାଜନେତା । ଯେଉଁ ଦେଶର ସ୍ୱାଧୀନତା ଲାଗି ତା ବାବା ଓ ବଡ଼ଭାଇ ପ୍ରାଣ ଦେଇଥିଲେ, ସେହି ସ୍ୱାଧୀନ ଦେଶର ନବ ନିର୍ମାଣ କାର୍ଯ୍ୟରେ ସେ ଆଜି ବ୍ୟସ୍ତ । ଏହାଠାରୁ ସୌଭାଗ୍ୟର ବିଷୟ ଆଉ କିଛି ଥାଇ ନ ପାରେ । ପୁଅର କାର୍ଯ୍ୟରେ ବାଧା ସୃଷ୍ଟି ନ କରି ଥରେ ମାତ୍ର ପାଖକୁ ଯିବାଲାଗି ସ୍ନେହଶୀଳା ଜନନୀର ପ୍ରାଣ ଅସ୍ଥିର ହୋଇ ଉଠୁଥାଏ ।

ଥରେ ଥରେ ଇଚ୍ଛା ହେଉଥାଏ, ଚିଠି ଖଣ୍ଡିକରେ ନିଜର ପରିଚୟ ଦେଇ ପୁଅ ପାଖକୁ କୌଣସି ଜଣେ ପ୍ରହରୀ ହାତରେ ମନ୍ତ୍ରୀଙ୍କ ପାଖକୁ ପଠାଇଦେବେ । ଚିଠି ପାଇଲେ ସେ ନିଜେ ଆସି ତା' ମା' ପାଖରେ ପହଞ୍ଚିଯିବ । ମା' ପୁଅର ମିଳନ ଦେଖିଲେ ସମସ୍ତେ ଆନନ୍ଦିତ ହେବେ । କିନ୍ତୁ, ସନ୍ଦେହ ଆସିଲା ଚିଠି ନେବ କିଏ ଏବଂ ଦେବ କିଏ ? ଜାଣିସାରିଥାନ୍ତି, ମନ୍ତ୍ରୀଙ୍କ ନିକଟକୁ ସିଧାସଳଖ ଚିଠିପତ୍ର ଯାଏ ନାହିଁ । ଡାକରେ ଆସିଥିବା ଚିଠି କିମ୍ବା କୌଣସି ବ୍ୟକ୍ତିଙ୍କ ହାତରେ ପ୍ରେରିତ ଚିଠି, ସମସ୍ତ ପ୍ରକାର କାଗଜପତ୍ର ଗ୍ରହଣ କରନ୍ତି ମନ୍ତ୍ରୀଙ୍କ ସଚିବ ବା ବ୍ୟକ୍ତିଗତ ସହକାରୀମାନେ । ଅନେକ ଚିଠି ସେମାନେ ଚିରି ଫୋପାଡ଼ି ଦିଅନ୍ତି ।

ଶେଷରେ ଠିକ୍ କଲେ, ଦୁର୍ଜୟ ସିଂଙ୍କୁ ଥରେ ଗୋପନରେ ସମସ୍ତ କଥା କହିଲେ ସେ ନିଶ୍ଚୟ ଦୟାପରବଶ ହୋଇ ମନ୍ତ୍ରୀଙ୍କ ପାଖକୁ ନେଇଯିବ । ତଦ୍ଦ୍ୱାରା ମନ୍ତ୍ରୀ ମା'ଙ୍କୁ ପାଇ ଆନନ୍ଦିତ ହେବା ସହିତ ନିଜ ଦେହରକ୍ଷୀ ଉପରେ ମଧ୍ୟ ଯଥେଷ୍ଟ ସନ୍ତୁଷ୍ଟ ହେବେ ।

ପୁଣି ଆଉ କେତୋଟି ମାସ ବିତିଗଲା ପରେ ଗୋଟିଏ ଦିନର ମଧ୍ୟରାତ୍ରିରେ ମମତା ଦେବୀ ନିଦ୍ରା ଯାଇଥାନ୍ତି ତାଙ୍କର ଟିଣ କୋଠରି ମଧ୍ୟରେ । ହଠାତ୍ ସିଂବାବୁଙ୍କ ଘର ସମ୍ମୁଖରେ ଖଣ୍ଡିଏ ଜିପ୍ ଗାଡ଼ିର ଘନ ଘନ ହର୍ଣ୍ଣ ବାଜିବା ଶୁଣିପାରି ତାଙ୍କ ନିଦ ଭାଙ୍ଗିଗଲା । ଅଳ୍ପ ସମୟ ପରେ ଶୁଭିଲା ଅପର୍ଣ୍ଣାଙ୍କ କ୍ରନ୍ଦନ ଧ୍ୱନି ଓ କରୁଣ ଡାକ - "ଅନାମୀ, ଅନାମୀ, ଶୀଘ୍ର ଦୌଡ଼ି ଆ ।"

ମମତା ଧାଇଁଗଲାବେଳକୁ ଅପର୍ଣ୍ଣା ଜିପ୍ ଭିତରକୁ ପ୍ରବେଶ କରୁଥାନ୍ତି । କହିଲେ, "ପିଲାମାନେ ଶୋଇଛନ୍ତି । ତୁ ସେମାନଙ୍କ ପାଖରେ ବସିଥା । ମୁଁ ହସ୍‌ପିଟାଲ ଯାଉଛି । ବାବୁଙ୍କ ଦେହରେ ଗୁଳି ବାଜିଛି ।" ଜିପ୍ ଛାଡ଼ିଦେଲା ।

ମମତା ମର୍ମାହତ ଅବସ୍ଥାରେ କିଛି ସମୟ ଛିଡ଼ା ହୋଇ ରହିଲେ । ସେ ଜାଣିଥାନ୍ତି, ଦୁର୍ଜୟ ସିଂ ହେଉଛନ୍ତି ମନ୍ତ୍ରୀଙ୍କର ବ୍ୟକ୍ତିଗତ ଶରୀରରକ୍ଷୀ ଏବଂ ଅତ୍ୟନ୍ତ ବିଶ୍ୱସ୍ତ ବ୍ୟକ୍ତି । ମନ୍ତ୍ରୀ ଯେଉଁ ସ୍ଥାନକୁ ଗଲେ ତାଙ୍କ ନିକଟରେ ରିଭଲଭର ବା ରାଇଫଲ୍ ଧରି ବସିରହନ୍ତି ।। ପାଖେ ପାଖେ ଅସ୍ତ୍ର ଧରି ଚାଲନ୍ତି । ମମତାଦେବୀଙ୍କ ମନରେ ଦାରୁଣ ଭୀତି ଖେଳିଗଲା । ମନ୍ତ୍ରୀଙ୍କ ଦେହରକ୍ଷୀ ଦିଗକୁ ଗୁଳିଚାଳନାର ଅର୍ଥ ହେଉଛି ମନ୍ତ୍ରୀଙ୍କୁ ଲକ୍ଷ୍ୟ କରିବା । ତେବେ ସ୍ୱରାଜ ପରି ଦେଶପ୍ରିୟ ଓ ଜାତିପ୍ରାଣ ନେତାକୁ ହତ୍ୟାକରିବା ଲାଗି ଆତତାୟୀ ମସୁଧା କରିବ କାହିଁକି ?

ପିଲାମାନେ ଶୋଇଥାନ୍ତି । ଅସମ୍ଭାଳ ଚିତ୍ତରେ ମମତା ଦୌଡ଼ିଗଲେ ମୁଖ୍ୟ ଫାଟକ ନିକଟକୁ । ଦଳ ଦଳ ପୁଲିସ ଜଗିଥାନ୍ତି । ଜଣେ ଦରୱାନକୁ ପଚାରିଲେ, "ମନ୍ତ୍ରୀ

ମହୋଦୟ ବାଂଲୋକୁ ଫେରିଲେଣି ?'' ''ହଁ, ଫେରିଲେଣି । ତାଙ୍କ ଦେହରେ ଗୁଳି ବାଜି ନାହିଁ । ସେ ଖାଇସାରି ଶୋଇଗଲେଣି ।''

ନିଶ୍ଚିନ୍ତ ମନରେ ଭଗବାନ୍‌ଙ୍କୁ ଡାକି ଡାକି ସେ ଅପର୍ଣ୍ଣାର ପିଲାମାନଙ୍କ ପାଖରେ ତୁନି ହୋଇ ବସିରହିଲେ । ପ୍ରାୟ ଦୁଇ ଘଣ୍ଟା ପରେ ଜିପ୍ ଫେରିଲା । ଅପର୍ଣ୍ଣା ଭିତରକୁ ପଶିଲେ । ପଛେ ପଛେ ଅନାମୀ । ''ଅନାମୀ, ବାବୁଙ୍କ ଗୋଡ଼ରେ ଗୁଳି ବାଜିଛି । ଡାକ୍ତରମାନେ ଅପରେସନ କରି ବାହାର କରିବେ । ଦୟାମୟ ପ୍ରଭୁ ବଞ୍ଚାଇ ଦେଇଛନ୍ତି । ମୁଁ ବର୍ତ୍ତମାନ ଫେରିଯିବି । ପିଲାମାନଙ୍କୁ ଖାଇବାକୁ ଦେବୁ । ବାବୁଙ୍କୁ ଆଘାତ ଲାଗିଛି ବୋଲି ସେମାନଙ୍କ ପାଖରେ କହିବୁ ନାହିଁ । ଅନ୍ୟ ଘରର ସ୍ତ୍ରୀଲୋକମାନେ ପଚାରିଲେ କହିବୁ, ତୁ କିଛି ଜାଣି ନାହୁଁ ।'' ନିଜ ଲୁଗା ଓ ବାବୁଙ୍କ ନୂଆ ପାଇଜାମା, ସାର୍ଟ ଧରି ସେ ପୁଣି ଜିପ୍‌ରେ ବସିଗଲେ ।

ଦିନ ଦୁଇଘଡ଼ି ସମୟରେ ପାର୍ଶ୍ୱବର୍ତ୍ତୀ ଗ୍ରାମରୁ ଦୁର୍ଜୟ ସିଂଙ୍କ ସାନଭାଇ ଦୁଇଜଣ ଦୁଆରେ ଆସି ପହଞ୍ଚିଗଲେ । ପିଲାମାନେ 'କକା, କକା' ସମ୍ବୋଧନ କଲାବେଳକୁ ସେମାନେ ବିରକ୍ତ ହୋଇ କହିଲେ, ''ବାଟରେ ଖେଳିବାକୁ ଚାଲି ଯା ।'' ସେମାନଙ୍କ ଲାଗି ଚା' ତିଆରି କରୁଥିଲାବେଳେ ମମତା ଶୁଣିପାରୁଥିଲେ ସେମାନଙ୍କ ଆଲୋଚନା ।

''ବଡ଼ଭାଇଙ୍କୁ ଅନେକ ଥର ବୁଝାଇଥିଲି, ଏହି ମନ୍ତ୍ରୀଟା ପାଖରେ ରୁହ ନାହିଁ । ଲୋକଟା ଭଲ ନୁହଁ । ତା ବାପା ଓ ଭାଇ ସ୍ୱାଧୀନତା ଲଢ଼ାଇରେ ମରିଥିଲେ ବୋଲି ସେହିମାନଙ୍କ ନାମ ଗାଇ ଗାଇ ଭୋଟ ପାଇଲା । ବେଶି ଭୋଟରେ ଜିଣିଥିଲା ବୋଲି ମନ୍ତ୍ରୀ ହେଲା । କ୍ଷମତା ପାଇଲା ପରେ ଅନ୍ୟାୟ ପରେ ଅନ୍ୟାୟ କରିଚାଲିଛି । ତା ପାଖରେ ବସିଥିଲା ବୋଲି ଭାଇ ଶତ୍ରୁର ଗୁଳିରେ ଜଖମ ହେଲା । ମରିଯାଇଥିଲେ ତା' ସ୍ତ୍ରୀ ଓ ପିଲାମାନଙ୍କୁ ପାଳନ୍ତା କିଏ ? ତାଙ୍କୁ ହସପିଟାଲରୁ ବାଟେ ବାଟେ ଘରକୁ ନେଇଯିବା । ପରର ଦେହରକ୍ଷୀ ହୋଇ ନିଜର ଜୀବନ ଦେବା ଦରକାର ନାହିଁ ।''

ଅନ୍ୟ ଭାଇ ଜଣକ ମତ ଦେଲେ, ''ମନ୍ତ୍ରୀ ଯଦି ଯମୁନା କୂଳରେ କୋଠା ତିଆରି କରିବ ବୋଲି ଠିକ୍ କଲା, ଅନେକ ଜାଗା ଥାଉଁ ଥାଉଁ ଜଣେ ସ୍ଥାୟୀ ବାସିନ୍ଦାର ଜମି ଉପରେ ନଜର ପକାଇଲା କାହିଁକି ଜାଣ ? ନିଜ ସ୍ତ୍ରୀ କଥାରେ । ସେହି ଜାଗାଟା ନଦୀକୂଳକୁ ଲାଗିଛି ଏବଂ ଖୁବ ସୁନ୍ଦର ବୋଲି ମନ୍ତ୍ରିଆଣୀ ଜିଦ୍ ଧରି ବସିଲା । ଆରେ, ମନ୍ତ୍ରୀ ହେଲ ବୋଲି ଆଉ ଗୋଟିଏ ଲୋକର ସାତପୁରୁଷର ଭୂମି ଟିକକ ଜବରଦଖଲ କରିନେବ ! ବୋଧହୁଏ, ସେହି ଲୋକଟା ପ୍ରତିଶୋଧ ନେବାପାଇଁ ଭଡ଼ାଟିଆ ଗୁଣ୍ଡା

ଲଗାଇଥିଲା । ଯଦି ଗୁଳିଟା ମନ୍ତ୍ରୀଙ୍କ ଛାତିରେ ବାଜିଥାନ୍ତା, ପରର ଜମି ଉପରେ ଘର ତିଆରି କରି ସେଠାରେ ରହିଥାନ୍ତା କିଏ ?''

ମମତା ଦୁଇ ଭାଇଙ୍କ ହାତରେ ଚା' କପ୍ ଧରାଇଦେଲେ । ଚା' ପାନ ବେଳେ ମଧ୍ୟ ସେମାନଙ୍କ କଥାବାର୍ତ୍ତା ଶେଷ ହେଉ ନ ଥାଏ । ଜଣେ ଭାଇ କହିଲେ, ''ଦେହରକ୍ଷୀମାନଙ୍କୁ ବେଶି ଦରମା ମିଳେ ବୋଲି ବଡ଼ଭାଇ ଲୋଭ ସମ୍ଭାଳିପାରିଲେ ନାହିଁ । ଏବେ ସାରାଜୀବନ ଛୋଟା ହୋଇ ରହିବେ । ଚାକିରିରୁ ବାହାର କରି ଦିଆଯିବ । ପିଲାଗୁଡ଼ାଙ୍କୁ ମଣିଷ କରିବ କିଏ ?''

''ନିଜେ ଚଳିବେ କିପରି ଆଗେ ସେହିକଥା ଭାବ । ମନ୍ତ୍ରୀ କ'ଣ ଗୋଡ଼ଟା ଫେରାଇ ଦେବ ନା କ୍ଷତିପୂରଣ ଦେବ ! କିଛି ମିଳିବ ନାହିଁ ।''

ଦୁଇ ଭାଇଙ୍କ ପ୍ରତ୍ୟେକ ବାକ୍ୟ ଗୋଟିଏ ଗୋଟିଏ ଗୁଳି ପରି ମମତାଦେବୀଙ୍କ ବକ୍ଷଦେଶରେ ବିଦ୍ଧ ହେଉଥାଏ । ତଥାପି ସେ ଭାବୁଥାନ୍ତି, ତାଙ୍କ ପୁଅ ଏତେଦୂର ନୀଚ ସ୍ତରକୁ ଯାଇପାରିବ ନାହିଁ । ଏମାନେ ଯାହା କହୁଛନ୍ତି ତାହା ମିଥ୍ୟା । ରାଜନେତାମାନଙ୍କ ସମ୍ପର୍କରେ ଅନେକ ଗୁଜବ ପ୍ରଚାର କରାଯାଏ । ଏମାନେ ସେହିପରି ଗୁଜବ ଶୁଣି ବାଜେ କଥାଗୁଡ଼ାକ କହୁଛନ୍ତି । ପୁଅର ଯଦି ଘର ଦରକାର, ମନ୍ତ୍ରିତ୍ୱ ଚାଲିଗଲା ପରେ ସେ କ'ଣ ଗାଁରେ ଘର କରି ରହିପାରିବ ନାହିଁ ! ଯମୁନାକୂଳ ଅପେକ୍ଷା ସମୁଦ୍ରକୂଳ କ'ଣ ଅଧିକ ସୌନ୍ଦର୍ଯ୍ୟମୟ ନୁହେଁ ?

ଭାତ ରାନ୍ଧି ଦୁଇ ଭାଇଙ୍କୁ ଖାଇବାକୁ ଦେଲେ । ଖାଇସାରି ସେମାନେ ଚାଲିଗଲେ ହସପିଟାଲକୁ ।

ବିଳମ୍ବିତ ଅପରାହ୍ଣରେ ଫେରିଆସିଲେ ଅପର୍ଣ୍ଣା । ସକାଳ ପାଖରୁ କିଛି ଖାଇ ନ ଥାନ୍ତି । ମମତା ସଙ୍ଗେ ସଙ୍ଗେ ଚା' କପେ ଧରାଇଦେଇ ପାଉଁରୋଟି ଭାଜି ଟୋଷ୍ଟ ତିଆରି କଲେ । କାନ୍ଦି କାନ୍ଦି ସେ କହିଲେ, ''ଖାଇବି କ'ଣରେ ଅନାମୀ ! ଆମ ସଂସାର ଭାସିଗଲା । ବାବୁଙ୍କ କପାଳ ଖରାପ । ଡାକ୍ତରମାନେ କହୁଛନ୍ତି ଅନେକ ଦିନ ହସପିଟାଲରେ ରଖିବେ । ଆଜି ରାତି ସାରା ତାଙ୍କ ଭାଇମାନେ ଜଗିବେ । କାଲି ସକାଳେ ପିଲାମାନଙ୍କୁ ନେଇ ସେମାନେ ଗାଁକୁ ଚାଲିଯିବେ । ମୋତେ ଏଠାରେ ରହିବାପାଇଁ କୁହାଯାଇଛି ।''

ଘଣ୍ଟା ଘଣ୍ଟା ସମୟ ଡାକ୍ତରଖାନାରେ ଛିଡ଼ା ହୋଇଥିବା ଯୋଗୁଁ ଅପର୍ଣ୍ଣାଙ୍କ ଗଣ୍ଠିବଥା ବହୁ ଗୁଣରେ ବଢ଼ି ଯାଇଥାଏ । ସେ ବିଛଣା ଉପରେ ଲୋଟିପଡ଼ି ଯନ୍ତ୍ରଣାରେ

ଅସ୍ଥିର ହେଉଥାନ୍ତି । ତଳେ ବସିପଡ଼ି ମମତାଦେବୀ ଅନୁରୋଧ କଲେ, ''ମା', ଆପଣ ଶୋଇ ରହନ୍ତୁ । ମୁଁ ଗୋଡ଼ ଦୁଇଟା ମାଲିସ୍ କଲେ ଆରାମ ମିଳିବ ।''

ଆଣ୍ଠୁ ଓ ଗୋଡ଼ରେ ତେଲ ମାଲିସ କରିବା ଅବକାଶରେ ମମତା ଅପର୍ଣ୍ଣାଙ୍କୁ ତାଙ୍କ ସ୍ୱାମୀଙ୍କ ଅବସ୍ଥା ବିଷୟ ପଚାରି ବୁଝିସାରିଲା ପରେ ପଚାରିଲେ, ''ମନ୍ତ୍ରୀଙ୍କର ସ୍ତ୍ରୀ ଓ ପିଲାମାନେ ଏଠାରେ ନାହାନ୍ତି କାହିଁକି ? ମନ୍ତ୍ରୀ ବୋଧହୁଏ ବିବାହ କରି ନ ଥିବେ ।''

ଅପର୍ଣ୍ଣା ଜଣାଇଲେ, ''ମନ୍ତ୍ରୀଙ୍କର ସୁନ୍ଦର ରୂପ ଦେଖି ଜଣେ କୋଟିପତିଙ୍କ କନ୍ୟା ତାଙ୍କୁ ବିବାହ କରିଛନ୍ତି । କିନ୍ତୁ ସେ ସ୍ୱାମୀଙ୍କ ଘରେ ନ ରହି ନିଜ ବାପାଙ୍କ ଘରେ ରହନ୍ତି ଏବଂ ବାପାଙ୍କ ଶିଳ୍ପାନୁଷ୍ଠାନଗୁଡ଼ିକ ଦେଖାଶୁଣା କରନ୍ତି । ମଝେ ମଝେ ଏଠାକୁ ଆସନ୍ତି । କହନ୍ତି, ମନ୍ତ୍ରୀଙ୍କୁ ଯେଉଁ ବାଂଲୋ ମିଳିଛି ସେଥିରେ ତାଙ୍କ ବାପାଙ୍କ ଚପରାସୀ ମଧ୍ୟ ରହିବାକୁ ଇଚ୍ଛା କରନ୍ତି ନାହିଁ । ସେ ଚାହାନ୍ତି, ଯମୁନା କୂଳରେ ଗୋଟିଏ ଚାରିତାଲା କୋଠାରେ ରହି ବାଲକୋନି ଉପରୁ ନଦୀର ଶୋଭା ଦେଖିବେ । ସେଥିପାଇଁ ନିଜେ ଗୋଟିଏ ସ୍ଥାନ ପସନ୍ଦ କରିଛନ୍ତି ଏବଂ ସେଠାରେ ସୁରମ୍ୟ ଅଟ୍ଟାଳିକା ତିଆରି ହେବ । ଏତେପର୍ଯ୍ୟନ୍ତ ସେମାନଙ୍କର ଛୁଆ ପିଲା ଜନ୍ମି ନାହାନ୍ତି ।''

''ମନ୍ତ୍ରୀଙ୍କୁ ଗୁଳି କଲା କିଏ ? ଏପରି ଭଲ ଲୋକଙ୍କୁ ହତ୍ୟା କରିବା ଲାଗି ହାତ ଉଠିଲା କାହାର ? ଯାହାହେଉ, ଆପଣଙ୍କ ସ୍ୱାମୀଙ୍କ ଲାଗି ସେ ବଞ୍ଚିଗଲେ ।''

''ହଁ, ମୋ ସ୍ୱାମୀ ତାଙ୍କୁ ରକ୍ଷା କରିବାକୁ ଯାଇ ନିଜେ ବିକଳାଙ୍ଗ ହୋଇ ଘରକୁ ଫେରିବେ । କିନ୍ତୁ ମନ୍ତ୍ରୀଙ୍କ ଉପରକୁ ବିପଦ ଲାଗି ରହିବ ବୋଲି କେହି କେହି କହୁଛନ୍ତି । କାରଣ, ନିଜେ ଗୁଣ୍ଡାମାନଙ୍କୁ ପ୍ରଶ୍ରୟ ଦେଇ ଅନ୍ୟ ଗୁଣ୍ଡାମାନଙ୍କୁ ଶତ୍ରୁ କରୁଛନ୍ତି । ଜଣେ କହୁଥିଲେ, ଗୋଟିଏ ଦୁର୍ଦ୍ଦାନ୍ତ ଗୁଣ୍ଡାର ଜମି ଦଖଲ କରି ସେଠାରେ ଘର ତିଆରି କରୁଥିବାରୁ ତାଙ୍କ ଉପରକୁ ଗୁଳି ହେଲା । ଆମ ବାବୁ ଦେହରକ୍ଷୀ ଭାବରେ ନିଜେ ବିପଦରେ ପଡ଼ିଲେ । ଏ ଚାକିରି ସେ ଛାଡ଼ିଦେବେ ।''

ରାତି ଅନେକ ହେଲା ପରେ ମମତାଦେବୀ ବିଛଣା ଧରିଲେ । କିନ୍ତୁ ନିଦ ହେଲା ନାହିଁ । ମନକୁ ଦମ୍ଭ ଆଣିଲେ, ଯେକୌଣସି ଉପାୟରେ ମନ୍ତ୍ରୀଙ୍କ ଆଗରେ ଛିଡ଼ା ହୋଇ କହିବେ, 'ସ୍ୱରାଜ ମୁଁ ତୋ ମା' । ମୋ ମୁହଁ ଦେଖି ତୁ ଏ କଥା ବିଶ୍ୱାସ କରିବୁ ନାହିଁ ବୋଲି ମୁଁ ଜାଣେ । କିନ୍ତୁ ତୋ ପିଲାବେଳର କଥା, ତୋ ବାବାଙ୍କ କଥା, ଭାଇ ତେଜସ୍ୱୀର କଥା, ଗାଁ ଲୋକଙ୍କ କଥା, ତୋ ଅଜାଙ୍କ କଥା ଏବଂ କଲିକତାରେ ତୋ ପାଠ ପଢ଼ିବା ଇତ୍ୟାଦି ବର୍ଣ୍ଣନା କଲେ ତୁ ଜାଣିପାରିବୁ ଯେ ମୁଁ ତୋର ମା' । ମୋ ରୂପ ଏପରି ହେଲା କାହିଁକି ସେକଥା ମଧ୍ୟ କହିବି ।'

ଥରେ ଏହି ବିକୃତମୁଖୀ ଅନାମୀକୁ ନିଜର ପ୍ରକୃତ ମା' ବୋଲି ଜାଣିପାରିଲେ, ଜନ୍ମଦାୟିନୀର ଅଧିକାର ବଳରେ ପୁଅକୁ ସତ୍ ପଥରେ ଚଳିବା ଲାଗି ଉପଦେଶ ଦେଇପାରିବେ ବୋଲି ଆତ୍ମପ୍ରତ୍ୟୟ ଆସିଲା । ସେଥିସଙ୍ଗେ ପୁଅର ବିବାହିତା ସ୍ତ୍ରୀକୁ ମଧ୍ୟ ନିଜର ନୈତିକ ଆୟତ୍ତ ମଧ୍ୟରେ ରଖିପାରିବେ ବୋଲି ଆଶାନ୍ୱିତ ହେଲେ ।

ମନ୍ତ୍ରୀଙ୍କ ନିକଟକୁ ଏକାନ୍ତ ଗୋପନରେ ଯିବା ନିମନ୍ତେ ସୁଯୋଗ ପ୍ରତି ଅପେକ୍ଷା କରିବା ମଧ୍ୟରେ କେତେଗୋଟି ସପ୍ତାହ ବିତିଗଲା । ସବୁ ସମୟରେ ଉଚ୍ଚପଦସ୍ଥ ପୁଲିସ ଅଫିସରମାନଙ୍କୁ ଦେଖି ସେ ଭୟପାଇ ଯାଉଥାନ୍ତି । ପ୍ରହରୀମାନେ କୌଣସି ବ୍ୟକ୍ତିକୁ ଗେଟ୍ ଭିତରକୁ ଛାଡୁ ନ ଥାନ୍ତି । ଅନ୍ୟ ମନ୍ତ୍ରୀମାନଙ୍କୁ କୁହାଯାଉଥାଏ ଯେ ମନ୍ତ୍ରୀ ଅସୁସ୍ଥ ଅଛନ୍ତି ଏବଂ କଥାବାର୍ତ୍ତା କରିବାକୁ ଡାକ୍ତରମାନେ ମନା କରିଛନ୍ତି ।

ସପ୍ତାହ ପରେ ସପ୍ତାହ ବିତିଯାଉଥାଏ । ଦିନେ ରାତିରେ ଖଣ୍ଡିଏ ଟ୍ରକ୍ ଆସି ଅପର୍ଣ୍ଣାଙ୍କ ଘର ଆଗରେ ଛିଡ଼ାହେଲା । ହସ୍‌ପିଟାଲର କର୍ମଚାରୀମାନେ ଷ୍ଟ୍ରେଚର ଯୋଗେ ଦୁର୍ଜୟ ସିଂଙ୍କୁ ଟ୍ରକ୍ ଭିତରୁ ତଳକୁ ଟେକିଆଣି ତାଙ୍କ ବିଛଣା ଉପରେ ଶୁଆଇ ଦେଲେ । ଆଣ୍ଠୁ ଉପରୁ ଗୋଟିଏ ଗୋଡ଼ କଟା ଯାଇଥିବା ଦେଖି ଅପର୍ଣ୍ଣା ଚିତ୍କାର କରିଉଠିଲେ । ପାଖ ଘରର ମହିଳାମାନେ ଦୌଡ଼ିଆସିଲେ । କିନ୍ତୁ ପ୍ରହରୀମାନଙ୍କ ନିକଟରୁ ଗାଳି ଶୁଣି ସେମାନେ ପଳାଇଗଲେ ।

ଖଣ୍ଡିଏ ଜିପ୍‌ରେ ଆସିଥିବା ଜଣେ ଡାକ୍ତର ଅପର୍ଣ୍ଣାଙ୍କୁ ଆଶ୍ୱାସନା ଦେଲେ, ''କ୍ଷତ ଜାଗା ସମ୍ପୂର୍ଣ୍ଣ ଭାବରେ ଶୁଖି ଯାଇଛି । ସେଥିପାଇଁ କିଛି ଭୟ ନାହିଁ । ଅବଶ୍ୟ ଆଶାବାଡ଼ି କାଖତଳେ ରଖି ଚାଲିବାକୁ ହେବ ।'' ଏହା କହି ଡାକ୍ତରବାବୁ ଜିପ୍ ଭିତରୁ ଖଣ୍ଡିଏ ଆଶାବାଡ଼ି ଆଣି ଅପର୍ଣ୍ଣାଙ୍କ ହାତରେ ଧରାଇଦେଇ ଚାଲିଗଲେ ।

ସେହି ମୁହୂର୍ତ୍ତରେ ଜଣେ ପଦସ୍ଥ ସଚିବ ମନ୍ତ୍ରୀଙ୍କ ପ୍ରାଙ୍ଗଣରୁ ବାହାରିଆସି ଦୁର୍ଜୟ ସିଂ ଓ ଅପର୍ଣ୍ଣାଙ୍କୁ ଜଣାଇ ଦେଲେ, ''ଯେତେ ଶୀଘ୍ର ସମ୍ଭବ ତୁମମାନଙ୍କୁ ତମ ବାସସ୍ଥାନକୁ ପଠାଇ ଦିଆଯିବ । ସେଠାରେ କିଛି ମାସ ବିଶ୍ରାମ ନେଲା ପରେ ଦୁର୍ଜୟ ସିଂକୁ ଏଠାରେ ମାଳୀ କାମରେ ନିଯୁକ୍ତି ଦିଆଯିବ ବୋଲି ମନ୍ତ୍ରୀ ମହୋଦୟ କହିଛନ୍ତି । ଏହି ଘରେ ସେ ରହିବେ । ସ୍ଥାୟୀ ନିଯୁକ୍ତି ମିଳିବ । ଚିନ୍ତାର କାରଣ ନାହିଁ । କ୍ଷତି ପୂରଣ ପାଇଁ ମଧ୍ୟ ମନ୍ତ୍ରୀ ମହୋଦୟ ଚେଷ୍ଟା କରିବେ ।''

ଖାଦ୍ୟ ପ୍ରସ୍ତୁତ କରି ମମତାଦେବୀ ଦୁର୍ଜୟ ସିଂଙ୍କ ପାଖକୁ ପ୍ଲେଟ ଧରି ଆସିଲା ବେଳକୁ ତାଙ୍କ କଟା ଗୋଡ଼ ନିକଟରେ ଆଖି ବନ୍ଦ କରି ବସିଥାନ୍ତି ଅପର୍ଣ୍ଣା । ଅକସ୍ମାତ୍ ଅସମ୍ଭାଳ ଅବସ୍ଥାରେ କାନ୍ଦି କାନ୍ଦି ଅପର୍ଣ୍ଣାଙ୍କୁ କହିଗଲେ,

"ମୁଁ ମୋ ଗୋଡ଼ ଲାଗି ଦୁଃଖ କରୁ ନାହିଁରେ ଅପର୍ଣ୍ଣା । ମୁଁ କାନ୍ଦୁଛି ମୋ ପାପ ପାଇଁ । ଏ ଜନ୍ମରେ କଷ୍ଟ ଭୋଗିବା ଲାଗି ମୁଁ କାତର ନୁହେଁ । କିନ୍ତୁ ମୃତ୍ୟୁ ପରେ ନରକ ଭୋଗିବି ଜାଣି ମୃତ୍ୟୁ ପର୍ଯ୍ୟନ୍ତ ମୋ ପାପ କଥା ଚିନ୍ତା କରୁଥିବି ।"

"ପାପ ! ତୁମେ କେଉଁ ପ୍ରକାର ପାପ କଲ ଯେ ନରକକୁ ଯିବ ?" ତଟସ୍ଥ ହୋଇ ପଚାରିଲେ ଅପର୍ଣ୍ଣା ।

"ପାପ ନୁହେଁ, ମହାପାପ । ଯେଉଁ ଜାଗା ଉପରେ ମନ୍ତ୍ରୀଙ୍କର ଘରତୋଳା ଚାଲିଛି ସେ ଜମିଟା ହେଉଛି ଜଣେ ସାଧୁଙ୍କର । ତାଙ୍କ ପୂର୍ବପୁରୁଷମାନେ ସେହିଠାରେ ମାଟି ଘରଟିରେ ରହି ଆସୁଥିଲେ । ଏହି ସାଧୁ ସେଠାରେ ଗୋଟିଏ ଆଶ୍ରମ ତିଆରି କରିବେ ବୋଲି ଦେଶସାରା ବୁଲି ବୁଲି ଗୋଟିଏ ଗୋଟିଏ ଟଙ୍କା ସଂଗ୍ରହ କରି ରଖୁଥିଲେ । ଆଶା କରିଥିଲେ, ହିମାଳୟରୁ ଆସୁଥିବା ସାଧୁ ସନ୍ନ୍ୟାସୀମାନେ ସେହି ଆଶ୍ରମରେ ଆଶ୍ରୟ ପାଇବେ । ସେହି ଜମି ଖଣ୍ଡିକ ଉପରେ ଦୃଷ୍ଟି ପଡ଼ିଲା ଆମ ମନ୍ତ୍ରୀଙ୍କ ସ୍ତ୍ରୀଙ୍କର । ମନ୍ତ୍ରୀଙ୍କ ଶଳା ଥରେ ଗୁଣ୍ଡା ପଠାଇ ସାଧୁଙ୍କୁ ମାଡ଼ ଦେଇ ଟଙ୍କାତକ ଛଡ଼ାଇନେଲେ । ତଥାପି ସାଧୁ ତାଙ୍କ ସଂକଳ୍ପରେ ଅଟଳ ରହିଲେ । ଯେଉଁଦିନ ମନ୍ତ୍ରୀ ଅଟ୍ଟାଳିକା ନିର୍ମାଣ ଦେଖିବାକୁ ଯାଇଥିଲେ, ସେଦିନ ସାଧୁପୁରୁଷ ସେଠାରେ ନ ଥିଲେ । ମନ୍ତ୍ରୀଙ୍କର ଅନ୍ୟ କୌଣସି ଶତ୍ରୁ ଗୁଳି ଚଳାଇଲା । ମନ୍ତ୍ରୀ ରକ୍ଷା ପାଇଗଲେ । ମୁଁ ଆହତ ହେଲି । ହସ୍‌ପିଟାଲରେ ଚେତା ଫେରିଲା ପରେ ପୁଲିସ୍ ମୋ ପାଖରୁ ଜମାନବନ୍ଦି ନେଲା ଏବଂ ଖଣ୍ଡିଏ କାଗଜରେ ମୋର ଦସ୍ତଖତ ଓ ଟିପ ଚିହ୍ନ ନେଇଗଲା ।"

ଏତକ କଥା ଶେଷ କଲାବେଳକୁ ଦୁର୍ଜୟ ସିଂଙ୍କ କୋହ ଉଛୁଳି ପଡ଼ିଲା । ବିକଳ ଭାବରେ କାନ୍ଦିଉଠି କହିଗଲେ, "ମୋହରି ଜମାନବନ୍ଦି ବଳରେ ପୁଲିସ ସାଧୁଙ୍କୁ ଖୋଜି ଖୋଜି ଧରି ଆଣି ଥାନାରେ ତିନିଦିନ ତିନିରାତି ଅଟକ ରଖିଲେ । ଦୋଷ ସ୍ୱୀକାର କରିବାକୁ ତାଙ୍କୁ ବାଧ କରାଯାଉଥାଏ ଯେ ତାଙ୍କ ଲୋକ ମନ୍ତ୍ରୀଙ୍କୁ ଗୁଳି କରିଥିଲା । ସାଧୁ ନୀରବ ରହି ସମସ୍ତ ଯନ୍ତ୍ରଣା ସହ୍ୟ କରିଗଲେ । ଶେଷରେ ଅପରାଧ ସ୍ୱୀକାର କରାଇନେବା ଲାଗି ମନ୍ତ୍ରୀଙ୍କ ଶଳା ଗୁଣ୍ଡାଧରି ପହଞ୍ଚିଲେ । ସେମାନଙ୍କ ନିର୍ମମ ମାଡ଼ରେ ଅସ୍ଥିକଙ୍କାଳସାର ସାଧୁଙ୍କର ପ୍ରାଣବାୟୁ ବାହାରିଗଲା । ତାଙ୍କ ଅଭିଶାପ ମୁଁ ଭୋଗିବି । ମନ୍ତ୍ରୀ କୁଆଡ଼େ ପରବୁଦ୍ଧିରେ ପଡ଼ି ତହସିଲଦାର ନିକଟରୁ ନିଜ ସ୍ତ୍ରୀଙ୍କ ନାମରେ ଜମିଖଣ୍ଡିକ ପଟ୍ଟା କରାଇ ନେଇଥିଲେ । ସାଧୁ କୋର୍ଟ କଚେରିର ଆଶ୍ରୟ ନେବ ଭାବି ଶେଷରେ ତାଙ୍କୁ ସଂସାରରୁ ଚିରଦିନ ପାଇଁ ବିଦାୟ କରି ଦିଆଗଲା । ମୁଁ ଶୁଣିବାକୁ ପାଇଛି, ଏହି ମନ୍ତ୍ରୀଙ୍କ ଦେଖା ଦେଖି ଅନ୍ୟ କେତେଜଣ ମନ୍ତ୍ରୀ ଏବଂ ପାର୍ଲିଆମେଣ୍ଟ

ମେମ୍ବରମାନେ ସେଠାକାର ସ୍ଥାୟୀ ବାସିନ୍ଦାମାନଙ୍କୁ ଯମୁନା କୂଳରୁ ଉଚ୍ଛେଦ କରି ନିଜ ନିଜ ନାମରେ ଜମି ପଟ୍ଟା କରାଇନେବାକୁ ଚେଷ୍ଟା କରୁଥିବା ଜାଣି ସେହିମାନଙ୍କ ମଧ୍ୟରୁ ଗୁଣ୍ଡା ଶ୍ରେଣୀୟ ଜଣେ ବ୍ୟକ୍ତି ଆମ ମନ୍ତ୍ରୀଙ୍କୁ ମାରିଦେବା ଲାଗି ଷଡ଼ଯନ୍ତ୍ର କରିଥିଲା । କିନ୍ତୁ ଶେଷରେ ପ୍ରାଣ ଦେଲେ ଜଣେ ପବିତ୍ର ଓ ନିର୍ଦ୍ଦୋଷ ସାଧୁ, ଯାହାଙ୍କର ପରିବାର ଓ ଘରସଂସାର ବୋଲି କିଛି ନ ଥାଏ ।''

ଅପର୍ଣ୍ଣା କହି ପକାଇଲେ, ''ଯାହା ହେବାର ଥିଲା ତାହା ହୋଇଗଲା । ଆମର ଆଉ୍ ମାଳୀ ଚାକିରି ଦରକାର ନାହିଁ । ରାଜଧାନୀରେ ରହିବା ମଧ୍ୟ ଦରକାର ନାହିଁ । ଗାଁରେ ପଡ଼ିରହି ମରିବା ।''

ଦୁର୍ଜୟ୍ ସିଂ କହୁଥିବା କଥାଗୁଡ଼ିକ ସତ୍ୟ ବୋଲି ମମତାଦେବୀଙ୍କ ବିଶ୍ୱାସ ଜନ୍ମିଲା । ବୁଝିପାରିଲେ ନାହିଁ କେବଳ ଗୋଟିଏ କଥା । ପଦ ପଦବୀ ଓ କ୍ଷମତାର ମୋହ କ'ଣ ସ୍ୱରାଜ ପରି ଭଲ ପିଲାଟିକୁ ମନୁଷ୍ୟରୂପୀ ରାକ୍ଷସରେ ପରିଣତ କରିଦେଇ ପାରିଲା ।

ତହିଁ ପରଦିନ ଅପର୍ଣ୍ଣା ଓ ତାଙ୍କ ସ୍ୱାମୀ ଜିନିଷପତ୍ର ସହ ନିଜ ଘର ଛାଡ଼ିଲେ । ''ଅନାମୀ ଆମର ଅବସ୍ଥା ଦେଖିଲୁ । ତୁ ଏବେ ଆଉ କାହାଘରେ ନୌକରାଣୀ ରହ । ଆମ ସାଙ୍ଗରେ ଆଉ କେବେ ଦେଖା ହେବ ନାହିଁ,'' ଏହା କହି ଅପର୍ଣ୍ଣା ତାଙ୍କ ହାତକୁ କିଛି ଟଙ୍କା ବଢ଼ାଇ ଦେଇ ଟ୍ରକ୍‌ରେ ବସିଗଲେ ।

ମମତା ଚାହିଁରହିଥାନ୍ତି ପରିତ୍ୟକ୍ତ କୋଠରିଟିକୁ । ଅବିଳମ୍ବେ ଆସିଗଲେ ଆଉଜଣେ ନବନିଯୁକ୍ତ ଦେହରକ୍ଷୀ । ନିଜ ଲୁଗାପଟା ଧରି ବାହାରି ଚାଲିଗଲେ ମମତାଦେବୀ ।

## ।। ୩୧ ।।

ମନ୍ତ୍ରୀଙ୍କ ବାସସ୍ଥାନର ପଛପଟ ଦେଇ ମୁଖ୍ୟ ରାସ୍ତାକୁ ଚାଲିଯାଉଥିବା ସମୟରେ ଏକ ଅସ୍ୱାଭାବିକ ଅନ୍ତର୍ଗ୍ଲାନି ମମତାଦେବୀଙ୍କ ମାନସପଟରେ ପ୍ରତିଧ୍ୱନିତ ହେବାକୁ ଲାଗିଲା - ବିପଥଗାମୀ ପୁତ୍ରକୁ ପାପପଙ୍କିଳ ଜୀବନପଥରୁ ଉଦ୍ଧାର କରିବା ଜଣେ ଜୀବିତା ମାତାର କର୍ତ୍ତବ୍ୟ ନୁହେଁ କି ? ସାହସିନୀ ଜନନୀ ରୂପରେ ସେ ଅଗ୍ରସର ହେଲେ ଫାଟକ ଦିଗକୁ । ଯେକୌଣସି ଉପାୟରେ ଭିତରକୁ ପ୍ରବେଶ କରି ମନ୍ତ୍ରୀଙ୍କ ସମ୍ମୁଖରେ ଉଭା ହୋଇ ସେ ଆତ୍ମପରିଚୟ ଦେବେ - ମୁଁ ହେଉଛି ତୋର ସେହି ଦଗ୍ଧୀଭୂତା ମା' । ଆଁଜି ମଧ୍ୟ ବଞ୍ଚିଛି ଏବଂ ତୋର କାର୍ଯ୍ୟକଳାପ ଦେଖୁଛି ।

ଫାଟକ ନିକଟରୁ ଦଶ ବାର ହାତ ଦୂରରେ ପହଞ୍ଚିଲା ବେଳକୁ ମନ୍ତ୍ରୀଙ୍କ ଗାଡ଼ି ଦ୍ରୁତ ଗତିରେ ବାହାରି ଚାଲିଗଲା ବିପରୀତ ଦିଗରେ । ସେହି ସମୟରେ ଜଣେ କେହି ପଛରୁ ଡାକ ଦେଲା, ''ଏ ଅନାମୀ ବୁଢ଼ୀ ! ଆରେ, ତୋ ଆଗ ବାବୁ ଘରଛାଡ଼ି ଚାଲିଗଲେ ବୋଲି ତୁ କୁଆଡ଼େ ବାହାରି ଚାଲିଯାଉଛୁ ? ଆ, ମୋ ଘରେ ରଖିବି । ରହିବାପାଇଁ ଭଲ ଜାଗା ଦେବି । ଭଲ ଖାଇବୁ । ବେଶି ବେତନ ଦେବି ।''

ପାଖକୁ ଆସିଗଲେ ଦୁର୍ଜୟ ସିଂଙ୍କ ପଡ଼ୋଶୀ ଭାବରେ ରହିଥିବା ବାଘା ସିଂ ନାମକ ପ୍ରହରୀ । ମମତା ନିଜ ସ୍ଥାନରେ ଅଟକିଗଲେ । ପଚାରିଲେ, ''ମନ୍ତ୍ରୀମହୋଦୟ ଏତେ ଶୀଘ୍ର କୁଆଡ଼େ ବାହାରିଗଲେ ? ତାଙ୍କ ନିଜ ଅଞ୍ଚଳର ଲୋକ ବୋଲି ଆଶ୍ରୟ ମାଗିବା ଲାଗି ଆସିଥିଲି । ସେ ଫେରିଆସିବା ପର୍ଯ୍ୟନ୍ତ ଏହିଠାରେ ଅପେକ୍ଷା କରିବି ।''

''ମନ୍ତ୍ରୀ ପୂରା ତିନିମାସ ପାଇଁ ବିଦେଶ ଗସ୍ତରେ ବାହାରିଗଲେ । ଅନେକ ଦେଶରେ କୂଟନୈତିକ କାର୍ଯ୍ୟ ସମ୍ପାଦନ କରିବାକୁ ହେବ । ତୁ ସେତେପର୍ଯ୍ୟନ୍ତ କ'ଣ ଫାଟକ ଆଗରେ ଅପେକ୍ଷା କରିବୁ ? ଚାଲ୍, ମୋ ସାଙ୍ଗରେ । ମୋ ଘରେ ତୋତେ ନୌକରାଣୀ ରଖିବି ।''

ଦୁଃଖ ଓ ହତାଶାର ଦୀର୍ଘଶ୍ୱାସ ଛାଡ଼ି ମମତା କହିଲେ, ''ଅନେକ ଦିନ ଆଗରୁ ଗାଁ ଛାଡ଼ି ଦିଲ୍ଲୀରେ ଅଛି । କିଛି ଦିନ ପାଇଁ ନିଜ ଅଞ୍ଚଳରେ ବୁଲିଆସିଲେ, ଆପଣଙ୍କ ଘରେ ରହିବି ।''

''ହଁ, ମୋର ବି ଗାଁ କଥା ମନେପଡୁଛି । ଯିବାକୁ ଇଚ୍ଛା ହେଉଛି । କିନ୍ତୁ ଅନୁମତି ମିଳୁ ନାହିଁ । ତୁ ଯଦି ଶୀଘ୍ର ଫେରିଆସିବୁ, ତେବେ ଯାଇପାରୁ । ମୋତେ କଥା ଦେଇ ଯା, ନିଶ୍ଚୟ ଫେରିଆସି ମୋ ଘରେ ରହିବୁ ।''

କଥାବାର୍ତ୍ତାର ସେହି ସୁଯୋଗରେ ମମତାଦେବୀ ପଚାରିଦେଲେ, ''ମନ୍ତ୍ରୀଙ୍କର ଜଣେ ଭାଇ ଅଛନ୍ତି । ତାଙ୍କ ନାମ ସ୍ୱାଧୀନବାବୁ । ସେ କେଉଁଠାରେ ଅଛନ୍ତି ଆପଣ କହିପାରିବେ ?

ଈଷତ୍ ଚିନ୍ତାକରି ବାଘା ସିଂ ଉତ୍ତର ଦେଲେ, ''ହଁ, ହଁ, ସ୍ୱରାଜବାବୁଙ୍କ ଭାଇ ସ୍ୱାଧୀନବାବୁ ! ସେ ଏବେ ବୋମ୍ବାଇ ସହରରେ ଜଣେ ସଚିବ ଅଛନ୍ତି ବୋଲି ଶୁଣିଛି । ଥରେ ଦୁଇଥର ଆମ ମନ୍ତ୍ରୀଙ୍କ ପାଖକୁ ଆସିଥିଲେ । ତୁ ବୋମ୍ବାଇ ଯାଇ ମରିବୁ କାହିଁକି, ବରଂ ଏହି ଦିଲ୍ଲୀରେ ରହିଯା ।''

''ମୁଁ କେବଳ ପଚାରୁଥିଲି । ସ୍ୱାଧୀନବାବୁ ଯେତେହେଲେ ଆମ ଅଞ୍ଚଳର ଲୋକ । ମୁଁ ଗାଁରୁ ଫେରିଆସିଲେ ଆପଣଙ୍କ ଘରେ ରହିବି । କଥା ଦେଉଛି ।''

ହୁଇସିଲ୍ ଶବ୍ଦ ଶୁଣି ବାଘା ସିଂ ତାଙ୍କ ଉପରିସ୍ଥ ପୁଲିସ କର୍ମଚାରୀଙ୍କ ନିକଟକୁ ଦୌଡ଼ିଗଲେ । ମମତାଦେବୀ ଚାଲିଲେ ଷ୍ଟେସନ ଦିଗରେ ।

ସେଦିନ ଅନେକ ରାତିରେ ବୋମ୍ବାଇ ଅଭିମୁଖେ ଗାଡ଼ି ଛାଡ଼ିଲା । ବିନା ଟିକଟରେ ଉଠୁଥିବା ଯାତ୍ରୀମାନେ ଡବା ଜଗୁଆଳି ହାତରେ ପାଞ୍ଚ ଦଶ ଟଙ୍କା ଗୁଞ୍ଜିଦେଇ ଭିତରେ ବସିଯାଉଥାନ୍ତି । ମମତାଦେବୀଙ୍କ ମୁହଁ ଦେଖି ଭିତରକୁ ଛାଡ଼ି ଦିଆଗଲା । ବେଞ୍ଚ ଉପରେ ନ ବସି ସେ ତଳେ ବସିଲେ । ପାଖରେ ଥାଏ ଲୁଗାପୁଟୁଳିଟାଏ ଓ ଦୁର୍ଜୟ ସିଂ ଦେଇଥିବା ଖଣ୍ଡିଏ ବାଡ଼ି । ପଣତ କାନିରେ ବାନ୍ଧି ରଖିଥାନ୍ତି ଅପର୍ଣ୍ଣା ଦେଇଥିବା କେତେଖଣ୍ଡି ପାଞ୍ଚଟଙ୍କିଆ ନୋଟ । ରାତିସାରା ଆଖି ବୁଲାଇ ସେ ଭାବୁଥାନ୍ତି, ପୁଅ ସ୍ୱରାଜର କୀର୍ତ୍ତିକଳାପ ସମ୍ପର୍କରେ ଯେଉଁ କାହାଣୀ ଶୁଣିଲେ, ତାହା ସତ୍ୟ ନା ମିଥ୍ୟା !

ତହିଁ ପରଦିନ ବୋମ୍ବେ ଷ୍ଟେସନରେ ଗାଡ଼ି ରହିଲା । ବାହାରକୁ ଆସି କ୍ଷୁଧା ଅନୁଭବ କଲେ ସୁଦ୍ଧା ପାଟିକୁ କିଛି ଦେବାଲାଗି ଇଚ୍ଛା ହେଲା ନାହିଁ । ପଚାରି ପଚାରି ରାସ୍ତାର ନାମ ଶୁଣି ଚାଲିଲେ ସଚିବାଳୟ ମାର୍ଗ ଦିଗକୁ । ପ୍ରକାଣ୍ଡ ସହର, ଅସରନ୍ତି ଜନରାଶି । ସମସ୍ତେ କର୍ମବ୍ୟସ୍ତ । ସନ୍ଧ୍ୟାବେଳେ ଦିଶିଲା ଆଲୋକ ସୁଶୋଭିତ ସେହି ମାର୍ଗଟି । ଦେହରେ ଶକ୍ତି ନ ଥାଏ । ପେଟରେ ଖାଦ୍ୟ ନ ଥାଏ । ପୁଅ ସ୍ୱାଧୀନର ବାସଗୃହ ଆବିଷ୍କାର କରିବା କଷ୍ଟକର ଜାଣି ଫୁଟପାଥ୍ ଉପରେ ଶୋଇପଡ଼ିଲେ । ରାତି ବଢ଼ି ଚାଲିବା ସଙ୍ଗେ ସହରର ଦୀନଦୁଃଖୀମାନେ ପାଖକୁ ପାଖ ଲାଗି ଫୁଟପାଥ୍ ଉପରେ ଶୋଇ ଯାଉଥାନ୍ତି । ମମତା ଜାଣିପାରିଲେ, ମହାନଗରୀର ଫୁଟପାଥ୍‌ଗୁଡ଼ିକ ହେଉଛି ଅସଂଖ୍ୟ ଦିନମଜୁରିଆଙ୍କ ରାତ୍ରିଯାପନ ଲାଗି ଏକମାତ୍ର ସୁଖ ସ୍ଥଳୀ । ଦିଲ୍ଲୀରେ ଯେଉଁ ଦୃଶ୍ୟ ସେ ଦେଖିଥିଲେ, ବୋମ୍ବାଇରେ ମଧ୍ୟ ସେହି ଦୃଶ୍ୟ ଦେଖିଲେ । କଲିକତା ସହର କଥା ଆଗରୁ ଜଣାଥାଏ ।

"ଆବେ ବୁଢ଼ୀ, ମୋ ଜାଗାରେ ଶୋଇଲୁ କାହିଁକି ? ଯା, ଉଠି ଯା ।" ପାଟି କଲେ ଜଣେ ମଧ୍ୟବୟସ୍କ ବ୍ୟକ୍ତି ।

"ଭାଇ, ଏଇଟା ଆପଣଙ୍କ ଜାଗା ବୋଲି ମୁଁ ଜାଣି ନ ଥିଲି । ଭୁଲ୍‌ରେ ଶୋଇପଡ଼ିଛି । ଉଠି ଚାଲିଯିବି । ସହରକୁ ନୂଆ ଆସିଛି । ଦୁଇଦିନ ଖାଇ ନାହିଁ । ଉଠି ପାରୁ ନାହିଁ ।" ଏହି କେତୋଟି ବାକ୍ୟ ଉଚ୍ଚାରଣ କରି ମମତା ତାଙ୍କ ପଣତକାନିରେ ବନ୍ଧାଥିବା ନୋଟଗୁଡ଼ିକ ଭିତରୁ ଖଣ୍ଡିଏ ପାଞ୍ଚଟଙ୍କିଆ ନୋଟ ବାହାର କରି ସେହି ଅପରିଚିତ ଲୋକଙ୍କ ହାତକୁ ବଢ଼ାଇଦେଇ ଅନୁରୋଧ କଲେ, "ଭାଇ, କିଛି ଖାଇବା ଜିନିଷ ଆଣ । ତୁମେ ଓ ମୁଁ ସାଙ୍ଗରେ ଖାଇବା ।"

ଆଚମ୍ବିତ ମୁଖରେ ନୋଟଖଣ୍ଡିକ ଧରିନେଇ ଲୋକଟି ପଚାରିଲା, ''ତୁ କୁଷ୍ଠରୋଗୀ ନୁହେଁ ତ ?''

''ନା, ମୋ ଦେହ ଓ ମୁହଁ ପୋଡ଼ିଯାଇଛି ବୋଲି ଏପରି ଅବସ୍ଥା । ମୁଁ ରୋଗୀ ନୁହେଁ । ଦେଖ ମୋ ହାତ ଦୁଇଟା ।''

''ମୋତେ ଭାଇ ବୋଲି ଡାକିଛୁ । ମୁଁ ତୋତେ ଭଉଣୀ ପରି ଭାବିବି । କିନ୍ତୁ କହିଦେଉଛି, ଏଠାରେ ଜଣା ବା ଅଜଣା କାହାରି ହାତକୁ ଟଙ୍କା ଧରାଇଦେବୁ ନାହିଁ । ପୁଣି ପାଞ୍ଚ ଟଙ୍କା ! ଏଠାରେ ସମସ୍ତେ ଚୋର ବା ଠକ । ତୋ ପଣତକାନିରେ ଟଙ୍କା ବନ୍ଧାଅଛି ଜାଣିଲେ ଛୁରି ଭୁସି ଦେଇ ନେଇ ଚାଲିଯିବେ ।''

ଲୋକଟି ଦୌଡ଼ି ଦୌଡ଼ି ରାସ୍ତା ଡେଇଁ ଚାଲିଗଲା । ଅଳ୍ପ ସମୟ ପରେ ଶୁଖିଲା ଶାଳ ପତ୍ରରେ ଦୁଇ ପୁଡ଼ିଆ ଖାଦ୍ୟ ଧରି ଫେରି ଆସିଲା । ମମତା ହାତକୁ ଗୋଟିଏ ପୁଡ଼ିଆ ଧରାଇ ଦେଇ ଅନ୍ୟଟିରେ ଥିବା ରୁଟି ଓ ପରିବା ଭଜା ଖାଇବାକୁ ଲାଗିଗଲା ।

ଶୁଖିଲା ରୋଟି ହେଲେ ମଧ୍ୟ ମମତା ଆନନ୍ଦରେ ଭୋଜନ କଲେ । ସେଥିମଧ୍ୟରେ ଲୋକଟି କେଉଁ ଅଜ୍ଞାତ ଜାଗାରୁ ଦୁଇଟି ପ୍ଲାଷ୍ଟିକ୍ ପାଣି ବୋତଲ ଧରି ଫେରିଲା । ମମତାଙ୍କ ହାତକୁ ଗୋଟାଏ ଧରାଇ ଦେଇ ଅନ୍ୟ ବୋତଲଟି ଏକା ନିଶ୍ୱାସରେ ପିଇ ପକାଇଲା ।

ମମତା ସେଠାରୁ ଚାଲିଯିବାକୁ ଉଦ୍ୟମ କରିବା ଦେଖି ଲୋକଟି କହିଲା, ''ତୁ ଏଇଠି ଶୋଇଥା । ମୁଁ ଆଉ ଗୋଟିଏ ଜାଗା ଖୋଜି ନେବି । ଏଠାରୁ ଯେଉଁ ବଡ଼ ରାସ୍ତାଟି ଯାଇଛି, ସେଆଡ଼େ ଗଲେ ବିପଦ ଅଛି । ରାସ୍ତାର ଦୁଇ ପାଖରେ ବଡ଼ ବଡ଼ ସରକାରୀ ଚାକିରିଆମାନଙ୍କ ରହିବା ଘର । ସେମାନେ ଚୋର ଭୟରେ ଆଲସିସିଆନ କୁକୁର ପାଳିଛନ୍ତି । ସେଥିପାଇଁ ସେ ରାସ୍ତାର ଫୁଟପାଥ୍‌କୁ କେହି ଯାଆନ୍ତି ନାହିଁ । ମୁଁ ଯାଉଛି ସେହି ଦୋକାନ ଘର ଆଗରେ ଶୋଇବି ।''

ଲୋକଟି ଚାଲି ଯାଉଥିଲା । କିନ୍ତୁ ହଠାତ୍ ଅଟକି ଗଲା । ପଚାରିଲା, ''ତୁ ଏ ସହରକୁ କାହିଁକି ଆସିଛୁ ? ବୋଧହୁଏ ଭିଖ ମାଗି ବଞ୍ଚିବୁ ବୋଲି । କିନ୍ତୁ ଏଠାରେ ପଇସାଟିଏ ବି କେହି ଦିଅନ୍ତି ନାହିଁ । ଯଦି କାମ କରିପାରିବୁ ତେବେ ବଞ୍ଚିବୁ ।''

''ଭାଇ, ମୁଁ କାମ କରି ବଞ୍ଚିବାକୁ ଆସିଛି । ବାସନ ମାଜି, ଲୁଗା କାଚି, ଘର ଝାଡୁଦେଇ, ବାଥରୁମ୍ ସଫାକରି, ଜୋତା ପଲିସ କରି ପେଟ ପାଳିବି ବୋଲି ଆଶା ରଖିଛି । ଆମ ଅଞ୍ଚଳର ଜଣେ ଲୋକ ଏହି ସଚିବାଳୟ ମାର୍ଗରେ ଅଛନ୍ତି । ତାଙ୍କ ନାମ ସ୍ୱାଧୀନବାବୁ । ତାଙ୍କ ଘରଟି ପାଇଗଲେ ସେ ମୋତେ ଚାକରାଣୀ ରଖିପାରନ୍ତି ।''

ଲୋକଟି ହସି ଉଠିଲା । ''ଯେଉଁ ବାବୁଙ୍କ ନାମ କହିଲୁ, ତାଙ୍କ ଘର ମୁଁ ଜାଣିଛି । ସେ ବାବୁଟି ଖାମ୍‌ଖିଆଲି ଲୋକ । ତୋ ମୁହଁ ଦେଖିଲେ ରାଗରେ ଥରିଯିବେ । ତା'ଛଡ଼ା ଏହି ଚାକିରିଆମାନେ ଚାକର ଚାକରାଣୀ ରଖନ୍ତି ନାହିଁ । ସେମାନଙ୍କ ଚପରାସୀମାନେ ସବୁ କାମ କରନ୍ତି । ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଯଦି ଘରକୁ ଘର ଯାଇ ବାସନ ମାଜିପାରିବୁ, ସେପରି କାମ ମୁଁ ଯୋଗାଡ଼ କରିଦେଇପାରିବି । ରାତି ଭିତରେ ଭାବି ରଖିଥା । ସକାଳେ ଦେଖା ହେଲେ କହିବୁ ।'' ଲୋକଟି ତୁରନ୍ତ ଶୋଇବାଲାଗି ଚାଲିଗଲା ।

ରାତି ପାହିଲା ବେଳକୁ ଫୁଟପାଥ୍‌ଟି ଜନଶୂନ୍ୟ ଦେଖାଗଲା । ମମତା ଦେଖିଲେ, ଗତ ରାତିର ସେହି ଅପରିଚିତ ଲୋକଟି ଦୂରବର୍ତ୍ତୀ ଗୋଟିଏ ପାଣି ପାଇପ୍ ପାଖରେ ଗାଧୋଉଛି । ସେ ନିଜେ ସେହିଠାରେ ମୁହଁ ଧୋଇବାଲାଗି ପହଞ୍ଚିଗଲେ ।

''ତୋ ନାମ କ'ଣ ?'' ସେ ପଚାରିଲା ।

''ଅନାମୀ,'' ଉତ୍ତର ଦେଲେ ମମତାଦେବୀ ।

''ପାଖରେ ମହିଳାମାନଙ୍କ ଗାଧୁଆ ଘର ରହିଛି । ସେଠାରୁ ସଫାସୁତୁରା ହୋଇ ବାହାରିଆସିଲେ ତୋତେ ବାବୁମାନଙ୍କ ଘରକୁ ନେଇଯିବି । ମୁଁ ନୌକରୀ କରେ । କାମ ହେଉଛି ମେହେନ୍ତରମାନଙ୍କ କାମ ତଦାରଖ କରିବା । ମୋତେ ବାବୁମାନେ ଜାଣନ୍ତି । ରହିବାକୁ ଘର ନାହିଁ ବୋଲି ଫୁଟପାଥ୍ ଉପରେ ଥାଏଁ ।''

ମମତାଦେବୀ ଗାଧୋଇ ସାରି ପରିଷ୍କାର ଥିବା ଲୁଗା ଖଣ୍ଡିକ ପିନ୍ଧି ବାହାରିଆସିଲେ । ''ଭାଇ, ମୋତେ ପ୍ରଥମେ ସ୍ୱାଧୀନବାବୁଙ୍କ ଘରକୁ ନେଇଚାଲ । ସେହିଠାରୁ କାମ ଖୋଜିବା ଆରମ୍ଭ କରିବା ।''

ଏଗାର ନମ୍ବର ପ୍ଲଟରେ ଥାଏ ସ୍ୱାଧୀନବାବୁଙ୍କ ସରକାରୀ ବାସଗୃହ । ଗେଟ୍ ପାଖରେ ପହଞ୍ଚିଲା କ୍ଷଣି ଜଣେ ଚପରାସୀ ବାହାରି ପଡ଼ି ପାଟି କଲା, ''ମେମ୍‌ସାହେବ ମନ୍ଦିର ଯିବାକୁ ବାହାରିଲେଣି । ଏପରି ଗୋଟାଏ ଅସୁରୁଣୀକୁ ସାଙ୍ଗରେ ଧରି ଆସିଛୁ କାହିଁକିରେ ମୁରଲୀ ? ଏହାର ମୁହଁ ଦେଖିଲେ ବାବୁଆଣୀ ଦେବୀଙ୍କ ମୁଖ ଦର୍ଶନ କରିବେ କିପରି କହିଲୁ ?''

''ତୁ ଯାହା କହୁଛୁ, ବାବୁଆଣୀ ସେପରି କଥା ଭାବିପାରିବେ ନାହିଁ । ମୁଁ ତାଙ୍କ ମନକଥା ଜାଣେ । ଏ ବିଚାରୀ ନିଆଁରେ ପୋଡ଼ି ଯାଇଛି ବୋଲି ତୁମ ଆଖିକୁ ଦିଶିଲା ଗୋଟିଏ ଅସୁରୁଣୀ । କିନ୍ତୁ ମେମ୍‌ସାହେବ ଜାଣନ୍ତି ଯେ ଏହି ପୋଡ଼ା ଦେହ ମଧ୍ୟରେ ବି ଆତ୍ମା ରହିଛି । ସେ ଭଲ ଭାବରେ ଜାଣନ୍ତି ଯେ ଆତ୍ମା ହେଉଛି ପରମାତ୍ମାର ଅଂଶ । ପଥର ମୂର୍ତ୍ତି ମଧ୍ୟରେ କିଛି ନାହିଁ ।'' ସ୍ପଷ୍ଟ ଭାଷାରେ ଉତ୍ତର ଦେଲା ମୁରଲୀ ମେହେନ୍ତର ।

ଏତିକିବେଳେ ଭିତରୁ ବାହାରି ଆସିଲେ ସ୍ୱାଧୀନବାବୁଙ୍କ ଧର୍ମପତ୍ନୀ ମନ୍ଦାକିନୀଦେବୀ । ମମତାଙ୍କ କାନପାଖରେ ମୁରଲୀ କହିଲା, ''ଏ ଜଣେ ଧର୍ମପ୍ରାଣା ମହିଳା । ପ୍ରତିଦିନ ସକାଳେ ଫୁଲ ଚାଙ୍ଗୁଡ଼ିଟିଏ ହାତରେ ଧରି ଦେବୀ ମନ୍ଦିରକୁ ଯାଆନ୍ତି । ସେଠାରେ ଭଗବତୀଙ୍କ ମୂର୍ତ୍ତି ଆଗରେ ଫୁଲ ରଖି ପ୍ରାର୍ଥନା କରନ୍ତି ।''

ମନ୍ଦାକିନୀ ଗେଟ ପାଖରେ ପହଞ୍ଚିଲା ବେଳକୁ ମମତାଦେବୀ ନିଜ ମୁହଁ ଉପରେ ଓଢ଼ଣା ଢାଙ୍କି ରଖିଥାନ୍ତି । ତଥାପି ତାଙ୍କ ଗୋଡ଼ ଦୁଇଟି ଉପରେ ବାବୁଆଣୀଙ୍କ ଦୃଷ୍ଟି ପଡ଼ିଗଲା । ମୁରଲୀ ପରିଚିତ ଲୋକ । ତାକୁ ପ୍ରଶ୍ନ କଲେ, ''ଏ ମହିଳାଟି କିଏ ?''

''ମା', ଏ ଗୋଟାଏ ଅନାଥିନୀ । ନିଆଁରେ ଦେହ ଓ ମୁହଁ ପୋଡ଼ିଯାଇଛି । ତଥାପି ହାତ ଦୁଇଟା ଭଲ ଅଛି ବୋଲି ସବୁ କାମ କରିପାରେ । ଆପଣଙ୍କ ଘରେ ନୌକରାଣୀ ଦରକାର ଥିଲେ ରହିଯିବ । ନ ହେଲେ, ଆଉ କାହାରି ଘରେ ରଖାଇ ଦେବି ।''

''ତାକୁ ଦୁଆରକୁ ନେଇ ଯା । ମୁଁ ମନ୍ଦିରରୁ ଫେରିଲା ବେଳକୁ ବାବୁ ନିଦରୁ ଉଠି ସାରିଥିବେ । ତାଙ୍କ ସହିତ କଥାବାର୍ତ୍ତା କରିବୁ,'' କହିଗଲେ ମନ୍ଦାକିନୀଦେବୀ ।

ମୁରଲୀ ଧୀର କଣ୍ଠରେ ମମତାଙ୍କୁ ଜଣାଇଦେଲା, ''ମେମ୍‌ସାହେବଙ୍କ ବ୍ୟବହାର ଦେଖିଲ । ଅଥଚ ତାଙ୍କ ସ୍ୱାମୀ ଗୋଟିଏ ଅମଣିଷ । ମଦ ପିଇ ଶୁଅନ୍ତି, ବିଳମ୍ବରେ ଉଠନ୍ତି, ସ୍ତ୍ରୀଙ୍କୁ ମାଡ଼ ଦିଅନ୍ତି ଏବଂ ଆମମାନଙ୍କ ଭଳି ଲୋକଙ୍କୁ ପଶୁ ବୋଲି ଭାବନ୍ତି ।''

ଘର ଭିତରୁ ଶିଶୁଟିର କ୍ରନ୍ଦନ ଧ୍ୱନି ଶୁଭିଲା । ମମତାଦେବୀ ପଚାରିଲେ, ''ସ୍ୱାଧୀନବାବୁଙ୍କ ପିଲାପିଲି ଅଛନ୍ତି ?''

''ଝିଅଟି କାନ୍ଦୁଛି, ଶୁଣିପାରୁ ନାହିଁ ? ମା' ଫେରିଲା ପର୍ଯ୍ୟନ୍ତ ସେହିପରି ରଡ଼ି ଛାଡୁଥିବ । ବାପାଙ୍କ ନିଦ ଭାଙ୍ଗିବ ନାହିଁ । ଚପରାସୀଟା ଆସି ଛୁଆକୁ ଉଠାଇବ ।''

ମମତାଦେବୀଙ୍କ ପ୍ରାଣରେ ଲାଗି ରହିଥାଏ ଆନନ୍ଦ ଓ ନିରାନନ୍ଦର ଝଡ଼ । ନିଜ ବୋହୂକୁ ଆଖିରେ ଦେଖିପାରିଲେ । ପୁଣି ନାତୁଣୀଟିର କ୍ରନ୍ଦନ ଶୁଣିଲେ । ଅଳ୍ପ ସମୟ ପରେ ଦେଖିପାରିବେ ପୁଅ ସ୍ୱାଧୀନଙ୍କୁ । ଅପରପକ୍ଷରେ ପୁଅ ମଦ୍ୟପ ଓ ଅମଣିଷ ବୋଲି ମୁରଲୀ ପାଖରୁ ଶୁଣି ତାଙ୍କର ଯେଉଁ ଦୁଃଖ ହେଲା, ତାହା ସହ୍ୟ କରିବା କଷ୍ଟକର ହେଉଥାଏ । ସ୍ଥିର କଲେ, ସ୍ୱରାଜ ନିକଟରେ ନିଜର ପରିଚୟ ଦେଇପାରିଲେ ନାହିଁ, କିନ୍ତୁ ସ୍ୱାଧୀନ ଆଗରେ କାଳବିଳମ୍ବ ନ କରି ନିଜର ପରିଚୟ ଦେବେ ଏବଂ ମାତୃତ୍ୱର କର୍ତ୍ତୃତ୍ୱ ପ୍ରୟୋଗ କରିବେ ।

ପିଣ୍ଡା ତଳେ ମୁରଲୀ ଓ ମମତା ଛିଡ଼ା ରହିଥାନ୍ତି । ଚପରାସୀ ଘରଭିତରକୁ ଯାଇ କାନ୍ଦୁଥିବା ପିଲାଟି ପାଟିରେ ଦୁଧ ବୋତଲଟା ଲଗାଇ ଦେଲା । ତତ୍‌କ୍ଷଣାତ୍ ଛୁଆଟି ଏପରି ଯନ୍ତ୍ରଣାକାତର ସ୍ୱରରେ କ୍ରନ୍ଦନ କରିବାକୁ ଲାଗିଲା ଯେ ମମତାଦେବୀ ସହ୍ୟ କରିପାରିଲେ ନାହିଁ । ମୁରଲୀ କିମ୍ବା ଚପରାସୀର ଅନୁମତି ନ ନେଇ ସେ ଭିତରକୁ ଦୌଡ଼ିଯାଇ ଛୁଆର ଶଯ୍ୟା ପାଖରେ ଛିଡ଼ା ହୋଇଗଲେ । ଦେଖିଲେ, ଦୁଧ ବୋତଲର ମୁହଁ ପାଖରେ ଗୁଡ଼ାଏ ପିମ୍ପୁଡ଼ି । କେତେଗୁଡ଼ାଏ ପିମ୍ପୁଡ଼ି କାମୁଡ଼ି ଧରିଛନ୍ତି ପିଲାଟିର ଓଠ । ସଙ୍ଗେ ସଙ୍ଗେ ସେଗୁଡ଼ିକୁ କାଢ଼ି ପକାଇ ମମତା ଶିଶୁଟିକୁ ଖଣ୍ଡିଏ ଚଦର ଉପରେ ରଖି ଓ ନିଜର କାନ୍ଧରେ ଶୁଆଇ ରଖି ପିଠି ଆଉଁଶିବା ଦ୍ୱାରା ଝିଅଟି ଚୁପ୍ ପଡ଼ିଲା ।

ମନ୍ଦାକିନୀଦେବୀ ଫେରିଲାବେଳକୁ ଝିଅ ଶୋଇଥାଏ ମମତାଙ୍କ କାନ୍ଧରେ । ଧରିନେବାପାଇଁ ମା' ହାତ ବଢ଼ାଇଲାମାତ୍ରେ ଛୁଆଟି ମୁହଁ ଫେରାଇନେଲା । ମୁରଲୀ କହିଲା, ''ମା, ଏହି ସ୍ତ୍ରୀଲୋକଟାକୁ ଚାକରାଣୀ ରଖନ୍ତୁ । ଛୁଆର ମୂତକନା ଧୋଇବ, ବାସନ ମାଜିବ, ଘରଦ୍ୱାର ସଫା କରିବ, ସବୁ କାମ ଚଳାଇ ନେବ ।''

ମନ୍ଦାକିନୀ ଉତ୍ତର ଦେବା ପୂର୍ବରୁ ସ୍ୱାଧୀନବାବୁ ତାଙ୍କ ବେଡ୍‌ରୁମ୍‌ରୁ ବାହାରି ପଡ଼ିଲେ । କୁତ୍ସିତା ଗୋଟିଏ ନୌକରାଣୀ କାନ୍ଧରେ ଛୁଆକୁ ଦେଖି କ୍ରୋଧ ସମ୍ଭାଳି ନ ପାରି ନିଜ ସ୍ତ୍ରୀଙ୍କୁ ଗାଳି ଦେଇ କହିଲେ, ''ବେନାରସୀ ପାଟ ଶାଢ଼ି ମଇଳା ହୋଇଯିବ ବୋଲି ଛୁଆକୁ ଗୋଟାଏ ମ୍ଳେଚ୍ଛ ହାତକୁ ଟେକିଦେଇଛୁ !''

ମୁରଲୀ ଜଣାଇଲା, ''ବାବୁ ଛୁଆଟି କାନ୍ଦି କାନ୍ଦି ଅସ୍ଥିର ହେଉଥିଲାବେଳକୁ ଇଏ କୋଳକୁ ଉଠାଇ ନେଇଛି । ତାକୁ କ୍ଷମା କରନ୍ତୁ ।''

ମମତାଦେବୀଙ୍କ ମୁଖରୁ ବାହାରି ଆସୁଥିଲା ଗୋଟିଏ ବାକ୍ୟ - ''ତୋତେ ମଧ ଏହି କୋଳରେ ଧରି ରଖିଥିଲିରେ ସ୍ୱାଧୀନ ।'' କିନ୍ତୁ ନୀରବ ରହିଲେ ।

ସ୍ୱାଧୀନବାବୁଙ୍କ ମୁଖରୁ ବାହାରିଲା ଏକ କର୍କଶ ବାକ୍ୟ, ''ନାକ, କାନ, ପାଟି ଓ ଗାଲ ନ ଥିବା ନୌକରାଣୀକୁ ଘରେ ରଖିଲେ ବନ୍ଧୁମାନଙ୍କ ଆଗରେ ମୋର ମାନସମ୍ମାନ ରହିବ ?''

''ସେ ରହିବ ମୋ ଛୁଆର କାମ କରିବାପାଇଁ । ତୁମ ବନ୍ଧୁମାନଙ୍କ ଆଗକୁ ବାହାରିଲେ ସିନା ମାନସମ୍ମାନ କଥା ଉଠିବ,'' ଉତ୍ତର ଦେଲେ ମନ୍ଦାକିନୀ ଦେବୀ ।

ବାକ୍‌ବିତଣ୍ଡା ପରେ ମୁରଲୀର ଭରସାରେ କିଛିଦିନ ଲାଗି ଚାକରାଣୀ ରଖିବାପାଇଁ ସ୍ୱାଧୀନବାବୁ ରାଜି ହେଲେ । ସେଥିସଙ୍ଗେ, ସର୍ତ୍ତଟିଏ ରଖିଦେଲେ, ''ଏହି କୁରୂପୀ ଘର ପଛରେ ଲୁଚି ରହିବ । କଦାପି ମୋ ଆଗକୁ କିମ୍ବା ଅନ୍ୟ କାହାରି ଆଗକୁ ବାହାରି ପାରିବ ନାହିଁ । ଯଦି ବାହାରିବ, ଗୁଳି କରିଦେବି ।''

ସେତେପର୍ଯ୍ୟନ୍ତ ସ୍ୱାଧୀନବାବୁଙ୍କ ନିଶା ଛାଡ଼ି ନ ଥାଏ ।

## ।। ୩୨ ।।

ସ୍ୱାଧୀନବାବୁଙ୍କ ଚାକରାଣୀ ଭାବରେ ଆଶ୍ରୟ ପାଇଲା ପରେ ପୁଅବୋହୂର ସ୍ୱଭାବ ଚରିତ୍ରର ପରିଚୟ ପାଇବାକୁ ମମତାଦେବୀଙ୍କୁ ବିଳମ୍ବ ହେଲା ନାହିଁ । ଅନୁଭବ କରିପାରୁଥିଲେ ସ୍ୱାମୀ ସ୍ତ୍ରୀ ମଧ୍ୟରେ ତିକ୍ତ ସମ୍ପର୍କ । ହୃଦୟଙ୍ଗମ କରୁଥିଲେ ଏକ ଅଶାନ୍ତ ପରିବାରର ପରିବେଶ । ମନେପଡୁଥାଏ ସ୍ୱାମୀଙ୍କ ନିକଟରୁ ଶୁଣିଥିବା ମହାମତି ଟଲଷ୍ଟୟଙ୍କ ଗୋଟିଏ ଉକ୍ତି - Happy families are all alike; every unhappy family is unhappy in its own way. ତେଣେ ନାତୁଣୀଟି ସବୁ ସମୟରେ ତାଙ୍କ ନିକଟରେ ରହିବାକୁ ଭଲ ପାଇବା ଦେଖି ଛୁଆଟି ପ୍ରତି ସ୍ନେହ ଦିନକୁ ଦିନ ବଢ଼ିବାକୁ ଲାଗିଲା ।

ବୋହୂ ମନ୍ଦାକିନୀ ଥାଆନ୍ତି ଗୋଟିଏ ରକ୍ଷଣଶୀଳ ସମ୍ଭ୍ରାନ୍ତ ପରିବାରର କନ୍ୟା । ନିୟମିତ ଭାବରେ ପ୍ରତିଦିନ ମନ୍ଦିରରେ ପୂଜାଅର୍ଚ୍ଚନା, ଏକାଦଶୀ ପ୍ରଭୃତି ତିଥିରେ ଉପବାସ ପାଳନ, ସମସ୍ତଙ୍କ ପ୍ରତି ମଧୁର ବ୍ୟବହାର, ଦୀନଦୁଃଖୀମାନଙ୍କ ପ୍ରତି ଦୟା ପ୍ରଦର୍ଶନ ପୂର୍ବକ ସେ ନିଜର ନିର୍ମଳ ଓ ପବିତ୍ର ମନୋଭାବର ପରିଚୟ ଦେଉଥିଲେ ।

ବିପରୀତ ଚରିତ୍ରର ବ୍ୟକ୍ତି ଥିଲେ ତାଙ୍କ ସ୍ୱାମୀ ସ୍ୱାଧୀନବାବୁ । ଦିନ ୯ଟା ଆଗରୁ ବିଛଣାରୁ ଉଠନ୍ତି ନାହିଁ, ଏଗାରଟାରେ ଅଫିସକୁ ବାହାରି ଯାଆନ୍ତି, ଗୋଟାଏ ସମୟରେ ମଧ୍ୟାହ୍ନ ଭୋଜନ ଲାଗି ଆସନ୍ତି, ଖାଇସାରି ଶୋଇ ପଡ଼ନ୍ତି, ତିନିଟା ବାଜିଲେ ପୁଣି ଡ୍ରାଇଭର ଅଫିସକୁ ନେଇଯାଏ, ସନ୍ଧ୍ୟାବେଳେ ସିଧା ଅଫିସରୁ ଚାଲିଯାଆନ୍ତି ଗୋଟିଏ ପଞ୍ଚତାରକା ହୋଟେଲର ନାଇଟ୍ କ୍ଲବକୁ । ସେଠାରେ ଅନେକ ରାତିଯାଏ ତାସ୍ ବା ଜୁଆ ଖେଳନ୍ତି, ଖେଳିସାରି ଡିନାର ଖାଆନ୍ତି ଏବଂ ମଧ୍ୟରାତ୍ରି ପରେ ଘରକୁ ଫେରିଲା ବେଳେ ଡ୍ରାଇଭର ତା'ର ନିଶାଗ୍ରସ୍ତ ହାକିମଙ୍କୁ ଧରି ଧରି ଶଯ୍ୟାକକ୍ଷକୁ ନେଇଯାଏ ଏବଂ ବିଛଣା ଉପରେ ଶୁଆଇଦିଏ । ମାତାଲ ଅବସ୍ଥାରେ ଥିଲାବେଳେ ଯଦି ମନ୍ଦାକିନୀ

କୌଣସି ବିଷୟରେ ପ୍ରଶ୍ନ କରନ୍ତି ଅଥବା ପ୍ରତିବାଦ ଜଣାନ୍ତି, ତାଙ୍କ ଉପରେ ବସିଯାଏ ମାଡ଼ କିମ୍ବା ଶୁଣିବାକୁ ହୁଏ ଅଶ୍ରାବ୍ୟ ତିରସ୍କାର ।

ଦିନେ ସକାଳେ କୁନିଝିଅଟିକୁ କୋଳରେ ଧରି ମନ୍ଦାକିନୀ ନିଜେ ନିଜକୁ କହୁଥାନ୍ତି - ‘‘ଝିଅଟିପାଇଁ ଖଣ୍ଡିଏ ନୂଆ ପୋଷାକ କିଣିବା ଲାଗି ବାବୁଙ୍କର ପଇସା ନାହିଁ, ଅଥଚ ପ୍ରତ୍ୟେକ ରାତିରେ ଯେଉଁ ସ୍କଚ୍ ହୁଇସ୍କି ବୋତଲଟି ପିଅନ୍ତି ତାହାର ଦାମ୍ ହେଉଛି ତେରଶହ ଟଙ୍କା । ଜୁଆ ଖେଳରେ ଯେଉଁଦିନ ହାରନ୍ତି, ସେ ଦିନ ପୁଣି ଦୁଇ ବୋତଲ ପିଇବାକୁ ହୁଏ । ଜିଣନ୍ତି କି ନାହିଁ ତାହା ଭଗବାନ୍‌ଙ୍କୁ ଜଣାଥିବ ।’’

ବୋହୂର ଅସ୍ପଷ୍ଟ ବାକ୍ୟଗୁଡ଼ାକ ମମତାଦେବୀଙ୍କ କର୍ଣ୍ଣକୁହରରେ ପ୍ରବେଶ କଲା । ପୁଅର ଦରମା ଯାହା ସେଥିରୁ ମାସକୁ ଚାଳିଶ ହଜାର ଟଙ୍କାର ମଦ ପିଇବା କେବେହେଲେ ସମ୍ଭବ ନୁହେଁ, ଚିନ୍ତା କଲେ ମମତାଦେବୀ । ଅନୁମାନ କରିପାରିଲେ, ପୁଅ ନିଶ୍ଚୟ ଦୁର୍ନୀତିରେ ବୁଡ଼ିଗଲାଣି । ମନେପଡ଼ିଲା, ତପସ୍ୱୀବାବୁଙ୍କ ନିକଟରୁ ଶୁଣିଥିବା ବ୍ରିଟିଶ ଅଫିସରମାନଙ୍କ କଥା । ସୁବିଶାଳ ସାମ୍ରାଜ୍ୟର ଶାସନ ନିମନ୍ତେ ସେମାନେ ନିଷ୍ଠାପର ଭାବରେ କର୍ତ୍ତବ୍ୟ ପାଳନ କରୁଥାନ୍ତି ଯଦିଚ ଭାରତବାସୀମାନଙ୍କ ପ୍ରତି ଦୁର୍ବ୍ୟବହାର କରିବା ଥାଏ ସେମାନଙ୍କର ଅଭ୍ୟାସ, କାରଣ ଶ୍ୱେତାଙ୍ଗ ହୋଇଥିବା ଯୋଗୁଁ ଜାତିଆଣ ମନୋଭାବ ପୋଷଣ କରିବା ଥିଲା ଗୋଟିଏ ପ୍ରକାର ସାମ୍ରାଜ୍ୟବାଦୀ ଆବଶ୍ୟକତା । ଅନ୍ୟ ପକ୍ଷରେ ନିଜ ନିଜ ମଧ୍ୟରେ ସଦ୍‌ଭାବ ବଜାୟ ରଖିବା ଉଦ୍ଦେଶ୍ୟରେ ରାତ୍ର କାଳରେ କ୍ଲବ ଘରେ ମଦ୍ୟପାନ କରନ୍ତି, ଶ୍ୱେତାଙ୍ଗୀମାନଙ୍କ ସହିତ ନାଚନ୍ତି, ଅଥଚ ମାତାଲ ହୁଅନ୍ତି ନାହିଁ । କାରଣ ମଦ୍ୟପ ବୋଲି ଜାଣିଲେ ଭାରତୀୟ ପ୍ରଜାମାନେ ଶାସକମାନଙ୍କୁ ଘୃଣା କରିବେ ବୋଲି ସେମାନଙ୍କୁ ଜଣାଯାଏ ।

ଏହି କଥା ମନେପକାଇ ମମତାଦେବୀ ନିଜ ପୁଅ ଓ ତାଙ୍କ ପରି ଅସଂଖ୍ୟ ବଡ଼ ବଡ଼ ଅଫିସରମାନଙ୍କ ମତିଗତି ଓ କାର୍ଯ୍ୟକଳାପ ବିଷୟ ଅନୁମାନ କରି ତୁଳନାତ୍ମକ ଭାବେ ଜାଣିପାରୁଥାନ୍ତି, ବିଦେଶୀ ଶାସକମାନଙ୍କର ସବୁପ୍ରକାର ଦୁର୍ଗୁଣ ଅନୁକରଣ କରିପାରିଛନ୍ତି ସ୍ୱଦେଶୀ ଶାସକମାନେ । ଅଥଚ ସେମାନଙ୍କର କର୍ତ୍ତବ୍ୟନିଷ୍ଠା, କର୍ମଶକ୍ତି କିମ୍ବା ଆତ୍ମସଂଯମ ଗୁଣମାନ ଅନୁକରଣ କରିପାରି ନାହାନ୍ତି ।

ଗୋଟିଏ ରାତ୍ରିର ମଧ୍ୟପ୍ରହର ପରେ ସ୍ୱାଧୀନବାବୁ ଅନ୍ୟ ଜଣେ ଅଫିସରଙ୍କ ସହିତ ଘରକୁ ଫେରିଲେ । ସେହି ବାବୁଙ୍କୁ ମମତାଦେବୀ ସ୍ୱାଧୀନ ପାଖକୁ ବାରମ୍ବାର ଆସୁଥିବା ଦେଖିଥାନ୍ତି । ସେ ଦିନ ନିଜ ପୁଅ ଏତେ ରାତିରେ କ’ଣ କଥାବାର୍ତ୍ତା କରିବ ତାହା ଶୁଣିବା ଲାଗି କୌତୂହଳୀ ହୋଇଉଠିଲେ । ମନ୍ଦାକିନୀ ଓ ନାତୁଣୀ ଗାଢ଼ ନିଦରେ

ଶୋଇଥାନ୍ତି । ପୁଅର ବେଡ୍‌ରୁମ୍ ଝରକାଗୁଡ଼ାକ ଫିଟା ରହିଥାଏ । ଗୋଟିଏ ଝରକା ତଳେ ଲୁଚି ବସି ସେ ଶୁଣିବାକୁ ଲାଗିଲେ ଉଭୟ ବନ୍ଧୁଙ୍କର ଅନ୍ତରଙ୍ଗ କଥାବାର୍ତ୍ତା ।

ସ୍ୱାଧୀନ କହୁଥାନ୍ତି, ''ଜୁଆ ଖେଳରେ ଆଜି ପ୍ରାୟ ଲକ୍ଷେ ଟଙ୍କା କ୍ଷତି ହେଲା । କିନ୍ତୁ ସେଥିପାଇଁ ପରବାୟ ନାହିଁ । ଗୋଟିଏ କାମରେ ଦଶଲକ୍ଷ ମିଳିଯିବ । ସେଥିରୁ ତୁମକୁ ମିଳିବ ଦୁଇ । ଚାରିକୋଟି ଟଙ୍କାର କାମ ଲାଗି ଯେଉଁ ଟେଣ୍ଡରଗୁଡ଼ିକ ଆସିଯାଇଛି, ସେଗୁଡ଼ାକର ସିଲଗୁଡ଼ିକୁ କୌଶଳରେ ଫିଟାଇ ସର୍ବନିମ୍ନ ଟେଣ୍ଡର ଟଙ୍କାର ଅଙ୍କଟା ଜାଣିନେଇ ଅଗରଓ୍ୱାଲ କଣ୍ଟ୍ରାକ୍ଟରକୁ ଜଣାଇଦେଲେ, ସେ କିଛି ଅଙ୍କ କମ୍ କରି ଦରଖାସ୍ତ କରିବ । ଆମେ ନିର୍ମାଣ କାର୍ଯ୍ୟଟା ତାକୁ ଦେଇଦେଲେ ସେ ଦଶଲକ୍ଷ ଦେବ ବୋଲି କହିଯାଇଛି ।''

''ଏତିକି କାମ ମୁଁ ସହଜରେ କରିଦେବି,'' ଉତ୍ତର ଦେଲେ ବନ୍ଧୁ ଅଫିସର । ଗାଡ଼ିରେ ବସି ସେ ଚାଲିଗଲା ପରେ ସ୍ୱାଧୀନବାବୁ ପିଇ ପକାଇଲେ ଗୋଟିଏ ବୋତଲ ହୁଇସ୍କି । ମମତାଦେବୀ ବିସ୍ମିତ ହେଲେ । ତାଙ୍କର ତିଳେମାତ୍ର ସନ୍ଦେହ ରହିଲା ନାହିଁ ଯେ, ସ୍ୱାଧୀନ ଓ ତାଙ୍କ ପରି ଅଫିସରମାନେ ଦେଶର ଶାସନତନ୍ତ୍ରକୁ ରସାତଳକୁ ନେଇଗଲେଣି ! ଧନ୍ୟ ମଦ୍ୟ, ଧନ୍ୟ ଦୁର୍ନୀତି, ଧନ୍ୟ ସରକାରୀ କଳ, ଧନ୍ୟ କଣ୍ଟ୍ରାକ୍ଟର ଦଳ ! ମର୍ମାହତ ଭାବରେ ମମତାଦେବୀ ବିଛଣା ଧରିଲେ । କଳ୍ପନାରାଜ୍ୟରେ ଭାସିଯାଇ ଭାବିବାକୁ ଲାଗିଲେ, ମନ୍ଦାକିନୀ ସମ୍ମୁଖରେ ନିଜର ପରିଚୟ ଦେଇ ଦୁଃଖଦୁର୍ଦ୍ଦଶାମାନ ବର୍ଣ୍ଣନା କଲେ ସେହି ସୁଯୋଗ୍ୟା ବୋହୂ ହିଁ ସ୍ୱାଧୀନ ଆଗରେ ତାଙ୍କ ପ୍ରକୃତ ପରିଚୟ ଦେଇପାରିବ । ସେତିକି ହୋଇପାରିଲେ, ସ୍ୱାଧୀନକୁ ସୁପଥକୁ ଫେରାଇ ଆଣିବା ଲାଗି ମମତାଦେବୀ ଆପ୍ରାଣ ଉଦ୍ୟମ କରିପାରିବେ ବୋଲି ନିଜକୁ ସାନ୍ତ୍ୱନା ଦେଲେ । ସେହି ସୁଯୋଗ ପ୍ରତି ଅପେକ୍ଷା କରିବା ବ୍ୟତୀତ ତାଙ୍କ ଆଗରେ ଅନ୍ୟ କୌଣସି ବିକଳ୍ପ ନ ଥିଲା ।

ଦିନ ପରେ ଦିନ ଗଡ଼ି ଯାଉଥାଏ । ସେଥିମଧ୍ୟରେ ମମତାଦେବୀ ଦେଖିପାରୁଥାନ୍ତି ଲାଞ୍ଚ ଓ ଉତ୍କୋଚ ଦେବା ଲାଗି କେଉଁ ପ୍ରକାର ଦଲାଲମାନେ ସ୍ୱାଧୀନ ନିକଟକୁ ଆସୁଥାଆନ୍ତି । ସେମାନଙ୍କୁ ଦେଖିପାରିଲେ ମମତାଙ୍କ ମନ ବିଦ୍ରୋହୀ ହୋଇ ଉଠୁଥାଏ । ଦିନେ ନା ଦିନେ ସେମାନଙ୍କୁ ଉପଯୁକ୍ତ ଶିକ୍ଷା ଦେଇ ସେ ପ୍ରମାଣ କରିଦେବେ ଯେ ତାଙ୍କ ସ୍ୱାମୀ ହୋଇଥିଲେ ସହିଦ, ବଡ଼ ପୁଅ ମଧ୍ୟ ସହିଦ୍, ଏବଂ ମା' ଭାବରେ ପୁଅକୁ ଶିକ୍ଷା ଦେବାର ଅଧିକାର ତାଙ୍କର ରହିଛି ।

ଅନ୍ୟ ଗୋଟିଏ ମଧ୍ୟରାତ୍ରି ପରେ ଖଣ୍ଡିଏ ଅସ୍ୱାଭାବିକ ଧରଣର ପ୍ରକାଣ୍ଡ ଗାଡ଼ି ପୋର୍ଟିକୋ ତଳେ ରହିଲା । ଆଗନ୍ତୁକ ଭଦ୍ରବ୍ୟକ୍ତିଙ୍କୁ ସମ୍ବର୍ଦ୍ଧନା ଜଣାଇ ଭିତରକୁ ପାଛୋଟି ନେବାପାଇଁ ସେ ରାତ୍ରିରେ ସ୍ୱାଧୀନବାବୁ ମଦ୍ୟପାନ କରି ନ ଥିଲେ । ପୃଥୁଳକାୟ ବ୍ୟକ୍ତିଙ୍କୁ ସଭକ୍ତି ପ୍ରଣାମ ଜଣାଇ ବେଡ଼ରୁମ୍ ଭିତରକୁ ନେଇ ଗଲା ପରେ ମମତାଦେବୀ ଝରକା ତଳେ ଲୁଚି ରହିଲେ ।

''ସ୍ୱରାଜବାବୁ ପୁଣି ନିର୍ବାଚନ ଲଢ଼ିବେ । କାଲି ରାତିରେ ଫୋନଦ୍ୱାରା ସାଂକେତିକ ଭାବରେ ଜଣାଇଦେଇଥିଲେ ଆଜି ରାତି ମଧ୍ୟରେ ଆପଣଙ୍କୁ ପଚାଶ ଲକ୍ଷ ଦେଇଦେବାକୁ । ଆଟାଚିଟା ଆପଣଙ୍କ ପଲଙ୍କ ଉପରେ ରହିଲା ।''

''ଭାଇ ମୋତେ ମଧ୍ୟ ଜଣାଇଥିଲେ ଯେ ଆପଣ ଆଜି ରାତି ମଧ୍ୟରେ ଆସିବେ । ତେଣୁ ଆଗ୍ରହ ସହକାରେ ଅପେକ୍ଷା କରିଥିଲି ।''

''ଭାଇଙ୍କୁ ମୋ ଲାଇସେନ୍ସ ବିଷୟଟା ମନେ ପକାଇଦେବେ । ସେହି କାଗଜଖଣ୍ଡିକ ପାଇଗଲେ ଯାହା ଆଜି ଦେଲି ସେତିକି ଟଙ୍କା ପୁଣିଥରେ ଦେବି ।''

''ସାତ ଦିନ ମଧ୍ୟରେ ଲାଇସେନ୍ସ ପାଇଯିବେ । ମୁଁ ଦାୟିତ୍ୱ ନେଉଛି । ମାଲାବାର ହିଲ୍ ତଳେ ମୋ ପାଇଁ ଖଣ୍ଡିଏ ଜାଗା ଠିକ୍ କରିବେ । ବୋମ୍ବେରେ ଘରଟିଏ ତୋଳିବି ବୋଲି ଆଶା ରଖିଛି ।''

''ଚେଷ୍ଟା କରିବି । ଯେଉଁ ବନ୍ଧୁ ସାହାଯ୍ୟ କରିବେ ସେ ଅନେକ ଦିନ ହେଲା ଏଠାକାର ସରକାର ପାଖରୁ ପରମିଟ୍‌ଟିଏ ପାଉ ନାହାନ୍ତି । ସେଥିପାଇଁ ଆପଣଙ୍କ ସାହାଯ୍ୟ ମିଳିଲେ ଆମେ କୃତଜ୍ଞ ରହିବୁଁ ।''

''ପରମିଟ ପାଇବା ଗୋଟାଏ ମାମୁଲି କଥା । ବିଭାଗୀୟ ସଚିବଙ୍କୁ କହି କରାଇ ଦେବି । ସେ ବିଷୟରେ ନିଶ୍ଚିନ୍ତ ରହନ୍ତୁ ।''

ମୁହୂର୍ତ୍ତକ ମଧ୍ୟରେ ଭଦ୍ରବ୍ୟକ୍ତି ଗାଡ଼ିରେ ବସି ଅନ୍ତର୍ଦ୍ଧାନ ହୋଇଗଲେ । ଆଲ୍‌ସିସିଆନଟାଏ ଗେଟ୍ ପାଖରେ ଭୋକୁଥାଏ । ତେଣେ ସ୍ୱାଧୀନବାବୁ ଚିରାଚରିତ ରୀତିରେ ବୋତଲେ ମଦ ପିଇଦେଇ ଘର ଭିତରୁ ଦରଜା ବନ୍ଦ କରି ଶୋଇପଡ଼ିଲେ ।

ବିଳମ୍ବରେ ଉଠିବା ପରିବର୍ତ୍ତେ ଘଡ଼ିରେ ଏଲାର୍ମ ଦେଇ ଶୋଇଥିବା ଯୋଗୁଁ ଅତି ପ୍ରତ୍ୟୁଷରେ ସଜବାଜ ହୋଇ ଶୟ୍ୟାକକ୍ଷରୁ ବାହାରିଲାବେଳକୁ ଡ୍ରାଇଭର ଷ୍ଟିୟରିଂ ଧରି ବସି ସାରିଥାଏ । ମନ୍ଦାକିନୀ ମନ୍ଦିର ଯିବାଲାଗି ପ୍ରସ୍ତୁତ ହୋଇ ସାରିଥାନ୍ତି । ଆଶ୍ଚର୍ଯ୍ୟ

ହୋଇ ପଚାରିଲେ, ''କେଉଁଆଡ଼େ ବାହାରିଛ ? ଆଜି ପରା ଝିଅର ଜନ୍ମଦିନ । ମଧ୍ୟାହ୍ନ ସୁଦ୍ଧା ଫେରିଆସିବ ତ ?''

''ଭାଇଙ୍କ ପାଖକୁ ଦିଲ୍ଲୀ ଯାଉଛି । ଆଜି ନୁହେଁ, ଆଗାମୀ କାଲି ବି ନୁହେଁ, ତିନିଦିନ ପରେ ଫେରିବି,'' ଗମ୍ଭୀର ଭାବରେ ଉତ୍ତର ଦେଲେ ସ୍ୱାଧୀନବାବୁ ।

''ଝିଅର ଜନ୍ମଦିବସରେ ରହିବ ନାହିଁ ?''

''ନା, ରହିପାରିବି ନାହିଁ । ଗତ ବର୍ଷ ପରି ଏ ବର୍ଷ ମଧ ମୋର ଦଶଜଣ ବନ୍ଧୁଙ୍କୁ ଫୋନରେ ନିମନ୍ତ୍ରଣ କରିଦେବ । ସେମାନଙ୍କ ତାଲିକା ତୁମ ପାଖରେ ଅଛି । ମୁଁ ନ ରହିଲେ କିଛି କ୍ଷତି ହେବ ନାହିଁ ।''

ଗାଡ଼ି ଛାଡ଼ିଦେଲା । ମନ୍ଦାକିନୀ ବିମର୍ଷ ମନରେ ଶୋଇଥିବା ଝିଅଟି ପାଖକୁ ଆସି ତା'ର କୋମଳ ମୁହଁକୁ ଚାହିଁ ରହି କହି ପକାଇଲେ, ''ପୁଅ ହୋଇ ଜନ୍ମ ହେଲୁ ନାହିଁ କାହିଁକିରେ ?''

ମମତାଦେବୀ ଜାଣିଥାନ୍ତି, ମନ୍ଦାକିନୀ ଅନ୍ତଃସତ୍ତ୍ୱା । ପ୍ରସବ ସମୟ ପାଖେଇ ଆସିଲାଣି । ମନରେ ଦୁଃଖ ହେଲା, ନିଜ୍ ଝିଅର ଜନ୍ମତିଥି ପ୍ରତି ଭ୍ରୂକ୍ଷେପ ନ କରି ସ୍ୱାଧୀନ ଚାଲିଗଲା ତା ଭାଇ ପାଖକୁ, ରାତିରେ ପାଇଥିବା ଟଙ୍କା ଆଟାଚିଟା ଦେଇଦେବାକୁ ।

ଫୁଲ ଚାଙ୍ଗୁଡ଼ି ହାତରେ ଧରି ମନ୍ଦାକିନୀ ବାହାରିଲେ ମନ୍ଦିର ଦିଗରେ । ମମତା କହିଲେ, ''ମା', ଆଜି ଝିଅର ଜନ୍ମ ଦିନ । ତାକୁ ମନ୍ଦିରକୁ ନେଇଗଲେ ଦେବୀଙ୍କ ଆଶୀର୍ବାଦ ମିଳିବ ।''

''ଅନାମିକା, ସୁନ୍ଦର କଥାଟିଏ କହିଲୁ ସତ । କିନ୍ତୁ ଛୁଆକୁ କାଖରେ ଧରି ମୁଁ ଏତେବାଟ ଚାଲିପାରିବି ନାହିଁ । ଛୁଆ ମଧ ସେଠାରେ କାନ୍ଦିପାରେ ।''

''ମା', ମୁଁ କାଖ କରି ନେଇଯିବି । ମୋ ମୁହଁ କେହି ଦେଖିପାରିବେ ନାହିଁ । ଆପଣ ଆଗେ ଆଗେ ଚାଲିଯାନ୍ତୁ । ମୁଁ ଝିଅକୁ ନୂଆ ପୋଷାକ ପିନ୍ଧାଇ ପଛେ ପଛେ ଯାଇ ପହଞ୍ଚିବି ।''

ଆନନ୍ଦ ଚିତ୍ତରେ 'ହଁ' ଭରିଲେ ମନ୍ଦାକିନୀ ।

ଦେବୀ ଭଗବତୀଙ୍କ ମୂର୍ତ୍ତି ସମ୍ମୁଖରେ କୋଳରେ ଛୁଆଟିକୁ ବସାଇରଖି ମମତା ହାତଯୋଡ଼ି ପ୍ରାର୍ଥନା କରିବାକୁ ଲାଗିଲେ । ଜୁଳୁ ଜୁଳୁ ଆଖିରେ ଛୁଆଟି ଏକାଗ୍ର ମନରେ ଚାହିଁରହିଥାଏ ଦେବୀଙ୍କ ଆସନ ତଳେ ଜଳୁଥିବା ପ୍ରଦୀପଗୁଡ଼ିକ ପ୍ରତି । ପାଖରେ ବସିଥାନ୍ତି ମନ୍ଦାକିନୀ ।

ମନ୍ଦିର ସମ୍ମୁଖସ୍ଥ ଉଦ୍ୟାନଟି ଅତିକ୍ରମ କରି ଘରକୁ ଫେରିଲା ବେଳକୁ ମନ୍ଦାକିନୀ ଅସୁସ୍ଥ ବୋଧ କରୁଥାନ୍ତି । ତାଙ୍କୁ ବିଛଣା ଉପରେ ଶୋଇପଡ଼ିବାକୁ କହି ମମତାଦେବୀ ଖଟ ତଳେ ବସି ବୋହୂର ଗୋଡ଼ ଦୁଇଟା ଘଷିଦେବାଦ୍ୱାରା ତାଙ୍କ ଅବସନ୍ନତା କମି ଆସିଲା । ପିଲାଟି ପାଖରେ ବସି କଣ୍ଢେଇ ଖେଳୁଥାଏ ।

''ଅନାମିକା, ମୋର ଦୁଃଖ ତୁ ବୁଝିପାରୁଛୁ କିନ୍ତୁ ବାବୁ କିଛି ବୁଝିପାରନ୍ତି ନାହିଁ । କହିଲୁ, ଝିଅର ଜନ୍ମଦିନଟା କିପରି ପାଳିବି ! ବାବୁଙ୍କର ବନ୍ଧୁମାନ୍ ବଡ଼ ବଡ଼ ଅଫିସର । ଗତବର୍ଷ ନାନାପ୍ରକାର ଖାଦ୍ୟ ନିଜ ହାତରେ ରାନ୍ଧି ସମସ୍ତଙ୍କୁ ଖୁଆଇଥିଲି । ଏଥର ଦେହରେ ବଳ ନାହିଁ । କିଛି କରିପାରିବି ନାହିଁ ।''

''ମା', ଆପଣ ଯଦି କହିବେ, ବାର୍ଥଡ଼େ କେକ୍ ତିଆରି କରିଦେବି । କେତେଜଣ ଖାଇବେ ଜାଣିଲେ, ସମସ୍ତଙ୍କ ପାଇଁ ମାଛ, ମାଂସ ରାନ୍ଧି ଦେଇପାରିବି ।''

''ନା, ଏଥର ବାବୁ ବାବୁଆଣୀମାନଙ୍କୁ ଘର ତିଆରି ଖାଦ୍ୟ ଦେବା ନାହିଁ । ମୋ ବାବା ତାଙ୍କ ଗେହ୍ଲା ନାତୁଣୀର ଜନ୍ମଦିବସ ପାଳନ ଲାଗି ଟଙ୍କା ପଠାଇ ଦେଇଛନ୍ତି । ମୁଁ ତାଜ୍ ହୋଟେଲରୁ କେକ୍ ଓ ଖାଦ୍ୟ ଆଣିବି ବୋଲି ଅର୍ଡ଼ର କରି ଦେଇଛି । ଯଥାସମୟରେ ହୋଟେଲ କର୍ମଚାରୀମାନେ ଖାଦ୍ୟପଦାର୍ଥ ଧରି ପହଞ୍ଚି ଯିବେ । ବାବୁମାନେ ଅନେକ ରାତି ଯାଏଁ ଖାଇବା ପିଇବା ଓ ମଉଜ ମଜଲିସରେ ମାତିବେ । ବର୍ତ୍ତମାନ ମୋତେ ଫୋନ ପାଖକୁ ନେଇଚାଲ୍ । ସମସ୍ତଙ୍କୁ ନିମନ୍ତ୍ରଣ କରିବାକୁ ହେବ ।''

ଅନାମିକାର କାନ୍ଧ ଉପରେ ହାତ ରଖି ମନ୍ଦାକିନୀ ବାବୁଙ୍କ ଅଫିସ କୋଠରିକୁ ଗଲେ । ଜଣକ ପରେ ଜଣେ ସମସ୍ତଙ୍କୁ ନିମନ୍ତ୍ରଣ କରିବାକୁ ପ୍ରାୟ ଦୁଇ ଘଣ୍ଟା ଲାଗିଗଲା । ସେତେବେଳକୁ ଉଦରରେ ପୀଡ଼ା ଅନୁଭବ କରି ମନ୍ଦାକିନୀ ନିଜ ପଲଙ୍କ ଉପରେ ଶୋଇ ପଡ଼ିଲେ ।

ରାତି ବେଳକୁ ହୋଟଲରୁ ଖାଦ୍ୟପେୟ ଆସିଗଲା । ବଡ଼ ଆକାରର କେକ୍‌ଟିଏ ଲମ୍ୱା ଟେବୁଲ ଉପରେ ରଖାଗଲା । ମିଷ୍ଟର ଓ ମିସେସ୍‌ମାନେ ରାତି ୯ଟା ସମୟକୁ ଆସିଗଲେ । ମମତାଦେବୀ ପଛପଟ ପିଣ୍ଡାରେ ଅନ୍ଧକାରରେ ଛିଡ଼ା ରହି ସମସ୍ତ ଦୃଶ୍ୟ ଦେଖୁଥାନ୍ତି । ନିମନ୍ତ୍ରିତ ଭଦ୍ରବ୍ୟକ୍ତି ଓ ମହିଳାମାନଙ୍କୁ ସସମ୍ମାନେ ପାଛୋଟି ନେଇ ଡ୍ରଇଂ ରୁମ୍‌ରେ ବସାଇବା କାମଟି ଥାଏ ମନ୍ଦାକିନୀର ଦାୟିତ୍ୱ । ଖିଆପିଆ, ହସ କୌତୁକ ଓ ଆଳାପ ମେଳାପ ପରେ ସମସ୍ତେ ବିଦାୟ ନେଲାବେଳକୁ ମଧ୍ୟ ରାତ୍ରି ଅତିକ୍ରମ କରିଯାଇଥାଏ ।

ରାତ୍ରିର ଶେଷ ପ୍ରହରରେ ଆରମ୍ଭ ହେଲା ମନ୍ଦାକିନୀଙ୍କ ପ୍ରସବ ବେଦନା । କଥା କହିବା ପାଇଁ ଶକ୍ତି ନ ଥାଏ । ଡାକ୍ତରଖାନାକୁ ନେବାପାଇଁ ଚପରାସୀ ପିଅନମାନେ ମଧ୍ୟ ନ ଥାନ୍ତି । ସେ ଲୋତକପୂର୍ଣ୍ଣ ଆଖିରେ ଚାହିଁ ରହିଥାନ୍ତି ଅନାମିକାର ମୁହଁକୁ । ସତେଯେପରି ସେହି ସଙ୍କଟମୟ ମୁହୂର୍ତ୍ତରେ ସେହି ନୌକରାଣୀଟା ଥାଏ ଏକମାତ୍ର ଆଶାଭରସା । ଜଣେ ନିପୁଣା ଧାଈ ପରି ଅନାମିକା କରିଯାଉଥାଏ ପ୍ରସବ ସମୟର ସମସ୍ତ ପ୍ରକାର କାର୍ଯ୍ୟ । ସାହାଯ୍ୟ କରୁଥାଏ ଜଣେ ପିଅନର ସ୍ତ୍ରୀ । ଯନ୍ତ୍ରଣା ନିପୀଡ଼ିତା ମନ୍ଦାକିନୀ ଅର୍ଦ୍ଧଚେତନା ଶୂନ୍ୟ ଅବସ୍ଥାରେ ଥିଲାବେଳେ ମମତ୍ୱାଦେବୀ ଗର୍ଭ ମଧ୍ୟରୁ ବାହାର କରିଆଣିଲେ ନବଜାତ ଶିଶୁଟିକୁ । ନାଡ଼ି କାଟିସାରିଲା ପରେ ଶିଶୁଟିକୁ ପରିଷ୍କାର କରିସାରି ଖୁସି ମନରେ ମମତା ତାହାକୁ ଧରି ରଖିଲେ ତା' ମା'ଙ୍କ ଆଖି ଆଗରେ ।

ଶିଶୁଟିର ଜନ୍ମକାଳୀନ କ୍ରନ୍ଦନଧ୍ୱନି ଶୁଣି ମନ୍ଦାକିନୀ ଆଖି ଫିଟାଇଲେ । ପଚାରିଲେ, ''ଝିଅ ନା ପୁଅ ?''

''ଝିଅ ।''

''ଅନାମିକା, ଛୁଆଟାକୁ ମାରିଦେଇ ପୋତି ଦେ ।'' କହିଲେ ଦୁଃଖିନୀ ଜନନୀ ।

''ଛି, ଛି, ଏପରି କଥା କହିବା ଉଚିତ ନୁହେଁ, ମା ! ଭଗବାନ୍‌ଙ୍କ ପ୍ରଦତ୍ତ ଏପରି ସୁନ୍ଦର ଝିଅଟି ପ୍ରତି ଏପରି ହେୟଜ୍ଞାନ କରିବା ଉଚିତ ନୁହେଁ ।''

''ପ୍ରଥମ ଝିଅଟି ଜନ୍ମକାଳରେ ମରିଯାଇଥିଲା । ଦ୍ୱିତୀୟ ଝିଅଟି ବଞ୍ଚିଛି । ପୁଣି ଗୋଟାଏ ଝିଅ ଜନ୍ମିଛି ଶୁଣିଲେ ବାବୁ ଆଉ ମୋ ମୁହଁକୁ ଚାହିଁବେ ନାହିଁ । ତାଙ୍କର ଦରକାର ପୁଅଟିଏ,'' କାନ୍ଦିପକାଇଲେ ମନ୍ଦାକିନୀ । ମମତା ନୀରବ ରହିଲେ ।

କୌଣସି ଜଣେ ଆତ୍ମୀୟଙ୍କ ନିକଟରୁ ଫୋନ ଯୋଗେ ବାର୍ତ୍ତା ପାଇ ମନ୍ଦାକିନୀର ପିତାମାତା ଝିଅ ଓ ନାତୁଣୀକୁ ଦେଖିବା ଲାଗି ଚାଲି ଆସିଲେ ଗୋଟିଏ ନିକଟବର୍ତ୍ତୀ ସହରରୁ । ମନ୍ଦାକିନୀ ସେତେପର୍ଯ୍ୟନ୍ତ ଦୁର୍ବଳ ପ୍ରସୂତି ଭାବରେ ବିଛଣାରେ ଶୋଇଥାଆନ୍ତି । ନିକଟରେ ଶୋଇଥିବା ସଦ୍ୟଜାତ କନ୍ୟାଟି ଦିଗକୁ ଚାହିଁ ଦେଖିବାକୁ ବୋଧହୁଏ ଇଚ୍ଛା ନ ଥାଏ । ତଥାପି ଶିଶୁଟି ମୁହଁରେ ନିଜର ମାତୃ ସ୍ତନଟି ଲଗାଇ ରଖିବାକୁ ବାଧ ଥିଲେ । ପିତାମାତାଙ୍କୁ ଗାଡ଼ିରୁ ଅବତରଣ କରି ଉପରକୁ ଆସିବା ଦେଖି ମନ୍ଦାକିନୀ ଡାକିଲେ, ''ଅନାମିକା, ମୋ ବାବା ଓ ମା'ଙ୍କୁ ଚର୍ଚ୍ଚା କରିବା ଦାୟିତ୍ୱ ତୋର । କିନ୍ତୁ ମୁହଁଟି ଉପରେ ଆବରଣଟି ରଖିବୁ । ସେମାନେ କୌଣସି ବାହାର ଲୋକଙ୍କ ରନ୍ଧା ଖାଦ୍ୟ ଖାଆନ୍ତି ନାହିଁ ।''

''ମା', ଚିନ୍ତା କର ନାହିଁ । ମୁଁ ରାନ୍ଧିସାରିଲା ପରେ, ଆପଣ ଯାଇ ଖାଦ୍ୟ ପରଷି ଦେବେ ।''

ବାପା ମା' ନୂତନ ଶିଶୁଟିକୁ ଦେଖି ଆନନ୍ଦିତ ହେଲେ । ମନ୍ଦାକିନୀର ମା' ପଚାରିଲେ, ''ସ୍ୱାଧୀନ କାହାନ୍ତି ?''

''ସେ ଦିଲ୍ଲୀ ଯାଇଛନ୍ତି । ଦିନେ ଦୁଇଦିନ ପରେ ଫେରିବେ ।''

''ଡାକ୍ତରଖାନାରେ ପିଲା ଜନ୍ମ ଆଗରୁ ଭର୍ତ୍ତି କରାଇ ଯାଇଥିଲେ ଭଲ ହୋଇଥାନ୍ତା ।''

''ନା, ମା', ମୋ ଘରେ ଯେଉଁ ମହିଳାଟି ପ୍ରସବ କରାଇଦେଲା, ସେ ଠିକ୍ ତୁମରି ପରି ସୁନିପୁଣା । ମୋର ପ୍ରଥମ ଛୁଆଟି ମରିଗଲା ବୋଲି ତୁମେ ଦ୍ୱିତୀୟ ପିଲାଟିର ପ୍ରସବ ବେଳେ ଯେଉଁ ପ୍ରକାର କାର୍ଯ୍ୟ କରିଥିଲ, ଠିକ୍ ସେହିପରି କାମ ମୋ ଚାକରାଣୀଟି କରାଇ ଦେଇପାରିଲା । କିନ୍ତୁ ପିଲାଟି କିଛି ସପ୍ତାହ ପୂର୍ବରୁ ଜନ୍ମି ଯାଇଛି ।''

ବାପା କହିଲେ, ''ସେହି ଚାକରାଣୀଟି କାହିଁ ? ମୁଁ ତାକୁ ପୁରସ୍କାର ଦେବି ।''

''ସେ କାହାରି ଆଗକୁ ବାହାରେ ନାହିଁ । ମନଦେଇ କାମ କରିଯାଏ ।''

ମା' କହିଲେ, ''ଆମ ଖାଇବା କଥା ଚିନ୍ତା କରିବା ଦରକାର ନାହିଁ । ଦଶଟା ବାଜିଛି । ଫେରିଯାଇ ଘରେ ବାରଟା ବେଳେ ଖିଆପିଆ କରିବା । ଛୁଆର ଏକୋଇଶା ଦିନ ପୁଣି ଆସିବା ।''

ମନ୍ଦାକିନୀର ବାପା ତାଙ୍କ ସ୍ତ୍ରୀଙ୍କୁ ଗାଡ଼ିରେ ଯାଇ ବସିବାକୁ ନିର୍ଦ୍ଦେଶ ଦେଲେ । ସ୍ତ୍ରୀ ବାହାରିଗଲା ପରେ ଝିଅର ବିଛଣା ଉପରେ ବସି ପଡ଼ିଲେ । ପଛ ପିଣ୍ଡାରେ ଛିଡ଼ା ରହି ମମତାଦେବୀ ଶୁଣିପାରୁଥିଲେ ପିତା ଓ କନ୍ୟାଙ୍କ ମଧ୍ୟରେ ହେଉଥିବା ବାକ୍ୟାଳାପ । ବାପା ଗଭୀର ସନ୍ତାପ ପ୍ରକାଶ କରି କହିଲେ, ''ମୁଁ ଜୋଇଁଙ୍କ ବିଷୟରେ ଅନେକ କଥା ଶୁଣୁଛି । ତୋତେ ଭଲ ପାଆନ୍ତି ନାହିଁ ବୋଲି ଜାଣିପାରୁଛି । ମା', ବିବାହ ହେଉଛି ବିଧି ନିର୍ଦ୍ଧାରିତ । ସେଥିରେ ମନୁଷ୍ୟର ହାତ ନାହିଁ । ଜଣେ ସ୍ୱାଧୀନତା ସଂଗ୍ରାମୀଙ୍କ ବଂଶଜାତ ପୁଅ ଏବଂ ବି.ଏ. ପରୀକ୍ଷା ପରେ ଆଇ.ଏ.ଏସ୍. ଚାକିରି ପାଇଗଲେ ବୋଲି ଜଣେ ଉପଯୁକ୍ତ ପାତ୍ର ଭାବି ତୋତେ ତାଙ୍କ ହାତରେ ସମର୍ପଣ କରିଥିଲି । କିନ୍ତୁ ସେ ଏପରି ଦୁର୍ନୀତିଗ୍ରସ୍ତ ଓ ଦୁଶ୍ଚରିତ୍ର ଯୁବକ ଭାବରେ ଲୋକନିନ୍ଦାର ପାତ୍ର ହେବେ ବୋଲି ଭାବିପାରି ନ ଥିଲି ।''

''ନା ବାବା, ତୁମ ମନରେ କିଏ ଭୁଲ ଧାରଣା ଦେଇଥିବ ବୋଲି ଏପରି କଥା କହୁଛ । ତୁମ ଜ୍ୱାଇଁ ମୋତେ ଅତିଶୟ ଭଲ ପାଆନ୍ତି । ତାଙ୍କ ଚରିତ୍ର ପ୍ରତି ସନ୍ଦେହ କରିବାର କାରଣ ନାହିଁ । ମୁଁ ଖୁବ୍ ଆନନ୍ଦରେ ରହିଛି । ତୁମେ କାହିଁକି ମୋ ପାଇଁ ଚିନ୍ତା କରୁଛ ?''

''ମୋ ଝିଅ ବୋଲି ଏପରି କଥା କହିପାରିଲୁ । କିନ୍ତୁ ଜ୍ୱାଇଁଙ୍କ ବାପା ମା' ଥିଲେ ସେମାନେ ମଧ୍ୟ ନିଜ ପୁଅର ମଦ୍ୟପାନ, ନାଇଟ କ୍ଲବରେ ରାତ୍ରିଯାପନ ଓ ଅସଦ୍ ଉପାୟରେ ଅର୍ଥ ଆୟ ଇତ୍ୟାଦି ସହ୍ୟ କରିପାରି ନ ଥାନ୍ତେ । ସେମାନଙ୍କ ମଧ୍ୟରୁ ଜଣେ କେହି ବଞ୍ଚିଥିଲେ, ପୁଅ ମଧ୍ୟ ଗୋଟିଏ ସହିଦ ବଂଶର ବଂଶଜ ଭାବରେ ଏପରି ଅସଂଯତ ହୋଇପାରି ନ ଥାନ୍ତେ । ମୋର ଉପଦେଶ ମାନିବୁ । ଯଦି ସ୍ୱାଧୀନବାବୁ ତୋତେ ସ୍ତ୍ରୀ ଭଳି ସମ୍ମାନ ନ ଦେବେ, ତେବେ ମୋତେ ଜଣାଇଲେ ମୁଁ ତୋତେ ଓ ଛୁଆମାନଙ୍କୁ ମୋ ଘରକୁ ନେଇ ଚାଲିଯିବି ।''

ନବଜାତ ଶିଶୁଟିର କପାଳରେ ଚୁମ୍ବନ ଦେଇ ଏବଂ ମନ୍ଦାକିନୀକୁ ଆଶୀର୍ବାଦ ପ୍ରଦାନ ପରେ ବାପା ବିଦାୟ ନେଲେ । ମମତାଦେବୀ ମନ୍ଦାକିନୀଙ୍କୁ ସାଗୁ ପିଆଇ ଶୋଇ ରହିବାକୁ ଅନୁରୋଧ କଲେ ।

ତହିଁ ପରଦିନ ସନ୍ଧ୍ୟା ସମୟରେ ଦିଲ୍ଲୀରୁ ଫେରିଆସିଲେ ସ୍ୱାଧୀନବାବୁ । ମମତାଦେବୀ ବିସ୍ମିତ ହେଲେ ପୁଅର ଗତିବିଧି ଦେଖି । ଡ୍ରାଇଭର ପାଖରୁ ଶୁଣି ନେଇଥାନ୍ତି ଝିଅ ଜନ୍ମିଛି ବୋଲି । ନବଜାତ ଶିଶୁଟିକୁ ଦେଖିବାକୁ ଆସିଲେ ନାହିଁ । ପ୍ରସୂତିର ଅବସ୍ଥା କିପରି ଅଛି ତାହା ପଚାରିବା ପାଇଁ ଇଚ୍ଛା କଲେ ନାହିଁ । ସ୍ତ୍ରୀଙ୍କ ନିକଟକୁ ଗଲେ ନାହିଁ ।

ସେତେବେଳକୁ ଅବେଳରେ ଜନ୍ମିଥିବା ସନ୍ତାନଟି ମୃତ୍ୟୁ ସହିତ ଲଢୁଥାଏ । ଅନାମିକା ଦୌଡ଼ିଯାଇ କହିଲା, ''ବାବୁ, ଜଣେ ଶିଶୁ-ଚିକିତ୍ସକଙ୍କୁ ଫୋନ କରି ଶୀଘ୍ର ଆସିବାକୁ କହନ୍ତୁ । ନଚେତ୍ ଆମ୍ବୁଲେନ୍ସ ଡାକି ଛୁଆକୁ ହସପିଟାଲ ପଠାଇ ଦିଅନ୍ତୁ ।''

କୌଣସି କଥା ନ ଶୁଣିଲା ଭଳି ଅଭିନୟ କରି ସ୍ୱାଧୀନବାବୁ ଗାଡ଼ିରେ ବସି ବାହାରିଗଲେ । ମମତା ଦୌଡ଼ିଲେ ପାଖରେ କୌଣସି ଡାକ୍ତରଙ୍କୁ ଖୋଜିବା ଲାଗି । ହତାଶ ହୋଇ ଫେରିଆସିଲା ବେଳକୁ ମନ୍ଦାକିନୀ ଚାହିଁରହିଥାନ୍ତି ଛୁଆଟିର ମୁହଁକୁ । କିଛି ସମୟ ପରେ ଶିଶୁଟିର ଜୀବନଦୀପ ଲିଭିଗଲା । ମନ୍ଦାକିନୀ ଚକ୍ଷୁ ବନ୍ଦ କଲେ । କ୍ଷୀଣ ସ୍ୱରରେ କହିଲେ, ''ଅନାମିକା, ମୁରଲୀକୁ ଡାକି ଛୁଆଟିକୁ ମଶାଣିରେ ପୋତି ଦେ ।''

ଅନେକ ରାତିରେ ଫେରିଲା ପରେ ମମତା ଦେଖିପାରିଲେ ସ୍ୱାଧୀନ ଫେରିଆସି ଆରାମରେ ଶୋଇଗଲାଣି । ମନେପଡ଼ିଲା ମୁରଲୀ ନିକଟରୁ ଶୁଣିଥିବା ନିଜ ପୁଅ ସମ୍ପର୍କରେ କଠୋର ଶବ୍ଦଟି - 'ଅମଣିଷ' ।

ପୁଅର ପଶୁତ୍ୱ ପ୍ରମାଣ ପାଇବା ଲାଗି ମମତାଙ୍କୁ ବିଳମ୍ବ ହେଲା ନାହିଁ । ଦିନେ ରାତିରେ ଜଣେ ବନ୍ଧୁଙ୍କ ସହିତ ରୁଦ୍ଧଦ୍ୱାର ମଧ୍ୟରେ ହେଉଥିବା କଥାବାର୍ତ୍ତା ସେ ଲୁଚି ରହି ଶୁଣିପାରିଲେ ।

ସ୍ୱାଧୀନବାବୁ କହୁଥାନ୍ତି, "ତୁମେ ତ ଜାଣ, ମୁଁ ଅନେକ ଦିନରୁ ଲେନାକୁ ଭଲ ପାଉଛି । ତା'ର ପ୍ରେମ ଯୋଗୁଁ ମୁଁ ମଧ୍ୟ ପ୍ରେମ-ପାଗଳରେ ପରିଣତ ହେଲିଣି । ବିବାହ କରିବି ବୋଲି ପ୍ରତିଶ୍ରୁତି ଦେଇସାରିଛି । ମନ୍ଦାକିନୀର ଆଉ ସନ୍ତାନସନ୍ତତି ହେବ ନାହିଁ । ମୋର ଦରକାର ଗୋଟିଏ ପୁଅ । ମୋ ଭାଇଙ୍କର ସନ୍ତାନସନ୍ତତି ଜନ୍ମି ନାହିଁ । ଜନ୍ମିବ କି ନାହିଁ ସନ୍ଦେହ । ତାଙ୍କର ଅଗାଧ ସମ୍ପତ୍ତି ଭୋଗ କରିବାଲାଗି ମୋର ଗୋଟିଏ ପୁତ୍ରସନ୍ତାନ ଆବଶ୍ୟକ ।"

ବନ୍ଧୁ କହିଲେ, "ଯେଉଁ ଲେନାକୁ ପ୍ରେମ କରୁଛ, ସେ ଗୋଟାଏ ମଡେଲ । ତାର ରୂପ ଓ ଅଙ୍ଗସୌଷ୍ଠବ ଦେଖି ମୋହିତ ହୋଇଯିବା ଉଚିତ ନୁହେଁ । ତା ଚରିତ୍ର ସମ୍ପର୍କରେ କିଛି ଜାଣିଛ ? ବଂଶ ବିଷୟରେ କିଛି ସନ୍ଧାନ ନେଇଛ ? ମନ୍ଦାକିନୀ ପରି ସତୀ, ସାଧ୍ୱୀ ଓ ସୁନ୍ଦରୀ ପତ୍ନୀ ଥାଉଁ ଥାଉଁ ଜଣେ ଅଜ୍ଞାତ କୁଳଶୀଳା ମହିଳାକୁ ବିବାହ କରିବାକୁ ସାହସ କରୁଛ କିପରି ?"

ଭୀଷଣ ବିରକ୍ତିଭାବ ପ୍ରକାଶି କରି ସ୍ୱାଧୀନବାବୁ ବନ୍ଧୁଙ୍କୁ ଶଯ୍ୟାକକ୍ଷରୁ ବାହାର କରିଦେଲା ପରେ ଆକଣ୍ଠ ପାନ କରିଗଲେ ମଦିରା । ସେତେବେଳକୁ ମମତାଦେବୀଙ୍କ ସହ୍ୟ ଶକ୍ତି ସମସ୍ତ ସୀମା ଲଙ୍ଘନ କରିସାରିଥାଏ । ନିର୍ଭୟରେ ସେ ଦରଜା ଠେଲିଦେଇ ପଶିଗଲେ ଭିତରକୁ । ମୁହଁରୁ ଆବରଣ ଖୋଲିଦେଇ ଛିଡ଼ା ହୋଇଗଲେ ନିଜ ପୁଅର ସମ୍ମୁଖରେ ।

"ସ୍ୱାଧୀନ, ମୋତେ ଚିହ୍ନିପାରୁଛୁ ? ଚୁପ୍ କରି ଶୁଣିଯା ମୁଁ ଯାହାସବୁ କହିବି । କହିବି, ତୋ ବାବା ତପସ୍ୱୀବାବୁଙ୍କ କଥା । କହିବି ତୋ ବଡ଼ଭାଇ ତେଜସ୍ୱୀର କଥା । କହିବି ତୋ ପିଲାବେଳର କଥା । ମୋର ଦେହ ଓ ମୁହଁ ପୋଡ଼ିଯାଇଥିଲେ ମଧ୍ୟ ମୁଁ ତୋର ମା' । ଅନାମିକା ନାମ ଧରି ତୋ ଘରେ ଚାକରାଣୀ ରହିଛି, କିନ୍ତୁ ମୁଁ ତୋର ମା' ମମତା । କାନ ପୋଡ଼ି ଯାଇଥିଲେ ବି ସବୁ କଥା ଶୁଣିପାରୁଛି, ଦୃଷ୍ଟିଶକ୍ତି ନ ଥିଲେ ବି ଅନେକ କିଛି ଦେଖିପାରୁଛି । ପାଟି ଖୋଲିବା ଶକ୍ତି ନ ଥିଲେ ମଧ୍ୟ ଆଜି ମୁହଁ

ଖୋଲି ତୋତେ ଗାଳି ଦେବାକୁ ବାଧ୍ୟ ହୋଇଛି । ତୁ ଜନ୍ମିଥିଲୁ କେଉଁ ପ୍ରକାର ବାପାଙ୍କ ଔରସରୁ ? କ'ଣ ଥିଲୁ, ଆଜି କ'ଣ ହୋଇଛୁ ? ସବୁ ବିଷୟ ବର୍ଣ୍ଣନା କରିଗଲେ ଜାଣିପାରିବୁ ମୁଁ କିଏ ! ନୀରବ ଓ ନିସ୍ପନ୍ଦ ଭାବରେ ଖଟ ଉପରେ ବସିରହ । ତୋ ମା'ର କଥା କାନ ଖୋଲି ଓ ମନଦେଇ ଶୁଣି ଯା ।''

ମାତାଲ ଅବସ୍ଥାରେ ଗର୍ଜନ କରି ଉଠିଲେ ସ୍ୱାଧୀନବାବୁ । ''ତୋର ଏତେ ଦୂର ସାହସ ! ମୋ ଘର ଭିତରକୁ ପଶି ଆସିପାରିଲୁ ? ପୁଣି ନାଟକ କରିବା ପାଇଁ ? ନିଶ୍ଚୟ ତୋତେ ମନ୍ଦାକିନୀ ପଠାଇଛି । ମୋ ମା' ନିଆଁରେ ପୋଡ଼ି ମରିଥିଲେ ବୋଲି ସେହି ମନ୍ଦାକିନୀ କହିଛି । ମୋ ବାବା ଓ ଭାଇଙ୍କ କଥା ସେହି କହିଛି । ମୋର ନକଲି ମା' ଭାବରେ ଅଭିନୟ କରିବା ଲାଗି ସେହି ମନ୍ଦାକିନୀ ଶିକ୍ଷା ଦେଇଛି । ଏତେ ସାହସ ହେଲାଣି ଗୋଟିଏ ପୋଡ଼ାମୁହାଁ ଚାକରାଣୀର ? ଯା, ବାହାରି ଯା ! ରାତି ପାହିଲେ ତୋତେ ଗୁଳିକରି ମାରିଦେବି କିମ୍ବା ପାଗଳ ଗାରଦରେ ଭର୍ତ୍ତି କରାଇବି ।''

ଉତ୍ତ୍ୟକ୍ତ ଓ ଉତ୍ତେଜିତ ଅବସ୍ଥାରେ ସ୍ୱାଧୀନବାବୁ ଚାକରାଣୀ ଦେହରେ ପ୍ରଚଣ୍ଡ ଧକ୍କାଟିଏ ବସାଇ ଦେଲେ । ମମତାଦେବୀ କଚାଡ଼ି ପଡ଼ିଲେ ବାରଣ୍ଡା ଉପରେ । ଭିତରୁ କବାଟ ବନ୍ଦକରି ଶଯ୍ୟା ଉପରେ ଲୋଟିପଡ଼ିଲେ ସ୍ୱାଧୀନବାବୁ ।

ମମତାଦେବୀଙ୍କ କପାଳରୁ ଝରି ପଡୁଥାଏ ଧାରଧାର ରକ୍ତ । ତାଙ୍କ କ୍ରନ୍ଦନ ଶୁଣି ଦୌଡ଼ିଆସିଲେ ମନ୍ଦାକିନୀ । ''ମା', ଏ ପୋଡ଼ାମୁହାଁକୁ ବିଦାୟ ଦିଅ । ବାବୁ ମୋତେ ମାରିଦେବେ ।''

ମନ୍ଦାକିନୀ ମମତାଦେବୀଙ୍କୁ ଉଠାଇଲେ । ନିଜ ପଣତରେ କପାଳରୁ ରକ୍ତ ପୋଛିଦେଇ ଧୀରେ ଧୀରେ ନେଇଗଲେ ଅନାମିକାର ଶଯ୍ୟା ପାଖକୁ । ଫଟା କପାଳରେ ମଲମ ଲଗାଇ ବ୍ୟାଣ୍ଡେଜ ବାନ୍ଧିଦେଲେ ଏବଂ ଶୋଇଯିବାକୁ କହିଲେ ।

ରାତି ପାହିଲା ପରେ ଦେଖାଗଲା ଅନାମିକାର ପତ୍ତା ନାହିଁ । ମନ୍ଦାକିନୀ ଭାବିପାରିଲେ ନାହିଁ, ଅନାମିକା ବାବୁଙ୍କ ପାଖକୁ ରାତିରେ ଯିବାପାଇଁ ସାହସ କଲା କିପରି ଓ କାହିଁକି ?

ସ୍ୱାଧୀନବାବୁ ନିଦରୁ ଉଠିଲା ପରେ ଜଣେ ପିଅନକୁ କହୁଥିବାର ଶୁଣାଗଲା - ''କାଲି ରାତିରେ ଗୋଟାଏ ଡାହାଣୀ ମୋ ବେଡ୍‌ରୁମ୍‌ରେ ପଶିଥିଲା । ତା'ର ଭୟଙ୍କର ମୁହଁ ଦେଖି ଡରି ଯାଇଥିଲି ।''

ସେତେପର୍ଯ୍ୟନ୍ତ ବାବୁଙ୍କର ନିଶା ଛାଡ଼ି ନ ଥାଏ ।

## ।। ୩୩ ।।

ଟ୍ରେନ୍ ଚାଲିଥାଏ ବୋମ୍ବାଇରୁ ଦିଲ୍ଲୀ । ବାଥରୁମ୍ ପାଖ ଚେଜିଆ ଉପରେ ପଡ଼ିରହିଥାନ୍ତି ମମତାଦେବୀ । ଟିକଟ ଚେକର ଟିକଟ ମାଗିଲା ନାହିଁ । ଡବାଟି ଭିତରେ ପାସେଞ୍ଜରମାନଙ୍କର କୋଳାହଳ ଲାଗି ରହିଥାଏ । ଅନେକଙ୍କ ମୁଖରୁ ଶୁଣିବାକୁ ମିଳୁଥାଏ ନିର୍ବାଚନ ପ୍ରସଙ୍ଗ । ଜଣେ କହୁଥାନ୍ତି, ନିର୍ବାଚନ ଶେଷ ହେଲା, ଏବେ ଆରମ୍ଭ ହେବ ଦରଦାମ ବୃଦ୍ଧି । ଅନ୍ୟ ଜଣେ କହିଲେ, ସବୁ ଭଲ ଲୋକଗୁଡ଼ାକ ହାରିଗଲେ, ଜିଣିଲେ ସେହି ପୁରୁଣା ଜଣାଶୁଣା ଚୋରମାନେ । ଜଣେ ବ୍ୟକ୍ତି ପାଟି କଲେ, ଆମ ଭୋଟରେ ଯେଉଁମାନେ ଜିଣିକରି ଆସିଲେ, ସେମାନଙ୍କୁ ଚୋର କହିବା ଅର୍ଥ ଆମେମାନେହିଁ ଚୋରମାନଙ୍କୁ କ୍ଷମତାଭୋଗ କରିବାଲାଗି ପଠାଉଛୁଁ ! ଅନ୍ୟ ଜଣେ ଇଂରାଜୀରେ କହିଲେ, People get the Government they deserve.'' ଅନ୍ୟ ଜଣେ ମତ ଦେଲେ, ଆମେ ଟଙ୍କା ନେଇ ଭୋଟ ବିକ୍ରି କରୁଛୁଁ, ଗୁଣ୍ଡାମାନଙ୍କ ଧମକରେ ଭୋଟ ଦେଉଛୁ, ତେଣୁ ଦୁଷ୍ଟମାନଙ୍କ ଶାସନ ସହ୍ୟ କରିବାକୁ ହେବ ।

ଆଲୋଚନାର ଶେଷ ନ ଥାଏ । ଯୁକ୍ତି ତର୍କର ମୂଲ୍ୟ ମଧ୍ୟ ଥାଏ ନାହିଁ । ପାଟିତୁଣ୍ଡ ମଧ୍ୟରେ ସବୁ କଥା ହଜି ଯାଉଥାଏ । କିନ୍ତୁ ଗୋଟିଏ ବିଷୟ ସ୍ୱଷ୍ଟ ହୋଇ ଉଠୁଥାଏ ଯେ ରାଜନେତା ଓ ପ୍ରଶାସକମାନଙ୍କ ପ୍ରତି ଜନତାଙ୍କ ବିଶ୍ୱାସ ତୁଟିଗଲାଣି । ଆସିଗଲାଣି ଘୃଣା ଓ ବିରକ୍ତି ଭାବ ।

ମମତାଦେବୀ ଭାବୁଥାଆନ୍ତି, ଗୋଟିଏ ପୁଅ ମନ୍ତ୍ରୀ ପଦ ପାଇଛି ବୋଲି ସମସ୍ତ ପ୍ରକାର ଅନ୍ୟାୟ କାର୍ଯ୍ୟ କରି ଚାଲିଛି । ଅନ୍ୟ ଜଣେ ପୁଅ ପଦସ୍ଥ ଅଫିସର ଭାବରେ ଘୋଷ, ଲାଞ୍ଚ, ମଦ୍ୟପାନ ଓ ବ୍ୟଭିଚାର ଭିତରେ ବୁଡ଼ି ରହିଛି । ଅଥଚ ସେମାନଙ୍କ ମା' ହୋଇ ସୁଦ୍ଧା ସେ କିଛି କରିପାରୁ ନାହାନ୍ତି । ଆଜି କ'ଣ ସ୍ୱୟଂ ଭାରତମାତାଙ୍କ ଅବସ୍ଥା ସେହିପରି ! ଜନନୀ ଜନ୍ମଭୂମିର ଆତ୍ମସତ୍ତା ରହିଛି । କିନ୍ତୁ ସତେଯେପରି ତାହା ଆଜି ନୀରବ, ନିଶ୍ଚଳ ଓ ସ୍ପନ୍ଦନହୀନ ।

ଜଣେ ବୃଦ୍ଧ ବ୍ୟକ୍ତି ସେତେବେଳେ କହୁଥାନ୍ତି, ବୁଝିଲ ଭାଇମାନେ, ଏ ସବୁ ହେଉଛି କାଳର ପ୍ରଭାବ । ଗତକାଲି ଯେଉଁମାନେ ଥିଲେ ବନ୍ଦୀଶାଳାରେ ଆଜି ସେମାନେ ବସିଛନ୍ତି ସିଂହାସନରେ । ଗାନ୍ଧି ଯୁଗରେ ଯେଉଁମାନେ ପାନ ବିଡ଼ି ଛୁଇଁପାରୁ ନ ଥିଲେ, ଆଜି ସେମାନେ ମଦଭାଟିରେ । ଗତକାଲି ଯେଉଁମାନେ କପର୍ଦ୍ଦକ ହୀନ ଥିଲେ, ଆଜି ସେମାନଙ୍କ ଦସ୍ତଖତରେ କୋଟି କୋଟି ଟଙ୍କାର ବ୍ୟୟ ବରାଦ । କ୍ରିୟାର ପ୍ରତିକ୍ରିୟା ଅଛି । ସେତେବେଳେ ଯେଉଁମାନେ ଦୁଃଖରେ ଥିଲେ, ଆଜି ସେମାନଙ୍କ ଲାଗି ସୁଖର

ଦିନ । ଗତକାଲିର ଶୋଷିତ ମାନେ ଆଜିର ଶାସକ ଗୋଷ୍ଠୀ । ବିଦେଶୀମାନେ ଶାସନ ଓ ଶୋଷଣ କରୁଥିଲେ, ଆଜି ସ୍ୱଦେଶୀମାନେ ଶାସନକାର୍ଯ୍ୟ ଢିଲା କରିଦେଇ ଶୋଷଣ କାର୍ଯ୍ୟରେ ମାତିଛନ୍ତି । ଇଂରେଜମାନେ ଭାରତବାସୀଙ୍କୁ ଶୋଷଣ କରୁଥିଲେ ସମଗ୍ର ବ୍ରିଟିଶ୍ ଜାତିର ଶକ୍ତି ଓ ଉନ୍ନତି ପାଇଁ, କିନ୍ତୁ ଭାରତୀୟ ଶାସକମାନେ ନିଜ ଦେଶବାସୀଙ୍କୁ ଶୋଷଣ କରୁଛନ୍ତି ନିଜ ନିଜର ବ୍ୟକ୍ତିଗତ ସ୍ୱାର୍ଥସାଧନ ନିମନ୍ତେ । ଏହା ହେଉଛି ଆମର ଦୁର୍ଭାଗ୍ୟ । ଆମେ ଯେଉଁ ପ୍ରଜାକୁ ସେହି ପ୍ରଜା । ସେମାନେ ଭୋଟ ମାଗୁଛନ୍ତି, ଆମେ ଦେଉଛୁ । ସେମାନେ ଶାସନ କରିବେ, ଆମେ ସହିବୁ । ଆମପାଇଁ ରହିଛି ପୁଲିସ୍, କୋର୍ଟ କଚେରି, ଜେଲଖାନା ଓ ଟିକସ ପରେ ଟିକସ । ପାଟି ଫିଟାଇବା ଅପେକ୍ଷା ନୀରବରେ ସବୁପ୍ରକାର ଅନୀତି, ଦୁର୍ନୀତି, ଅବିଚାର ଓ ଅନାଚାର ସହିଯିବା ଉଚିତ ।

ଜଣେ ଶିକ୍ଷିତ ଯୁବକ ଉଠିପଡ଼ି କହିଲେ, ''ମଉସା, ଆପଣ 'ଗାନ୍ଧିଯୁଗ' ଶବ୍ଦଟି ଉଚ୍ଚାରଣ କରିଥିଲେ ବୋଲି ମୋତେ ଗୋଟିଏ ବାକ୍ୟ କହିବାକୁ ଇଚ୍ଛା ହେଉଛି । ଅବଶ୍ୟ ଇଂରାଜୀ ବହିରେ ସେହି ଉକ୍ତିଟି ପଢ଼ିଥିଲି ଏବଂ ମୁଖସ୍ଥ ରଖିଛି । ମହାତ୍ମା ଗାନ୍ଧୀ India of my Dreams କଥାଟି ବର୍ଣ୍ଣନା କରିବା ଛଳରେ କହିଥିଲେ,

"I shall work for an India, in which the poorest shall feel that it is their country in whose making they have an active voice, an India in which there shall be no high class and low class of people, an India in which all communities shall live in perfect harmony. Women will enjoy the same rights as men. This is the India of my dreams."

ଦିନସାରା ପାଟିତୁଣ୍ଡ ପରେ ରାତି ଆସିଲା ବେଳକୁ ସମସ୍ତେ ନିଦାଇ ପଡ଼ିଲେ । କ୍ଷୁଧାରେ ଅସ୍ଥିର ହେଉଥିବା ମମତାଙ୍କ ଆଖିକୁ ନିଦ ଆସୁ ନ ଥାଏ । ସେ ଚିନ୍ତା କରୁଥାନ୍ତି ଗାନ୍ଧିଯୁଗର ତପସ୍ୱୀବାବୁଙ୍କ କାର୍ଯ୍ୟକଳାପ ଏବଂ ତେଜସ୍ୱୀର ବୀରୋଚିତ ମରଣ ବିଷୟ ।

ପହଞ୍ଚିଗଲେ ଦିଲ୍ଲୀରେ । ଚାଲିଲେ ମନ୍ତ୍ରୀଙ୍କ ବାସଭବନ ଅଭିମୁଖେ । ତାଙ୍କ ଦଶ ନମ୍ବର କୋଠି ନିକଟରେ ପହଞ୍ଚି ଦେଖିପାରିଲେ କେତେଗୋଟି ପୂର୍ବ ପରିଚିତ ମୁଖ । ପଛ ପଟ ରାସ୍ତାରେ ଯାଇ ଛିଡ଼ା ହେଲେ ଦୁର୍ଜୟ ସିଂ ରହିଥିବା କୋଠରି ସମ୍ମୁଖରେ ।

ପଛରୁ ବାଘା ସିଂ ଡାକ ଶୁଣି ଚମକି ଉଠିଲେ । ସେ କହିଲା, ''ଆରେ ଅନାମୀ, ମୋ ପାଖରେ ରହିବୁ ବୋଲି କହି ଯାଇଥିଲୁ ବୋଲି ସତକୁ ସତ ଜବାବ ରଖିବାପାଇଁ

ଆସିଗଲୁ ! ତୋ ପରି ସ୍ତ୍ରୀଲୋକ ମୁଁ ଜୀବନରେ ଦେଖି ନାହିଁ । ଜଣେ ନୌକରାଣୀ ହୋଇ ମଧ୍ୟ ତୁ ପ୍ରକୃତରେ ସତ୍ ଓ ମହତ୍ । ଆ, ମୋ ଘରକୁ ।''

ମମତାଦେବୀ ଆଗେଇ ଯାଇ କହି ପକାଇଲେ, ''ମୋତେ କିଛି ଖାଇବାକୁ ଦିଅ । ଭୋକରେ ପ୍ରାଣ ବାହାରିଯିବାକୁ ବସିଛି ।''

ବାଘା ସିଂ ତାଙ୍କ ସ୍ତ୍ରୀଙ୍କୁ ଡାକି କହିଲେ, ''ମନ୍ତ୍ରୀଙ୍କ ଘରୁ ସକାଳେ ଆସିଥିବା ମିଠାଗୁଡ଼ାକ ଗଦା ହୋଇ ରହିଛି । ସେଥିରୁ ଦୁଇ ଚାରିଟା ବାଲୁ ସାହି, ଲଡ୍ଡୁ ଓ ସନ୍ଦେଶ ଅନାମୀକୁ ଦିଅ । ଖାଣ୍ଟି ଘିଅରେ ତିଆରି । ଯେତେହେଲେ ପୁଅ ଜନ୍ମର ମିଷ୍ଟାନ୍ନ ।''

ଆଗ୍ରହ ସହକାରେ ମମତା ପଚାରିଲେ, ''ସ୍ୱରାଜବାବୁଙ୍କର ପୁଅ ହୋଇଛି ?''

''ହଁ, ଗତକାଲି ମନ୍ତ୍ରୀଙ୍କ ସ୍ତ୍ରୀ ତାଙ୍କ ବାପଘରେ ପୁତ୍ରଟିଏ ଜନ୍ମ ଦେଇଛନ୍ତି । ସେଥିଲାଗି ଆଜି ସକାଳ ପାଖରୁ ମହଣ ମହଣ ମିଠା ବଣ୍ଟା ହେଉଛି । ଆମେ ଜଗୁଆଳିମାନେ ପେଟ ଭର୍ତ୍ତି ଖାଇସାରିଲୁଣି । ତୁ ବି ଯେତେ ପାରିବୁ ଖାଇ ନେ ।''

ମିଠା ଦୁଇଟା ଗିଳିପକାଇ ପାଣି ପିଇଗଲା ପରେ ମମତାଦେବୀଙ୍କ ଦେହକୁ ଦମ୍ ଫେରିଲା । ତାଙ୍କୁ ମାଟି ଉପରେ ବସି ପଡ଼ିବା ଦେଖି ବାଘା ସିଂ ଟିଣ ସେଡ୍ ଭିତରକୁ ଡାକି ନେଇ ଶୋଇପଡ଼ିବାକୁ କହିଲା । ''ଦୁଇଦିନ ଆରାମ କରିସାରିଲା ପରେ କାମ କରିବୁ । ତୁ ଆସିଛୁ ଦେଖି ମୋ ସ୍ତ୍ରୀଙ୍କ ମନରେ ଆନନ୍ଦର ସୀମା ନାହିଁ ।''

ଦଉଡ଼ିଆ ଖଟଟି ଉପରେ ମମତାଦେବୀ ଶୋଇପଡ଼ିଲେ । ସଙ୍ଗେ ସଙ୍ଗେ ନିଦ ଲାଗିଗଲା । ପ୍ରଭାତ କାଳରେ ବିଛଣାରୁ ଉଠି ଅନୁଭବ କଲେ ସେପରି ଗାଢ଼ ନିଦ୍ରା ବୋଧହୁଏ ଜୀବନରେ କେବେ ଉପଭୋଗ କରି ନ ଥିଲେ ।

କିନ୍ତୁ ରାତି ପାହିଲା କ୍ଷଣି ମୁଣ୍ଡରେ ହେଲା ପ୍ରଚଣ୍ଡ ବଜ୍ରାଘାତ । ବାଘା ସିଂ ସେଡ୍ ଭିତରକୁ ପଶିଆସିଲା । ଖଟିଆ ଉପରେ ବସି ପଡ଼ି କହିଗଲା, ''ଅନାମୀରେ, ତୋତେ ପାଇ କେଡ଼େ ଖୁସି ହୋଇଥିଲି, କିନ୍ତୁ ତୋ ପାଇଁ ମୋତେ ଜେଲ ଯିବାକୁ ହେବ ଏବଂ ଚାକିରିଟା ବି ହରାଇବି । ମୋତେ ସତ କହ, ତୁ ଏଠାରୁ ଯାଇ ବୋମ୍ବାଇ ସହରରେ ମନ୍ତ୍ରୀଙ୍କ ସାନଭାଇଙ୍କ ଘରେ ଚାକରାଣୀ ରହିଥିଲୁ ?''

''ହଁ, ରହିଥିଲି ।''

''ପଳାଇ ଆସିଲୁ କାହିଁକି ?''

''ବାବୁଙ୍କର ବ୍ୟବହାର ସହ୍ୟ କରି ନ ପାରି ପଳାଇଆସିଲି । ମୋ ମୁଣ୍ଡରେ ବ୍ୟାଣ୍ଡେଜ ବନ୍ଧା ରହିଛି ଦେଖ । ରାଗରେ ମୋତେ ପେଲି ଦେଲେ ବୋଲି ତଳେ

ପଡ଼ିଗଲି ଓ ମୁଣ୍ଡ ଫାଟିଗଲା । ବାବୁଆଣୀ ଔଷଧ ଲଗାଇ ବ୍ୟାଣ୍ଡେଜ ବାନ୍ଧିଦେବାରୁ ବଞ୍ଚିଗଲି ।''

''ସତ କଥା କହ, ତାଙ୍କ ଘରୁ ଟଙ୍କା ଚୋରି କରିଛୁ ?''

''ଏ କଥା କହୁଛି କିଏ ? ମୁଁ କାହିଁକି ଚୋରି କିରିବି ? ମୋର ଦରକାର କ'ଣ ? ମୋ ପୁଟୁଳିଟା ଫିଟାଇ ଦେଖ । ଅପର୍ଣ୍ଣା ଯେଉଁ କେତେ ଖଣ୍ଡି ପାଞ୍ଚଟଙ୍କିଆ ନୋଟ ମୋ ହାତରେ ଦେଇଥିଲେ, ସେଗୁଡ଼ିକ ମଧ୍ୟ ପୁରୁଣା ଲୁଗା କାନିରେ ବନ୍ଧା ରହିଛି ।''

''ତୁ ଚୋରି କରିପାରିବୁ ବୋଲି ଗଙ୍ଗାଜଳରେ ଛିଡ଼ା ରହି କେହି କହିଲେ ମଧ୍ୟ ମୁଁ ବିଶ୍ୱାସ କରିବି ନାହିଁ । କିନ୍ତୁ କାଲି ରାତିରେ ଯାହା ଶୁଣିଲି ସେପାଇଁ ସାରାରାତି ଡରି ଡରି ଚିନ୍ତାରେ ରହିଛି ।''

''କ'ଣ ଶୁଣିଲ କୁହ ? କାହାପାଖରୁ ଶୁଣିଲ ?''

ଏତିକି ପଚାରି ମମତାଦେବୀ ତଳେ ବସିପଡ଼ି ଉତ୍ସୁକ ଭାବରେ ବାଘା ସିଂ ଆଖିକୁ ଚାହିଁ ରହିଲେ । ବାଘା ସିଂ ବର୍ଣ୍ଣନା କଲେ,

''ତୁ ଶୋଇଗଲା ପରେ ମନ୍ତ୍ରୀଙ୍କ ଦ୍ୱାର ପାଖରେ ଜଗୁଆଳ ଡିଉଟି ପାଇଁ ବାହାରିଗଲି । ରାତି ପ୍ରାୟ ୧୧ଟା ବେଳେ ମନ୍ତ୍ରୀଙ୍କ ସାନଭାଇ ବିମାନ ଯୋଗେ ବୋମ୍ବାଇରୁ ଦିଲ୍ଲୀ ଆସି ପୁତ୍ରଲାଭ ପାଇଁ ବଧାଇ ଦେଲେ । ଦୁଇଭାଇଙ୍କ ମଧ୍ୟରେ କଥାବାର୍ତ୍ତା ହେଉଥାଏ । ମୁଁ ବାହାରେ ରହି ଶୁଣୁଥିଲି । ସ୍ୱରାଜବାବୁ କହିଲେ, ତୁ ସେଦିନ ଯେଉଁ ପଚାଶ ଲକ୍ଷ ଥିବା ଆଟାଚିଟା ଦେଇ ଯାଇଥିଲୁ ତାହା ନିର୍ବାଚନ ପରେ ବିଲ୍‌ଗୁଡ଼ିକ ମେଣ୍ଟାଇବା ଲାଗି ରଖିଥିଲି । ଗତକାଲି ଗୋଟିଏ ପାର୍ଟି ଟଙ୍କା ପାଇଁ ଆସିଲେ । ପଚାଶ ଲକ୍ଷ ଅଛି ବୋଲି କହି ଆଟାଚିଟା ବଢ଼ାଇ ଦେଲି । ସେମାନେ ମୋ ଆଗରେ ଗଣି ପକାଇ କହିଲେ, ପଚାଶ ନୁହେଁ ପଚିଶ । ମୁଁ ଅପମାନିତ ବୋଧକରି ପରେ ଦେବି କହି ସେମାନଙ୍କୁ ବିଦାୟ କଲି । ସାନଭାଇ ସ୍ୱାଧୀନବାବୁ ସଙ୍ଗେ ସଙ୍ଗେ ଜଣାଇଲେ, ଗୋଟାଏ ନୌକରାଣୀ ସୁବିଧା ସୁଯୋଗ ଦେଖି ଚୋରି କରିଛି ଏବଂ ଆମ ଘରୁ ପଳାଇଆସିଛି । ନୌକରାଣୀଟାର ନାକ ନାହିଁ, କାନ ନାହିଁ, ଗୋଡ଼ ଦୁଇଟା ଓ ମୁଣ୍ଡଟା କଳାପଥର ପରି । ଧରାପଡ଼ିଯିବ । ଯେଉଁ ଲୋକଟା ତାକୁ ରଖାଇ ଦେଇଥିଲା ସେ ଥାନାରେ । ମାଡ଼ ଖାଇଲେ ସବୁ କଥା ମାନିଯିବ । ଭାଇ, ତୁମେ ଚିନ୍ତା କର ନାହିଁ । ଟଙ୍କା ମିଳିଯିବ ।''

ଉତ୍‌କ୍ଷିପ୍ତ ହୋଇଉଠି ମମତାଦେବୀ କହିଲେ, ''ସ୍ୱାଧୀନବାବୁ ଶୋଇଥିବେ । ମୁଁ ଯାଉଛି, ସ୍ୱରାଜବାବୁଙ୍କ ଆଗରେ ତାଙ୍କୁ ପଚାରିବି, ନୌକରାଣୀ ଚୋରି କରିଛି ବୋଲି ପ୍ରମାଣ ଦେଇପାରିବେ ! ସେଥିସହ ଉଭୟଙ୍କ ଆଗରେ ଅନ୍ୟ କୌଣସି କଥା କହିଯିବି ଯାହା ଶୁଣିଲେ ସେମାନେ ଚମକି ଉଠିବେ ।''

''ସ୍ୱାଧୀନବାବୁ ରାତି ଚାରିଟାରେ ଉଠି ବିମାନଘାଟିକୁ ଚାଲି ଗଲେଣି । ବୋମ୍ବାଇକୁ ବିମାନ ସକାଳ ୫ଟାରେ ଛାଡ଼େ । ତାଙ୍କର ଜରୁରୀ କାମ ଥିବା ଯୋଗୁଁ ଛୁଆକୁ ଦେଖିବାପାଇଁ ଯାଇପାରିଲେ ନାହିଁ ।''

''ତା' ହେଲେ ମୁଁ ଯାଉଛି, ମନ୍ତ୍ରୀଙ୍କୁ ଜଣାଇଦେବି ଯେ ସ୍ୱାଧୀନବାବୁ ଯାହା କହିଛନ୍ତି ତାହା ସବୁ ମିଛ । ଏକଥା ନ କହିଲେ, ଯେଉଁ ନିର୍ଦ୍ଦୋଷ ଲୋକଟି ମୋତେ ତାଙ୍କ ଘରେ ରଖାଇ ଦେଇଥିଲା, ତାକୁ ଥାନାରେ ପୁଲିସ ମାଡ଼ ଦେବେ । ଏପରି କାମ ମୁଁ ସହ୍ୟ କରିପାରିବି ନାହିଁ ।''

ମମତା ବାହାରିଯିବା ଲାଗି ଉଦ୍ୟତ ହେବା ଦେଖି ବାଘା ସିଂ ତାଙ୍କ ହାତଟି ଧରି ପକାଇ କାନ୍ଦ କାନ୍ଦ କଣ୍ଠରେ କହିଲା, ''ଅନାମୀ, ମୋ ପାଖରେ ଆଶ୍ରୟ ନେଇଥିଲୁ ବୋଲି ମନ୍ତ୍ରୀ ଜାଣିଲାମାତ୍ରେ ମୋତେ ଥାନାକୁ ଓ ସେଠାରୁ ହାଜତକୁ ପଠାଇ ଦେବେ । ମୋ ଚାକିରି ଯିବ ଏବଂ ମୋ ବୁଢ଼ା ବାପାମା' କାନ୍ଦି କାନ୍ଦି ପ୍ରାଣ ହରାଇବେ । ମୋ ପ୍ରତି ଟିକିଏ ଦୟା କର ଅନାମୀ, ତୋ ହାତଗୋଡ଼ ଧରୁଛି । ଆଜି ଦିନ ସାରା ଏହି ଟିଣ ଘର ଭିତରେ ଲୁଚିରହ । ରାତି ହେଲେ ତୋତେ ନେଇ ଆଉ ଗୋଟିଏ ନିରାପଦ ଜାଗାରେ ରଖିଦେଇ ଆସିବି ।''

''ମୁଁ ବରଂ ମୋ ଗାଁକୁ ପଳାଇଯାଉଛି,'' କହିଲେ ମମତା ।

''ଯେଉଁଠାକୁ ଗଲେ ବି ଧରା ପଡ଼ିବୁ । ମନ୍ତ୍ରୀ ହେଉଛନ୍ତି ମନ୍ତ୍ରୀ । ତାଙ୍କ ଭାଇ ଜଣେ ଆଇ.ଏ.ଏସ୍. ଅଫିସର । ଚୋରି ଟଙ୍କା ପାଞ୍ଚ, ଦଶ ନୁହେଁ, ଏକାଥରକେ ପଚିଶଲକ୍ଷ । ତେଣୁ ସେମାନେ ଇଚ୍ଛା କଲେ ପାତାଳ ତଳୁ ବି ତୋତେ ଖୋଜି ଖୋଜି ବାହାର କରିବେ । ତୁ ଚୋରି କରି ନ ଥିଲେ ବି ଜେଲ୍ ଭୋଗିବୁ ।''

ଲୁଚି ରହିବାକୁ ସତର୍କ କରିଦେଇ ବାଘା ସିଂ ଡିଉଟିକୁ ଚାଲିଗଲା । ତାଙ୍କ ସ୍ତ୍ରୀ ଅନାମୀକୁ ଭାତ ଖୁଆଇ ରାତି ପର୍ଯ୍ୟନ୍ତ ଟିଣ ସେଡ୍ ଭିତରେ ଲୁଚାଇ ରଖିଲେ ।

ମଧ୍ୟରାତ୍ରିରେ ବାଘା ସିଂ ଖଣ୍ଡିଏ ଅଟୋରିକ୍ସାରେ ବସାଇ ମମତାଦେବୀଙ୍କୁ ନେଇଗଲେ ଯମୁନା ନଦୀ କୂଳର ଗୋଟିଏ ସୁବିସ୍ତୃତ ଅଞ୍ଚଳକୁ । ସେଠାରେ ନିର୍ମାଣ

ହେଉଥାଏ ମନ୍ତ୍ରୀମାନଙ୍କର କୋଠାଘର । ସକାଳ ପାଖରୁ ସନ୍ଧ୍ୟା ପର୍ଯ୍ୟନ୍ତ ଶହ ଶହ କୁଲି, ମିସ୍ତ୍ରି, ସିମେଣ୍ଟବାଲା, ବାଲିବାଲା, ଇଟାବାଲା ଓ ଟ୍ରକ୍ ଡ୍ରାଇଭରମାନଙ୍କ ଭିଡ଼ ଲାଗି ରହେ । ମଧ୍ୟରାତ୍ର ବେଳକୁ ସ୍ଥାନଟି ନିର୍ଜନ ଦେଖାଯାଏ ।

ଗୋଟିଏ ସୁରମ୍ୟ ଅଟ୍ଟାଳିକା ଦିଗକୁ ଅଙ୍ଗୁଳି ଦେଖାଇ ବାଘା ସିଂ ଜଣାଇଲା, ''ଏହି ଘରଟା ଆମ ମନ୍ତ୍ରୀଙ୍କର । ପାଖକୁ ପାଖ ତିଆରି ହେଉଛି ଅନ୍ୟ କେତେଜଣ ମନ୍ତ୍ରୀ ଓ ଏମ୍.ପି.ଙ୍କ କୋଠା । ଶହ ଶହ ଲୋକଙ୍କ ଖାଇବା ପିଇବା ପାଇଁ ଛପରରେ ତିଆରି ଚାରିଟା ହୋଟେଲ ଅଛି । ମୁଁ ଆମ ବାବୁଙ୍କ ଘର ତିଆରି କାମ ତଦାରଖ କରିବାପାଇଁ ମଝେ ମଝେ ଆସିଥାଏ । ଜଣେ ହୋଟେଲବାଲା ଗୋଟିଏ ଚାକରାଣୀ ଠିକ୍ କରିଦେବାକୁ କହିଥିଲା । କେବଳ ଅଇଁଠାପତ୍ରଗୁଡ଼ାକ ଉଠାଇ ନଦୀରେ ପକାଇଦେବା ହେଉଛି କାମ । ଭଲ ବେତନ ଦେବ ।''

ମମତା ପଚାରିଲେ, ''ମନ୍ତ୍ରୀ ସ୍ୱରାଜବାବୁ ତାଙ୍କ ନୂଆ କୋଠାକୁ କେବେ ଆସିବେ ? ତାଙ୍କ ସ୍ତ୍ରୀ ଓ ପୁଅକୁ ସାଙ୍ଗରେ ଆଣିବେ ତ ?''

''ଘର କାମ ଶେଷ ହେଲାଣି । ମନ୍ତ୍ରୀଙ୍କ ସ୍ତ୍ରୀ ନିଜେ ଆସି ଫିନିସିଂ କାର୍ଯ୍ୟ ଦେଖୁଛନ୍ତି । ବିଦେଶରୁ ମାର୍ବଲ୍ ଟାଇଲ୍ ଆସୁଛି । କାଠ ଆସୁଛି ଆଣ୍ଡାମାନ ଦ୍ୱୀପରୁ । ମାସେ ଦୁଇମାସ ମଧ୍ୟରେ ସବୁ ରେଡି ହୋଇଯିବ । ଜଗୁଆଳି ଓ ଦେହରକ୍ଷୀମାନଙ୍କ ଲାଗି ଛୋଟ ଛୋଟ ଷ୍ଟାଫ୍ କ୍ୱାର୍ଟରର ତିଆରି ଶେଷ ହେଲାଣି । ତୁ ଏବେ ଗୋଟିଏ ହୋଟେଲରେ ଥା । ମୁଁ ଆସିଲା ପରେ ତୋ ରହିବା କଥା ଭାବିବି ।''

ଅଟୋରିକ୍ସା ରହିଲା ଗୋଟିଏ ଛପର ଘର ଆଗରେ । ଗୋଟିଏ ବଡ଼ ହଲ ପରି ଦେଖାଯାଉଥିବା ପ୍ରଶସ୍ତ ଚାଳଘର ମଧ୍ୟରେ ପଡ଼ିଥାଏ କେତେଗୁଡ଼ିଏ ଛୋଟ ଛୋଟ ଚେୟାର ଓ ଟେବୁଲ । ମାଲିକ ପଇସା ଗଣୁଥାନ୍ତି । ବାଘା ସିଂ କହିଲା, ''ଚାକରାଣୀ ଆଣି ଦେବି କହିଥିଲି । ଆଜି ଆଣିଛି । ଅଇଁଠାପତ୍ର ଉଠାଇବ । କେତେ ବେତନ ଦେବୁ, ଜବାବ୍ ଦେ ।''

ମାଲିକ ଉତ୍ତର ଦେଲେ, ''ଶହେ ଖଣ୍ଡ ପତ୍ର ଉଠାଇବା ପାଇଁ ମୋର ରେଟ୍ ପାଞ୍ଚଟଙ୍କା । ଦଶଖଣ୍ଡି ବାସନ ମାଜିଲେ ଦୁଇ ଟଙ୍କା ।''

ମମତାଦେବୀ ପଚାରିଲେ, ''ମୋ ରହିବା ପାଇଁ ଘର ଅଛି ?''

ମାଲିକଙ୍କ ଆଖି ପଡ଼ିଗଲା ତାଙ୍କ ମୁହଁ ଉପରେ । ବିରକ୍ତି ପ୍ରକାଶ କରି କହିଲେ, ''ୟାକୁ ରଖିଲେ କମ୍ ମଜୁରି ଦେବି । ଏହାର ମୁହଁ ଦେଖିଲେ ଗରାଖ ସଂଖ୍ୟା କମିଯିବ ।''

ବାଘା ସିଂ ବୁଝାଇଲା, ''ଲୋକମାନେ ଖାଇଗଲା ପରେ ସେ ପତ୍ର ଉଠାଇବ । ତା ମୁହଁ ଦେଖିବ କିଏ ? ଏପରି ନୌକରାଣୀ ପାଇବୁ ନାହିଁ । ଆମ ପାଖରେ ଅନେକ ଦିନ ଥିଲା । ତା' ଗୁଣ ଜାଣିଲେ ତୁ ବି ପ୍ରଶଂସା କରିବୁ । ତା ପାଇଁ ରହିବା ଜାଗାଟା ଦେଖାଇ ଦେ ।''

ମାଲିକ ଉଠିଲେ । ହୋଟେଲ ପଛପଟେ ଥାଏ କେତେଗୁଡ଼ିଏ ଚାଳିଆ । ଗୋଟିଏ ଖାଲିଥିବା ବଖରା ଦେଖାଇଦେଇ କହିଲେ, ''ଏହିଠାରେ ରହିବୁ । ନଈରେ ଗାଧୋଇବୁ । ମୁହଁରେ ଓଢ଼ଣା ଦେଇ ବାହାରିବୁ ଓ କାମ କରିବୁ । ତଳିପା ଆଙ୍ଗୁଳି ପର୍ଯ୍ୟନ୍ତ ଲୁଗା ପିନ୍ଧିବୁ ।''

ବାଘା ସିଂ ଅଟୋକୁ ଉଠିଲାବେଳେ ମମତାଦେବୀ ପଚାରିଲେ, ''ମନ୍ତ୍ରୀ ଏଠାରେ ରହିଲା ପରେ ମୋତେ ଯଦି ଦେଖିପାରିବେ ଓ ଚୋରଣୀ ବୋଲି ଭାବିବେ, ତେବେ ମୋର ଅବସ୍ଥା କ'ଣ ହେବ ?''

''ଅନାମୀ, ଆମ ମନ୍ତ୍ରୀ ଏତେ ବୋକା ନୁହନ୍ତି । ସେ ପ୍ରଥମରୁ ଜାଣିନେଇଥିବେ ଯେ, ତାଙ୍କ ଭାଇ ଅଧେ ମାଲ୍ ମାରି ନେଇଛନ୍ତି ଏବଂ ଅନ୍ୟ ମୁଣ୍ଡରେ ଅଠା ବୋଳୁଛନ୍ତି । ମନ୍ତ୍ରୀ ତୋତେ ଦେଖିବାପାଇଁ ହୋଟେଲକୁ ଆସିବେ ନାହିଁ । ଡରୁଛୁ କାହିଁକି ?''

ବାଘା ସିଂ ବିଦାୟ ନେଲା । ମମତା ଚାଳିଆଟିରେ ପଶିଯାଇ ଭିତରୁ କବାଟ କିଳି ମସିଣା ଖଣ୍ଡିକ ଉପରେ ଶୋଇପଡ଼ିଲେ । ସ୍ୱରାଜ ନିଜ ଘରେ ରହିଲେ ତା ସ୍ତ୍ରୀ ଓ ଛୁଆକୁ ଦେଖିପାରିବେ ବୋଲି ଆଶାନ୍ୱିତ ହେଲେ । ମନେପଡ଼ିଲା ଅଭାଗିନୀ ମନ୍ଦାକିନୀ ଓ ତା ଝିଅଟି କଥା । ସେମାନଙ୍କ ମଙ୍ଗଳ କାମନା କରି ଭଗବାନ୍‌ଙ୍କୁ ପ୍ରାର୍ଥନା କଲେ ।

ଉଷାକାଳର କିଛି ପୂର୍ବରୁ ମମତାଦେବୀ ଚାଳିଆରୁ ବାହାରିଯାଇ ବସି ରହିଲେ ଯମୁନା କୂଳରେ । କଳ୍ପନା ସ୍ରୋତରେ ନିଜର ମନକୁ ଭସାଇଦେଲେ ଅଜ୍ଞାତ ଅତୀତ ଦିଗରେ । କେତେ ଦୃଶ୍ୟ ଦେଖିଛି ଏହି ପବିତ୍ର ସ୍ରୋତସ୍ୱିନୀ ! ଏହାରି ସଲିଳରେ ଭାସିଯାଇଛି ଯୁଗ ପରେ ଯୁଗ । ମହାକାବ୍ୟ ଯୁଗର ଏହି ନଦୀ ଦେଖିଛି ଶ୍ରୀକୃଷ୍ଣଙ୍କ ଲୀଳା । ପରବର୍ତ୍ତୀ ଯୁଗମାନଙ୍କରେ ଦେଖିଛି ଅସଂଖ୍ୟ ରାଜ୍ୟ ସାମ୍ରାଜ୍ୟର ଉତ୍‌ଥାନ ଓ ପତନ । ପୁଣ୍ୟତୋୟା ଯମୁନାରେ ସ୍ନାନ କରିଥିବେ ଅଗଣିତ ମୁନି, ଋଷି ଓ ମହାପୁରୁଷମାନେ । ନିଜକୁ ଭାଗ୍ୟବତୀ ମନେକଲେ ଯେ ପବିତ୍ର ଯମୁନା କୂଳରେ ତାଙ୍କୁ ଟିକିଏ ଆଶ୍ରୟ ମିଳିଯାଇଛି ।

ପରିବେଶର ସୌନ୍ଦର୍ଯ୍ୟରେ ମୋହିତ ହୋଇ ପ୍ରବେଶ କଲେ ସୁଶୀତଳା ନଦୀ ଗର୍ଭରେ ସ୍ନାନ ପାଇଁ । ପାଣିରେ ପାଦ ରଖିଲା କ୍ଷଣି ମମତାଙ୍କ ଦେହ ଶିହରି ଉଠିଲା ।

ଏ କ'ଣ ସେହି ଯମୁନା ଯାହାର କଳ୍ପନାରେ ଆତ୍ମବିସ୍ମୃତ ହୋଇଯାଇଥିଲେ ! ପାଣିରେ ଭାସି ଯାଉଛି ଜୀବଜନ୍ତୁର ଶବ, ରାଶି ରାଶି ମଇଳା, ଡାକ୍ତରଖାନା ରୋଗୀମାନଙ୍କର ରକ୍ତ ପୂଯ ମିଶ୍ରିତ ତୁଳା ଓ ବ୍ୟାଣ୍ଡେଜ କନା ଏବଂ ନାଳ ନର୍ଦ୍ଦମାର ଆବର୍ଜନା ! ସ୍ନାନ କଲାବେଳେ ଅନୁଭବ କଲେ, ଏହି ନଦୀ ଶ୍ରୀକୃଷ୍ଣଙ୍କ ସମୟର ଯମୁନା ନୁହେଁ, ଆଧୁନିକ ଦିଲ୍ଲୀ ମହାନଗରୀର ଯମୁନା । ନଦୀ ଜଳ ଏବେ ନିର୍ମଳ ଓ ବିଶୁଦ୍ଧ ନୁହେଁ, ଦୂଷିତ ଏବଂ ଅପବିତ୍ର !

ମଧ୍ୟାହ୍ନ ବେଳକୁ ହୋଟେଲରେ ଖାଇବାଲାଗି ଆସୁଥାନ୍ତି ଦଳ ଦଳ ମଜୁରିଆ, ଠିକାଦାର ବା କଣ୍ଟ୍ରାକ୍ଟରମାନେ । ମଜୁରିଆମାନେ ଖାଉଥାନ୍ତି ଶୁଖିଲା ଶାଳ ପତ୍ରରେ, କଣ୍ଟ୍ରାକ୍ଟର ଓ ଠିକାଦାରମାନଙ୍କ ପାଇଁ ରହିଥାଏ ଥାଳି ବା ପ୍ଲେଟ୍ । ଗୋଟିଏ ଦଳ ଖାଇଗଲା ପରେ ମମତାଙ୍କ କାମ ଥାଏ ଅଇଁଠା ପତ୍ରଗୁଡ଼ାକ ଟେକିନେଇ ନଦୀ ଗର୍ଭରେ ଫୋପାଡ଼ିବେ ଓ ବାସନଗୁଡ଼ିକ ଧୋଇଦେବେ ନଈ ପାଣିରେ । ଦିନେ ଦୁଇଦିନ ସେପରି କାର୍ଯ୍ୟ କଲା ପରେ ଆତ୍ମଗ୍ଲାନି ଜାତ ହେଲା ଯେ, ଯମୁନା ପାଣିରେ ସେପରି ଅପରିଷ୍କାର ପଦାର୍ଥ ନିକ୍ଷେପ କରିବା ଉଚିତ ନୁହେଁ । ଦିନେ ସନ୍ଧ୍ୟାବେଳେ ଜଣେ କୁଲି ପାଖରୁ କୋଦାଳଟିଏ ମାଗିନେଇ ସେ ଦୁଇଟା ବଡ଼ ବଡ଼ ଗାତ ଖୋଳିଲେ । ତହିଁ ପରଦିନ ଅଇଁଠା ପତ୍ରଗୁଡ଼ାକ ଗୋଟିଏ ଖାତରେ ଓ ଖାଦ୍ୟର ଅବଶିଷ୍ଟାଂଶ ଉଚ୍ଛିଷ୍ଟଗୁଡ଼ିକ ଅନ୍ୟ ଖାତଟିରେ ପକାଇ ଅଳ୍ପ କିଛି କିଛି ମାଟି ଥୋଇଦେଲେ । ମାଲିକ ପଚାରିବାରୁ ଉତ୍ତର ଦେଲେ, ''ମନ୍ତ୍ରୀମାନେ ନିଜ ନିଜ କୋଠା ଆଗରେ ବଗିଚା କରିବା ଲାଗି ଖତ ଦରକାର କରିବେ । ଏହି ପତ୍ର ଓ ଅଇଁଠାଗୁଡ଼ାକ କିଛି ଦିନ ପରେ ଖତ ହୋଇଯିବ ।''

''ଠିକ୍ କଥା କହିଛୁ । ଖତ ବିକି ମୁଁ ମଧ୍ୟ ଦୁଇ ପଇସା ପାଇବି ।''

ମମତାଙ୍କ କାର୍ଯ୍ୟ ଦେଖି ଠିକାଦାରମାନେ ମଧ୍ୟ ନଦୀ କୂଳେ କୂଳେ ଅନେକ ଖାତ ଖୋଳିଦେଲେ । ହୋଟେଲ ଓ ଛୋଟ ଛୋଟ ଦୋକାନର ମଇଳାଗୁଡ଼ାକ ମାଟିତଳେ ପୋତା ହୋଇରହିଲା ।

ତେଣେ ଯମୁନା କୂଳର ଦକ୍ଷିଣ ଦିଗକୁ ବ୍ୟାପି ଯାଇଥିବା ପରିବ୍ୟାପ୍ତ ଅଞ୍ଚଳ ଉପରେ ଦୃଷ୍ଟି ପଡ଼ିଲା ବଡ଼ ବଡ଼ ଅଫିସର ଓ ଧନୀ ଲୋକମାନଙ୍କର । ସମସ୍ତେ ଇଚ୍ଛାକଲେ ସେହି ରମଣୀୟ ସ୍ଥାନରେ ନିଜ ନିଜର ଅଟ୍ଟାଳିକା ନିର୍ମାଣ କରିବେ । ଯୁକ୍ତିଟି ଥାଏ ସରଳ । ଯଦି ମନ୍ତ୍ରୀ ଓ ଏମ୍.ପି.ମାନେ ମୁକ୍ତ ସ୍ଥାନଗୁଡ଼ିକୁ ନିଜ ନିଜ ଦଖଲକୁ

ଅନାୟାସରେ ନେଇଗଲେ, ତାହାହେଲେ ଅନ୍ୟ ମାନ୍ୟଗଣ୍ୟ ବ୍ୟକ୍ତିମାନେ ସେପରି ସୁବିଧା ପାଇବା ଆଇନ୍‌ସମ୍ମତ ।

କିନ୍ତୁ ସେହିସବୁ ଅଞ୍ଚଳରେ ରହିଥାଏ ଦରିଦ୍ର ଶ୍ରମିକମାନଙ୍କର ବସ୍ତି ପରେ ବସ୍ତି । ନଦୀକୂଳର ପତିତ ସ୍ଥାନଗୁଡ଼ିକରେ ପଲା କୁଡ଼ିଆ ତିଆରି କରି ଓ ସେଥିରେ ପରିବାର ରଖି ସେମାନେ ଜୀବିକା ଅର୍ଜନ ନିମନ୍ତେ ଆସିଥାନ୍ତି ରାଜଧାନୀକୁ । କ୍ରମ ବର୍ଦ୍ଧମାନ ରାଜଧାନୀର ନିର୍ମାଣ କାର୍ଯ୍ୟ ଦ୍ରୁତଗତିରେ ଆଗେଇ ଚାଲିଥାଏ । ବିବିଧ ପ୍ରକାର କାର୍ଯ୍ୟର ଆଦି ଅନ୍ତ ନ ଥାଏ । ଚାରିଦିଗରେ ଗଢ଼ି ଉଠୁଥାଏ ଅସଂଖ୍ୟ ସରକାରୀ ଓ ବେସରକାରୀ ସୌଧରାଜି । ଆବଶ୍ୟକ ହେଉଥାଏ ସହସ୍ର ସହସ୍ର ଦିନ ମଜୁରିଆ । ସେମାନେ ଆସୁଥାନ୍ତି ଦିଲ୍ଲୀର ପାର୍ଶ୍ୱବର୍ତ୍ତୀ ଅଞ୍ଚଳରୁ ଏବଂ ଦେଶର ବିଭିନ୍ନ ପ୍ରାନ୍ତରୁ । ନଦୀକୂଳ ଥାଏ ସେମାନଙ୍କ ପରିବାର ପାଇଁ ଆଶ୍ରୟସ୍ଥଳ । ପୁରୁଷମାନଙ୍କ ପରି ମହିଳାମାନେ ମଧ୍ୟ କାର୍ଯ୍ୟ କରି କିଛି କିଛି ଆୟଦ୍ୱାରା ପରିବାରର ଅଭାବ ମେଣ୍ଟାଇବାକୁ ବାଧ୍ୟ ଥାଆନ୍ତି । କେତେଖଣ୍ଡି ବାଉଁଶ ପୋତି ଛପରଟିଏ ପକାଇ ଦେଲେ ସେହିଗୁଡ଼ିକ ହେଉଥାଏ ସର୍ବହରାମାନଙ୍କର ଝୁମ୍ପୁଡ଼ି । ଆଲୁଅ ନ ଥାଏ, ପାଣି ନ ଥାଏ, ରୋଗ ବେମାରି ଚିକିତ୍ସାଲାଗି ଡାକ୍ତରଖାନା ନ ଥାଏ, ପିଲାମାନଙ୍କ ଲାଗି ସ୍କୁଲ ଇତ୍ୟାଦିର ପ୍ରଶ୍ନ ନ ଥାଏ । ଥାଏ କେବଳ ନଦୀକୂଳର ମୁକ୍ତ ପବନ ଓ ନଈର ଅପରିଷ୍କାର ପାଣି । ଅଥଚ ସେହିମାନେ ନିର୍ମାଣ କରୁଥାନ୍ତି ସୁବିଶାଳ ରାଜଧାନୀର ରାଶିହୀନ କୋଠାବାଡ଼ି ।

ଦିନେ ଡାକବାଜି ଯନ୍ତ୍ର ଯୋଗେ ବାରମ୍ବାର ଘୋଷଣା କରାଯିବା ଶୁଣାଗଲା ଯେ ଆଗାମୀ ପନ୍ଦର ଦିନ ମଧ୍ୟରେ ବସ୍ତି ବାସିନ୍ଦାମାନେ ନିଜ ନିଜ ଝୁମ୍ପୁଡ଼ି ଭାଙ୍ଗିନେଇ ଅନ୍ୟ ସ୍ଥାନକୁ ଉଠିଯିବା ପାଇଁ ସରକାର ଆଦେଶ ଜାରି କରିଛନ୍ତି । ନିଜ ଇଚ୍ଛାରେ ଚାଲି ନ ଗଲେ ସରକାରୀ ଜାଗା ଉପରୁ ସେମାନଙ୍କୁ ବଳପୂର୍ବକ ଉଚ୍ଛେଦ କରାଯିବ । ଯେଉଁମାନେ ନିଜ ଇଚ୍ଛାରେ ଉଠିଯିବେ ସେମାନଙ୍କୁ ଅନ୍ୟ ଗୋଟିଏ ଦୂରବର୍ତ୍ତୀ ସ୍ଥାନରେ ଥଇଥାନ କରିବା ବ୍ୟବସ୍ଥା ସରକାର କରିବେ । ଯେଉଁମାନେ ସ୍ୱଇଚ୍ଛାରେ ନ ଯିବେ ସେମାନେ ନୂଆ ଜାଗା କିମ୍ବା ସରକାରୀ ସାହାଯ୍ୟ ପାଇବେ ନାହିଁ ।

କ୍ରମାଗତ ଭାବେ ତିନି ଦିନ ଧରି ପୁଲିସ ଜିପ୍‌ରୁ ମାଇକ୍ ଦ୍ୱାରା ଏହି ଘୋଷଣା କରାଗଲେ ସୁଦ୍ଧା କିଏ ଶୁଣୁଥାଏ ବା ନ ଶୁଣୁଥାଏ, କେଉଁମାନେ ବୁଝିପାରୁଥାନ୍ତି ବା ବୁଝିପାରୁ ନ ଥାନ୍ତି, ସେଥିପ୍ରତି ଘୋଷଣାକାରୀମାନଙ୍କର ଦୃଷ୍ଟି ନ ଥାଏ ।

କିନ୍ତୁ ଗୋଟିଏ ଅଶୁଭ ଦିନର ସୂର୍ଯ୍ୟୋଦୟ ସମୟରେ ଆସିଗଲେ ପୁଲିସ୍ ଫୋର୍ସ, ସରକାରୀ କର୍ମଚାରୀଦଳ ଏବଂ ଆସିଗଲା ବସ୍ତି ଉଚ୍ଛେଦ ପାଇଁ ବଡ଼ ବଡ଼ ବୁଲ୍‌ଡୋଜର । ଯେଉଁ ଶତ ଶତ ଶ୍ରମିକ, ମନ୍ତ୍ରୀ ଓ ଏମ୍.ପି.ମାନଙ୍କ ସୌଧ ନିର୍ମାଣ କାର୍ଯ୍ୟରେ ନିଯୁକ୍ତ ଥିଲେ, ସେମାନେ ସମସ୍ତେ ମୁହୂର୍ତ୍ତ ମଧ୍ୟରେ ଦୌଡ଼ି ଚାଲିଗଲେ ବସ୍ତି ଦିଗକୁ । ଜଣେ ଶ୍ରମିକ ନେତାଙ୍କ କଥା ମାନି ପ୍ରତ୍ୟେକ କୁଲି ହାତରେ ଧରିଲେ ଖଣ୍ଡିଏ ଖଣ୍ଡିଏ ଇଟା ବା ପଥର । ନଦୀକୂଳର ନିର୍ମାଣାଧୀନ ସ୍ଥାନଟି ଜନଶୂନ୍ୟ ହୋଇପଡ଼ିଲା । ଠିକାଦାର ଓ କଣ୍ଟ୍ରାକ୍ଟରମାନେ ହତଭମ୍ବ ଅବସ୍ଥାରେ ଚାହିଁ ରହିଥାନ୍ତି ବସ୍ତି ଦିଗକୁ ।

ଶୁଭିଲା ଭୟଙ୍କର କୋଳାହଳ । 'ମାର', 'ମାର' ଚିତ୍କାର ଶୁଭୁଥାଏ । ଘନଘନ ଶୁଣା ଯାଉଥାଏ ପୁଲିସର ହୁଇସିଲ୍ ଶବ୍ଦ । ପରେ ପରେ ଶୁଭିଲା ଗୁଳିର ଆବାଜ । ପ୍ରାୟ କୋଡ଼ିଏଥର ଗୁଳି ଫୁଟିବା ଶବ୍ଦ ଶୁଣି ହୋଟେଲବାଲାମାନେ ଆତଙ୍କିତ ହୋଇଉଠିଲେ ।

ସେହି ସମୟରେ ଜଣେ ଠିକାଦାର ଦୌଡ଼ି ଆସି ଖବର ଦେଲେ, ''ଅନେକ ଲୋକ ଖଣ୍ଡିଆଖାବରା ହେଲେଣି । ସେମାନେ ଚିତ୍କାର କରୁଛନ୍ତି । ବୋଧହୁଏ ଦୁଇ ଚାରି ଜଣ ମରିଛନ୍ତି । ପୁଲିସ ସେମାନଙ୍କ ଶବ ନେଇ ପଳାଇ ଗଲାଣି ।'' ଠିକ୍ ସେହି ମୁହୂର୍ତ୍ତରେ ଜଳିଉଠିଲା ନିଆଁ । ବସ୍ତି ଉପରୁ ଉଠୁଥାଏ ନିଆଁ ଓ ଧୂଆଁ । ମହିଳା ଓ ପିଲାମାନଙ୍କ ଆର୍ତ୍ତନାଦରେ ଯମୁନା କୂଳ କମ୍ପିଉଠୁଥାଏ ।

ମମତାଦେବୀ ତାଙ୍କ ହୋଟେଲ ମାଲିକଙ୍କ ଗୋଡ଼ ଧରିପକାଇ ଅନୁରୋଧ କଲେ, ''ଦୟାକରି ଜଣେ କଣ୍ଟ୍ରାକ୍ଟରଙ୍କ ଜିପ୍‌ରେ ମୋତେ ବସ୍ତିକୁ ପଠାଇ ଦିଅନ୍ତୁ । ଦୋକାନରୁ କିଛି ଔଷଧ ଓ କପଡ଼ା କିଣିଦେବାକୁ ତାଙ୍କୁ ନିବେଦନ ଜଣାନ୍ତୁ । ମୁଁ ଆହତମାନଙ୍କର ସେବା ଶୁଶ୍ରୂଷା କରିବି ।''

ନିକଟରେ ଛିଡ଼ା ହୋଇଥିବା ଜଣେ ଯୁବକଣ୍ଟ୍ରାକ୍ଟର ପ୍ରଶ୍ନ କଲେ, ''ତୁ କ'ଣ ସେ କାମ ଜାଣିଛୁ ? ତୋତେ ଅଇଁଠାପତ୍ର ଉଠାଇବା ଜଣା ଅଛି । ଗୁଳିମାଡ଼ ଖାଇଥିବା କିମ୍ବା ନିଆଁରେ ପୋଡ଼ିଯାଇଥିବା ଲୋକଙ୍କ ସେବା କରିବୁ କିପରି ?''

''ମୁଁ ଗୋଟିଏ ନର୍ସିଂହୋମରେ କାମ କରିଥିଲି । ନିଆଁରେ ପୋଡ଼ିଗଲି ବୋଲି ମୋର ଏପରି ଅବସ୍ଥା । ଔଷଧ ଓ ଅନ୍ୟ କିଛି ସାମଗ୍ରୀ ପାଇଗଲେ ଆହତମାନଙ୍କର ନର୍ସିଂ କରିପାରିବି ।''

କଣ୍ଟ୍ରାକ୍ଟର ମହାଶୟ ତତ୍‌କ୍ଷଣାତ୍ ମମତାଦେବୀଙ୍କୁ ନିଜ ଜିପ୍‌ରେ ନେଇଗଲେ ଗୋଟିଏ ଔଷଧ ଦୋକାନକୁ ଏବଂ ସେଠାରୁ ବସ୍ତି ଭିତରକୁ ।

## ।। ୩୪ ।।

ଦିନ ଓ ରାତି ମଧ୍ୟରେ ପାର୍ଥକ୍ୟ ଭୁଲିଯାଇ ଏବଂ ନିଜର ସ୍ୱାସ୍ଥ୍ୟପ୍ରତି ଦୃଷ୍ଟି ନ ଦେଇ ମମତା ଲାଗିଗଲେ ଆହତ, ପୀଡ଼ିତ ଓ ଅଗ୍ନିଦଗ୍ଧମାନଙ୍କ ସେବା କାର୍ଯ୍ୟରେ । କଣ୍ଟ୍ରାକ୍ଟରମାନେ ଆଣିଦେଉଥାନ୍ତି ଔଷଧପତ୍ର ଓ ଚିକିତ୍ସା ପାଇଁ ଆବଶ୍ୟକୀୟ ସାମଗ୍ରୀମାନ । ଶିଶୁ ଓ ମହିଳାମାନଙ୍କ ଅସ୍ୱାସ୍ଥ୍ୟକର ପରିବେଶ ଯୋଗୁଁ ନାନା ପ୍ରକାର ପୀଡ଼ା ଭୋଗୁଥିବା ଦେଖି ନିଜର ନର୍ସିଂହୋମ୍‌ରେ ଥିବା କାଳର ଅଭିଜ୍ଞତା ଅନୁଯାୟୀ ସେମାନଙ୍କୁ ମଧ୍ୟ ଚିକିତ୍ସା କରିବା ଲାଗି ସେ ପଶ୍ଚାଦ୍‌ପଦ ହେଲେ ନାହିଁ । ଗୁଳିମାଡ଼ରେ ଆହତ ମଜୁରିଆମାନଙ୍କଠାରୁ ଆରମ୍ଭ କରି ନିଆଁରେ ପୋଡ଼ି ହୋଇଥିବା ଶିଶୁ ଓ ମହିଳା ପର୍ଯ୍ୟନ୍ତ ସମସ୍ତଙ୍କର କ୍ଷତଗୁଡ଼ିକ ସେ ଔଷଧଦ୍ୱାରା ଭଲ କରିବାକୁ ସମର୍ଥ ହେଲେ । ଅବିଶ୍ରାନ୍ତ ପରିଶ୍ରମ ପ୍ରତି ତାଙ୍କର ଭ୍ରୂକ୍ଷେପ ନ ଥାଏ ।

ଆଶ୍ଚର୍ଯ୍ୟର ବିଷୟ ଥାଏ, ଯେଉଁ ସରକାରୀ କର୍ମଚାରୀ ଓ ପୁଲିସମାନେ ଧ୍ୱଂସଲୀଳା ଭିଆଇଯାଇଥିଲେ ସେମାନେ ଆହତମାନଙ୍କୁ ଦେଖିବାଲାଗି କୌଣସି ଚିକିତ୍ସକଙ୍କୁ ପଠାଇଲେ ନାହିଁ । ଠିକାଦାରମାନେ କହୁଥାନ୍ତି, କୁଲି ମଜୁରିଆ ଓ ବସ୍ତିବାସିନ୍ଦାମାନେ ଦେଶର ନାଗରିକ ଭାବରେ ଗଣ୍ୟ ହୁଅନ୍ତି ନାହିଁ । କାରଣ ସେମାନେ କାମ ଖୋଜିବାପାଇଁ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଚାଲିଯାଉଥିବା ହେତୁ କୌଣସି ସ୍ଥାନର ଭୋଟଦାତା ତାଲିକାରେ ସେମାନଙ୍କ ନାମ ମିଳେ ନାହିଁ । ତେଣୁ ରାଜନୈତିକ ବ୍ୟକ୍ତିମାନଙ୍କ ଦୃଷ୍ଟିରେ ସେମାନେ ନାଗରିକ ନୁହନ୍ତି । ସେଥିପାଇଁ ଚିକିତ୍ସା ଦାୟିତ୍ୱ ସରକାରଙ୍କ କର୍ତ୍ତବ୍ୟ ମଧ୍ୟରେ ସ୍ଥାନ ପାଇ ନାହିଁ ।

ସୌଭାଗ୍ୟକୁ ପୁଲିସବାଲାମାନେ ଥରେ ଢେଲାମାଡ଼ ଖାଇଲା ପରେ ପୁଣିଥରେ ବସ୍ତି ଉଚ୍ଛେଦ ଲାଗି ଫେରିଲେ ନାହିଁ । ସରକାରୀ ସ୍ତରରେ ଘୋଷଣା କରାଗଲା ଯେ କୁଲିମାନଙ୍କୁ ଦୂରରେ ଥଇଥାନ କରିଦେଲେ ସେମାନେ ଆଉ ଯମୁନାକୂଳରେ ନିର୍ମାଣ କାର୍ଯ୍ୟ ଶେଷ କରିବାପାଇଁ ଆସିବେ ନାହିଁ । ତେଣୁ ଉଚ୍ଛେଦ କାର୍ଯ୍ୟ ସାମୟିକ ଭାବେ ସ୍ଥଗିତ ରଖାଗଲା । ତେଣେ ବସ୍ତିବାସିନ୍ଦାମାନେ ଲାଗିପଡ଼ି ନିଜ ନିଜ କୁଡ଼ିଆଗୁଡ଼ିକ ପୁଣିଥରେ ତିଆରି କରିପକାଇଲେ । ଅନ୍ୟ ପକ୍ଷରେ ଯେଉଁ ବଡ଼ବଡ଼ିଆ ବାବୁମାନେ ଯମୁନା କୂଳର ଜମିଗୁଡ଼ିକ ଦଖଲ କରି ସୌଧ ନିର୍ମାଣ ଲାଗି ପ୍ରସ୍ତୁତ ହୋଇ ବସିଥିଲେ ସେହିମାନେ ସରକାରଙ୍କ ଦୁର୍ବଳତା ଦେଖି ହତାଶ ହେଲେ । ତଥାପି ଭବିଷ୍ୟତରେ. ସୁସମୟ ଆସିବ ବୋଲି ସେମାନଙ୍କର ବିଶ୍ୱାସ ଥାଏ ।

ହୋଟେଲ ମାଲିକ ଓ ଠିକାଦାରମାନଙ୍କ ମିଳିତ ଉଦ୍ୟମରେ ଅନାମୀ ଲାଗି ଗୋଟିଏ ସ୍ୱତନ୍ତ୍ର ଚାଳଘର ତିଆରି କରିଦେଲେ । ଅଇଁଠାପତ୍ର ଉଠାଇବା ଓ ବାସନ ମାଜିବା କାର୍ଯ୍ୟରୁ ତାକୁ ଅବ୍ୟାହତି ଦିଆଗଲା । ତାଙ୍କ ଖାଇବା ଖର୍ଚ୍ଚ ପାଇଁ ଟଙ୍କା ଦେଲେ କଣ୍ଟ୍ରାକ୍ଟରମାନେ । ତେଣେ ପେଟ ବେମାରି, କାଛୁକୁଣ୍ଡିଆ ଓ ଜ୍ୱରର ଚିକିତ୍ସାଲାଗି. ମମତାଙ୍କ ଘର ଆଗରେ ସଦାବେଳେ ଭିଡ଼ ଲାଗି ରହିଲା । ନିରକ୍ଷର ଲୋକଙ୍କ ପାଇଁ ସେମାନଙ୍କ ଘରକୁ ଚିଠି ଲେଖିବା କିମ୍ୱା ମନିଅର୍ଡ଼ର ପୂରଣ କରିବା ହେଲା ତାଙ୍କର ଅନ୍ୟତମ କାମ । ଚାହୁଁ ଚାହୁଁ ବସ୍ତିଗୁଡ଼ିକରେ ତାଙ୍କ ନାମ ପ୍ରଚଳିତ ହେଲା 'ସେବା ଦେବୀ' ।

ଦିନେ ଠିକାଦାରମାନଙ୍କ ନିକଟରୁ ଖବର ମିଳିଲା ଯେ ଆଗାମୀ ପୂର୍ଣ୍ଣିମା ତିଥିରେ ମନ୍ତ୍ରୀ ମହୋଦୟ ସ୍ୱରାଜବାବୁ ସପରିବାର ତାଙ୍କ ନୂତନ ଗୃହରେ ପ୍ରବେଶ କରିବେ । ଦେଖିବାକୁ ମିଳିଲା ସେଥିପାଇଁ ବ୍ୟାପକ ଆୟୋଜନ ଚାଲିଛି । ଦଳ ଦଳ ଅଫିସର ନୂତନ ଅଟ୍ଟାଳିକା ଓ ତତ୍‌ସଂଲଗ୍ନ ପ୍ରାଚୀର ବେଷ୍ଟିତ ପ୍ରଶସ୍ତ ପ୍ରାଙ୍ଗଣର ନାନାବିଧ ଉନ୍ନତି ସାଧନପାଇଁ ଲାଗି ପଡ଼ିଥାନ୍ତି । ପୁଷ୍ପଶୋଭିତ ଆକର୍ଷଣୀୟ ଉଦ୍ୟାନଟାଏ ମନ୍ତ୍ରୀଙ୍କର ଜରୁରୀ ଆବଶ୍ୟକ ଥାଏ । ସେଥିଲାଗି ସରକାରୀ ଫାର୍ମରେ ଆଗରୁ ଜାତ କରାଯାଇଥିବା ଚାରାଗୁଡ଼ିକୁ ମନ୍ତ୍ରୀଙ୍କ ବାସଭବନର ଚାରିପଟେ ରୋପଣ କରାଗଲା । ଉଦ୍ଭିଦବିତ୍‌ମାନେ ସେଥିରେ ବିଶେଷ ଜ୍ଞାନ ପ୍ରୟୋଗ କରିବା ଦେଖାଗଲା । ଇଲେକ୍‌ଟ୍ରିକାଲ ଇଞ୍ଜିନିୟରମାନେ ଲାଗିପଡ଼ିଥିଲେ ମନ୍ତ୍ରୀଭବନ ଓ ଉଦ୍ୟାନଟିର ଆଲୋକସଜ୍ଜା ନିମନ୍ତେ । ମନ୍ତ୍ରୀପତ୍ନୀଙ୍କ ଇଚ୍ଛାମୁତାବକ ଚାରିମହଲା କୋଠାର ଛାତ ଉପରୁ ଉଜ୍ଜ୍ୱଳ ନୀଳ ଆଲୋକଦ୍ୱାରା ଯମୁନା ଜଳକୁ ରାତ୍ରିକାଳରେ ନୀଳ ରଙ୍ଗରେ ଉଦ୍‌ଭାସିତ କରିବା ଚେଷ୍ଟାରେ ଇଞ୍ଜିନିୟରମାନଙ୍କୁ ବହୁ ପରିଶ୍ରମ କରିବାକୁ ପଡ଼ିଲା ।

ଉଦ୍ୟାନର ଶେଷ ପ୍ରାନ୍ତରୁ ମାର୍ବଲ ପାହାଚମାନ ଲମ୍ୱିରହିଲା ଯମୁନା ନଦୀର ପାଣି ମଧ୍ୟକୁ । ଠିକାଦାରମାନେ କହୁଥାନ୍ତି, ମନ୍ତ୍ରୀଙ୍କ ପତ୍ନୀ କୁଆଡ଼େ ନଈ ପାଣିରେ ପାଦ ବୁଡ଼ାଇ ବସି ରହିବାକୁ ଭଲ ପାଆନ୍ତି । ପୂର୍ଣ୍ଣିମା ତିଥି ପ୍ରତି ସମସ୍ତଙ୍କର ଅପେକ୍ଷା ଥାଏ । ଭୋଜିଭାତ କିମ୍ୱା ମିଷ୍ଟାନ୍ନ ବଣ୍ଟନ ହେଉଛି ଗୃହ ପ୍ରବେଶର ଏକ ବିଧି, କହୁଥାନ୍ତି କଣ୍ଟ୍ରାକ୍ଟରମାନେ ।

ତିନି ଦିନ ବାକି ଥାଏ । ଗୋଧୂଳି ବେଳରେ ମନ୍ତ୍ରୀ ଓ ମନ୍ତ୍ରୀପତ୍ନୀ ସୁରକ୍ଷା ବଳୟ ମଧ୍ୟରେ ଅକସ୍ମାତ୍ ଆସିଗଲେ ପରିଦର୍ଶନ ନିମନ୍ତେ । ଅବଶ୍ୟ ଗୋପନରେ ।

ବୁଲୁଥିଲା ସମୟରେ ସେମାନଙ୍କ ଦୃଷ୍ଟି ପଡ଼ିଗଲା ମାର୍ବଲ ପାହାଚର ତଳ ଭାଗରେ ବସିଛି ଜଣେ ମୂଳିଆଣୀ । ଦେହରକ୍ଷୀ ଦୌଡ଼ି ଯାଇ ଧମକ ଦେଲା, ''ଏଠାରେ କାହିଁକି ବସିଛୁ ? ଯା, ଉଠି ଯା । ଖୋଦ୍ ମନ୍ତ୍ରୀ ପରା ଆସିଛନ୍ତି ! ଏଠାରେ ତୋତେ ଦେଖିଲେ ବିରକ୍ତ ହେବେ ।''

ମମତା ଭାବିଲେ, ସେହି ଗୋଧୂଳି ହେବ ତାଙ୍କ ପ୍ରତି ଏକ ଶୁଭ ଲଗ୍ନ । ସାହସ କରି ସେ ନିଜର ପରିଚୟ ଦେବା ଲାଗି ସୁଯୋଗ ପାଇଗଲେ ଜାଣି ଅନ୍ୟମନସ୍କ ଭାବରେ ପାହାଚ ପରେ ପାହାଚ ଉଠି ଆସିଗଲେ ଉପର ସ୍ଥାନକୁ । ନଦୀ ଦିଗକୁ ଆସୁଥାନ୍ତି ସ୍ୱରାଜବାବୁ ।

ତାଙ୍କର ଦୃଷ୍ଟି ପଡ଼ିଗଲା ନିକଟରେ ଛିଡ଼ା ହୋଇଥିବା ବିକୃତମୁଖୀ ମହିଳାଙ୍କ ଉପରେ । କିଛି ସମୟ ଚାହିଁରହିଲେ ତା ମୁଖକୁ । ଗଭୀର ଆଶ୍ଚର୍ଯ୍ୟ ଭାବ ପ୍ରଦର୍ଶନପୂର୍ବକ ପାର୍ଶ୍ୱବର୍ତ୍ତୀ ଭଦ୍ରଲୋକଙ୍କୁ କହିଲେ, ''ଧରା ପଡ଼ିଯାଇଛି, ଧରା ପଡ଼ିଯାଇଛି ! ଏହି ନାକ କାନ ନ ଥିବା ନାଣ୍ଡୀ ମୁଣ୍ଡୀଟା ହେଉଛି ବୋମ୍ବାଇର ସେହି ଚୋରଣୀ । ମୋ ଭାଇ ଠିକ୍ ଏହି ପ୍ରକାର ମୁହଁଟା ବର୍ଣ୍ଣନା କରିଥିଲା ।''

'''ମୁଁ ଧରାପଡ଼ି ନାହିଁରେ ସ୍ୱରାଜ, ତୁ ମୋ ଆଗରେ ଧରା ପଡ଼ିଯାଇଛୁ । ତୁ ପରା ତୋ ବାବା ତପସ୍ୱୀବାବୁଙ୍କ ପୁଅ ? ଚାଲ୍, ମୋ ସାଙ୍ଗରେ ବଗିଚାର ସେହି ନିଭୃତ କୋଣକୁ । ମୋ କଥା ଶୁଣିଲା ପରେ ଜାଣିପାରିବୁ ମୁଁ କିଏ !''

ମନ୍ତ୍ରୀଙ୍କ ନିକଟରେ ଥିବା ଭଦ୍ରବେଶୀ ବ୍ୟକ୍ତିଟି ମମତାଙ୍କ ଗାଲରେ ଶକ୍ତ ଥାପଡ଼ଟିଏ ବସାଇ ଦେଇ ପାଟିକରି ଉଠିଲା, ''ତୋର ଏଡ଼େ ବଡ଼ ଆସ୍ପର୍ଦ୍ଧା ! ତୁ ମନ୍ତ୍ରୀ ମହୋଦୟଙ୍କ ବାପାଙ୍କ ନାମ ଉଠାଇପାରିଲୁ ? ତାଙ୍କ ବାପାଙ୍କ ନାମ କିଏ ନ ଜାଣିଛି ? ପୁଣି ତୋର ଏଡ଼େ ସାହସ ହେଲାଣି ମନ୍ତ୍ରୀ ମହୋଦୟଙ୍କୁ ତୁ ବୋଲି ସମ୍ବୋଧନ କରୁଛୁ ।'' ବସାଇଦେଲେ ଅନ୍ୟ ଗୋଟାଏ ଚଟକଣା ।

ମମତାଦେବୀ ସଦମ୍ଭରେ ଛିଡ଼ାରହି କହିଗଲେ, ''ସ୍ୱରାଜ, ମୋର ନାକ ନ ଥିଲେ ମଧ୍ୟ ନିଃଶ୍ୱାସ ପ୍ରଶ୍ୱାସ ଚାଲିଛି । କାନ ନ ଥିଲେ ସୁଦ୍ଧା ଶ୍ରବଣ ଶକ୍ତି ଯାଇ ନାହିଁ । ମୁଣ୍ଡ ପୋଡ଼ି ଯାଇଥିଲେ ମଧ୍ୟ ମସ୍ତିଷ୍କ ପୋଡ଼ି ଯାଇ ନାହିଁ । ଚାଲ୍ ମୋ ସାଙ୍ଗରେ ମୋର ପରିଚୟ ଜାଣିବା ଲାଗି । ଏହି ଲୋକଟାକୁ ଚାଲିଯିବାକୁ କହ । ଆଜି ତୋତେ ଏକାକୀ ପାଇଛି । ଛାଡ଼ିବି ନାହିଁ । ତୋ ବାବାଙ୍କର ପୁଅ ହୋଇ ତାଙ୍କରି ନାମ ଧରି ମନ୍ତ୍ରୀ ହେଲୁ ବୋଲି ନ୍ୟାୟ ଅନ୍ୟାୟ, ପାପ ପୁଣ୍ୟ, ବିଚାର ଅବିଚାର ମଧ୍ୟରେ ଥିବା ପାର୍ଥକ୍ୟ

ଭୁଲିଗଲୁ ? ମୋ କଥା ତୋତେ ଶୁଣିବାକୁ ହେବ । ଶୁଣିସାରିଲା ପରେ ଯାହା ଇଚ୍ଛା କରିବୁ ।''

''ସାର୍, ଦେଖୁଛନ୍ତି ଚୋରଣୀଟାର ସାହସ ! ବୋମ୍ବେରୁ ଚୋରିକରି ପଳାଇଆସି ଏଠାରେ ଆଡ୍ଡା ଜମାଇ ଶ୍ରମିକ ଅଶାନ୍ତି ସୃଷ୍ଟି କରୁଛି । ସାର୍, ସେଦିନ ପୁଲିସ୍ ଉପରେ ଯେଉଁ ଢେଲା ପଥର ମାଡ଼ ହେଲା, ସେଥିପାଇଁ ଏହି ମାଇକିନିଆଟା ଦାୟୀ,'' ଉଗ୍ର ରୂପ ଧରି କହିଗଲେ ମନ୍ତ୍ରୀଙ୍କ ପାର୍ଶ୍ୱଚର ।

ନିଜ ପତ୍ନୀ ସେହି ଦିଗକୁ ଅଗ୍ରସର ହେଉଥିବା ଦେଖି ସ୍ୱରାଜବାବୁ ତାଙ୍କ ଦିଗକୁ ଫେରିପଡ଼ିଲେ । ପାର୍ଶ୍ୱଚର ଧମକ ଦେଇଗଲେ,''ମଜା ପାଇବୁ ରହିଥା ।''

ମମତା ଖୁସି ହେଲେ ଯେ ଆଜିର ସୁଯୋଗଟା ବିଫଳ ହେଲେ ମଧ୍ୟ ସ୍ୱରାଜ ଏହି ଘରେ ରହିଗଲା ପରେ ତାକୁ ବାରମ୍ବାର ଭେଟିବା ପାଇଁ ସୁଯୋଗ ମିଳିବ । ଆଜି ତା ବାବାଙ୍କର ନାମ ସ୍ମରଣ କରାଇଦେଇଛି, ଯଥାସମୟରେ ମୋର ନାମ ଜଣାଇ ଦେବି ।

ଅନ୍ଧକାର ମାଡ଼ି ଆସୁଥାଏ । ମନ୍ତ୍ରୀ ଗାଡ଼ିରେ ବସି ଚାଲିଗଲେ । ପୂର୍ଣ୍ଣମୀ ତିଥିରେ ଗୃହ ପ୍ରବେଶ କରିବେ । ସେତେପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହେବ ବୋଲି ନିଜକୁ ଆଶ୍ୱାସନା ଦେଇ ମମତାଦେବୀ ନିଜ କୁଡ଼ିଆ ଦିଗକୁ ଚାଲିଲେ ।

ଦିନବେଳର କୋଳାହଳମୟ ଯମୁନାକୂଳ ରାତ୍ରି କାଳରେ ନିର୍ଜନ ଓ ଶାନ୍ତ ଆକାର ଧାରଣ କରେ । ଶ୍ରମିକମାନେ ବସ୍ତିକୁ ଚାଲିଯାଇଥାନ୍ତି । ଠିକାଦାର ଓ କଣ୍ଟ୍ରାକ୍ଟରମାନେ ପ୍ରସ୍ଥାନ କରିଥାନ୍ତି । ମମତାଦେବୀ କିଛି ସମୟ ନଦୀକୂଳର ବାଲୁକାରାଶି ଉପରେ ବୁଲିଲା ପରେ ଭୋଜନ ଓ ନିଦ୍ରାପାଇଁ ନିଜ କୁଡ଼ିଆ ସମ୍ମୁଖରେ ପହଞ୍ଚିଲେ ।

ଅପ୍ରତ୍ୟାଶିତ ଭାବେ ତାଙ୍କ ଆଗରେ ଛିଡ଼ା ହୋଇଗଲେ ଦୁଇଜଣ ପ୍ରକାଣ୍ଡକାୟ ମନୁଷ୍ୟ । ସେମାନଙ୍କ ପାଖରେ ଥାଆନ୍ତି କେତେଜଣ ପୁଲିସ୍ କନଷ୍ଟେବଲ୍ । ଜଣେ ବ୍ୟକ୍ତି ତାଙ୍କ ପାଟି ବନ୍ଦ କରି ରଖିଲା । ଅନ୍ୟମାନେ ତାଙ୍କୁ ଶୂନ୍ୟେ ଶୂନ୍ୟେ ଟେକିନେଇ ଖଣ୍ଡିଏ ଜିପ୍ ଭିତରେ ବସାଇ ରଖିଲେ । ଦ୍ରୁତ ଗତିରେ ଜିପ୍ ଚାଲିଲା ସହର ପଥରେ । ବାଧା ଦେବା କିମ୍ବା ପାଟି କରି ଡାକିବାଲାଗି ଅବକାଶ ନ ଥାଏ ।

ଜିପ୍ ରହିଲା ଥାନା ଆଗରେ । ପୁଲିସ ଦାରୋଗା ଜଣାଇଲେ, ''ସେଦିନ ଦଙ୍ଗାହାଙ୍ଗାମା ପାଇଁ ତୁମ ନାମରେ ଏତାଲା ଦିଆ ଯାଇଛି । ରାତିଟା ଥାନା ହାଜତରେ ରହିବାକୁ ହେବ । ସକାଳେ ମାଜିଷ୍ଟ୍ରେଟଙ୍କ ସମ୍ମୁଖରେ ହାଜର କରାଯିବ ।''

ସେହି ସମୟରେ ଆସିଗଲେ ଖୋଦ୍ ପୁଲିସ ସାହେବ । ''ରାତି ଭିତରେ ଚାର୍ଜସିଟ୍ ପ୍ରସ୍ତୁତ କରିବାକୁ ଆଦେଶ ମିଳିଛି ।'' ଏହା କହି ସାଙ୍ଗରେ ଆସିଥିବା ଇନ୍ସପେକ୍ଟରଙ୍କୁ ଆଦେଶ ଦେଲେ, ''ଆସାମୀକୁ ପ୍ରଶ୍ନ ପଚାରି ତା ଉତ୍ତରଗୁଡ଼ିକ ରେକର୍ଡ଼ କରି ଦସ୍ତଖତ କିମ୍ବା ଟିପ କରାଇ ନିଅ । ମୁଁ ଚାଲିଲି ଅନ୍ୟ ଗୋଟିଏ ଆସାମୀଙ୍କୁ ଧରିବା ପାଇଁ ।''

ଟେବୁଲଟିର ଗୋଟିଏ ପାଖରେ ବସିଲେ ଇନ୍ସପେକ୍ଟର । ଅପରପଟେ ତାଙ୍କ ସମ୍ମୁଖରେ ବସିଲେ ମମତାଦେବୀ । ପ୍ରଶ୍ନୋତ୍ତର ଲେଖିବା ଲାଗି ରହିଲେ ଷ୍ଟେନୋବାବୁ ।

''ତୋର ନାମ କ'ଣ ?'' ପ୍ରଶ୍ନ କଲେ ଇନ୍ସପେକ୍ଟର ସାହେବ ।

''ମୋର ନାମ ଭିନ୍ନ ଭିନ୍ନ, ଯଥା, ଖେନ୍ଦି, ଗେନ୍‌ସୀ ଓ ଅନାମୀ ।''

''ତୋ ସ୍ୱାମୀଙ୍କର ନାମ ?''

''ତାଙ୍କ ନାମ ଉଚ୍ଚାରଣ କରିବା ଦରକାର ନାହିଁ । ସେ ଅନେକଦିନ ପୂର୍ବରୁ ସଂସାରରୁ ବିଦାୟ ନେଲେଣି ।''

''ତୋ ଦେହ ଏପରି ହୋଇଛି କାହିଁକି ?''

''ନିଆଁରେ ପୋଡ଼ି ଯାଇଥିଲି ।''

''ତୁ ବୋମ୍ବାଇ ସହରରେ ଜଣେ ଅଫିସରଙ୍କ ଘରେ ଚାକରାଣୀ ଥିଲୁ ?''

''ହଁ ।''

''ତାଙ୍କ ଘରୁ ୨୫ ଲକ୍ଷ ଟଙ୍କା ଚୋରିକରି ପଳାଇ ଆସିଥିଲୁ ?''

''ଅଫିସର ଯଦି ଏହା କହୁଛନ୍ତି, ସେଥିରେ ମୋର ଆପତ୍ତି ନାହିଁ ।''

ଇନ୍ସପେକ୍ଟର ସାହେବ ଷ୍ଟେନୋବାବୁଙ୍କୁ ଏକ ଗ୍ଲାସ ପାଣି ଆଣିବାକୁ ଆଦେଶ ଦେଲେ । ସେ ବାହାରିଗଲା ପରେ ଧୀର ସ୍ୱରରେ କହିଲେ,

''ସେତେଗୁଡ଼ାଏ ଟଙ୍କା କ'ଣ କରିବୁ ? ସେଥିରୁ ମୋତେ ଅଧେ ଦେଇଦେ । ତୁ ନିର୍ଦ୍ଦୋଷ ବୋଲି ଲେଖିଦେବି ।''

ଉଚ୍ଚସ୍ୱରରେ ମମତା ଉତ୍ତର ଦେଲେ, ''ନା, ମୁଁ ଲାଞ୍ଚ ଦେଇ ଦଣ୍ଡରୁ ମୁକୁଳିବାକୁ ଚାହେଁ ନାହିଁ ।''

''ଏତେ ଟଙ୍କା କାହା ପାଖରେ ଅଛି ?''

''ମୋ ପୁଅମାନଙ୍କ ପାଖରେ ।''

ଚମକିଉଠି ଇନ୍ସପେକ୍ଟର କହିଲେ, ''ତୋର ପୁଅ ଅଛି ! କେତେଜଣ ପୁଅ ଓ ସେମାନେ କ'ଣ କରନ୍ତି ?''

''ଦୁଇଜଣ ପୁଅ । ଦୁଇଜଣ ହେଉଛନ୍ତି ଡକାୟତ୍ ।''

''ଡକାୟତ୍ ? ସେମାନଙ୍କ ନାମ କହ, ଠିକଣା କହ । ସେମାନଙ୍କୁ ଧରିବାକୁ ହେବ ।''

''ନାମ ଓ ଠିକଣା କହିଲେ ମଧ୍ୟ ସେମାନଙ୍କ ଛାଇ ମାଡ଼ିପାରିବ ନାହିଁ, ଧରିବା ତ ଦୂରର କଥା ।''

''ଓଃ, ଦେଖୁଛି ତୋର ମା'ର ମୁହଁ ଟାଣ ! ଯଦି ସେମାନଙ୍କ ନାମ କହିବୁ ନାହିଁ, ତୋତେ ଇଲେକ୍‌ଟ୍ରିକ୍ ସକ୍ ଦିଆଯିବ । ଯନ୍ତ୍ରଣାରେ ଅଧାମରା ହୋଇଯିବୁ ।''

''ମରିଗଲେ ବି କହିବି ନାହିଁ । କାରଣ କହିଲେ କିଛି ଲାଭ ନାହିଁ । ତମ ପୁଲିସବାଲାଙ୍କ ବାପାମାନେ ବି ମୋ ପୁଅମାନଙ୍କୁ ଧରି ପାରିବେ ନାହିଁ ।''

କ୍ରୋଧ ଜର୍ଜରିତ ଇନ୍ସପେକ୍ଟର ଗର୍ଜନ କରିଉଠିଲେ, ''ତୁ ଗୋଟାଏ ଚୋରଣୀ । ତୋର ପୁଣି ସାହସ ହେଲାଣି ପୁଲିସମାନଙ୍କ ବାପା ନାମ ଉଠାଉଛୁ ? ପୁଅମାନଙ୍କ ନାମ କହିଦେ, ଦେଖିବୁ ଆମର କରାମତି । ଆମକୁ ତୁ କ'ଣ ଭାବୁଛୁ କି ?''

''ମୁଁ ଯଦି କହିବି, ମୋ ବଡ଼ପୁଅ ଗୋଟାଏ ଖୁନୀ ଓ ଡକାୟତ୍ ଏବଂ ସେ ହେଉଛନ୍ତି ତୁମମାନଙ୍କର ମନ୍ତ୍ରୀମହୋଦୟ ସ୍ୱରାଜବାବୁ, ତାଙ୍କ ନିକଟକୁ ଯାଇ ଏହି କଥା ପଚାରିପାରିବ ?''

ଷ୍ଟେନୋବାବୁ ପାଣି ଗ୍ଲାସ ଧରି ପଶି ଆସିଲେ । ପାଣିତକ ପିଇ ପକାଇ ଇନ୍ସପେକ୍ଟର ସାହେବ ତାଙ୍କୁ କହିଲେ, ''ଚୋରଣୀଟା ବାଜେ କଥାଗୁଡ଼ାଏ ବକ୍ ବକ୍ କରୁଛି । ମୁଣ୍ଡ ଠିକ୍ ନାହିଁ ।''

ପୁଣି ମମତାଦେବୀଙ୍କୁ ଜେରା କଲେ, ''ସେ ଦିନ ଯମୁନା କୂଳରେ ଯେଉଁ ବସ୍ତି ଉଚ୍ଛେଦ ହେଲା, ତା ଆଗରୁ ତୁ ଶ୍ରମିକମାନଙ୍କୁ ପୁଲିସ ଉପରେ ଆକ୍ରମଣ କରିବାକୁ ଶିଖାଇଥିଲୁ ?''

''ନ ଶିଖାଇଲେ ମଧ୍ୟ ଅନ୍ୟାୟ ବିରୋଧରେ ଲଢ଼ିବାଲାଗି ଲୋକେ ନିଜେ ନିଜେ ବାହାରି ପଡ଼ନ୍ତି । ଗୁଳିରେ ମରିବାପାଇଁ ଦୀନଦୁଃଖୀମାନଙ୍କର ଅଧିକାର ରହିଛି ।''

ଷ୍ଟେନୋବାବୁ ଟିପି ନେଇଥିବା ଆସାମୀର ଉକ୍ତିଗୁଡ଼ିକ ଅବିଳମ୍ବେ ଭଲ ଅକ୍ଷରରେ ଲେଖି ପକାଇ ଟେବୁଲ ଉପରେ ଥୋଇ ଦେଲେ । ଇନ୍ସପେକ୍ଟର ସାହେବ କିଛି ଅଂଶ

ସଂଶୋଧନ କଲା ପରେ ମମତାଦେବୀଙ୍କୁ ଆଦେଶ ଦେଲେ, ''ଦସ୍ତଖତ କର୍, ନ ହେଲେ ଟିପ ଦେ ।''

ନିଃସଙ୍କୋଚ ଚିତ୍ତରେ ମମତା ଦସ୍ତଖତ କରିଦେଲେ ଏବଂ ଟିପ ମଧ୍ୟ ଦେଇଦେଲେ ।

ଯଥାରୀତିମାନ ପାଳନ ପୂର୍ବକ ଯଥାସମୟରେ ମମତାଦେବୀଙ୍କୁ ନିଆଗଲା ଉଚ୍ଚ କୋର୍ଟର ନ୍ୟାୟମୂର୍ତ୍ତି ବିଚାରପତିଙ୍କ ସମ୍ମୁଖକୁ । ମମତା କାଠଗଡ଼ାରେ ଛିଡ଼ା ହେଲେ । ବିଚାରପତି ମହୋଦୟ ପ୍ରଶ୍ନ କଲେ, ''ପୁଲିସ ଆଗରେ ଯେଉଁ ବୟାନ ଦେଇଥିଲ ତାହା ସତ୍ୟ ବୋଲି ସ୍ୱୀକାର କରୁଛ ?''

''ଆଜ୍ଞା, ହୋଇପାରେ ସବୁ ସତ୍ୟ କିମ୍ବା ହୋଇପାରେ ସବୁ ମିଥ୍ୟା !''

ଗମ୍ଭୀର ବଦନରେ ବିଚାରପତି ଆଦେଶ ଦେଲେ, ''ଯାହା କହିବ ସ୍ପଷ୍ଟ ଭାବରେ କୁହ । ମନେରଖ, ଏହା ହେଉଛି ନ୍ୟାୟାଳୟ ।''

ନମ୍ର ଭାବରେ ମମତା ଉତ୍ତର ଦେଲେ, ''ନ୍ୟାୟମୂର୍ତ୍ତି ମହୋଦୟ ! ଆପଣଙ୍କ ସିଂହାସନ ପଛରେ ଦଣ୍ଡାୟମାନ ରହିଛି ନ୍ୟାୟଦେବୀଙ୍କ ପ୍ରସ୍ତର ମୂର୍ତ୍ତି କିମ୍ବା ଚିତ୍ରପଟ । କ୍ଷୀଣ ଦୃଷ୍ଟିଶକ୍ତି ଯୋଗୁଁ ମୁଁ ପରିଷ୍କାରରୂପେ ତାଙ୍କ ରୂପ ଦେଖିପାରୁ ନାହିଁ । ତଥାପି ଦେଖିପାରୁଛି ତାଙ୍କ ଆଖିରେ ଅନ୍ଧପୁଟୁଳି ଓ ହାତରେ ନିକିତି । ସେ ନିର୍ବାକ୍ । ସତ୍ୟ ଓ ମିଥ୍ୟା ମଧ୍ୟରେ ପାର୍ଥକ୍ୟ ସେ ନିଜେ ଦେଖିପାରୁ ନାହାନ୍ତି କିମ୍ବା ବୁଝିପାରୁ ନାହାନ୍ତି । ମୋତେ ଅଣାଯାଇଛି ଜଣେ ଅପରାଧିନୀ ଭାବରେ । ମୁକ୍ତ ଅବସ୍ଥାରେ ରହି ଘାତକ ହାତରେ ଜୀବନ ହରାଇବା ଅପେକ୍ଷା ମୁଁ ବନ୍ଦିନୀ ଭାବରେ କାରାଗାରରେ ରହିବାକୁ ଇଚ୍ଛା କରୁଛି । ମୋତେ ଚୋରି ଏବଂ ଦଙ୍ଗାହାଙ୍ଗାମା ପାଇଁ ଦାୟୀ କରାଯାଇଛି । ଉଭୟ ଅପରାଧ ଲାଗି କଠୋର ଦଣ୍ଡ ଦେବାଲାଗି ଆପଣଙ୍କୁ ପ୍ରାର୍ଥନା ଜଣାଉଛି ।''

''ଉଚ୍ଚତମ ଅଦାଲତକୁ ଅପିଲ୍ କରିବ ?''

''ସେପରି ଆଶା ମୁଁ କରିବି ନାହିଁ ।''

''କାରଣ କ'ଣ ?''

''କୌଣସି ବିଷୟର କାରଣ ବର୍ଣ୍ଣନା ଶକ୍ତି ମୁଁ ହରାଇ ବସିଛି ।''

''ତୁମ ପକ୍ଷରୁ ଲଢ଼ିବା ଲାଗି ଓକିଲ ଦରକାର ? ବିନା ଫି'ରେ ।''

''ନା ।''

‘‘କାହିଁକି ମନା କରୁଛ ? ତୁମ ତରଫରୁ ଯୁକ୍ତି ବାଢ଼ିବେ !’’

‘‘ଅପରାଧୀର ପକ୍ଷ ନେଇ ଯୁକ୍ତି ବାଢ଼ିଲେ ମଧ୍ଯ ସରକାରୀ ପକ୍ଷର ଯୁକ୍ତିମାନ ଖଣ୍ଡନ କରିପାରିବେ ବୋଲି ମୋର ହୃଦ୍‌ବୋଧ ହେଉ ନାହିଁ ।’’

‘‘କାହାରି ପ୍ରତି ତୁମର ବିଶ୍ୱାସ ନାହିଁ ?’’

‘‘ବିଶ୍ୱାସ ରହିଛି ମୋ ଦେଶ ଉପରେ, ଦେଶର କୌଣସି ଅନୁଷ୍ଠାନ ଉପରେ ନୁହେଁ ।’’

‘‘ଦେଶର ହିତ ନିମନ୍ତେ ସମସ୍ତ ଅନୁଷ୍ଠାନ, ତେଣୁ ବିଶ୍ୱାସଯୋଗ୍ୟ ।’’

‘‘ଦେଶର ହିତ ନିମନ୍ତେ ନୁହେଁ, ସ୍ୱାର୍ଥସାଧନ ନିମନ୍ତେ । ତେଣୁ ଅବିଶ୍ୱାସ୍ୟ ।’’

ଚିନ୍ତାଗ୍ରସ୍ତ ମନରେ ବିଚାରପତି ମହୋଦୟ ଅପରାଧିନୀର ବୀଭତ୍ସ ମୁଖ ଦିଗକୁ ଚାହିଁରହିଲେ ।

ତିନିଦିନ ପରେ ରାୟ ଦେବେ ବୋଲି ଘୋଷଣା କରି ସେ ଆସନରୁ ଉଠିଗଲେ । ହାତକଡ଼ି ପକାଇ ଅପରାଧିନୀକୁ ଜେଲ ହାଜତକୁ ନେଲାବେଳେ କୋର୍ଟ ବାହାରେ ରୁଣ୍ଡ ହୋଇଥିବା ଶ୍ରମିକମାନେ ଜୟଧ୍ୱନି ଦେଲେ - ‘‘ସେବା ଦେବୀ ଜିନ୍ଦାବାଦ୍ ।’’

ମମତାଦେବୀଙ୍କୁ ଦିଆଗଲା ତିନିବର୍ଷ ସଶ୍ରମ କାରାଦଣ୍ଡ ।

## ।। ୩୫ ।।

କାରାଗାରରେ କେତେକ ମାସ ବିତାଇବା ମଧ୍ୟରେ ଜେଲରବାବୁ ଅନାମୀ ନାମକ ମହିଳା କଏଦୀର ଶୃଙ୍ଖଳାଜ୍ଞାନ, କର୍ମ ତତ୍ପରତା ଓ ଶାନ୍ତସ୍ୱଭାବ ସମ୍ପର୍କରେ ପ୍ରଶଂସା ଶୁଣିଲା ପରେ ଦିନେ ସନ୍ଧ୍ୟାବେଳେ ତାଙ୍କୁ ଧରି ଆଣିବାକୁ ଦୁଇଜଣ ପ୍ରହରୀକୁ ପଠାଇ ନିଜ ଅଫିସ ଘରେ ଅପେକ୍ଷା କଲେ । ଅନ୍ୟ ମହିଳା କଏଦୀମାନଙ୍କ ସମ୍ମୁଖରେ ବସି ସେତେବେଳେ ସେ ପ୍ରାର୍ଥନା କରୁଥାନ୍ତି । ତାଙ୍କୁ ଅନୁକରଣ କରି ସମସ୍ତେ ଆଖି ବୁଜି ବସିଥିଲେ । ପ୍ରାର୍ଥନା ପରେ ସେ ମୃଦୁ ସ୍ୱରରେ ଗୋଟିଏ ଭଜନ ଗାଇଲେ ଏବଂ ଅନ୍ୟମାନଙ୍କୁ ମଧ୍ୟ ଗାଇବାକୁ କହିଲେ । ପ୍ରହରୀମାନଙ୍କର ବିଳମ୍ବ ହେଉଛି ଦେଖି ଜେଲରବାବୁ ନିଜେ ବନ୍ଦିଶାଳାର ମହିଳା ବିଭାଗ ଦିଗକୁ ଅଗ୍ରସର ହୋଇ ଦେଖି ପାରିଲେ ସେହି ଅସ୍ୱାଭାବିକ ଦୃଶ୍ୟ । ନିଜ ଚାକିରି କାଳର ଦୀର୍ଘ ତିରିଶ ବର୍ଷ ମଧ୍ୟରେ

ଜେଲଖାନାର ରୁଦ୍ଧ ଦ୍ୱାର ମଧ୍ୟରେ ଭଜନ କୀର୍ତ୍ତନ ହେଉଥିବା ଘଟଣା ସେ କେବେହେଲେ ଦେଖି ନ ଥାନ୍ତି ।

ନିଜ ଅଫିସ କୋଠରିକୁ ଜେଲରବାବୁ ଫେରି ଆସିଲେ । କିଛି ସମୟ ପରେ ପ୍ରହରୀମାନେ ମମତାଦେବୀଙ୍କୁ ହାତକଡ଼ି ପକାଇ ତାଙ୍କ ସମ୍ମୁଖରେ ହାଜର କରାଇ ଦେଲେ । ଜେଲରବାବୁ ଖଣ୍ଡିଏ ଚେୟାରରେ ବସିବାକୁ କହିବାରୁ ସେ ସଂକୋଚ ନ କରି ବସିପଡ଼ିଲେ । ପ୍ରହରୀମାନେ ହାତକଡ଼ି ଫିଟାଇ ଦେଲେ ।

''ତୋତେ ଯେଉଁ କାମ ବରାଦ୍ କଲେ ହସି ହସି ଆଦେଶ ପାଳନ କରୁଛୁ । ତୋର ଶରୀର ବୋଲି ଜିନିଷଟା ପ୍ରାୟ ନାହିଁ । ତଥାପି ବଳ ଖଟାଇ ଗହମ ପେଷି ପାରୁଛୁ, ମାଟି ହାଣି ଚାରା ରୋପଣ କରୁଛୁ ଏବଂ ଶୁଖିଲା କାଠ କାଟି ଜାଳ ତିଆରି କରୁଛୁ । କେବେହେଲେ କୌଣସି କାମରେ ଅବହେଳା କିମ୍ବା ଅସନ୍ତୋଷ ଦେଖିବାକୁ ମିଳୁ ନାହିଁ । ଅଥଚ ବଡ଼ କିସମର ଚୋରି କରି ଏବଂ ଦଙ୍ଗାହାଙ୍ଗାମା ଘଟାଇଥିବାରୁ ଜେଲ ଦଣ୍ଡ ପାଇଛୁ । ତୋତେ ଦେଖିଲା ପାଖରୁ ଓ ତୋ କଥା ପ୍ରହରୀମାନଙ୍କ ନିକଟରୁ ଶୁଣିଲା ପରେ ମୋ ମନରେ କେତେକ ବିଷୟରେ ସନ୍ଦେହ ହେଉଛି ବୋଲି ଡାକିଲି,'' କହିଗଲେ ଜେଲରବାବୁ ।

''କେଉଁ କେଉଁ ବିଷୟରେ ସନ୍ଦେହ କରୁଛନ୍ତି ତାହା ଶୁଣିଲା ପରେ ଉତ୍ତର ଦେବି ଏବଂ ସତ୍ୟ କଥା କହିବି ।''

''ବୁଢ଼ୀ ବୟସରେ ଓ ଶାରୀରିକ ଅକ୍ଷମତା ସତ୍ତ୍ୱେ, ତୁ ପଚାଶଲକ୍ଷରୁ ପଚିଶଲକ୍ଷ ଟଙ୍କା ଚୋରି କରିବାକୁ ସାହସ କଲୁ କିପରି ଏବଂ ଏତେଗୁଡ଼ାଏ ଟଙ୍କା କେଉଁଠି ରଖିଲୁ ?''

''ସତ୍ୟ କହିଲେ ଜଣେ ଚୋର ଅନ୍ୟ ଜଣେ ଚୋର ପାଖରୁ ପଚାଶ ଲକ୍ଷ ନେବାପାଇଁ ଯେଉଁ ଚୋରକୁ ନିଯୁକ୍ତ କରିଥିଲା, ସେହି ଶେଷ ଚୋରଟା ଅଧେ ଟଙ୍କା ମାରିନେଲା । ଅଥଚ ମୁଁ ହେଲି ଚୋରଣୀ !''

''ଜଜ୍ ସାହେବଙ୍କ ଆଗରେ ସେହି ତିନିଜଣ ଚୋରଙ୍କ ନାମ ପ୍ରକାଶ କରିଦେଲୁ ନାହିଁ କାହିଁକି ?''

''ଚୋରମାନଙ୍କ ନାମ କହିଦେବା ସହଜ, କିନ୍ତୁ ସେମାନଙ୍କ ଅପରାଧ ପ୍ରମାଣ କରାଇବା ସମ୍ଭବ ନୁହେଁ । ସେଥିପାଇଁ କହିଲି ନାହିଁ ।''

ଜେଲରବାବୁ ଆଖିବୁଜି କିଛି ସମୟ ଚିନ୍ତା କରୁଥିବା ଅବକାଶରେ ମମତାଦେବୀ ପଚାରିଲେ, ''ଆଜ୍ଞା, ଯଦି ଅନୁମତି ଦେବେ, ଆପଣଙ୍କୁ ଗୋଟିଏ ପ୍ରଶ୍ନ ଜିଜ୍ଞାସା କରିପାରିବି ?''

''ହଁ, କାହିଁକି ପାରିବୁ ନାହିଁ ?''

''ଆପଣ ଦୀର୍ଘକାଳ ଜେଲର ଚାକିରି କଲେଣି । ଅନେକ କାରାଗାରରେ ଅନେକ ପୁରୁଷ ଓ ମହିଳା କଏଦୀଙ୍କୁ ଦେଖିଲେଣି । ଆପଣ କ'ଣ ବିଶ୍ୱାସ କରନ୍ତି ଯେ ସେମାନେ ସମସ୍ତେ ପ୍ରକୃତ ଅପରାଧୀ ଭାବରେ ଦଣ୍ଡ ପାଇଥାନ୍ତି ଅଥବା କେହି କେହି ନିରପରାଧ ବ୍ୟକ୍ତି ମଧ୍ୟ ଜେଲ ଭୋଗନ୍ତି ?''

''ତୋ ପ୍ରଶ୍ନଟି ଜଟିଳ । ମୁଁ ଯାହା ଅନୁଭବ କରିଛି କିମ୍ୱା ଜାଣିଛି ସେ ବିଷୟ ବ୍ୟାଖ୍ୟା କରିବା ଅଧିକାର ମୋର ନାହିଁ । ଯେଉଁମାନେ ଅପରାଧ ଲାଗି କୋର୍ଟ ଦ୍ୱାରା ଦଣ୍ଡିତ ହୁଅନ୍ତି, ସେମାନଙ୍କୁ ଜେଲ୍‌ରେ ରଖିବା ଦାୟିତ୍ୱ ହେଲା ମୋର । କିଏ ଦୋଷୀ ବା କିଏ ନିର୍ଦ୍ଦୋଷ, ସେ ବିଷୟ ମୁଁ କାହିଁକି ଚିନ୍ତା କରିବାକୁ ଯିବି ? ନିଜର ଭାଗ୍ୟ ଖରାପ ବୋଲି ଏପରି ଚାକିରି ପାଇଛି । ମୁକ୍ତ ପକ୍ଷୀଗୁଡ଼ିକୁ ପିଞ୍ଜରାରେ ଆବଦ୍ଧ ରଖି ପାପ କଲାଭଳି ମୁଁ ମଧ୍ୟ ମନୁଷ୍ୟମାନଙ୍କୁ ଜେଲଖାନାରେ ବନ୍ଦୀ ରଖି ପାପ ଅର୍ଜନ କରୁଛି । ତେଣେ ଦିନକୁ ଦିନ ଅପରାଧ ବଢ଼ି ଚାଲିଛି, ଅପରାଧୀମାନଙ୍କ ସଂଖ୍ୟା ଅନେକ ଗୁଣରେ ବୃଦ୍ଧି ପାଉଛି, ଜେଲଖାନା ଫାଟି ପଡୁଛି ଏବଂ ମୋର ଜଞ୍ଜାଳ ଶହେ ଗୁଣ ବଢ଼ି ଯାଇଛି ।''

''ଆଜ୍ଞା, ଯେଉଁମାନେ ପ୍ରକୃତ ଅପରାଧୀ, ସେମାନେ କେବେ ଜେଲଖାନା ଦେଖନ୍ତି ?''

''ପ୍ରକୃତ ଅପରାଧୀ ବୋଲି କାହାକୁ ଭାବୁଛୁ ?''

''ଯେଉଁ କ୍ଷମତାସୀନ ମନ୍ତ୍ରୀ, ବିଚକ୍ଷଣ ରାଜନେତା ଏବଂ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ କୋଟି କୋଟି ଟଙ୍କା ଆତ୍ମସାତ୍ କରନ୍ତି, ନିଜର ପ୍ରକୃତ ବା କଳ୍ପିତ ପ୍ରତିଦ୍ୱନ୍ଦ୍ୱୀମାନଙ୍କୁ ହତ୍ୟା କରିପାରନ୍ତି କିମ୍ବା ନିଜର ସ୍ୱାର୍ଥସାଧନ ନିମନ୍ତେ ଦୀନଦୁଃଖୀ ଦରିଦ୍ରମାନଙ୍କର ସର୍ବନାଶ କରିପାରନ୍ତି, ସେମାନଙ୍କୁ ଦଣ୍ଡ ମିଳେ ନା ମିଳେ ନାହିଁ ?''

ଜେଲରବାବୁ ବିରକ୍ତି ପ୍ରକାଶ କରି କହିଲେ, ''ରାଜନୈତିକ ଆଲୋଚନା ଲାଗି ତୋତେ ମୁଁ ଏଠାକୁ ଡାକି ନାହିଁ । ମୁଁ ଡାକିଥିଲି ଅନ୍ୟ ଗୋଟିଏ ବିଷୟରେ କଥାବାର୍ତ୍ତା କରିବାପାଇଁ । କଥାଟି ହେଲା, କଏଦୀମାନଙ୍କର ମାନସିକ ଦୁଃଖ ଲାଘବ ପାଇଁ ଓ

ସେମାନଙ୍କର ଅପରାଧୀ ମନୋବୃତ୍ତିର ପରିବର୍ତ୍ତନ ଲାଗି ତୁ ସେମାନଙ୍କୁ ପ୍ରତ୍ୟେକ ରାତିରେ ଭଜନ ଓ ଜଣାଣ ଗାଇ ଶୁଣାଇପାରିବୁ ?''

''ଯଦି ଅନୁମତି ମିଳିବ ପାରିବି ।''

''ଦୈବାତ୍ ଆଜି ତୋ ଗୀତ ଗାଇବା ଶୁଣିପାରିଲି ବୋଲି ଏ କଥା କହୁଛି । ମୁଁ କିନ୍ତୁ ତୋର କାମ ଲାଗି ତାରିଫ୍ କରିବି ବୋଲି ପ୍ରହରୀମାନଙ୍କୁ ଧରି ଆଣିବାକୁ ପଠାଇଥିଲି । ସେ ଯାହାହେଉ, ସରକାର ଚିନ୍ତା କରୁଛନ୍ତି ଯେ ବନ୍ଦୀଜୀବନ ଯାପନ କରୁଥିବା ମଣିଷମାନଙ୍କର କିଛି କିଛି ମାନସିକ ପରିବର୍ତ୍ତନ ହେବା ଉଚିତ । କିପରି ଏହା ସମ୍ଭବ ହେବ, ସେ ସମ୍ପର୍କରେ ଜେଲରମାନଙ୍କର ମତାମତ ଲୋଡ଼ାଯାଇଛି । ତୋର ଭଜନ ଶୁଣି ମୁଁ ପ୍ରସ୍ତାବ ଦେବି ଭାବୁଛି, ପ୍ରତିଦିନ ସନ୍ଧ୍ୟାରେ ଅଥବା ସପ୍ତାହରେ ଦୁଇ ତିନିଥର କଏଦୀମାନେ ଭଜନ କୀର୍ତ୍ତନ ଶୁଣିଲେ ସେମାନଙ୍କ ମଙ୍ଗଳ ହେବ । ତୁ ଗାଇବୁ ବୋଲି ରାଜି ହେଲୁ ଦେଖି ମୁଁ ଖୁସି ହେଲି ।''

''ସରକାର କଏଦୀମାନଙ୍କର ମାନସିକ ପରିବର୍ତ୍ତନ ବିଷୟ ଚିନ୍ତା କଲାବେଳେ ମୁକ୍ତ ରାଜନୈତିକ ନେତାମାନଙ୍କର ମାନସିକ ପରିବର୍ତ୍ତନ ପାଇଁ ମଧ୍ୟ ଚିନ୍ତା କରିବା ଆବଶ୍ୟକ ବୋଲି ମୋର ମନେହୁଏ ।''

''ପୁଣି ସେହି ରାଜନୈତିକ ପ୍ରସଙ୍ଗ ଉଠାଇବାକୁ ସାହସ କରୁଛୁ ? ହେଉ, ତୁ ଏବେ ଯା ।''

ପ୍ରହରୀମାନେ ମମତାଦେବୀଙ୍କୁ ତାଙ୍କ କୋଠରିରେ ଭର୍ତ୍ତି କରିବାପାଇଁ ହାତକଡ଼ି ପକାଇ ଟାଣି ନେଇଗଲେ ।

କିଛି ସପ୍ତାହ ପରେ ଉପର ସ୍ତରରୁ ନିର୍ଦ୍ଦେଶନାମା ଆସିଗଲା, ସପ୍ତାହରେ ଗୋଟିଏ ଦିନ ସନ୍ଧ୍ୟା ପରେ ସମସ୍ତ କଏଦୀମାନଙ୍କୁ ଜେଲଖାନାର ମୁକ୍ତ ପ୍ରାଙ୍ଗଣରେ ସମବେତ ହେବାକୁ ପଡ଼ିବ । ପୂର୍ବରୁ ନିର୍ଦ୍ଧାରିତ ହୋଇଥିବା ନିମନ୍ତ୍ରିତ ପଣ୍ଡିତମାନେ ତାତ୍ତ୍ୱିକ ପ୍ରବଚନ ଶୁଣାଇବେ । ପ୍ରବଚନ ପରେ କଏଦୀମାନେ ଭଜନ ଓ ରାମଧୂନ ସମବେତ କଣ୍ଠରେ ଗାନ କରିବେ ।

ଯେଉଁ ସନ୍ଧ୍ୟାରେ ନୂତନ ସଂସ୍କାର କାର୍ଯ୍ୟର ଶୁଭାରମ୍ଭ ହେବା କଥା, ସେ ଦିନ ଶେଷ ମୁହୂର୍ତ୍ତରେ ଖବର ଆସିଲା ଯେ ଉଦ୍‌ଘାଟକ ପଣ୍ଡିତ ମହୋଦୟ ଅନିବାର୍ଯ୍ୟ କାରଣବଶତଃ ଆସିପାରିବେ ନାହିଁ । ଜେଲରବାବୁ ବିପଦରେ ପଡ଼ିଗଲେ । ମାଇକ୍ ଠିକ୍ ହୋଇଥାଏ । ହାରମୋନିୟମ ଓ ତବଲା ବଜାଇବା ଲୋକେ ଆସିଯାଇଥିଲେ ।

କଏଦୀମାନଙ୍କୁ ଧାଡ଼ି ଧାଡ଼ି କରି ବସାଇ ଦିଆ ଯାଇଥାଏ । ଅନୁଚ୍ଚ ମଞ୍ଚଟିଏ ଆଲୋକିତ କରାଯାଇଥାଏ । ଜେଲରବାବୁ ଜାଣିଥିଲେ ଯେ ତାତ୍ତ୍ୱିକ ପ୍ରବଚନ ଦେବା ଲାଗି ସେ ଯୋଗ୍ୟ ନୁହନ୍ତି ଏବଂ କଏଦୀମାନେ ମଧ୍ୟ ତାଙ୍କ ଭାଷଣ ଶୁଣିବେ ନାହିଁ । ନାଚାର ଅବସ୍ଥାରେ ସେ ଅନାମୀ ନାମରେ ପରିଚିତା ମମତାଦେବୀଙ୍କୁ ଡାକି ପଠାଇ ପଚାରିଲେ, ''ତୁ ଭଜନ ଗାଇଜାଣିଛୁ । ଧର୍ମ ଉପରେ ଦୁଇ ମିନିଟ କିଛି କହିପାରିବୁ ? ଯଦି ପାରିବୁ, ଯାହା ତାହା ଦୁଇପଦ କହିଦେଇ ଆରମ୍ଭ କରିଦେବୁ ମୀରାବାଈଙ୍କ ଭଜନ ।''

''ଯାହା କହିବି, ନିମ୍ନ ସ୍ୱରରେ । ପାଟିକରି କହିବା ଶକ୍ତି ମୋର ନାହିଁ ।'' ''ମାଇକ୍ ଅଛି'' ବୋଲି ସାହସ ଦେଇ ଜେଲରବାବୁ ତାଙ୍କୁ ମଞ୍ଚ ଉପରକୁ ନେଇଗଲେ ।

ମମତାଦେବୀ ଆରମ୍ଭ କଲେ ତାଙ୍କର ଭାଷଣ । ''ଆଜି ସମସ୍ତଙ୍କୁ ଗୋଟିଏ ଗପ ଶୁଣାଇବି ।''

ଗପ କହିବେ ଶୁଣି ପୁରୁଷ କଏଦୀମାନେ ପଛରୁ ଆଗକୁ ଆସି ଖୁନ୍ଦାଖୁନ୍ଦି ହୋଇ ବସିଗଲେ । ମହିଳାମାନେ ମଧ୍ୟ ପାଖରୁ ଶୁଣିବା ପାଇଁ ମଞ୍ଚତଳ ପର୍ଯ୍ୟନ୍ତ ଧାଡ଼ି ଧାଡ଼ି ହୋଇ ବସିପଡ଼ିଲେ ।

ଗଳ୍ପ ମାଧ୍ୟମରେ ଆରମ୍ଭ ହେଲା ପ୍ରବଚନ -

ଗୋଟିଏ ନଦୀ କୂଳରେ ଚାରି ଦିଗକୁ ବ୍ୟାପି ରହିଥାଏ ଏକ ପ୍ରକାଣ୍ଡ ଅରଣ୍ୟ । ସେହି ଅରଣ୍ୟର ଗୋଟିଏ ସୁବିଶାଳ ବୃକ୍ଷ ତଳେ ପ୍ରତି ରାତିରେ ହାତୀଟିଏ ଶୋଇବା ଅଭ୍ୟାସ କରିଥାଏ । ଦିନ ସାରା ଜଙ୍ଗଲରେ ଗଛର ଡାଳ ଭାଙ୍ଗି ପତର ଖାଇ ରାତିରେ ଗଛତଳେ ଶୋଇପଡ଼େ । ଗଛର ଅନ୍ୟ ପାଖରେ ଗାତ ଭିତରେ ରହୁଥାଏ ଗୋଟିଏ ଶୃଗାଳ । ରାତିରେ ବାହାରିଯାଇ ବାଘ ଭାଲୁ ଖାଇଥିବା ଜୀବଜନ୍ତୁର ଅବଶିଷ୍ଟାଂଶ ମାଂସରେ ପେଟ ଭର୍ତ୍ତିକରି ସକାଳ ଆଗରୁ ଗାତ ଭିତରେ ଗଳିଯାଏ ପୁଣି ରାତି ହେଲା ପର୍ଯ୍ୟନ୍ତ । ଗଛର ଅନେକ ଉଚ୍ଚରେ ଦୁଇଟି ବଡ଼ ବଡ଼ ଡାଳ ବାହାରିଥିବା ଜାଗାରେ ରାତିରେ ଶୋଇରହେ ଗୋଟିଏ ମାଙ୍କଡ଼ ।

ଗୋଟିଏ ବୃକ୍ଷକୁ ନିଜ ନିଜର ଆଶ୍ରୟ ସ୍ଥାନ ଭାବି ରହିଥିବା ତିନୋଟି ଜନ୍ତୁ ମଧ୍ୟରେ ବନ୍ଧୁତ୍ୱ ଗଢ଼ିଉଠିଥାଏ । ଥରେ ହାତୀଟି ଅନେକ ଦିନ ଯାଏ ଶୋଇବାଲାଗି ଆସିଲା ନାହିଁ ଦେଖି ଅନ୍ୟ ଦୁଇଟି ଜନ୍ତୁ ଭାବିନେଲେ ଯେ ହୁଏତ ସିଂହ ସହିତ ଲଢ଼େଇ କରି ହାତୀଟି ମରିଯାଇ ଥିବ । କିନ୍ତୁ ହାତୀଟି ଦିନେ ଫେରିଆସିଲା ଏବଂ ଶୃଗାଳ ଓ ବାନର ସହିତ ବାକ୍ୟାଳାପ ନ କରି ଗମ୍ଭୀର ରହିଲା । ମାଙ୍କଡ଼ ପଚାରିଲା, 'ଆଗ ପରି ଆମ

ସାଙ୍ଗରେ କଥାବାର୍ତ୍ତା କରୁ ନାହଁ କାହିଁକି ?' ଶୃଗାଳ ପଚାରିଲା, 'କୁଆଡ଼େ ଚାଲିଯାଇଥିଲ ସେ କଥା ନ କହି ତୁନି ରହିଛ କିଆଁ ?'

ହାତୀ ଉତ୍ତର ଦେଲା, 'ମୁଁ ତୁମମାନଙ୍କ ଅପେକ୍ଷା ବଡ଼ । ଅଥଚ ଫେରି ଆସିଲା ପରେ ମୋତେ ସ୍ୱାଗତ କଲ ନାହିଁ, ସମ୍ବର୍ଦ୍ଧନା ଜଣାଇଲ ନାହିଁ, ସମ୍ମାନ ଦେଖାଇଲ ନାହିଁ, ତେଣୁ ମୁଁ ରାଗିଯାଇଛି । ଯେଉଁମାନେ ବଡ଼କୁ ଭକ୍ତି କରନ୍ତି ନାହିଁ ସେମାନଙ୍କ ସହିତ ସମ୍ପର୍କ ରଖି ନିଜର ମାନସମ୍ମାନ ତଳେ ପକାଇବାକୁ ମୁଁ ଚାହେଁ ନାହିଁ ।'

ଶୃଗାଳ ପ୍ରତିବାଦ ଜଣାଇଲା, 'ତୁ କାହିଁକି ନିଜକୁ ବଡ଼ ବୋଲି ଭାବୁଛୁ ?' ରାଗିଯାଇ ହାତୀ ଉତ୍ତର ଦେଲା, 'ତୁ ଶିଆଳଟା ମୋ ଗୋଡ଼ର ଗୋଟିଏ ଅଂଶ ସହିତ ସମାନ ହେବୁ ନାହିଁ ! ଗୋଟିଏ ଗୋଇଠା ଦେଲେ ଦୂରରେ ପଡ଼ି ମରିଯିବୁ । ଅଥଚ ପଚାରୁଛୁ ମୁଁ କାହିଁକି ବଡ଼ ! ହାତୀ ବଡ଼ ନୁହେଁ ତ କ'ଣ ଶୃଗାଳ ବଡ଼ ?'

କ୍ରୋଧାନ୍ୱିତ ଶୃଗାଳ ଉତ୍ତର ଦେଲା, 'ଆରେ ମୂର୍ଖ, ତୋର ଦେହ ବଡ଼ ହୋଇପାରେ ଓ ତୁ ମୋ ଠାରୁ ବଳଶାଳୀ ହୋଇପାରୁ ! କିନ୍ତୁ ତୋ ଦେହର ବଳ ପ୍ରକୃତ ବଳ ନୁହେଁ । ବାଘ, ସିଂହ ସହିତ ଲଢ଼ାଇ କରି ଖଣ୍ଡିଆଖାବରା ହୋଇ ଫେରିଆସୁ । ସେତେବେଳେ କୁଆଡ଼େ ଯାଏ ତୋର ଗର୍ବ ! ପ୍ରକୃତ ବଳ ହେଲା ବୁଦ୍ଧିବଳ, ଦେହ ବଳ ନୁହେଁ । ମୋର ବୁଦ୍ଧି ଅଛି ବୋଲି ବାଘ, ସିଂହକୁ ଠକାଇ ଦେଇ ସେମାନଙ୍କ ସାଇତିଥିବା ଖାଦ୍ୟଗୁଡ଼ିକ ଖାଇଦିଏ । ସେମାନେ ମୋର କିଛି କ୍ଷତି କରିପାରନ୍ତି ନାହଁ । ସୁତରାଂ, ମୋର ବୁଦ୍ଧିବଳ ଯୋଗୁଁ ମୁଁ ଆମ ତିନିଙ୍କ ମଧ୍ୟରେ ବଡ଼ ।'

ମାଙ୍କଡ଼ ପାଟିକରି କହିଲା, 'କ'ଣ କହିଲୁ ଶିଆଳ ? ତୁ ଆମ ମଧ୍ୟରେ ବଡ଼ ? ହଇରେ ଦୁଷ୍ଟ, ଦିନ ସାରା ଗାତ ଭିତରେ ଲୁଚି ରହି ରାତିରେ ଚୋରି କରି ପରର ଉଚ୍ଛିଷ୍ଟ ଖାଇଲେ କେହି ବଡ଼ ହୁଏ ନାହିଁ । ବୁଦ୍ଧି ବଳ ଅପେକ୍ଷା ବହୁଗୁଣରେ ଉଚ୍ଚ ହେଉଛି ସାହସ ବଳ । ମୋର ସାହସ ଯୋଗୁଁ ଗଛରୁ ଗଛ ଡେଇଁ ଡେଇଁ ଫଳ ଖାଇଲା ବେଳେ ବାଘ, ସିଂହ ମୋତେ ଧରିବା ଲାଗି ଉପରକୁ ଡିଆଁ ମାରନ୍ତି । ମୁଁ କଞ୍ଚା ଫଳଗୁଡ଼ିକ ଅଧାଅଧି କାମୁଡ଼ିନେଇ ସେମାନଙ୍କ ଦାନ୍ତ ଉପରକୁ ଫୋପାଡ଼ିଲେ ଡରରେ ପଳାଇ ଯାଆନ୍ତି । ତେଣୁ ପ୍ରକୃତ ବଳ ହେଉଛି ସାହସ, ବୁଦ୍ଧି ନୁହେଁ କି ଆକାର ନୁହେଁ ।'

ହାତୀ କହିଲା, 'ବୟସରେ ମୁଁ ତୁମ ଦୁହିଁଙ୍କ ଠାରୁ ବଡ଼ ! ସେଥିଯୋଗୁଁ ମୋତେ ସମ୍ମାନ ଦେବ ନାହିଁ ? ମୁଁ ପରା ପିଲାକାଳରୁ ଏହି ଗଛ ତଳେ ଶୋଇ ଆସୁଛି !'

ଶୃଗାଳ କହିଲା, 'ଏହି ଗଛଟା ଯେତେବେଳେ ମାତ୍ର ଏକ ହାତ ବଢ଼ିଥିଲା, ସେତେବେଳେ ମୋ ମା' ଏହା ଉପର ଦେଇ ଏ ପାଖରୁ ସେ ପାଖ ଡିଆଁ ମାରିବାକୁ ଶିଖାଉଥାଏ ! ତେଣୁ ବୟସରେ ମୁଁ ବଡ଼ ।'

ମାଙ୍କଡ଼ ପ୍ରତିବାଦ କଲା, 'ଗଛଟି ଚାରା ଆକାରରେ ଥିଲାବେଳେ ତାହାର ପ୍ରଥମ ପତ୍ରଗୁଡ଼ିକ ମୁଁ ଛିଣ୍ଡାଇ ପକାଇଥିଲି ! ତେଣୁ ବୟସରେ ମୁଁ ବଡ଼ ।'

ତିନି ବନ୍ଧୁଙ୍କର ଏହି ପ୍ରକାର କଳିକଜିଆ ଲାଗିଥିଲାବେଳେ ବୃକ୍ଷର ଉପର ଡାଳରେ ବସିଥିବା ପକ୍ଷୀଟିଏ ତଳକୁ ଉଡ଼ିଆସି କହିଲା, 'ମୋ ମା' ଗୋଟିଏ ପାଚିଲା ଫଳ ମୋ ପାଟିରେ ଭର୍ତ୍ତି କରି ମୋତେ ଉଡ଼ିବାକୁ ଶିଖାଉଥିଲାବେଳେ ଫଳର ମଞ୍ଜିଟି ଏହିଠାରେ ପଡ଼ିଯାଇଥିଲା । ସେହି ମଞ୍ଜିରୁ ଏହି ବିଶାଳ ବୃକ୍ଷର ଜନ୍ମ ।'

ଏହା ଶୁଣି ତିନି ବନ୍ଧୁ କହିଲେ, 'ତୁମେ ଆମ ତିନିଙ୍କଠାରୁ ବୟସରେ ବଡ଼ ହୋଇଥିବାରୁ ଆମର ନେତା ହୁଅ ।'

ପକ୍ଷୀଟି ଉତ୍ତର ଦେଲା, 'ହାତୀ ପରି ମୋ ଦେହରେ ବଳ ନାହିଁ । ଶୃଗାଳର ବୁଦ୍ଧି ମୋ ପାଖରେ ନାହିଁ । ମାଙ୍କଡ଼ର ସାହସ ମଧ୍ୟ ମୋର ନାହିଁ । ତେଣୁ ମୁଁ ତୁମମାନଙ୍କର ନେତା ହେବା ଲାଗି ଯୋଗ୍ୟ ନୁହେଁ କିମ୍ବା ସେଥିରୁ ମୋତେ ଶାନ୍ତି ମିଳିବ ନାହିଁ । ମୋର କର୍ତ୍ତବ୍ୟ ହିଁ ମୋର ଆନନ୍ଦ । ଯେଉଁ ଅଞ୍ଚଳରେ ବୃକ୍ଷ ନାହିଁ, ସେଠାରେ ଫଳର ମଞ୍ଜି ପକାଇ ପକାଇ ଜଙ୍ଗଲ ସୃଷ୍ଟି କରିବା ହେଉଛି ମୋର କର୍ମ ଓ ଧର୍ମ ।'

ଏତିକି କହି ପକ୍ଷୀଟି ଉଡ଼ି ଚାଲିଗଲା । ଜନ୍ତୁମାନେ ଆକାଶକୁ ଚାହିଁ ରହିଥାନ୍ତି ।

ଗଳ୍ପଟି କହିସାରି ମମତାଦେବୀ ତାହାର ନୈତିକ ତାତ୍ପର୍ଯ୍ୟ ବୁଝାଇ ଦେବା ଉଦ୍ଦେଶ୍ୟରେ ବର୍ଣ୍ଣନା କଲେ,

''ମନୁଷ୍ୟ ସମାଜ ମଧ୍ୟରେ ଯେଉଁମାନେ ନିଜର ବାହୁବଳ, ଅର୍ଥବଳ ଓ କ୍ଷମତାବଳ ଦ୍ୱାରା ନିଜକୁ ବଡ଼ ବୋଲି ବିବେଚନା କରନ୍ତି, ସେହିମାନେ ହୁଅନ୍ତି ରାଜନେତା, ମନ୍ତ୍ରୀ, ସମାଜପତି ଓ ପ୍ରତିଷ୍ଠିତ ବ୍ୟକ୍ତି । ଅରଣ୍ୟର ହାତୀ ପରି ଗଛ ପତ୍ର ନଷ୍ଟ କରି ଉଦର ପୂରଣ କରିବା ବ୍ୟତୀତ ସେମାନେ ଅନ୍ୟ କୌଣସି ହିତକର କାର୍ଯ୍ୟ କରନ୍ତି ନାହିଁ । ସେହିପରି ଆଉ ଦଳେ ମଣିଷ ଅଛନ୍ତି ଯେଉଁମାନଙ୍କୁ କେହି କେବେ ଜାଣି ନ ଥାଏ, କାରଣ ଶୃଗାଳ ପରି ଗାତ ଭିତରେ ସେମାନେ ଲୁଚି ରହନ୍ତି ଏବଂ ଅନ୍ୟମାନଙ୍କର ଧନସମ୍ପତ୍ତି ଲୁଣ୍ଠନ କରି ନିଜର ସ୍ୱାର୍ଥସାଧନ କରିଥାନ୍ତି । ଏହିପରି ଧୂର୍ତ୍ତ ଗୋଷ୍ଠୀର ମଣିଷ

ମଧ୍ୟରେ ଦେଖିବାକୁ ମିଳିବ ସରକାରୀ କର୍ମଚାରୀ, ଦଲାଲ୍, ବ୍ୟବସାୟୀ ଓ ସ୍ୱାର୍ଥପର ଠକ ଦଳ ଯେଉଁମାନେ ଅନ୍ୟମାନଙ୍କୁ ଠକାଇପାରି ନିଜର ଜୀବନକାଳ ସୁଖମୟ କରିପାରନ୍ତି । ଅନ୍ୟ ଗୋଟିଏ ମାଙ୍କଡ଼ ଗୋଷ୍ଠୀର ମଣିଷ ମଧ୍ୟ ରହିଛନ୍ତି ଯେଉଁମାନଙ୍କ କାର୍ଯ୍ୟ ହେଉଛି ଧ୍ୱଂସାତ୍ମକ, ରଚନାତ୍ମକ କିମ୍ବା ଗଠନମୂଳକ ନୁହେଁ । ଏମାନେ ସମାଜର କ୍ଷତି କରିବା ଲାଗି ତତ୍ପର, ହିତ ଲାଗି ନୁହେଁ । ଅପର ପକ୍ଷରେ ଯେଉଁ କୃଷକ, ଶ୍ରମିକ ଓ କାରିଗରମାନେ କ୍ଷୁଦ୍ର ପକ୍ଷୀଟି ପରି ସମଗ୍ର ଜୀବନକାଳ ନିଜ ଶ୍ରମଦ୍ୱାରା ସମାଜର କଲ୍ୟାଣ ସାଧନ କରୁଛନ୍ତି ସେହିମାନେ ହିଁ ହେଉଛନ୍ତି ଯଥାର୍ଥ ମନୁଷ୍ୟ । ପକ୍ଷୀ ଯେପରି ଜଙ୍ଗଲ ସୃଷ୍ଟିଦ୍ୱାରା ପରିବେଶ ରକ୍ଷା କରୁଛି, ଏମାନେ ସେହିପରି ସମାଜକୁ ପାଳନ କରୁଛନ୍ତି । ଆମେ ସମସ୍ତେ କାରାଗାରରୁ ମୁକ୍ତିଲାଭ କରିବା ପରେ ପକ୍ଷୀପରି ବଞ୍ଚିବା, ହାତୀ, ଶୃଗାଳ କିମ୍ବା ମାଙ୍କଡ଼ ପରି ନୁହେଁ ।''

କଏଦୀମାନେ କରତାଳି ଦେଲେ । ମମତାଦେବୀ ସଙ୍ଗେ ସଙ୍ଗେ ଆରମ୍ଭ କରିଦେଲେ ସୁଲଳିତ କଣ୍ଠରେ ମୀରାଭଜନ ।

ତିନି ଦିନ ମଧ୍ୟରେ ଆସିଗଲା ଜେଲରଙ୍କ ନିକଟକୁ ଧମକପୂର୍ଣ୍ଣ ସତର୍କବାଣୀ ଓ ବଦଳି ଅର୍ଡ଼ର । ''ଜଣେ କଏଦୀ ଦ୍ୱାରା ଗଳ୍ପ ଛଳରେ ରାଜନେତା, ମନ୍ତ୍ରୀ, ସରକାରୀ କର୍ମଚାରୀ ଏବଂ ମାନ୍ୟଗଣ୍ୟ ବ୍ୟକ୍ତିମାନଙ୍କୁ ପଶୁ ସହିତ ତୁଳନା କରିବା ହେଉଛି ଏକ ଅକ୍ଷମଣୀୟ ଅପରାଧ । ଅନ୍ୟ କଏଦୀମାନଙ୍କ ମନରେ ବିଷ ସଞ୍ଚାର କରାଇ ଶାସନକଳ ପ୍ରତି ଘୃଣାଭାବ ସୃଷ୍ଟି କରିବା ହେଉଛି ଗୋଟିଏ ମାରାତ୍ମକ ଭୁଲ । ଘୃଣା ହେଉଛି ଏକ ସଂକ୍ରାମକ ବ୍ୟାଧି । କଏଦୀମାନେ ସେହି ବ୍ୟାଧି ଦ୍ୱାରା ଅନ୍ୟମାନଙ୍କୁ ସଂକ୍ରମିତ କରିବେ ।''

କିଛି ଦିନ ପରେ ମମତାଦେବୀଙ୍କୁ ନିଆଗଲା କେନ୍ଦ୍ର ଜେଲରୁ ଅନ୍ୟ ଏକ କ୍ଷୁଦ୍ର ଏବଂ ଅସ୍ୱାସ୍ଥ୍ୟକର ଜେଲଖାନାକୁ ।

## ।। ୩୬ ।।

ନୂଆ ଜେଲଖାନାର ପରିବେଶ ମଧ୍ୟରେ ମମତାଦେବୀଙ୍କ ସ୍ୱାସ୍ଥ୍ୟ କ୍ରମେ କ୍ରମେ ଭାଙ୍ଗି ପଡ଼ିଲା । ମହିଳା କଏଦୀମାନଙ୍କ ସ୍ୱାସ୍ଥ୍ୟ ପରୀକ୍ଷା ଲାଗି ଆସୁଥାନ୍ତି ସନ୍ଧ୍ୟାରାଣୀ ନାମକ ଜଣେ ଚିକିତ୍ସିକା । ସେ ଜେଲରବାବୁଙ୍କୁ ଅନୁରୋଧ କରିବା ସତ୍ତ୍ୱେ ମମତାଙ୍କ ଚିକିତ୍ସା ଲାଗି କୌଣସି ହସ୍ପିଟାଲରେ ଭର୍ତ୍ତି କରିବାପାଇଁ ସେ ରାଜି ହେଲେ ନାହିଁ ।

ସନ୍ଧ୍ୟାରାଣୀ ଥରେ ଜଣେ ବିଶେଷଜ୍ଞଙ୍କୁ ନିଜ ସହିତ ଆଣି ମମତାଙ୍କ ସ୍ୱାସ୍ଥ୍ୟ ପରୀକ୍ଷା କରାଇଲେ । ବିଶେଷଜ୍ଞ ଅନୁମାନ କଲେ ଯେ ଦୁର୍ବଳ ଶରୀରରେ ଜେଲଖାନାର ବାଧ୍ୟତାମୂଳକ ପରିଶ୍ରମ ଯୋଗୁଁ ଦେହରେ ଏପରି କୌଣସି ବ୍ୟାଧି ଦେଖାଦେଲାଣି, ଯାହାର ଅନୁସନ୍ଧାନ ନିମନ୍ତେ କେତେଗୁଡ଼ିଏ ପରୀକ୍ଷା ନିରୀକ୍ଷା ଆବଶ୍ୟକ । କିନ୍ତୁ ନିର୍ଦ୍ଦୟ ଜେଲରଙ୍କ ଯୁକ୍ତି ଥାଏ, ‘‘ରୋଗୀ କୌଣସି ଆପତ୍ତି କରୁ ନାହିଁ, ତାଙ୍କୁ ଦେଖିବା ଲାଗି କୌଣସି ଆତ୍ମୀୟସ୍ୱଜନ ଆସନ୍ତି ନାହିଁ, ନିବେଦନ କିମ୍ବା ଅଭିଯୋଗ ବିନା ମୁଁ ହସପିଟାଲକୁ ପଠାଇବା ପାଇଁ ଉପରିସ୍ଥ ଅଫିସରମାନଙ୍କ ଅନୁମତି ଆଣିପାରିବି ନାହିଁ । ସେଠାରୁ ସେ ପଳାଇ ଗଲେ ମୋ ପିଠିରେ ପଡ଼ିବ କିଏ ?’’

ମମତାଦେବୀ ଦିନେ ଦୟାଶୀଳା ଡାକ୍ତରାଣୀଙ୍କୁ ଅନୁରୋଧ କଲେ, ‘‘ମା, ଏହି ହତଭାଗିନୀ ଲାଗି ଆପଣ ଜେଲରବାବୁଙ୍କୁ କିଛି କହନ୍ତୁ ନାହିଁ । ମୁଁ ଖଲାସ ହେଲା ପରେ ଆପଣଙ୍କ ହସପିଟାଲରେ କିଛି ଦିନ ଚିକିତ୍ସା କରିବେ ବୋଲି ଭରସା ଦେଲେ ସେହି ଆଶା ନେଇ ମୁଁ ଏଠାରେ ପଡ଼ିରହିବି ।’’ ଡାକ୍ତରାଣୀ ଆଶ୍ୱାସନା ଦେଲେ, ‘‘ଏଠାରେ ଯେତେ ଦିନ ରହିବ, ମୁଁ ନିୟମିତ ଭାବେ ପରୀକ୍ଷା କରୁଥିବି ଏବଂ ଭଲ ଭଲ ଭିଟାମିନ୍ ଓ ଔଷଧ ଆଣିଦେବି । ଯଦି ଆବଶ୍ୟକ ହୁଏ, ମୁଁ ମୋ ନିଜ ଦାୟିତ୍ୱରେ କର୍ତ୍ତୃପକ୍ଷଙ୍କ ଅନୁମତି ସହ ମୋ ହସପିଟାଲକୁ ନେଇଯିବି । ସେଠାରେ ଉପଯୁକ୍ତ ଚିକିତ୍ସା ପାଇବ । ଖଲାସ ହେଲା ପରେ ଆମ ହସପିଟାଲରେ ଅବଶ୍ୟ ନିଶ୍ଚୟ ରହିପାରିବ ।’’

ସମୟ ଦ୍ରୁତ ଗତିରେ ଆଗେଇ ଗଲା । କାରାଗାରରୁ ମୁକ୍ତି ପାଇଲା ପରେ ରୋଗାକ୍ରାନ୍ତ ମମତାଦେବୀ ପହଞ୍ଚିଲେ ସନ୍ଧ୍ୟାରାଣୀ ଚାକିରି କରୁଥିବା ହସ୍‌ପିଟାଲରେ । ‘‘ଅନାମୀ, ତୁମେ ଆସିଛ ! ତୁମକୁ ଜେନେରାଲ ୱାର୍ଡ଼ରେ ରଖିବି ନାହିଁ । ଗୋଟିଏ ସ୍ୱତନ୍ତ୍ର କେବିନ୍‌ରେ ଜଣେ ନେତାଙ୍କ ଧର୍ମପତ୍ନୀ ଏକାକୀ ଅଛନ୍ତି । ତାଙ୍କର ଭୟ, ଡାକ୍ତରଖାନାରେ ମୃତ ରୋଗୀମାନଙ୍କର ପ୍ରେତାତ୍ମାମାନେ ବୁଲନ୍ତି । କେବିନ୍ ମଧ୍ୟରେ ଏକାକୀ ଥିବାରୁ ରାତିରେ ତାଙ୍କୁ ଭୀଷଣ ଭୟ ଲାଗେ । ସେହି କୋଠରିର ଗୋଟିଏ କୋଣରେ ତୁମକୁ ରଖାଇଦେଲେ ତୁମେ ଶାନ୍ତିରେ ରହିବ ଏବଂ ସେ ମଧ୍ୟ ଭୟଶୂନ୍ୟ ମନରେ ରାତିରେ ନିଦ୍ରା ଯିବେ । ଟିକିଏ ଅପେକ୍ଷା କର । ସାଙ୍ଗରେ ନେଇଯିବି ।’’

ନିଜ ପକେଟରୁ ଟଙ୍କା ଦେଇ ଜଣେ ଚପରାସୀକୁ ପଠାଇ ରୋଗିଣୀ ଲାଗି ନୂଆ ଲୁଗା, ବ୍ଲାଉସ୍ ଓ ମୁଖ ଆବରଣ କିଣି ଆଣିଲେ । ମମତା ସେଗୁଡ଼ିକ ପିନ୍ଧିଲା ପରେ,

ଡାକ୍ତରାଣୀ ତାଙ୍କୁ ନେଇଗଲେ ଉପରମହଲାର କେବିନ ଭିତରକୁ । ନେତାଙ୍କ ପତ୍ନୀ ନିଦରେ ଶୋଇଥାନ୍ତି ।

ଶଯ୍ୟା ଉପରେ ଶୁଆଇଦେଇ ସନ୍ଧ୍ୟାରାଣୀ ରୋଗୀର ଛାତି ଉପରେ ଷ୍ଟେଥୋସ୍କୋପ୍ ରଖିଲେ ଓ ରକ୍ତଚାପ ପରୀକ୍ଷା କରିସାରି ମୁଣ୍ଡ ପାଖରେ ଟଙ୍ଗାଥିବା ଫର୍ମଟିରେ ସେ ସବୁ ଲେଖିଲା ବେଳେ ମମତାଦେବୀ କହିଲେ, ''ମା, ମୋର ନାମ ଅନାମୀ ନୁହେଁ, ମମତା । କିନ୍ତୁ ଆପଣ ସେହି ଅନାମୀ ନାମଟି ଲେଖନ୍ତୁ । ମମତା ବୋଲି ନାମଟି କାହାରି ପାଖରେ କହିବେ ନାହିଁ ।''

''କୌଣସି ବ୍ୟକ୍ତି ପକ୍ଷରେ ନିଜର ନାମ ଗୋପନ ରଖିବା ଉଚିତ ନୁହେଁ । ଅପରାଧ ଲାଗି ଜେଲ ଦଣ୍ଡ ଭୋଗିଲେ ସୁଦ୍ଧା ତୁମର ନାମଟି ପ୍ରକୃତ ଯାହା, ସେହି ନାମ ଜେଲଖାନାରେ ହେଉ ଅଥବା ଡାକ୍ତରଖାନାରେ, ସବୁ ସ୍ଥାନରେ ଠିକ୍ ରହିବା ଉଚିତ ।''

''ନାମ ଗୋପନ ରଖିବାର କାରଣ ଅଛି । ଯେଉଁ ଦେହ ଏବେ ଧାରଣ କରିଛି ତାହା ମମତାର ପ୍ରକୃତ ଶରୀର ନୁହେଁ । ଗୋଟିଏ ଦଗ୍ଧୀଭୂତା ମହିଳାର ବିକୃତ ଦେହ ଏବଂ ଘଟଣାଚକ୍ରରେ ଏହି ମହିଳା ଜଣେ ଚୋରଣୀ ଓ ଅପରାଧିନୀ ଭାବେ ଜେଲଫେରନ୍ତା ଦାଗୀ । ପ୍ରକୃତ ମମତାର ଦୁଇଜଣ ପୁଅ ଆଜି ଉଚ୍ଚାସନରେ ଅଧିଷ୍ଠିତ । ସେମାନଙ୍କ ଦୃଷ୍ଟିରେ ତାଙ୍କ ମା' ମମତା ଅନେକ ପୂର୍ବରୁ ମରିଯାଇଛି । ପରିଚୟ ଦେବାକୁ ଚେଷ୍ଟା କଲେ ମଧ ସେମାନେ ଶୁଣିବାକୁ କିମ୍ବା ବିଶ୍ୱାସ କରିବାକୁ ଇଚ୍ଛୁକ ହେବେ ନାହିଁ । ତେଣୁ ମମତା ନାମଟି କେବଳ ଆପଣ ଜାଣିବେ, ଅନ୍ୟମାନେ ଜାଣିବେ ଦାଗୀ ଅନାମୀ ।''

''ମୋ ଆଗରେ ଏ ସବୁ କଥା କହିଲ କାହିଁକି ? ପ୍ରତିଷ୍ଠିତ ପୁତ୍ରମାନେ ତୁମକୁ ଚିହ୍ନନ୍ତୁ ବା ନ ଚିହ୍ନନ୍ତୁ, ମୁଁ ଜଣେ ଚିକିତ୍ସିକା ଭାବରେ ରୋଗୀମାନଙ୍କୁ ମନୁଷ୍ୟ ରୂପେ ହିଁ ଦେଖିଥାଏ, କୌଣସି ବ୍ୟକ୍ତିର ମା' କିମ୍ବା ଜଣେ ଜେଲଫେରନ୍ତା ଦାଗୀ ଭାବରେ ନୁହେଁ ।''

ସନ୍ଧ୍ୟାରାଣୀ ଅନ୍ୟ ରୋଗୀମାନଙ୍କୁ ଦେଖିବା ଲାଗି ଚାଲିଗଲେ । ମମତାଦେବୀଙ୍କ ପାଖ ଶଯ୍ୟାଟିରେ ଥାଆନ୍ତି ଜଣେ ରୁଗ୍ଣା ଅଥଚ ଧନଶାଳୀ ବ୍ୟକ୍ତିଙ୍କ ପତ୍ନୀ । ମହିଳାଟି ମଧ୍ୟବୟସ୍କା ଏବଂ ଜଣେ ନାରୀ ନେତ୍ରୀ ଥିବା ଯୋଗୁଁ ମଧ୍ୟେ ମଧ୍ୟେ ରାଜନୈତିକ ନେତାମାନେ ଦେଖିବାକୁ ଆସି ରାଜନୀତି ଆଲୋଚନା କରୁଥାନ୍ତି । ସେମାନଙ୍କ କଥାବାର୍ତ୍ତାରୁ ମମତାଦେବୀ ଜାଣିପାରିଲେ ଯେ ଦେଶରେ ସାଧାରଣ ନିର୍ବାଚନ

ହେବାକୁ ଯାଉଛି । ନେତ୍ରୀଙ୍କ ଏମ.ପି. ସ୍ୱାମୀ ତାଙ୍କ ନିର୍ବାଚନ ମଣ୍ଡଳୀରୁ ଲୋକସଭାକୁ ପ୍ରାର୍ଥୀ ହେବେ ବୋଲି କଥାବାର୍ତ୍ତାରୁ ଜଣା ଯାଉଥାଏ ।

ଉତ୍କଣ୍ଠିତ ଚିତ୍ତରେ ମମତା ଭାବୁଥାନ୍ତି, ପୁଅ ସ୍ୱରାଜ ହୁଏତ ପୁଣି ଥରେ ନିଜ ଅଞ୍ଚଳରୁ ପ୍ରାର୍ଥୀ ଭାବରେ ଛିଡ଼ା ହେବ । ଦୁଃଖ ହେଉଥାଏ, ମନ୍ତ୍ରିତ୍ୱର ସଦ୍‌ବ୍ୟବହାର ପରିବର୍ତ୍ତେ ସେ ଅସଦ୍ ବ୍ୟବହାର କରିଚାଲିଛି । ଅଥଚ ତାହାକୁ ସତ୍‌ପଥକୁ ଆଣିବାଲାଗି ଜନ୍ମଦାୟିନୀ ଜନନୀର ମଧ୍ୟ ଅଧିକାର ନାହିଁ । ଥରେ ଅଧିକାର ସାବ୍ୟସ୍ତ କରିବାକୁ ଚେଷ୍ଟାକରି ଦୀର୍ଘକାଳ ଜେଲଦଣ୍ଡ ଭୋଗିବାକୁ ହେଲା !

ହଠାତ୍ ମନକୁ ଆସିଲା ଅନ୍ୟ ଏକ କଳ୍ପନା । ଚିକିତ୍ସିକା ସନ୍ଧ୍ୟାରାଣୀଙ୍କ ଦୟା ଓ ସାହାଯ୍ୟରେ ଥରେ ପୁଅକୁ ରୋଗ ଶଯ୍ୟା ପାଖକୁ ଆଣିପାରିଲେ ଜଣେ ଜନନୀର କର୍ତ୍ତବ୍ୟ ପାଳନ ପାଇଁ ଚେଷ୍ଟା କରିହୁଅନ୍ତା । ମନ୍ତ୍ରୀ ହେଲେ ସୁଦ୍ଧା ରାଜନେତାମାନେ ନିଜର ଲୋକପ୍ରିୟତା ପ୍ରଦର୍ଶନ କରିବା ଉଦ୍ଦେଶ୍ୟରେ ଥରେ ଥରେ ହସପିଟାଲ ଯାଇ ରୋଗୀଙ୍କୁ ଦେଖୁଥିବା ଅବସ୍ଥାରେ ଫଟୋଗ୍ରାଫ୍ ଉଠାଇ ଖବରକାଗଜରେ ବାହାର କରନ୍ତି ବୋଲି ଜଣାଥାଏ । ଜଣେ ଡାକ୍ତରାଣୀ ଭାବରେ ସନ୍ଧ୍ୟାଦେବୀ ନିଶ୍ଚୟ ମନ୍ତ୍ରୀଙ୍କ ନିକଟକୁ ଯାଇ କହିପାରିବେ ଯେ ତାଙ୍କ ଅଞ୍ଚଳର ଜଣେ ରୋଗିଣୀ ଅନ୍ତିମ ଶଯ୍ୟାରୁ ମନ୍ତ୍ରୀମହୋଦୟଙ୍କ ଯଶକାମନାପୂର୍ବକ ଆଶୀର୍ବାଦ ଦେବାପାଇଁ ଦର୍ଶନ ପ୍ରାର୍ଥନା କରୁଛି ।

କିନ୍ତୁ ନିଜ କଳ୍ପନା କାର୍ଯ୍ୟକାରୀ କରିବା ପୂର୍ବରୁ ଦିନେ ସନ୍ଧ୍ୟାବେଳେ ଦୁଇଜଣ ବିଶେଷଜ୍ଞ ଚିକିତ୍ସକଙ୍କ ସହିତ ସନ୍ଧ୍ୟାଦେବୀ ରୋଗିଣୀକୁ ଜଣାଇଦେଲେ ଯେ ତାଙ୍କର ଉଦର ସ୍ଥଳୀରେ ପଥର ସୃଷ୍ଟି ହୋଇଛି ବୋଲି ପରୀକ୍ଷାରୁ ଜଣାପଡ଼ିଛି । ସେଥିପାଇଁ ଅପାରେସନ ଆବଶ୍ୟକ । ବିନା ବାକ୍ୟ ବ୍ୟୟରେ ମମତାଦେବୀ ସଜଳ ଚକ୍ଷୁରେ ଡାକ୍ତରମାନଙ୍କ ଦିଗକୁ ଚାହିଁରହିଲେ ।

ଚିକିତ୍ସକମାନେ ପାର୍ଶ୍ୱବର୍ତ୍ତୀ ଶଯ୍ୟାରେ ଥିବା ନାରୀନେତ୍ରୀଙ୍କୁ ଜଣାଇ ଦେଲେ, ''ଆପଣଙ୍କ ଉଦରରୁ ଟିକିଏ ମାଂସ ନେଇ ବାୟୋପ୍ସି କରିବା ଦରକାର ।''

ବିମର୍ଷ ମୁଖରେ ନେତ୍ରୀ କର୍କଶ ଭାଷାରେ ପଚାରିଲେ, ''ସଫା ଭାବରେ କହୁ ନାହଁ କାହିଁକି ଯେ କ୍ୟାନସର ହୋଇଛି ? ମୁଁ କ'ଣ ସେଥିପାଇଁ ଆପଣମାନଙ୍କୁ ଦାୟୀ କରିବି ?''

ନେତ୍ରୀଙ୍କ କ୍ରୋଧ ଦେଖି ଡାକ୍ତରମାନେ ନୀରବରେ ବାହାରି ଚାଲିଗଲେ । ସେହି ସମୟରେ କେବିନ କକ୍ଷକୁ ପଶିଆସିଲେ ନେତ୍ରୀଙ୍କ ସ୍ୱାମୀ ଓ ଭାଇ । ସ୍ୱାମୀ ବସିପଡ଼ିଲେ ସ୍ତ୍ରୀଙ୍କ ଶଯ୍ୟା ଉପରେ । ତାଙ୍କ ଶ୍ୟାଳକଙ୍କୁ ଚେୟାରଟିରେ ବସିବାକୁ କହି ଆରମ୍ଭ କଲେ କଥାବାର୍ତ୍ତା ।

ସ୍ତ୍ରୀଙ୍କ ପ୍ରତି ତୀକ୍ଷ୍ଣ ଦୃଷ୍ଟିପାତ ସହ ସ୍ୱାମୀ ଅଭିଯୋଗ ଉତ୍ଥାପନ କଲେ, ''ତୁମ ଭାଇଙ୍କୁ ତୁମ ପାଖକୁ ଧରିନେଇ ଆସିଛି, ତୁମେ ବିଚାର କରିବ ବୋଲି । ଏମ୍.ପି. ଥିବାରୁ ନାନାପ୍ରକାର କୌଶଳ କରି, ମନ୍ତ୍ରୀ ଓ ସଚିବମାନଙ୍କୁ ଉତ୍କୋଚ ଦେଇ ଏହାଙ୍କୁ ଔଷଧ କାରଖାନା ବସାଇବା ଲାଗି ଲାଇସେନ୍ସ କରାଇ ଦେଇଥିଲି । ଗଙ୍ଗାମାଟିରେ ଭିଟାମିନ 'ସି' ତିଆରି କରି ଦେଶର ସବୁ ରାଜ୍ୟର ଡାକ୍ତରଖାନାଗୁଡ଼ିକୁ ସେହି ଭେଜାଲ ଭିଟାମିନ ସପ୍ଲାୟ କରି ଏବେ ଏ ଜଣେ କୋଟିପତି । ଅଥଚ ମୋର ନିର୍ବାଚନ ଖର୍ଚ୍ଚ ପାଇଁ ଟଙ୍କା ଦାନ କରିବାଲାଗି ଏହାଙ୍କର ଇଚ୍ଛା ନାହିଁ । ତାଙ୍କ ଭଉଣୀ ହୋଇ ତୁମେ ତାଙ୍କୁ ଯେଉଁ ପ୍ରକାର ଉପଦେଶ ଦେବା ଉଚିତ, ତାହାହିଁ କୁହ ।''

ରୁଗ୍ଣା ନେତ୍ରୀ ରୁକ୍ଷ ସ୍ୱରରେ ଉତ୍ତର ଦେଲେ, ''ମୁଁ ରୋଗଶଯ୍ୟାରେ ପଡ଼ିଛି । ଯଦି କ୍ୟାନସର ହୋଇଥିବ, ଯମକୁ ଅପେକ୍ଷା କରିବି । ତୁମେ ଏମ୍.ପି. ଥିଲ । ଏବେ ନିର୍ବାଚନରେ ଜିଣିଲେ ମନ୍ତ୍ରୀ ହେବ । ମୁଁ ସେତେବେଳକୁ ସଂସାରରେ ନ ଥିବି । ଭାଇ ଟଙ୍କା ଦେବ ବା ନ ଦେବ, ତାହା ତା ଇଚ୍ଛା ଉପରେ ନିର୍ଭର କରେ । ତାକୁ ମୁଁ କିଛି କହିବି ନାହିଁ ।''

ସ୍ୱାମୀ ଶାନ୍ତ ଭାବରେ କହିଲେ, ''ତୁମର ଚିନ୍ତା ଶକ୍ତି ଲୋପପାଇଗଲାଣି । ମୁଁ ମନ୍ତ୍ରୀ ହେଲେ ତୁମର ରୋଗ ଚିକିତ୍ସା ଲାଗି ଇଂଲଣ୍ଡ ବା ଆମେରିକା ନେଇଯିବି । କ୍ୟାନସର ହେଉ ବା ଅନ୍ୟ କିଛି ହେଉ, ସେଥିଲାଗି ତୁମର ଚିନ୍ତା କରିବା ଦରକାର ନାହିଁ । ସେ ଚିନ୍ତା ମୋର । ବର୍ତ୍ତମାନ ମୋର ଏକମାତ୍ର ଚିନ୍ତା ହେଉଛି ଅର୍ଥ । ଟିକଟ ପାଇବାଲାଗି ବଡ଼ ବଡ଼ ନେତାମାନଙ୍କୁ ଅର୍ଥ ଦେବାକୁ ପଡ଼ିବ । ପାର୍ଟି ନିର୍ବାଚନ ଖର୍ଚ୍ଚ ଲାଗି ଯାହା ଦେବ, ତାହା ସମୁଦ୍ରକୁ ଶଙ୍ଖେ ପାଣି । ନିଜର ପ୍ରଚାର ପତ୍ର ଓ ଫଟୋଚିତ୍ର ଛପାଇବାକୁ ଅନେକ ଟଙ୍କା ବ୍ୟୟ କଲିଣି । ଏସବୁ ହେଲା ପୂର୍ବ-ପ୍ରସ୍ତୁତି । ପ୍ରକୃତ ନିର୍ବାଚନରେ କେତେ ଖର୍ଚ୍ଚ ହେବ ଏବେଠୁଁ ଅନୁମାନ କରିବା କଷ୍ଟକର । ଗୋଟିଏ ମହାନଗରୀର ନିର୍ବାଚନମଣ୍ଡଳୀ ଓ ଦେଶର ଅନ୍ୟ ନିର୍ବାଚନମଣ୍ଡଳୀ ମଧ୍ୟରେ ଆକାଶ-ପାତାଳ ପ୍ରଭେଦ ।''

''ମୋତେ ସେ ସବୁ କଥା କୁହ ନାହିଁ । ପନ୍ଦର ବର୍ଷ ରାଜନୀତି କଲିଣି । ରାଜନୀତି ଓ ଅର୍ଥ ମଧ୍ୟରେ ଯେପରି ସମ୍ପର୍କ ତାହା ମୋତେ ଅଛପା ନାହିଁ । ମ୍ୟୁନିସିପାଲିଟି କାଉନ୍‌ସିଲର ହେବାପାଇଁ ସବୁ ଅଳଙ୍କାର ବିକିଥିବା କଥା ମନେଅଛି ।''

ନେତ୍ରୀ ମହୋଦୟା ପାଶ ମୋଡ଼ି ଶୋଇ ପଡ଼ିଲେ । ପ୍ରାର୍ଥୀ ମହୋଦୟ ଦୀର୍ଘଶ୍ୱାସ ତ୍ୟାଗକରି ଚାଲିଗଲେ । ନେତ୍ରୀଙ୍କ ଭାଇ ଯେଉଁ ପ୍ରକାର ନିର୍ବାକ ଭାବରେ ଆସିଥିଲେ ଠିକ୍ ସେହିପରି ଭାବରେ ବିଦାୟ ନେଲେ ।

ରାତିରେ ସନ୍ଧ୍ୟାରାଣୀ ଆସିଲା ପରେ ମମତାଦେବୀ ଅନୁରୋଧ ଜଣାଇଲେ, ''ମା', ଅପରେସନ ହେବ ଶୁଣି ଡର ଲାଗୁଛି । ଦେହରେ ରକ୍ତ ନାହିଁ କି ବଳ ନାହିଁ । ଆଉ କିଛି ସମୟ ପରେ ଅବସ୍ଥାର ଉନ୍ନତି ଘଟିପାରେ । ସେତେବେଳକୁ ଅପରେସନ ପାଇଁ ନିଶ୍ଚିନ୍ତ ମନରେ ଯାଇପାରନ୍ତି ।''

ସନ୍ଧ୍ୟାଦେବୀ ମତ ଦେଲେ, ''ଗଲ୍ ବ୍ଲାଡାର ଷ୍ଟୋନ୍ ଅପରେସନ ଲାଗି କିଛି ଦିନ ବିଳମ୍ବ ହେଲେ କ୍ଷତି ନାହିଁ ।''

ନେତ୍ରୀଙ୍କ ଶଯ୍ୟାପାଖକୁ ଗଲାମାତ୍ରେ ସେ ଉଗ୍ରଚଣ୍ଡୀ ରୂପ ଧାରଣ କରି ବସିପଡ଼ିଲେ ଓ ଡାକ୍ତରାଣୀଙ୍କୁ ଭର୍ତ୍ସନା ବାଣୀ ଶୁଣାଇଲେ, ''ମୋତେ କ୍ୟାନସର ହୋଇଛି ବୋଲି ସ୍ପଷ୍ଟ ଭାବରେ ଜଣାଇ ଦେଲେ ଡାକ୍ତରମାନଙ୍କର କୌଣସି ପ୍ରକାର କ୍ଷତି ହେବ ନାହିଁ । ମୋ ରୋଗ ବିଷୟ ମୋ ସ୍ୱାମୀଙ୍କୁ କୁହାଗଲା ନାହିଁ କାହିଁକି ? ଚିକିତ୍ସା ଦାୟିତ୍ୱରେ ରହି ରୋଗୀ ସହିତ ଲୁଚକାଳି ଖେଳିବା ଉଚିତ ନୁହେଁ । ସତ କଥା କୁହ, ମୋର କ'ଣ ହୋଇଛି ?''

''ବାୟୋପ୍ସି ପରେ ଜଣାପଡ଼ିବ ।''

କର୍କଶ ସ୍ୱରରେ ନାରୀନେତ୍ରୀ ବ୍ୟକ୍ତ କଲେ, ''ତୁମ ମୁଖ୍ୟଙ୍କୁ କହିଦିଅ, ଏବେ ବାୟୋପ୍ସି ହୋଇପାରିବ ନାହିଁ । ମୋ ସ୍ୱାମୀ ବ୍ୟସ୍ତ ଅଛନ୍ତି । ନିର୍ବାଚନ ପରେ ଇଂଲଣ୍ଡ, ଆମେରିକାରେ ଚିକିତ୍ସା କରାଇବେ ।''

ସନ୍ଧ୍ୟାଦେବୀ ଚଞ୍ଚଳ ଗତିରେ ବିଦାୟ ନେଲେ ।

ମମତାଦେବୀ ଚିନ୍ତା କରିବାକୁ ଲାଗିଲେ, ରାଜଧାନୀର ଏପରି ସର୍ବଶ୍ରେଷ୍ଠ ହସପିଟାଲରେ ବିଚକ୍ଷଣ ଓ ଅଭିଜ୍ଞ ବିଶେଷଜ୍ଞମାନେ ରହିଥିବା ସତ୍ତ୍ୱେ ପ୍ରାକ୍ତନ ଏମ୍.ପି. କିମ୍ବା ନବ ନିର୍ବାଚିତ ଏମ୍.ପି.ମାନଙ୍କ ସ୍ୱାମୀମାନେ ମଧ୍ୟ ସରକାରୀ ଅର୍ଥରେ ଯାଇପାରିବେ ବିଦେଶକୁ ଚିକିତ୍ସା ଲାଗି ! ମନେପଡ଼ିଲା ମହାତ୍ମା ଗାନ୍ଧୀଙ୍କ କଥା । ପ୍ରତିଦିନ ସକାଳେ ସେ ଏକ ଚାମଚ ଦେଶୀ ମହୁ ବ୍ୟବହାର କରୁଥାନ୍ତି । ଥରେ ବିଲାତ ଯାଇଥିଲା ବେଳେ

ନିଜ ମହୁବୋତଲ ନେବାକୁ ଭୁଲି ଯାଇଥିବାରୁ ତାଙ୍କ ସହକାରୀ ଲଣ୍ଡନର ଗୋଟିଏ ଦୋକାନରୁ ମହୁ ବୋତଲ କିଣିଥିବା ଶୁଣି ବିରକ୍ତ ହୋଇ ମଧୁପାନ କଲେ ନାହିଁ । ତାଙ୍କ ସହକାରୀ ଭର୍ତ୍ସନା ଶୁଣିଲା ପରେ ନିଜ ପକେଟରୁ ବୋତଲଟିର ମୂଲ୍ୟ ବହନ କରିବାକୁ ବାଧ୍ୟ ହୋଇଥିଲେ ।

ନାରୀନେତ୍ରୀ ଯଥାରୀତି ନିଜ ଶଯ୍ୟାରେ ରହି ସମସ୍ତ ପ୍ରକାର ସେବା ଶୁଶ୍ରୂଷା, ପଥ୍ୟ ଏବଂ ଆରାମ ଅବସ୍ଥାନ ଉପଭୋଗ କରୁଥାନ୍ତି । ପ୍ରତିଦିନ ତାଙ୍କ ନିକଟକୁ ଆସିଯାଉଥାଏ ଗୁଡ଼ାଏ ଦୈନିକ ସମ୍ବାଦପତ୍ର । ଦିନେ ସମ୍ବାଦପତ୍ରରେ ବାହାରି ଯାଇଥାଏ ବିଭିନ୍ନ ରାଜନୈତିକ ଦଳର ପ୍ରାର୍ଥୀ ତାଲିକା । ନିଜ ସ୍ୱାମୀଙ୍କ ନାମ ଦେଖିବାକୁ ନ ପାଇ କ୍ରୋଧରେ ସେ ଅଗ୍ନିଶର୍ମା ହୋଇଉଠିଥାନ୍ତି । ତାଙ୍କର ମନୋଭାବ ଜାଣି ନ ପାରି ମମତାଦେବୀ ପାର୍ଶ୍ୱବର୍ତ୍ତୀ ଶଯ୍ୟାରୁ କୋମଳ ସ୍ୱରରେ ପଚାରିଲେ, ‘‘ମା, ସ୍ୱରାଜବାବୁ ନାମକ ଜଣେ ନେତାଙ୍କୁ ତାଙ୍କ ଦଳୀୟ ଟିକଟ ମିଳିଛି କି ? ମୁଁ ତାଙ୍କ ଅଞ୍ଚଳର ଜଣେ ମହିଳା ବୋଲି ଏ ପ୍ରଶ୍ନ ପଚାରୁଛି । ସେ ଏବେ ଜଣେ ମନ୍ତ୍ରୀ ଅଛନ୍ତି ।’’

ନେତ୍ରୀ ପ୍ରଥମରୁ କେବିନ୍‌ର ଗୋଟିଏ କୋଣରେ ଥିବା ଛୋଟ ଖଟିଆରେ ରହିଥିବା ରୋଗିଣୀ ପ୍ରତି ପ୍ରୀତ ଥିଲେ କାରଣ ରାତିରେ ଆଲୋକ ଲିଭିଗଲା ପରେ ମମତାଦେବୀ ମୃଦୁ କଣ୍ଠରେ ଗାଉଥାନ୍ତି ବିବିଧ ପ୍ରକାର ଭଜନ । ତାଙ୍କ ବିକୃତ ମୁଖମଣ୍ଡଳ ଦେଖି ମଧ୍ୟ ନେତ୍ରୀ ବିରକ୍ତି ପ୍ରକାଶ କରୁ ନ ଥାନ୍ତି । ଭଜନ ଯୋଗୁଁ ଭୂତ ପ୍ରେତ କେବିନ ଭିତରକୁ ଆସିପାରିବେ ନାହିଁ ବୋଲି ତାଙ୍କର ବିଶ୍ୱାସ ଥାଏ ।

ତେଣୁ ମମତାଦେବୀଙ୍କ ପ୍ରଶ୍ନ ଶୁଣି ନେତ୍ରୀ ଉତ୍ତର ଦେଲେ, ‘‘ହଁ, ହଁ, ସେପରି ଲୋକକୁ ଟିକଟ ନ ମିଳିବ ଯଦି ଆଉ କାହାକୁ ମିଳିବ ? ପ୍ରାର୍ଥୀ ହେବାଲାଗି ସେ ମନୋନୀତ ହୋଇଛି ଏବଂ ନିର୍ବାଚନରେ ନିଶ୍ଚୟ ଜିଣିବ ବୋଲି ଜାଣିଛି ।’’

ଅଳ୍ପ ସମୟ ମଧ୍ୟରେ ଆସିଗଲେ ନେତ୍ରୀଙ୍କ ଅପମାନ ଜର୍ଜରିତ ସ୍ୱାମୀ । କ୍ରୋଧ ସମ୍ଭାଳି ନ ପାରି କହିଗଲେ, ‘‘ଏତେ ଦିନ ପରେ ମନୁଷ୍ୟ ଚରିତ୍ରର ପରିଚୟ ପାଇଲି । ରାଜନୀତି ଯେଉଁମାନେ କରନ୍ତି ସେମାନଙ୍କ ପ୍ରତିଶ୍ରୁତିର କିଛି ମୂଲ୍ୟ ନାହିଁ । ହାଇକମାଣ୍ଡର ତିନିଚାରିଜଣ ନେତାଙ୍କ ପକେଟ ଭର୍ତ୍ତି କରିଦେଇଥିଲି । ଟିକଟ ନିଶ୍ଚୟ ମିଳିବ ବୋଲି କୁହାଗଲା । ଶେଷ ମୁହୂର୍ତ୍ତରେ ଆଉ ଗୋଟିଏ ଗଧକୁ ଟିକଟ ଦେଇ ମୋତେ ତା୍‌ ପାଇଁ ପ୍ରଚାର କରିବାକୁ କହୁଛନ୍ତି । ଛାଡ଼ ସେ କଥା । ମୁଁ ଏମ୍.ପି. ନ ହୋଇପାରିଲେ ସୁଦ୍ଧା ତୁମର ଚିକିତ୍ସା ବିଦେଶରେ ହେବ । ଧୈର୍ଯ୍ୟସହ ଆଉ କିଛି ଦିନ ଅପେକ୍ଷା କର । ଯେଉଁମାନେ କ୍ଷମତାକୁ ଆସିବେ ସେମାନଙ୍କୁ ବଶ କରିବାକୁ ମୁଁ

ଜାଣିଛି । ସ୍ୱାର୍ଥ ହାସଲ ଲାଗି କୌଶଳ ଦରକାର । କୌଣସି ଜଣେ ମନ୍ତ୍ରୀଙ୍କର ସ୍ତ୍ରୀ ଭାବରେ ରୋଗ ଚିକିତ୍ସା ଲାଗି ବିଦେଶ ଯାତ୍ରାର ବ୍ୟବସ୍ଥା ମୁଁ କରାଇପାରିବି । ତୁମେ ନିଶ୍ଚିନ୍ତ ରୁହ ।''

ଦିନେ ସମ୍ବାଦପତ୍ର ପଢୁଥିବା ସମୟରେ ନାରୀନେତ୍ରୀ ମହୋଦୟା ମମତାଦେବୀଙ୍କୁ ପାଖକୁ ଡାକି ତଳେ ବସିବାକୁ ଇଙ୍ଗିତ ଦେଲେ ଏବଂ ଖବରକାଗଜରେ ପ୍ରକାଶ ପାଇଥିବା କେତେଗୁଡ଼ିଏ ବାକ୍ୟ ଶୁଣାଇ ଦେଲେ ।

''ମନ୍ତ୍ରୀ ସ୍ୱରାଜବାବୁ ପ୍ରଚାର କରୁଛନ୍ତି, ଶୀରିଖଣ୍ଡ ନାମକ ଅରଣ୍ୟମୟ ଅଞ୍ଚଳରେ ଶିଳ୍ପାନୁଷ୍ଠାନମାନ ସ୍ଥାପନପୂର୍ବକ ନିଜ ରାଜ୍ୟକୁ ଶିଳ୍ପ ସମୃଦ୍ଧ କରିପାରିବେ । ବନବାସୀମାନଙ୍କର ମାଟି ତଳେ ମହଜୁଦ ରହିଛି ବିଭିନ୍ନ ପ୍ରକାରର ଖଣିଜ ପଦାର୍ଥ । ସେହିଗୁଡ଼ିକର ଉପଯୋଗ ନିମନ୍ତେ ସରକାରଙ୍କୁ ପ୍ରଭାବିତ କରି ଦେଶର ଶିଳ୍ପପତିମାନଙ୍କୁ ଅର୍ଥ ବିନିଯୋଗପାଇଁ ରାଜି କରାଇବା ଲାଗି ସେ ବଦ୍ଧପରିକର ।''

ମମତା ନିଜ ଶଯ୍ୟାକୁ ଫେରିଆସିଲେ । ଶୀରିଖଣ୍ଡ ନାମଟିକୁ ସେ ସତେଯେପରି ଭୁଲି ଯାଇଥିଲେ । ମାନସ ପଟରେ ଦେଖିପାରିଲେ ସେହି ଅଞ୍ଚଳର ଦୃଶ୍ୟ, ଆଦିବାସୀମାନଙ୍କର ସରଳ ଜୀବନଯାପନ ଓ ଦାରିଦ୍ର୍ୟ । ମନେପଡ଼ିଲା, ମହାଗିରି ପର୍ବତ ଶିଖରର ସେହି ଗୁମ୍ଫା ଯେଉଁଠାରେ ବିତିଥିଲା ବର୍ଷ ପରେ ବର୍ଷ । ଦେଖିପାରିଲେ ମାଝି ସର୍ଦ୍ଦାର, ଈଶା ଓ କରାଳୀର ରୂପ । ଆଶଙ୍କା ଆସିଲା, ବନବାସୀଙ୍କ ଅଞ୍ଚଳରେ କଳକାରଖାନା ବସାଇଲେ, କେଉଁଠାରେ ରହିବେ ସେହି ଆଦିମ ଅଧିବାସୀମାନେ !

ଏକ ସପ୍ତାହ ପରେ ବାହାରିଗଲା ନିର୍ବାଚନ ଫଳାଫଳ । ସ୍ୱରାଜବାବୁ ନିର୍ବାଚନ ଜିଣିଛନ୍ତି ଏବଂ ମନ୍ତ୍ରୀପଦ ପାଇଛନ୍ତି ବୋଲି ନାରୀନେତ୍ରୀ ପାଟିକରି ଜଣାଇଦେଲେ ରୋଗିଣୀ ଅନାମୀକୁ ।

ଅଳ୍ପ ସମୟ ପରେ ପ୍ରବେଶ କଲେ ସନ୍ଧ୍ୟାରାଣୀ । ଅନାମୀକୁ କହିଲେ, ''ଆଗାମୀ କାଲି ତୁମର ଗଲ ବ୍ଲାଡାର ଅପରେସନ କରାଯିବ । ଅଧିକ ବିଳମ୍ବ କରିବା ଉଚିତ ନୁହେଁ ବୋଲି ସର୍ଜନମାନେ କହୁଛନ୍ତି ।''

କିପରି ଭାବରେ ଅପରେସନ ଲାଗି ପ୍ରସ୍ତୁତ ରହିବାକୁ ହେବ ତାହା ସେ ବୁଝାଇ ଦେଇ ଚିନ୍ତା କରିବାକୁ ମନା କଲେ । ମମତାଦେବୀ ସହାସ୍ୟ ବଦନରେ କୃତଜ୍ଞତା ଜ୍ଞାପନ ସହ ପ୍ରଣାମ ଜଣାଇଲେ ।

ସକାଳ ସମୟରେ ଦେଖାଗଲା ଅନାମୀ ନାମ୍ନୀ ରୋଗିଣୀର ଶଯ୍ୟାଟି ଶୂନ୍ୟ ପଡ଼ିଛି ।

## ।। ୩୭ ।।

ରାତ୍ରିର ତୃତୀୟ ପ୍ରହରରେ ହସପିଟାଲ ଶଯ୍ୟାରୁ ନିଜ ପୁଟୁଳି ଓ ବାଡ଼ି ଖଣ୍ଡିକ ଧରି ବାହାରି ଆସିଲା ବେଳକୁ ସମ୍ମୁଖସ୍ଥ ରାଜପଥ ପ୍ରାୟତଃ ଜନଶୂନ୍ୟ ଥାଏ । ମମତାଦେବୀ ଆତ୍ମଗ୍ଳାନି ଭୋଗ କରୁଥାନ୍ତି ଯେ ଯେଉଁ ଦେବୀତୁଲ୍ୟା ଡାକ୍ତରାଣୀ ତାଙ୍କୁ ଦୀର୍ଘ ଦିନ ହସପିଟାଲ୍‌ରେ ଆଶ୍ରୟ ଦେଇ ସେବା ଶୁଶ୍ରୂଷା କରିଥିଲେ, ତାଙ୍କର ଅନୁମତି ନ ନେଇ ପଳାଇ ଆସିବା ହୋଇଛି ଏକ ଗର୍ହିତ କାର୍ଯ୍ୟ । କିନ୍ତୁ ତତ୍‌କ୍ଷଣାତ ଭାବିନେଲେ, ଡାକ୍ତରାଣୀ ଜାଣନ୍ତି ଯେ ତାଙ୍କର ଆଶ୍ରିତା ରୋଗିଣୀଟି ଜଣେ ଅଭାଗିନୀ, ଅନାଥିନୀ ଏବଂ ପ୍ରହେଳିକାମୟୀ ନାରୀ । ଅପରାଧ ନ କରି କାରାଦଣ୍ଡ ନିର୍ଯାତନା ଭୋଗ କରିଥିବା ଜଣେ ନାରୀ ଯାହାଙ୍କର ପୁତ୍ରମାନେ ଉଚ୍ଚାସନରେ ଅଧିଷ୍ଠିତ, ସେ ନିଶ୍ଚୟ ଆରୋଗ୍ୟଲାଭ ଇଚ୍ଛା ତ୍ୟାଗ କରି କୌଣସି ଏକ ସଂକଳ୍ପ ସହ ଅଥବା ନିଜର ଜୀବନ ପ୍ରତି ମାୟା ତ୍ୟାଗପୂର୍ବକ ପଳାୟନ କରିଛି ବୋଲି ତାଙ୍କର ବିଶ୍ୱାସ ଜନ୍ମିଥିବ ।

ଆଗରେ ସୁଦୀର୍ଘ ରାଜପଥ । ଚାଲିଲେ ଯମୁନା କୂଳର ସେହି ଅଞ୍ଚଳକୁ ଯେଉଁଠାରେ ରହିଛି ପୁଅ ସ୍ୱରାଜ । ଯମୁନା କୂଳ ଆସିଗଲା । ମନ୍ତ୍ରୀଙ୍କ ନିର୍ମିତ ବିରାଟ ସୌଧଟିକୁ ଦୂରରୁ ଚିହ୍ନିପାରିଲେ । ସେହି ଅଟ୍ଟାଳିକା ପରେ ପରେ ନିର୍ମିତ ହୋଇଥିବା ଅଗଣିତ ସୌଧରାଜି ଦେଖି ବିସ୍ମିତ ହେଲେ । ଶ୍ରମିକ ବସ୍ତିଗୁଡ଼ିକର ଚିହ୍ନବର୍ଣ୍ଣ ନ ଥାଏ । ଦୂରରୁ ଦିଶୁଥାଏ ବହୁତଳ-ବିଶିଷ୍ଟ କୋଠା । ନଦୀ କୂଳର ମୁକ୍ତ ପତିତ ପ୍ରାଙ୍ଗଣମାନ ଲୋପ ପାଇଯାଇଥାଏ ।

ପ୍ରଭାତ ପୂର୍ବରୁ କେଉଁ ସ୍ଥାନରେ ଆଶ୍ରୟ ନେବେ ବୋଲି ସ୍ଥାନଟିଏ ଖୋଜୁଥିବା ସମୟରେ ଦେଖିପାରିଲେ ଗୋଟିଏ କ୍ଷୁଦ୍ର ଅଥଚ ନୂତନ ଢଙ୍ଗରେ ଗଠିତ ମନ୍ଦିର । ସେଠାରୁ ସ୍ନାନ ନିମନ୍ତେ ବାହାରି ଯାଉଥିଲେ ଜନୈକ ଯୁବ ସନ୍ନ୍ୟାସୀ । ମମତାଦେବୀ ତାଙ୍କ ପାଦତଳେ ମୁଣ୍ଡ ରଖି ପ୍ରାର୍ଥନା କଲେ, ''ମହାରାଜ, ଆପଣଙ୍କ ମନ୍ଦିର ପ୍ରାଙ୍ଗଣରେ ଦୁଇ ତିନି ଦିନ ଲାଗି ଆଶ୍ରୟ ନେବାକୁ ଅନୁମତି ପ୍ରଦାନ କଲେ ନିଜକୁ ସୌଭାଗ୍ୟବତୀ ମନେକରିବି ଏବଂ ପ୍ରଭୁଙ୍କ ସେବାକାର୍ଯ୍ୟ ଦ୍ୱାରା ପାପମୁକ୍ତ ହେବି ।'' ମୌନୀ ସନ୍ନ୍ୟାସୀ କଠୋର ଦୃଷ୍ଟିରେ ବୁଢ଼ୀ ଦିଗକୁ ଅନେକ ସମୟ ଚାହିଁରହି ଏବଂ ହାତରେ ପୁଟୁଳିଟିଏ ଦେଖି ଶେଷରେ ଅଙ୍ଗୁଳି ଦେଖାଇ ଦେଲେ କେତେଗୁଡ଼ିଏ ଚାଳିଆ ଦିଗକୁ । ବାବାଜି ଯମୁନା ପାଣିରେ ପ୍ରବେଶ କଲା ବେଳକୁ ମମତାଦେବୀ ପହଞ୍ଚିଗଲେ ସେବକ-ସେବିକାମାନଙ୍କ ରହିଥିବା ଚାଳଘରେ ।

ପୁଟୁଳିଟି ସେଠାରେ ରଖିଦେଇ ସେ ନଦୀରେ ସ୍ନାନ କରି ଆସିଲେ ଏବଂ ନୂତନ ବସ୍ତ୍ରଟିଏ ପିନ୍ଧି ମନ୍ଦିର ପ୍ରାଙ୍ଗଣଟି ପରିଷ୍କାର କରିବାକୁ ଲାଗିପଡ଼ିଲେ । ବାବାଜି ପୂଜା ଅର୍ଚ୍ଚନା କରୁଥିଲା ବେଳେ ମମତା ଦେଖିପାରିଲେ କେତେଜଣ ସମ୍ଭ୍ରାନ୍ତ ମହିଳା ଦେବଦେବୀଙ୍କ ମୂର୍ତ୍ତି ଆଗରେ ହାତଯୋଡ଼କରି ପ୍ରାର୍ଥନାରତ ଥାଆନ୍ତି । ପୂଜା ଶେଷ ହେଲା ପରେ ସେମାନେ ନଦୀ କୂଳରେ ନବନିର୍ମିତ କୋଠାଗୁଡ଼ିକ ଦିଗକୁ ଗତି କରୁଥିବା ଦେଖାଗଲା ।

''ଆରେ ବୁଢ଼ୀ ! ମାଲଗୁଡ଼ିକ କେଉଁଠାରେ ରଖିଲୁ ? ମୋର ନାମ ନିର୍ମଳାନନ୍ଦ ପ୍ରଭୁ । ମୋ ଜିନିଷଗୁଡ଼ିକ ମୋ ହାତକୁ ଶୀଘ୍ର ଦେଇ ଦେ !'' ମମତାଦେବୀଙ୍କୁ ଏକ ନିଭୃତ ସ୍ଥାନକୁ ଡାକିନେଇ ପଚାରିଲେ ବାବାଜି ମହାରାଜଙ୍କର ଜଣେ ବୟସ୍କ ଚେଲା ଯିଏକି ମନ୍ଦିର ଭିତରେ ଦୀପ ପ୍ରଜ୍ୱଳନ କରୁଥିଲେ ।

''କେଉଁ ମାଲ କଥା ପଚାରୁଛନ୍ତି ?''

''ଗଞ୍ଜେଇ, ଭାଙ୍ଗ ଓ ଅଫିମ, ଏହି ତିନିଟା ହେଉଛି ମୋ ପାଖକୁ ଆସୁଥିବା ମାଲ୍ । ତୁ ଯଦି ଓସ୍ତାଦ୍ ଭାଇ ପାଖରୁ ଆସିଛୁ, ଏଗୁଡ଼ାକ ମୋତେ ଦେଇ ଦେ । ଅନ୍ୟ ମାଲଗୁଡ଼ାକ ଯଦି ଆଣିଥିବୁ ସେଗୁଡ଼ାକ ନେବେ ଚିଦାନନ୍ଦ ପ୍ରଭୁ ।''

''ଦୁଇ, ତିନି ଦିନ ପରେ ମୋ ହାତକୁ ମାଲ୍ ଆସିବ,'' ଉତ୍ତର ଦେଲେ ମମତାଦେବୀ ।

ମନ୍ଦିର ବାରଣ୍ଡା ସଫା କରୁଥିଲା ବେଳେ ସେ ଦେଖିପାରିଲେ ମୌନୀ ବାବାଜିଙ୍କ ନିକଟରେ ତିନିଜଣ ଚେଲା ବସି ପରାମର୍ଶ କରୁଛନ୍ତି । ଜାଣିପାରିଲେ ଯେ, ନବ ସ୍ଥାପିତ ସୁନ୍ଦର ମନ୍ଦିରଟିକୁ ସୁରକ୍ଷା ବଳୟ ମଧ୍ୟରେ ରଖି ନିଶାଦ୍ରବ୍ୟର କାରବାର ଲାଗି ବଡ଼ବଡ଼ିଆ ବାବୁମାନଙ୍କର ଏହା ଏକ ସୁଚିନ୍ତିତ ଯୋଜନା । କିଛି ସମୟ ପରେ ସେ ନୂତନ ସୌଧରାଜିର ପଛପଟ ରାସ୍ତାରେ ଘରଗୁଡ଼ିକ ଦେଖି ଦେଖି ଚାଲିଥିଲା ବେଳେ କେଉଁ ଏକ ଅଜ୍ଞାତ ସ୍ଥାନରୁ ବାହାରି ପଡ଼ିଲା ଜଣେ ଶୀର୍ଣ୍ଣକାୟ ଯୁବକ । ଆଗରେ ଛିଡ଼ା ରହି କହିଲା, ''ମାଉସୀ, ତମେ ବୋଧହୁଏ ଜଣେ ନୂଆ ମାତାଜୀ । ଦୟାକରି କିଛି ଗଞ୍ଜେଇ ବା ଅଫିମ ମୋତେ ଦିଅ । ମୁଁ ଟଙ୍କା ଦେବି । ସବୁ ମାଲତକ ଏହି ବାବାଜିଟାକୁ ଦେଇଦେଲେ ଆମେ ବଞ୍ଚିବୁ କିପରି ?''

''ତମ ଦୁଃଖ ବୁଝିପାରୁଛି । ମୁଁ ନୂଆ ଲୋକ । ଟିକିଏ ଭଲ ଭାବରେ ମୋତେ କଥାଗୁଡ଼ାକ ବୁଝାଇଦିଅ,'' କହିଲେ ମମତାଦେବୀ ।

''କଥାଟା ହେଲା, ଏହି ଅଞ୍ଚଳଟା ହେଲା ବାବୁମାନଙ୍କର ମୁଲକ। ଏଠାକୁ ସାଧାରଣ ଲୋକ କେହି ଆସିଲେ ପୁଲିସ ତଡ଼ିଦିଏ । କିନ୍ତୁ ତୁମପରି କୁଷ୍ଠରୋଗିଣୀ,

ଭିକାରୁଣୀ କିମ୍ବା ମଇଳାଲୁଗା ପିନ୍ଧିଥିବା ନୌକରାଣୀମାନଙ୍କ ହାତରେ ଦଲାଲ ଦାଦାମାନେ ନିଶା ମାଲଗୁଡ଼ାକ ମୌନୀବାବାଙ୍କ ପାଖକୁ ପଠାଇଥାନ୍ତି । ପୁଲିସ ସେମାନଙ୍କୁ ଜାଣି ଜାଣି ଧରେ ନାହିଁ । କାରଣ ସେମାନଙ୍କ ସଂଖ୍ୟା କମ୍ ଓ କଦାଚିତ୍ ଆସନ୍ତି । ତୁମକୁ ନୂଆ କରି ଦେଖୁଛି । ଯେଉଁ ମାଲ ଧରି ଆସିଛ, ସେଥିରୁ କିଛି ଅଂଶ ମୁଁ ପାଇଥାଏଁ ବୋଲି ତୁମକୁ ମାଗୁଛି ।''

''ତୁମେ ଠିକ୍ ଅନୁମାନ କରିଛ । ମୁଁ ନୂଆ ଆସିଛି । ମାଲ କିଛିଦିନ ପରେ ମୋ ହାତକୁ ଆସିବ । ଲୁଚାଇ କରି ତୁମକୁ ସେଥିରୁ କିଛି ଦେବି । ଟଙ୍କା ଦେବ ତ ?''

''ଟଙ୍କା ନ ଦେଇ ମୁଁ କାହାରି ପାଖରୁ କିଛି ନିଏ ନାହିଁ ।''

''ତୁମର ପରିଚୟ ନ ଜାଣି ମାଲ ଦେଇପାରିବି ନାହିଁ । ଓସ୍ତାଦ ଦାଦା ହୁକୁମ୍ ଦେଇଛି ଯେ କୌଣସି ଅପରିଚିତ ଲୋକ ପୁଲିସ୍ ଗୋଏନ୍ଦା ହୋଇପାରେ ।''

''ମୁଁ ପରା ଜଣେ ଅଫିସରଙ୍କ ପୁଅ । ଦେଖ, ସେହି ଦୁଇତାଲା ଘରଟା ମୋ ବାପାଙ୍କର । ଓସ୍ତାଦ ଦାଦା ମୋତେ ଜାଣିଛି ।''

''ଏପରି କାରବାର ପାଇଁ ଟଙ୍କା କେଉଁଠୁ ଆଣ ? ତୁମ ବାବା ଏଥିପାଇଁ ଟଙ୍କା ଦିଅନ୍ତି ?''

''ମୋ ବାପାଙ୍କ ଦୁର୍ବ୍ୟବହାର ପାଇଁ ତ ଏହି କାରବାର କରୁଛି । ମୁଁ ପାଠ ପଢ଼ି ବେକାର ବୋଲି ଦିନରାତି ଗାଳି ଶୁଣିଲି । ସେଥିପାଇଁ ଚୋରି ଟଙ୍କାରେ ନିଶାଦ୍ରବ୍ୟ କିଣି ସେଥିରୁ ଦୁଇପଇସା ଆୟ କରିପାରୁଛି ବୋଲି ବାପା ମୋ ଉପରେ ଖୁବ୍ ଖୁସି ।''

''ଚୋରି କରୁଛ କେଉଁଠାରୁ ?''

''ଏହା ପରା ଦେଶର ରାଜଧାନୀ ! ଏଠାରେ ଚୋରି କରିବା ସବୁଠାରୁ ସହଜ । ସେଥିପାଇଁ ହାତ ସଫେଇ କାମ ଶିଖିବାକୁ ହୁଏ । ଏହି ଦେଖ ମୋ ହାତରେ ଗୋଟିଏ ସୁନାହାର । ଷ୍ଟେସନରୁ ଅନ୍ଧାର ଥିବାବେଳେ ଜଣେ ଲୋକ ଅନ୍ୟ ଜଣେ ମହିଳାଙ୍କୁ ସ୍କୁଟରରେ ଆଣୁଥିଲା ବେଳେ ମୁଁ ସ୍କୁଟର ଆଗକୁ ଚାଲିଗଲା କ୍ଷଣି ଗାଡ଼ି ଅଟକିଗଲା । ମହିଳାଙ୍କ ହାତରୁ ତାଙ୍କ ବ୍ୟାଗଟା ତଳେ ପଡ଼ିଗଲା । ଉଠାଇ ଆଣି ତାଙ୍କ ହାତରେ ଧରାଇ ଦେବାରୁ ସେ ଧନ୍ୟବାଦ ଦେଉଥିଲାବେଳେ ତାଙ୍କ ଗଳାରେ ଥିବା ହାରଟି ମୋ ହାତକୁ ଚାଲିଆସିଲା । ଏହାକୁ ବିକ୍ରି କରି ଗଞ୍ଜା, ଅଫିମ କିଣି ମନ୍ତ୍ରୀଗୁଡ଼ାଙ୍କର ପିଅନ, ଦରଓ୍ୱାନ ଓ ସିକ୍ୟୁରିଟି ବାଲାଙ୍କୁ ବିକ୍ରି କରିବି । ବେଶ୍ ଦୁଇ ପଇସା ରୋଜଗାର ହେବ । ନିର୍ମଳାନନ୍ଦ ପ୍ରଭୁ ମାଲ ଯୋଗାଇ ଦେବେ ।''

''ମନ୍ତ୍ରୀଙ୍କ ଲୋକମାନେ ଗଞ୍ଜେଇ, ଅଫିମ ସେବନ କରନ୍ତି, ଅଥଚ ମନ୍ତ୍ରୀମାନେ ଜାଣିପାରନ୍ତି ନାହିଁ ?''

''ମାଉସୀ, ତୁମ ମୁଣ୍ଡରୁ ବାଳ ଉଠି ଗଲାଣି, କିନ୍ତୁ ଭିତରେ ବୁଦ୍ଧି ନାହିଁ । ମନ୍ତ୍ରୀ ଓ ସଚିବମାନେ ତ୍ରିକାଳଜ୍ଞଦର୍ଶୀ । ସେମାନେ ସବୁକଥା ଜାଣନ୍ତି । ନିଜ ଜଗୁଆଳିମାନଙ୍କର ଦୋଷ ଦୁର୍ବଳତା ସେମାନଙ୍କୁ ଭଲ ଭାବରେ ଜଣା । ତଥାପି କିଛି କହିପାରନ୍ତି ନାହିଁ । କାରଣ ଜଗୁଆଳି ଓ ଡ୍ରାଇଭରମାନେ ସେମାନଙ୍କ ମୁନିବମାନଙ୍କର କଲ୍ ଗାର୍ଲ ପ୍ରୀତି, ଲାଞ୍ଚ ରୀତି, ମଦ୍ୟପାନ ନୀତି ପ୍ରଭୃତି ସବୁ କଥା ଭଲ ରୂପେ ଜାଣିଥାନ୍ତି ।''

ଯୁବକର ମୁହଁରୁ ସେତେପର୍ଯ୍ୟନ୍ତ ତାଡ଼ିର ବାସନା ବାହାରୁଥିବା ଜାଣି ମମତାଦେବୀ ବୁଝିପାରିଲେ ଯେ ସେ ନିଶାଗ୍ରସ୍ତ ଅବସ୍ଥାରେ ଏତେଗୁଡ଼ାଏ କଥା କହିଗଲା । ପଚାରିଲେ, ''ସ୍ୱରାଜବାବୁ ନାମକ ମନ୍ତ୍ରୀଙ୍କ ନିକଟରେ ଥିବା ଜଗୁଆଳିମାନଙ୍କ ସହିତ ତୁମର ପରିଚୟ ଅଛି ?''

''ନିଶ୍ଚୟ ଅଛି । ସେମାନଙ୍କର ହେଡ୍ ହେଉଛି ବାଘା ସିଂ । ସେ ମୋର ଦୋସ୍ତ ।''

''ତା' ସାଙ୍ଗରେ ମୋର ଦେଖା କରାଇ ଦେଇପାରିବ ? ଦିନ ବେଳେ ନୁହେଁ ରାତିରେ । କୌଣସି ଗୋଟିଏ ନିର୍ଜନ ଜାଗାରେ । କେହି ଦେଖିପାରିବେ ନାହିଁ ।''

ସେତେପର୍ଯ୍ୟନ୍ତ ଶାନ୍ତ ଦେଖାଯାଉଥିବା ଯୁବକଟି ହଠାତ୍ ରାଗିଯାଇ ଉତ୍‌କ୍ଷିପ୍ତ ହୋଇ ଗାଳି ବର୍ଷଣ କଲା, ''ଓଃ, ବୁଝିଲି । ତୁ ଗୋଟାଏ ଠକୁଣୀ । ଓସ୍ତାଦ୍ ମିଆଁ ତୋତେ ବାଘା ସିଂ ସହିତ ସଲାସୁତୁରା କରିବା ଲାଗି ପଠାଇଛି । ମୋର ଦାନାପାଣି ମାରିବାକୁ ତୋର ସାହସ ହେଲାଣି । ଏକାଥରକେ ତୋତେ ଦେଖିଦେବି ।'' ଏତକ କହି ଯୁବକଟି ଦୌଡ଼ି ଚାଲିଗଲା । ପଳାଇବା ପୂର୍ବରୁ ଅଙ୍ଗୁଳି ଦେଖାଇ କହିଗଲା, ''ସେହି ମନ୍ତ୍ରୀ କୋଠା ପଛରେ ବାଘା ସିଂ ରହିଛି । ଯା, ମରିବୁ ଯା । ତାକୁ କହିଦେବୁ, ମୋ ବାପାଙ୍କୁ ସେ ଚିହ୍ନି ନାହିଁ ।''

ଯୁବକଟିର ଅବସ୍ଥା ଦେଖି ମମତାଦେବୀଙ୍କର ଦୟା ହେଲା । ଭାବିଲେ ପ୍ରକୃତରେ ସେ କ'ଣ ଦୋଷୀ ! ବେକାର ଅବସ୍ଥାରେ ବଞ୍ଚିରହିବା ପାଇଁ ସେ ଚୋରି କରୁଛି, ନିଶା ବ୍ୟବସାୟରେ ଲିପ୍ତ ରହିଛି ଏବଂ ନିଜେ ନିଶାଗ୍ରସ୍ତ ହୋଇ ନିଜର ସର୍ବନାଶ କରୁଛି । ଦିନକୁ ଦିନ ବେକାରି ବଢ଼ିଚାଲିଲେ କ'ଣ ହେବ ଆମ ଯୁବସମାଜର ଅବସ୍ଥା ! ସେଥିସଙ୍ଗେ କ'ଣ ହେବ ଦେଶର ଅବସ୍ଥା ! ଅବସନ୍ନ ମନରେ ସେ ବସି ପଡ଼ିଲେ ଗୋଟିଏ ଗଛ ତଳେ ।

ସନ୍ଧ୍ୟା ପରେ ସ୍ୱରାଜବାବୁଙ୍କ ଉଦ୍ୟାନ ଆଲୋକିତ ହୋଇଉଠିଲା । ଯମୁନା ଜଳରେ ପଡ଼ିଲା ନୀଳ ରଙ୍ଗର ଆଲୋକ । ଅନେକ ରାତିରେ ଅଟ୍ଟାଳିକାର ପ୍ରକୋଷ୍ଠଗୁଡ଼ିକରେ ବିଜୁଳିବତି ଲିଭିଗଲା ପରେ ମମତାଦେବୀ ପ୍ରାଚୀରର ପଛପଟେ ଥିବା ସଂକୀର୍ଣ୍ଣ ଗେଟ୍ ପଥରେ ଯାଇ ପହଞ୍ଚିଲେ ଜଗୁଆଳିମାନଙ୍କ ରହିଥିବା କୋଠରିଗୁଡ଼ିକ ନିକଟରେ ।

ଦଉଡ଼ିଆ ଖଟିଆଟି ଉପରେ ବସି ବାଘା ସିଂ ସେତେବେଳେ ଗଞ୍ଜେଇ ଟାଣୁଥାଏ । ମମତାଙ୍କୁ ଦେଖିପାରି ଡାକିଦେଲା, ''ଆରେ ଅନାମୀ, ଏଆଡ଼େ ଆ ।''

ମମତା ତା ପାଖରେ ପହଞ୍ଚିଲା କ୍ଷଣି ପଚାରିଲା, ''ତୁ ଜେଲରୁ ବାହାରିଲୁ କେବେ ?''

''ଜେଲରୁ ବାହାରି ଡାକ୍ତରଖାନାରେ ଅନେକ ଦିନ ଥିଲି । ଡାକ୍ତରମାନେ ଅପରେସନ କରିବେ ଶୁଣି ପଳାଇ ଆସିଛି । ମନ୍ତ୍ରୀ ମହୋଦୟ ଅଛନ୍ତି ?''

ଗଞ୍ଜେଇ ନିଶାରେ ଟଳମଳ ହେଉଥିବା ଅବସ୍ଥାରେ ବାଘା ସିଂ କହିଲା, ''ସ୍ୱରାଜବାବୁ ତାଙ୍କ ନିଜ ରାଜ୍ୟରେ ବିପଦରେ ପଡ଼ି ଯାଇଛନ୍ତି । କଳକାରଖାନା ବସାଇବା ଲାଗି ଗୋପନରେ ଯେଉଁ ବିଦେଶୀ ଟଙ୍କାବାଲାମାନଙ୍କୁ ଆଣିଥିଲେ, ସେମାନେ ଜଙ୍ଗଲବାସୀମାନଙ୍କୁ ନିଜ ନିଜ ଗାଁଗୁଡ଼ିକରୁ ବାହାର କରି ଦେବାରୁ ଆଦିବାସୀମାନେ ଆନ୍ଦୋଳନ କରୁଛନ୍ତି । ସେମାନଙ୍କୁ ଦମନ କରିବା ଲାଗି ସଶସ୍ତ୍ର ପୁଲିସ ଫୋର୍ସ ନେଇ ମନ୍ତ୍ରୀ ନିଜେ ଯାଇଛନ୍ତି ।''

ମମତାଦେବୀ ଶଙ୍କିତ ହୋଇ ଉଠିଲେ । ପଚାରିଲେ, ''ବିଦେଶୀ ଲୋକଗୁଡ଼ାକ ଆସିଲେ କାହିଁକି ? ସେମାନଙ୍କୁ ଏ ଦେଶ ମାଟିରୁ ତଡ଼ି ଦିଆଯାଇଥିଲା !''

ଚିଲମରୁ ଖୁବ୍ ଜୋରରେ ଧୂଆଁ ଟାଣି ନାକ ଓ ପାଟିବାଟେ ସେହି ଧୂଆଁ ବାହାର କରିବା ସାଙ୍ଗକୁ ହସି ହସି ବାଘା ସିଂ ଉତ୍ତର ଦେଲା, ''ବିଦେଶୀମାନେ ଗାନ୍ଧୀଙ୍କ ଯୁଗରୁ ବିଦାୟ ନେଲେଣି । ଗୁଳି ଖାଇଲା ପରେ ଗାନ୍ଧୀ ଯେଉଁ ରାମଙ୍କ ନାମ ଉଚ୍ଚାରଣ କରି ଜୀବନ ଛାଡ଼ିଥିଲେ; ଆମେ ଏବେ ସେହି ରାମରାଜ୍ୟରେ ରହିଛୁ । ବିଭୀଷଣ ରାକ୍ଷସ ଏବଂ ରାମ ଯେପରି ଏକାକାର ହୋଇଯାଇଥିଲେ, ବର୍ତ୍ତମାନ ସେହିପରି ବିଦେଶୀ-ସ୍ୱଦେଶୀ ସମସ୍ତେ ଏକାକାର । ଶାସ୍ତ୍ର କହିଛି, ସର୍ବେ ହୋଇବେ ଏକାକାର, ନ ଥିବ ପାତର ଅନ୍ତର । ସେହି ରୀତିରେ ବିଦେଶୀ ପୁଞ୍ଜିପତିମାନେ ଅତ୍ୟନ୍ତ ଗୋପନରେ ଅର୍ଥ ସାହାଯ୍ୟ ଦେବେ, ଯନ୍ତ୍ରପାତି ଆଣିଦେବେ, ଏବଂ ଆମ ଦେଶର ସ୍ୱଦେଶୀଲୋକେ କାରଖାନାର କୁଲି ହେବେ । ଅବଶ୍ୟ ଆମ ମନ୍ତ୍ରୀଙ୍କ କାରଖାନାର ମାଲିକ ହେବେ ତାଙ୍କର

ନିଜର ଶଳା । ବିଦେଶୀ ବନ୍ଧୁମାନେ କେବଳ ପୁଞ୍ଜିର ସୁଧ ନେବେ ଓ ମୁନାଫାର ବଡ଼ ଅଂଶଟା ମଧ୍ୟ ନେବେ । ଏହି ପ୍ରକାର ମସୁଧା କରିଛନ୍ତି ସ୍ୱରାଜବାବୁ ।''

ଅଧିକ ଖବର ଜାଣିବା ଉଦ୍ଦେଶ୍ୟରେ ମମତାଦେବୀ ପ୍ରଶ୍ନ କଲେ, ''ଯେଉଁ ବନବାସୀମାନଙ୍କୁ ଉଚ୍ଛେଦ କରାଯାଉଛି, ସେମାନଙ୍କ ଥଇଥାନ ଲାଗି ନୂତନ ଜାଗା ପ୍ରସ୍ତୁତ କରାଯାଇଛି ?''

ଅଟ୍ଟହାସ୍ୟ ସହ ବାଘା ସିଂ ପଚାରିଲା, ''ଯମୁନା କୂଳରୁ ଯେଉଁ ବସ୍ତିବାସିନ୍ଦା ଶ୍ରମିକମାନଙ୍କୁ ଉଠାଇ ଦିଆଯାଇଥିଲା ସେମାନଙ୍କୁ ଜାଗା ମିଳିଲାଣି ? ତୋତେ ସିନା ପୁଲିସ ଜେଲଖାନାରେ ଥଇଥାନ କରାଇ ଦେଲା । ଅଥଚ ଯେଉଁମାନେ ଚାଳିଆଘରେ ରହି ହାଡ଼ ଭଙ୍ଗା ପରିଶ୍ରମ ବଳରେ ଏହି କୋଠାଗୁଡ଼ିକ ନିର୍ମାଣ କରିଥିଲେ, ସେମାନେ ଏବେ ଫୁଟପାଥରେ ଛୁଆପିଲା ଧରି ପଡ଼ି ରହିଛନ୍ତି । ଆରେ ଦିନ ମଜୁରିଆଗୁଡ଼ାଙ୍କୁ ପଚାରେ କିଏ ?''

''ଆଉ ଗୋଟିଏ ମାତ୍ର ପ୍ରଶ୍ନ ପଚାରି ଚାଲିଯିବି । ଆମ ମନ୍ତ୍ରୀଙ୍କ ପ୍ରତି କୌଣସି ପ୍ରକାର ବିପଦ ଆପଦର ଆଶଙ୍କା ନାହିଁ ତ ?''

''ହଇରେ ଗଧୀ ଅନାମୀ, ମନ୍ତ୍ରୀଙ୍କ ଲାଗି ତୋର ମୁଣ୍ଡବ୍ୟଥା ହେଉଛି କାହିଁକି ? ତାଙ୍କ ନିରାପତ୍ତା ଲାଗି ସରକାର ଅଛି, ପୁଲିସ ଅଛି, ସୈନ୍ୟ ଅଛି । ଏବେ ଏବେ ରେଡ଼ିଓ କହୁଥିଲା, ଜଙ୍ଗଲ ଦଖଲ ବେଳେ ବାଧା ଦେଉଥିବା ବନବାସୀମାନଙ୍କ ଉପରକୁ ଗୁଳି ଚାଳନା କରାଯାଇଛି । କେତେଜଣ ମରିଛନ୍ତି ଓ କେତେଜଣ ଆହତ ହୋଇଛନ୍ତି ତାହାର ଠିକ୍ ସଂଖ୍ୟା ଜଣାପଡ଼ି ନାହିଁ ।''

ବାଘା ସିଂ ଖଟିଆ ଉପରେ ଢଳି ପଡ଼ିଲା ବେଳେ କହିଲା, ''ଅନାମୀ, ଏଠାରୁ ପଳାଇ ଯା । ନ ହେଲେ ତୋତେ ଓ ମୋତେ ପୁଲିସ ଜେଲଖାନାରେ ଥଇଥାନ କରାଇ ଦେବ ।''

''ଏଠାରେ ସିନା ଶ୍ରମିକମାନଙ୍କୁ ପୁଲିସ ଉପରେ ଆକ୍ରମଣ କରିବାକୁ ଶିଖାଇଥିଲି ବୋଲି ମାମୁ ଘରେ ରହିଲି । ବନବାସୀ ଅଞ୍ଚଳ ଏଠାରୁ ଅନେକ ଦୂରରେ । ସେଠାକୁ ଯାଇ ଅଶାନ୍ତି ଭିଆଇ ପାରିବି ନାହିଁ । ଆଚ୍ଛା ମୋତେ କହିପାରିବ, ଯେଉଁଠାରେ ଗୁଳି ଚାଲିଲା ସେହି ଜାଗାଟିର ନାମ କ'ଣ ?''

''ଜାଗାଟିର ନାମ ବୋଧହୁଏ ଶୀରିଖଣ୍ଡ । ସେତେଦୂରକୁ ତୁ ଯାଇପାରିବୁ ନାହିଁ କି ମାମୁଘର ଦେଖିବୁ ନାହିଁ । କିନ୍ତୁ ଏଠାରେ କାହାରି ଘରେ ନୌକରାଣୀ ରହିଲେ ବିପଦରେ ପଡ଼ିବୁ । ଯେତେହେଲେ ତୁ ଗୋଟାଏ ଦାଗୀ । ଯା, ଶୀଘ୍ର ପଳା ।''

ବାଘା ସିଂ ଅଚେତ ହୋଇ ଶୋଇ ପଡ଼ିଲା । ତା ଖଟିଆ ଦିଗକୁ ଭାସିଆସୁଥାଏ ଯମୁନା ନଦୀର ଶୀତଳ ପବନ ।

ମମତାଦେବୀ ମନ୍ଦିର ପାଖକୁ ଗଲେ । ବାରଣ୍ଡାରେ ଶୋଇବା ଲାଗି ପ୍ରସ୍ତୁତ ହେଉଥିଲାବେଳେ ମନ୍ଦିର ଗର୍ଭରୁ ସତେଯେପରି ଶୁଣିପାରିଲେ ନିଜ ଅନ୍ତରାତ୍ମା ମଧ୍ୟରୁ ନିସୃତ ହେଉଥିବା ଧ୍ୱନିର ପ୍ରତିଧ୍ୱନି । ସେ ଶୁଣିପାରୁଥାନ୍ତି ମାଝି ସର୍ଦ୍ଦାର, ଈଶା ଓ କରାଳୀର କ୍ରନ୍ଦନ ଧ୍ୱନି ।

ଚାଲିଲେ ଷ୍ଟେସନ ଦିଗକୁ । ପାକସ୍ଥଳୀରେ ଯନ୍ତ୍ରଣା ହେଉଥାଏ । କିନ୍ତୁ ଶୀରିଖଣ୍ଡର ବନବାସୀମାନଙ୍କ ନିକଟକୁ ଟାଣି ନେଇଯାଉଥାଏ ତାଙ୍କର ଅମାନିଆ ମନ ।

## ।। ୩୮ ।।

ଟ୍ରେନ୍ ଚାଲିଲା ଦିଲ୍ଲୀରୁ କଲିକତା । ସେଠାରେ ପହଞ୍ଚି ନିଜ ଅଞ୍ଚଳ ଦିଗକୁ ଯାଉଥିବା ପାସେଞ୍ଜର ଗାଡ଼ି ଭିତରକୁ ପଶିଲେ । ସାରା ରାତି ଶୋଇରହିଲେ ବାଥରୁମ୍ ପାଖ ମେଜିଆରେ ।

ପ୍ରଭାତ ସମୟରେ ଗାଡ଼ି ରହିଲା ପୂର୍ବ ପରିଚିତ ସେହି ଛୋଟ ରେଲଷ୍ଟେସନରେ । ପ୍ଲାଟଫର୍ମକୁ ଆସି ଅସହାୟ ଓ ଅବସନ୍ନ ଅବସ୍ଥାରେ ମମତା ବସି ରହିଲେ ଗୋଟିଏ ସିମେଣ୍ଟ ବେଞ୍ଚ ଉପରେ । ଦେହ ରହିଥାଏ, କିନ୍ତୁ ଜୀବନ ନ ଥାଏ ବୋଲି ମନେହେଉଥାଏ । କ୍ଷୁଧା ମେଣ୍ଟାଇବାକୁ ଉପାୟ ଥାଏ ନାହିଁ । ଅନେକ ଦୂରରେ ଶୀରିଖଣ୍ଡ । କିପରି ଯିବେ ତାହାହିଁ ଥାଏ ଏକମାତ୍ର ଚିନ୍ତା । ଦଶକୋଶ ପରେ ସେହି ମୁଲକର ସୀମା । ଏକଦା ଥିଲା ରଜାଙ୍କର ରାଇଜ । ଏବେ ମିଶିଯାଇଛି ନିଜର ଜିଲ୍ଲା ସହିତ । ତେଜସ୍ୱୀକୁ ଖୋଜିବା ଲାଗି ଶୀରିଖଣ୍ଡ ଜଙ୍ଗଲକୁ ଗଲାବେଳେ ସାଇକେଲରେ ବସାଇ ନେଇଯାଇଥାଏ ଶ୍ରୀହରିବାବୁଙ୍କ ଯୁବକ ପୁତ୍ର । ମନେପଡ଼ିଲା, ଶୀରିଖଣ୍ଡ ସୀମାରେ ଥିବା ସେହି ଭଗ୍ନପ୍ରାପ୍ତ ମନ୍ଦିର କଥା ଯେଉଁ ସ୍ଥାନରୁ ରଜାଙ୍କର ଚର ତାଙ୍କୁ ନେଇଯାଇଥିଲା ଆଦିବାସୀମାନଙ୍କ ଗାଁଗୁଡ଼ିକ ମଧ୍ୟକୁ ତେଜକୁ ଡାକିବା ଲାଗି । ସେହି ଭୟଙ୍କର ରାତିଟି ସ୍ମୃତି ପଥକୁ ଆସିଲାକ୍ଷଣି ସମ୍ମୁଖରେ ଦେଖିପାରୁଥିଲେ ତେଜସ୍ୱୀର କଟା ମୁଣ୍ଡ ।

ଦେହ ଶିହରି ଉଠିଲା । ବାଡ଼ି ଖଣ୍ଡିକ ଉପରେ ଯଥାଶକ୍ତି ଭରା ଦେଇ ବାହାରି ଆସିଲେ ନିର୍ଜନ ଦେଖାଯାଉଥିବା ପ୍ଲାଟଫର୍ମରୁ । ଦୃଷ୍ଟି ପଡ଼ିଗଲା, ଅଳ୍ପ ଦୂରରେ କେତେଜଣ ମୂଲିଆଣୀ ରାସ୍ତା କଡ଼ରେ ବସି ରହି ନିଜ ନିଜ ଲୁଗା କାନିରେ ଥିବା ମୁଢ଼ି

ବାହାର କରି ଖାଇଯାଉଥାନ୍ତି । ଆତ୍ମବିସ୍ମୃତ ଭାବେ ମମତାଦେବୀ ଆଗେଇ ଗଲେ ସେହିମାନଙ୍କ ନିକଟକୁ । ବସିପଡ଼ିଲେ ହାତ ପତାଇ । ଜଣେ ମୂଲିଆଣୀ ତା ଶାଢ଼ିର ଦୁଇ ପାଖରେ ବନ୍ଧାଥିବା ମୁଢ଼ିତକ ମମତାଙ୍କ ଲୁଗା ଉପରେ ଥୋଇଦେଲା । ପେଟ ପୂରାଇ ଖାଇସାରିଲା ପରେ ପାଣି ମୁନ୍ଦାଏ ଖୋଜିଲା ବେଳକୁ ଶୁଣିଲେ, ସେପରି ସ୍ଥାନରେ ପିଇବା ପାଣି ମିଳେ ନାହିଁ ।

ରାସ୍ତା କଡ଼ରେ ଛିଡ଼ା ଥାଏ ଚାରି ଖଣ୍ଡ ଟ୍ରକ୍ । ଜଣେ ମୂଲିଆଣୀ ପଚାରିଲା, ''କାମ କରିବାକୁ ଯଦି ଆସିଛୁ ଠିକାଦାରବାବୁଙ୍କୁ ଯାଇ କହ । ସେ ମୂଲିଆ ଖୋଜୁଛନ୍ତି । ତୋ ନାମଟା ଆମମାନଙ୍କ ନାମ ସହିତ ଚଢ଼ାଇ ଦେବେ ।''

''କି କାମ, କେଉଁଠାରେ ?'' ପଚାରିଲେ ମମତା ।

''ଶୀରିଖଣ୍ଡ ଜଙ୍ଗଲରେ କଳକାରଖାନା ତିଆରି କାମ ଚାଲିଛି । ମୂଲିଆ ଦଳ ଆସିଗଲେ ଟ୍ରକ ଛାଡ଼ିବ । ଆମେ ସେଠାରେ ମୂଲିଆଣୀ କାମ କରୁ । ତୁ ଯଦି ଯିବୁ, ଠିକାଦାରବାବୁଙ୍କୁ କହ୍ । ଟ୍ରକ୍ ପାଖରେ ଖାତାଧରି ସେ ଛିଡ଼ା ହୋଇଛନ୍ତି ।''

ମମତା ଚାଲିଲେ ଠିକାଦାରଙ୍କ ପାଖକୁ । ତାଙ୍କ ଦେହର ଅବସ୍ଥା ଦେଖି ସେ କହିଲେ, ''ଟ୍ରକ୍‌କୁ ଉଠି ଯା । କାମ ଅନୁସାରେ ମଜୁରି ଦିଆଯିବ ।''

ଚାହୁଁ ଚାହୁଁ ଦିନମଜୁରିଆମାନେ ଆଗ ଦୁଇଟି ଟ୍ରକ୍‌ରେ ଭର୍ତ୍ତି ହୋଇଗଲେ । ପଛ ପଛ ଦୁଇଟି ଟ୍ରକ୍‌ରେ ବସିଲେ ମୂଲିଆଣୀମାନେ । ସଂକୀର୍ଣ୍ଣ ବଣୁଆ ପଥରେ ଟ୍ରକ୍‌ଗୁଡ଼ିକ ଚାଲିଲା ଶୀରିଖଣ୍ଡ ଶିଳ୍ପାଞ୍ଚଳ ଦିଗକୁ ।

ପ୍ରାୟ ଦୁଇ ଘଣ୍ଟା ପରେ ଦିଶିଲା ଶୀରିଖଣ୍ଡ ସୀମାରେ ରହିଥିବା ସେହି ଭଗ୍ନ ଅଶୁଭ ମନ୍ଦିରଟି । ସମସ୍ତେ ଦେବୀଙ୍କ ଉଦ୍ଦେଶ୍ୟରେ ହାତଯୋଡ଼ି ନମସ୍କାର କରୁଥିଲାବେଳେ ମମତା ଭାବୁଥିଲେ ଅନେକ ଦିନ ପୂର୍ବେ ଏକ ଅମାବାସ୍ୟା ରାତିରେ ସେହିଠାରୁ ଟର୍ଚ୍ଚ ଦେଖାଉଥିବା ସେହି ଅଜ୍ଞାତ ପିଶାଚର କଥା ।

ସେତେବେଳେ ସେହି ସ୍ଥାନରୁ ବ୍ୟାପିରହିଥାଏ ଦିଗନ୍ତ ବିସ୍ତାରୀ ଅରଣ୍ୟ । ସ୍ଥାନେ ସ୍ଥାନେ ରହିଥାଏ ଆଦିବାସୀମାନଙ୍କର କ୍ଷୁଦ୍ର କ୍ଷୁଦ୍ର ପଲ୍ଲୀବସତି । ସେଥି ମଧ୍ୟରେ ରହିଥାଏ ଖଜୁରି ଓ ତାଳପତ୍ର ଛପର ଥିବା ଛୋଟ ଛୋଟ କୁଡ଼ିଆ । ଟ୍ରକ୍ ଆଗେଇ ଚାଲିଥାଏ । ରାସ୍ତାଗୁଡ଼ାକ ନୂଆ ତିଆରି ହୋଇଥାଏ । କିଛି ଦୂର ଗଲା ପରେ ମମତାଦେବୀ ଦେଖିବାକୁ ପାଇଲେ ନାହିଁ ଗହନ ଅରଣ୍ୟାନୀର ସୁବିଶାଳ ବୃକ୍ଷରାଜି, ପରିବ୍ୟାପ୍ତ ବଣବୁଦା ଏବଂ ଚତୁର୍ଦ୍ଦିଗରେ ମାଡ଼ି ରହିଥିବା ନିଘଞ୍ଚ ଘାସ । କିଛି ସମୟ ପରେ ଦେଖିବାକୁ ମିଳିଲା ବୃକ୍ଷହୀନ ପ୍ରକାଣ୍ଡ ପ୍ରକାଣ୍ଡ ପଡ଼ିଆ । ସ୍ଥାନେ ସ୍ଥାନେ ପଡ଼ିଆଗୁଡ଼ିକ

ଉପରେ ଚାଲିଥାଏ ନିର୍ମାଣ କାର୍ଯ୍ୟ । କେଉଁଠାରେ ନୂଆ ନୂଆ ଘର । କେଉଁଠାରେ ବା ସୁଉଚ୍ଚ ପ୍ରାଚୀର ଏବଂ ଅନ୍ୟ କେତେକ ସ୍ଥାନରେ ଦେଓ୍ୱାଲ ପରେ ଦେଓ୍ୱାଲ । ଟ୍ରକରେ ବସିଥିଲା ସମୟରେ ଦିଗ୍‌ବଳୟ ଉପରେ ଦିଶିଲା ପଶ୍ଚିମ ସୀମାର ସେହି ପରିଚିତ ପର୍ବତ ମହାଗିରି ଓ ତତ୍‌ସଂଲଗ୍ନ ପାହାଡ଼ ପରେ ପାହାଡ଼ ।

ଜଣେ ମୂଲିଆଣୀକୁ ମମତାଦେବୀ ପଚାରିଲେ, ''ଅପା, ଏହି ସମସ୍ତ ସ୍ଥାନରେ ଯେଉଁ ଜଙ୍ଗଲଗୁଡ଼ିକ ଥାଏ, ସେଗୁଡ଼ାକ କୁଆଡ଼େ ଗଲା ?''

''ଜଙ୍ଗଲ ପରା କଟାଯାଉଛି । ଗଛଗୁଡ଼ାକ ନିଲାମ କରି ଦିଆଗଲାଣି । ଶାଗୁଆନ ଗଛଗୁଡ଼ାକ ବାବୁମାନଙ୍କ ଘରକୁ ଚାଲିଯାଉଛି । ବାଜେ ଗଛଗୁଡ଼ିକରେ ନିଆଁ ଲଗାଇ ଦିଆଗଲାଣି ।''

''ଜଙ୍ଗଲରେ ଥିବା ଆଦିବାସୀମାନଙ୍କର ଗାଁଗୁଡ଼ିକ କୁଆଡ଼େ ଗଲା ?''

''ଜଙ୍ଗଲ ସଫାଇ ବେଳେ ଗାଁଗୁଡ଼ାକ ବି ମୂଳପୋଛ କରିଦିଆ ଯାଇଛି ।''

''ଲୋକମାନେ କୁଆଡ଼େ ଗଲେ ?''

''ମହାଗିରି ପର୍ବତର ପଶ୍ଚିମ ପଟରେ ଥିବା ଜଙ୍ଗଲରେ ସେମାନେ ଅଛନ୍ତି । ସରକାର ସେମାନଙ୍କର ଥଇଥାନ ବ୍ୟବସ୍ଥା କରିବେ ।''

ଟ୍ରକ୍‌ଗୁଡ଼ାକ ଅଟକିଲା ଜମାହୋଇଥିବା ଇଟା ସ୍ତୂପଗୁଡ଼ିକ ସାମନାରେ । ଠିକାଦାରବାବୁ ହୁକମ ଦେଲେ, ''ନିଅଁ ଖୋଳାଥିବା ଜାଗାଗୁଡ଼ିକର ଦୁଇ ପାଖରେ ଇଟା ନେଇ ଜମା କର । ସଞ୍ଜ ଆଗରୁ ସବୁ ଇଟା ଉଠିବ ।''

ମୂଲିଆ ମୂଲିଆଣୀମାନେ ମୁଣ୍ଡ ଉପରେ ଥାକ ଥାକ ଇଟା ରଖି ଯଥାସ୍ଥାନକୁ ବୋହିବାକୁ ଲାଗିଗଲେ । ମମତାଦେବୀଙ୍କ ମୁଣ୍ଡ ଉପରେ ଛଅଖଣ୍ଡି ଇଟା ଲଦିବା ସମୟରେ ସେ ପଥୁରିଆ ମାଟି ଉପରେ ହାବୁଡ଼ି ପଡ଼ିଲେ । ଦୁଇ ଆଣ୍ଠୁରୁ ରକ୍ତ ଝରିଲା । ଦୟାବାନ ଠିକାଦାରବାବୁ ପାଖକୁ ଦୌଡ଼ିଆସି ପଚାରିଲେ, ''ଆଗରୁ ଅଭ୍ୟାସ ନାହିଁ ଯଦି ଆସିଲୁ କାହିଁକି ?''

''ପେଟ ପାଳିବା ପାଇଁ ।''

''ପେଟ ପାଳିବାକୁ ବଳ ଦରକାର । ହେଉ ଯଦି ଆସିଛୁ ଆଗେ ମଜୁରି ପାଇବା ଖାତାରେ ଟିପଟା ଦେଇ ଦେ ।''

ଟିପ ବସାଇଲା ପରେ ଠିକାଦାର ଆଦେଶ ଦେଲେ, ''ଯା, ଦୂରରେ ଯେଉଁ ନଈ ଦିଶୁଛି ସେଠାରେ ଆଣ୍ଠୁ ଉପରୁ ରକ୍ତ ଧୋଇଦେଇ କଳସୀରେ ପାଣି ଭର୍ତ୍ତି କରି ନେଇଆସିବୁ ।''

ଇଟା ଗଦା ନିକଟରେ ଥୁଆ ହୋଇଥିବା ବଡ଼ କଳସୀଟାଏ ଧରି ମମତାଦେବୀ ଚାଲିଲେ ଅନେକ ଦୂରରେ ଦେଖାଯାଉଥିବା ନଦୀ ଦିଗକୁ । ଧୀର ଗତିରେ ଚାଲିଥିବାବେଳେ ଦେଖିପାରିଲେ ମହାଗିରି ପର୍ବତର ଦୃଶ୍ୟ । ନଦୀଟି ବୋହି ଆସିଥାଏ ପର୍ବତର ନିମ୍ନଦେଶ ଅତିକ୍ରମ କରି । ପର୍ବତ ତଳର ନଦୀ ତଟକୁ ଥରେ ଥରେ କରାଳୀ ଓ ଈଶା ତାଙ୍କୁ ନେଇଯାଉଥାନ୍ତି ଭ୍ରମଣ ନିମନ୍ତେ ।

ନଈ ପାଣି ସ୍ୱଚ୍ଛ ଦିଶୁଥାଏ । ପେଟ ଭର୍ତ୍ତିକରି ପାଣି ପିଇ ପକାଇଲେ । ଆଣ୍ଠୁ ଦୁଇଟିରୁ ରକ୍ତର ଦାଗଗୁଡ଼ିକ ଧୋଇ ପରିଷ୍କାର କଲେ । କଳସ ଭର୍ତ୍ତିକରି କାନ୍ଧରେ ରଖି ଫେରି ପହଞ୍ଚିଲେ ଇଟାଭାଟି ପାଖରେ । ତୃଷାର୍ତ୍ତ ମୂଲିଆ ମୂଲିଆଣୀମାନେ ହାତ ପାପୁଲିରେ ଧରି ପାରୁଥିବା ଟିକିଏ ଟିକିଏ ପାଣିରେ ପାଟି ଓ ଗଳା ଓଦା କରିବା ବ୍ୟତୀତ ମନଇଚ୍ଛା ପିଇବା ଲାଗି ପାଣି ନ ଥାଏ । ମମତାଦେବୀ ପୁନର୍ବାର ଚାଲିଲେ ଆଉ ଏକ କଳସ ପାଣି ଆଣିବାକୁ ।

ସନ୍ଧ୍ୟା ପୂର୍ବରୁ ଟ୍ରକ୍‌ଗୁଡ଼ିକ ଉପରକୁ ଉଠିଗଲେ କର୍ମକ୍ଳାନ୍ତ ଶ୍ରମିକମାନେ । ଠିକାଦାର ପ୍ରତ୍ୟେକଙ୍କ ହାତରେ ଗଣି ଗଣି ଧରାଇଦେଲେ ମଜୁରି ପଇସା । ନୂଆ ମୂଲିଆଣୀଟାକୁ ଡାକିଲେ ନାହିଁ, କାରଣ ସେ ଇଟା କାମ ଶିଖି ନାହିଁ । ଟ୍ରକ୍‌ଗୁଡ଼ାକ ଫେରି ଚାଲିଗଲା । ସମସ୍ତଙ୍କ ଅଲକ୍ଷ୍ୟରେ ଏକାକୀ ରହିଗଲେ ମମତାଦେବୀ । ଜନଶୂନ୍ୟ ସ୍ଥାନଟି ଉପରକୁ ମାଡ଼ିଆସିଲା ରାତ୍ରିର ଭୟପ୍ରଦ ଗଭୀର ଅନ୍ଧକାର ।

ଅନ୍ଧକାର ପ୍ରତି ଭ୍ରୂକ୍ଷେପ ନ କରି ସେ ଚାଲିଲେ ମହାଗିରି ପର୍ବତ ଅଭିମୁଖେ । ପର୍ବତ ତଳେ ପହଞ୍ଚିବାକୁ ଅନେକ ସମୟ ଲାଗିଗଲା । ଉପରକୁ ଯାଇ ଗୁମ୍ଫା ଭିତରେ ପ୍ରବେଶ କରିବାକୁ ପ୍ରବଳ ଇଚ୍ଛା ହେଉଥାଏ, କିନ୍ତୁ ଦେହରେ ବଳ କିମ୍ୱା ମନରେ ସାହସ ନ ଥାଏ । ଭାବିଲେ, ସେହି ଗୁମ୍ଫା ଗର୍ଭରେ ପୁନର୍ଜନ୍ମ ନ ପାଇ ମରିଯାଇଥିଲେ ମଙ୍ଗଳ ହୋଇଥାନ୍ତା । ହୁଏତ ଏକ ଦୁଃଖମୟ ଜୀବନ ଭୋଗ କରିବା ଥାଏ ବିଧିର ବିଧାନ !

ଚାଲିଲେ ପର୍ବତର ପଶ୍ଚିମ ପାର୍ଶ୍ୱରେ ଥିବା ଗହନ ଅରଣ୍ୟ ମଧ୍ୟରେ । ଅନ୍ଧକାରରେ ବାଟ ପାଇବା ଅସମ୍ଭବ ଥାଏ । ତଥାପି ଚାଲିଥାନ୍ତି କେଉଁ ଏକ ଅଜ୍ଞାତ ପ୍ରେରଣା ବଳରେ । ଜଙ୍ଗଲର ବାଘ, ଭାଲୁ କିମ୍ୱା ସାପ, ବିଛା ଇତ୍ୟାଦିର ଭୟ ମନକୁ ସ୍ପର୍ଶ କରୁ ନ ଥାଏ । ଆକାଶରେ ଥାଆନ୍ତି ନିଷ୍ପ୍ରଭ ଚନ୍ଦ୍ରମା । କ୍ଷୀଣାଲୋକରେ ଖୋଜିବାକୁ ଚେଷ୍ଟା କଲେ କୌଣସି ଏକ ଆଦିବାସୀ ବସତି ।

ଚାଲିଥାନ୍ତି ମମତା । ଗୋଟିଏ ସ୍ଥାନରେ ଅକସ୍ମାତ୍ ଶୁଣିପାରିଲେ ଜଣେ ଲୋକର ଅସ୍ୱାଭାବିକ ଧମକ, ''କିଏ ସେ ଚାଲିଛି ! ଛାଡ଼ିଲି ତୀର । ସେହିଠାରେ ମରି ପଡ଼ିଥିବୁ । ସକାଳେ ଶିଆଳ କୁକୁର ତୋ ମଡ଼ାଟା ଖାଇବ ।''

ତଟସ୍ଥ ହୋଇ ଦେଖିଲେ, ଗୋଟିଏ ପ୍ରକାଣ୍ଡ ଗଛ ତଳେ ଉପର ଦିଗରୁ ତାଳ ବରଡ଼ାଗୁଡ଼ାକ ତଳକୁ ଝୁଲାଇ ରଖି ତମ୍ବୁ ଆକାରର ଛାଉଣୀ ତଳେ ଛିଡ଼ା ରହିଛନ୍ତି ଛାୟା ମୂର୍ତ୍ତିପରି ଦିଶୁଥିବା ଚାରିଜଣ ଆଦିବାସୀ । ଆଗେଇଗଲେ ସେହିମାନଙ୍କ ପାଖକୁ । ତୀର ଚଳାଇବାକୁ ଉଦ୍ୟତ ହେଉଥିବା ଲୋକଟି ଆଗରେ ଛିଡ଼ା ହେଲାକ୍ଷଣି ସେ ପାଟିକରି ଉଠିଲା - ‘‘ଭୂତୁଣୀଟାଏ ଆସିଗଲାରେ !’’

‘‘ନା, ମୁଁ ଭୂତ ନୁହେଁ, ମଣିଷ । ମାଝି ସର୍ଦ୍ଦାର ଗଙ୍ଗାରାମବାବୁଙ୍କ ଘର ଖୋଜିବାପାଇଁ ଯାଉଛି । ଭୋକରେ ପ୍ରାଣ ବାହାରିଯିବ । କିଛି ଖାଇବାକୁ ଦେଇପାରିବ ?’’

‘‘ତୁ ଆମ ସର୍ଦ୍ଦାରଙ୍କ ନାମ ଧରିଲୁ ! ହେଉ, ବସିପଡ୍ । ହାଣ୍ଡିରେ ପଖାଳ ମୁଠାଏ ଓ ତୋରାଣି ଅଛି ।’’

ଏହା କହି ଲୋକଟି ଛୋଟିଆ ହାଣ୍ଡିଟିଏ ମମତାଙ୍କ ହାତରେ ଧରାଇଦେଲା । ଅଧେ ତୋରାଣି ପିଇ ପକାଇ ହାଣ୍ଡିରେ ଲାଗିଥିବା ପଖାଳ ମୁଠାଏ ପାଟିରେ ରଖି ବାକି ପାଣିତକ ପିଇ ପକାଇଲେ । ସେତିକିରେ ପ୍ରାଣଟା ରକ୍ଷା ପାଇଗଲା ବୋଲି ସେ ଜାଣିପାରିଲେ । ଚକାମାଡ଼ି ବସିପଡ଼ି ପଚାରିଲେ, ‘‘ମାଝି ସର୍ଦ୍ଦାରଙ୍କ ଘରଟି ଏଠାରୁ କେତେ ଦୂରରେ ? ରାତିରେ ଜଙ୍ଗଲ ଭିତରେ ତାଙ୍କ ଘର ପାଇ ପାରିବି ?’’

‘‘ଗଙ୍ଗାସର୍ଦ୍ଦାର ସରଗ ଚାଲିଗଲେଣି । ଦୁଇମାସ ଆଗେ ଆସିଥିଲେ ଦେଖା ପାଇଥାନ୍ତୁ । ଡେରିରେ ଆସିଲୁ କାହିଁକି ?’’

ମର୍ମାହତ ମମତା କାନ୍ଦିପକାଇ ମାଟି ଉପରେ ଶୋଇ ପଡ଼ିଲେ । ପଚାରିଲେ, ‘‘ସର୍ଦ୍ଦାର ବଳବାନ୍ ଥିଲେ, ତାଙ୍କର କାହିଁକି ଅକାଳ ମୃତ୍ୟୁ ଘଟିଲା ? ମୁଁ ହତଭାଗିନୀ ତାଙ୍କୁ ଥରେ ଦେଖାପାରିଲି ନାହିଁ ! ହାୟ, ଭଗବାନ୍ !’’

‘‘ତୁ ସର୍ଦ୍ଦାରଙ୍କୁ ଜାଣିଥିଲୁ ବୋଲି ତୋତେ କହୁଛି । ତାଙ୍କ ଇଲାକାର ଜଙ୍ଗଲ କାଟିବା ପାଇଁ ଓ ଲୋକମାନଙ୍କୁ ବାହାର କରିଦେବା ଲାଗି ଯେଉଁଦିନ ଦଳ ଦଳ ପୁଲିସ ଓ କୁମ୍ପାନୀର କଣ୍ଟ୍ରାକ୍ଟରଗୁଡ଼ାକ ପହଞ୍ଚିଲେ, ସର୍ଦ୍ଦାର ଦୌଡ଼ିଲେ ସେମାନଙ୍କ ତମ୍ବୁକୁ । ଗୋଡ଼ ଧରି କାନ୍ଦି କାନ୍ଦି ଆପତ୍ତି ଜଣାଇଲେ । କିନ୍ତୁ ମାଡ଼ ଖାଇ ଫେରିଆସିଲେ । ଜଙ୍ଗଲ କଟା ଆରମ୍ଭ ହେଲା । ଲୋକମାନଙ୍କୁ ପର୍ବତ ଏ ପାଖ ଜଙ୍ଗଲକୁ ପଠାଇ ଦିଆଗଲା । ସେହି କାମ ଦେଖିଲା ସମୟରେ ତାଙ୍କ ହାତଗୋଡ଼ ପଡ଼ିଗଲା । କଥା କହିପାରିଲେ ନାହିଁ । ଛାତିରେ କଷ୍ଟ ହେଉଛି ବୋଲି ଠାର ଦେଲେ । ତା’ ପରେ ମରିଗଲେ ।’’

''ତାଙ୍କ ମୂଲକର ଲୋକମାନେ ଏବେ କେଉଁଠାରେ ଅଛନ୍ତି ?''

''ଏହି ଜଙ୍ଗଲରେ କୁଡ଼ିଆ ତିଆରି କରି ଅଛନ୍ତି । ଏବେ ପୁଣି ଶୁଣାଗଲାଣି, ଏହି ଜଙ୍ଗଲଟା ବି ସଫା କରି ଦିଆଯିବ । ଏହି ଜାଗାର ମାଟି ତଳେ କୁଆଡ଼େ ଖଣି ଅଛି । ଆଗ ଜଙ୍ଗଲ ତଳେ କିଛି ନାହିଁ । ସେଠାରେ ବଡ଼ବଡ଼ିଆମାନଙ୍କ କୋଠା ତିଆରି ଚାଲିଛି । ଏଠାରେ କାରଖାନା ବସିବ । ଲୋକଙ୍କୁ ଏଠାରୁ ନେଇ ସର୍କାର ଆଉ ଗୋଟେ ଜଙ୍ଗଲରେ ରଖିବେ ।''

''ତୁମେମାନେ ଏଠାରେ କ'ଣ କରୁଛ ? ମୋତେ ତୀର ମାରିବ ବୋଲି କହିଲ କାହିଁକି ?''

''ନୂଆ ସର୍ଦ୍ଦାର ବଣର ଚାରିପଟରେ ଜଗୁଆଳି ରଖି ଦେଇଛନ୍ତି । ବାହାର ଲୋକଙ୍କୁ ଦେଖିଲେ ତୀର ଚଳାଇବାକୁ ହୁକୁମ୍ ଅଛି । ଏ ଜଙ୍ଗଲ ଆମେ ଛାଡ଼ିବୁ ନାହିଁ । ଆଦିବାସୀ ଆନ୍ଦୋଳନ ଲାଗି ସର୍ଦ୍ଦାର ଲାଗିପଡ଼ିଛନ୍ତି । ସରକାର ସହିତ ଆମେ ଲଢ଼ିବା ।''

''ନୂଆ ସର୍ଦ୍ଦାର କିଏ ?''

''ସେହି ଗଙ୍ଗା ସର୍ଦ୍ଦାରଙ୍କ ବଡ଼ପୁଅ ସାଗର ମାଝି । ସେ କହୁଛନ୍ତି, ଯେଉଁ ଲୋକଟା ଆଜି ମନ୍ତ୍ରୀ ଅଛି, ତା ବଡ଼ଭାଇ ରାଜାଙ୍କ ସଙ୍ଗେ ଲଢ଼ାଇ କରି ଆମ ବନବାସୀଙ୍କପାଇଁ ପ୍ରାଣ ଦେଇଥିଲା । ସେଥିପାଇଁ ଆମେ ବରାବର ତାକୁ ଭୋଟ ଦେଇଥାଉଁ । କିନ୍ତୁ ସେହି ମନ୍ତ୍ରୀ ଆମର ସର୍ବନାଶ କରୁଛି । ସେଥିଯୋଗୁଁ ଲଢ଼େଇ ।''

କିଛି ସମୟ ନୀରବ ରହି ମମତା ପଚାରିଲେ, ''ମାଝି ସର୍ଦ୍ଦାରଙ୍କ ପାଖରେ ଦୁଇଜଣ ବାଳିକା ଥାଆନ୍ତି । ଜଣକର ନାମ କରାଳୀ ଓ ଆଉ ଜଣକର ନାମ ଈଶା । ସେମାନେ କେଉଁଠି ଅଛନ୍ତି କହିପାରିବ ?''

''ସେମାନେ ବଡ଼ ହୋଇଗଲେଣି । ନୂଆ ସର୍ଦ୍ଦାରଙ୍କ କଥା ମାନି ଆଦିବାସୀ ମହିଳାମାନଙ୍କୁ ଲଢ଼ାଇପାଇଁ ମତାଉଛନ୍ତି । ଖବର ମିଳିଲାଣି, ସର୍କାରୀ ଦଳ ଉତ୍ତର ପଟରୁ ଜଙ୍ଗଲରେ ପଶିବା ପାଇଁ ରାସ୍ତା ତିଆରି କରୁଛି । ସର୍ଦ୍ଦାର ଠିକ୍ କରିଛନ୍ତି, ଶହ ଶହ ମହିଳା ସେମାନଙ୍କ ବାଟ ଓଗାଳିବେ । କରାଳୀ ଓ ଈଶା ସେହି କାମରେ ଲାଗି ପଡ଼ିଛନ୍ତି ।''

ଅଧିକ କଥା ନ କହି ମମତାଦେବୀ ସେହି ଗଛ ତଳେ ଶୋଇଗଲେ । ସକାଳ ହେଲା ପରେ ନୂଆ ସର୍ଦ୍ଦାରଙ୍କ ଘରକୁ ଯାଇ ନିଜର ପରିଚୟ ଦେବେ ବୋଲି ମନସ୍ଥ କଲେ ଏବଂ କରାଳୀ ଓ ଈଶାକୁ ଦେଖିପାରିବା ଆଶାରେ ଅଧୀର ହୋଇ ଉଠିଲେ ।

ମନେପଡ଼ିଲା ଶେଷ ସାକ୍ଷାତ୍ ସମୟରେ କହିଥିବା କଥା - 'ଦେଶ ସ୍ୱାଧୀନ ହେଲା, ତୁମ ଅଞ୍ଚଳକୁ ରେଳଗାଡ଼ି ଚାଲିବ, ତୁମମାନଙ୍କୁ କଲିକତା ସହର ଦେଖାଇ ଆଣିବି ।' ସଂସାରରେ ସବୁ ଯେପରି ଓଲଟ ପାଲଟ ହୋଇଯାଇଛି ବୋଲି ଧାରଣା ହେଲା ।

ନିଦରୁ ଉଠିଲା ପୂର୍ବରୁ ତାଙ୍କପାଇଁ ବଡ଼ ଆକାରର ପାଚିଲା କଦଳୀ ରଖା ଯାଇଥାଏ । ଖାଇସାରିଲା ପରେ ସର୍ଦ୍ଦାରଙ୍କ ଘର ପର୍ଯ୍ୟନ୍ତ ସାଙ୍ଗରେ ନେଇଯିବେ ବୋଲି ଜଣେ ବନବାସୀ ବାହାରି ପଡ଼ିଲେ । ହାତରେ ବାଉଁଶ ବାଡ଼ିଟିଏ ଧରି ଅଗ୍ରସର ହେଲେ ମମତାଦେବୀ ।

ଦିନ ପ୍ରାୟ ଦୁଇ ପ୍ରହର । ସାଗର ସର୍ଦ୍ଦାର ତାଙ୍କ କୁଡ଼ିଆ ସମ୍ମୁଖରେ ଛିଡ଼ା ହୋଇଥାନ୍ତି । ପରାକ୍ରମୀ ଯୁବକର ସୁଗଠିତ ରୂପ ଏବଂ ଶାରୀରିକ ବଳ ଥିବା ଦେଖି ମମତାଦେବୀ କହିପକାଇଲେ, ''ତୁମେ ଜଣେ ବୀର ପିତାଙ୍କର ବୀର ପୁତ୍ର । କରମ୍ ଠାକୁର ତୁମର ମଙ୍ଗଳ କରିବେ ।''

''ତୁମେ କିଏ ?'' ପଚାରିଲେ ସାଗର ସର୍ଦ୍ଦାର ।

''ତୁମ ବାବା ମୋତେ ଚିହ୍ନିପାରିଥାନ୍ତେ । ସେ ମୋର ପ୍ରାଣ ରକ୍ଷା କରିଥିଲେ । ନିଆଁରେ ପୋଡ଼ି ମରିଯାଇଥିବା ଗୋଟିଏ ମହିଳାକୁ ସେ ମହାଗିରି ପର୍ବତ ଗୁମ୍ଫାରେ ବର୍ଷ ବର୍ଷ ଲୁଚାଇ ରଖି ଦେହୁରିଗୁରୁଙ୍କ ସାହାଯ୍ୟରେ ଯମ ସହିତ ଲଢ଼େଇ କରି ମୋର ଜୀବନ ଫେରାଇ ଆଣିଥିଲେ । ତାଙ୍କର ସ୍ୱର୍ଗତ ଆତ୍ମାପ୍ରତି ମୁଁ ଭକ୍ତି ଅର୍ପଣ କରୁଛି ।'' ମମତାଦେବୀ କାନ୍ଦି ପକାଇଲେ ।

''ବୁଝିପାରିଲି । ଆପଣ ହେଉଛନ୍ତି ମମତାଦେବୀ । ଆପଣଙ୍କ ବଡ଼ପୁଅ ତେଜସ୍ୱୀବାବୁ ରଜାଙ୍କ ଅତ୍ୟାଚାରରୁ ଆମକୁ ରକ୍ଷା କରିବାକୁ ଆସି ମୁଣ୍ଡ ଦେଇଥିଲେ । ଈଶା ଓ କରାଳୀ ମୁହଁରୁ ମୁଁ ସବୁ କଥା ଶୁଣିଥିଲି । ବଞ୍ଚିଥିବା ଦୁଇ ପୁଅଙ୍କୁ ଦେଖିବାଲାଗି ଆପଣ ଚାଲି ଯାଇଥିଲେ । ଅନେକ ଦିନ ପରେ ଫେରିଆସିଛନ୍ତି ।''

''ଈଶା ଓ କରାଳୀ କାହାନ୍ତି ?''

''ସେମାନେ ସନ୍ଧ୍ୟାବେଳକୁ ଫେରିବେ । ଆପଣଙ୍କୁ ଦେଖିଲେ ଖୁସି ହେବେ । ଏବେ ଆପଣ ଗଣ୍ଡିଏ ଭାତ ଓ ବଣୁଆ ଛତୁର ତରକାରି ଖାଇ ଶୋଇପଡ଼ନ୍ତୁ । ଆପଣଙ୍କର ବର୍ତ୍ତମାନ କଥା କହିବା ପାଇଁ ମଧ୍ୟ ଶକ୍ତି ନାହିଁ । ନ ହେଲେ ଗୋଟିଏ ପ୍ରଶ୍ନ ପଚାରିଥାନ୍ତି ।''

''ଯାହା ପଚାରିବ, ଉତ୍ତର ଦେଇ ପାରିବି,'' କହିଲେ ମମତା ।

''ଆପଣ ପୁଅମାନଙ୍କ ପାଖକୁ ଯାଇଥିଲେ । ଜଣେ ମନ୍ତ୍ରୀ ଏବଂ ଆଉ ଜଣେ ହାକିମ । ମନ୍ତ୍ରୀ ପୁଅକୁ କହିଲେ ନାହିଁ, ସେ ଆମମାନଙ୍କୁ କାହିଁକି ମାରିଦେବାକୁ ଲାଗି ପଡ଼ିଛନ୍ତି !''

କ୍ରନ୍ଦନରତ ମମତାଦେବୀ ଉତ୍ତର ଦେଲେ, ''ପୁଅ ମୋତେ ମା' ବୋଲି ଚିହ୍ନି ପାରିଥିଲେ ସିନା କହିଥାନ୍ତି !''

ସାଗର ସର୍ଦ୍ଦାର ଦୁଃଖ ପ୍ରକାଶ କରି କହିଲେ, ''ଯେଉଁ ପୁଅ ନିଜ ମା'ଙ୍କୁ ଚିହ୍ନିବା ପାଇଁ ପ୍ରସ୍ତୁତ ନୁହେଁ, ସେ କିପରି ନିଜ ମାତୃଭୂମିକୁ ଜାଣିବ ! ମାତୃଭୂମିର ପରିଚୟ କେବଳ ନଦନଦୀ ଓ ପାହାଡ଼ ପର୍ବତ ନୁହେଁ, ମାତୃଭୂମିର ପରିଚୟ ରହିଛି ଦେଶର ଅଧିବାସୀ ଓ ମନୁଷ୍ୟ ସମାଜ ମଧ୍ୟରେ ।''

ସର୍ଦ୍ଦାର ମମତାଦେବୀଙ୍କୁ କୁଡ଼ିଆ ଭିତରକୁ ପାଛୋଟି ନେଇଗଲେ । ତାଙ୍କ ସ୍ତ୍ରୀ ପ୍ରସନ୍ନ ଚିତ୍ତରେ ଖାଦ୍ୟ ଖୁଆଇଲେ । ମସିଣାରେ ଶୋଇ ପଡ଼ିଲାକ୍ଷଣି ତାଙ୍କୁ ଗାଢ଼ ନିଦ ଲାଗିଗଲା ।

ଗୋଧୂଳି ସମୟରେ ବହୁତ ଦୂରରୁ ଭାସିଆସୁଥିବା ନାରୀ କଣ୍ଠର କୋଳାହଳ ଧ୍ୱନି ଶୁଣିପାରି ମମତା କୁଡ଼ିଆ ଭିତରୁ ବାହାରି ପଡ଼ିଲେ । ଜଣେ ଗିରିଜନ ଦୌଡ଼ି ଦୌଡ଼ି ସାଗର ସର୍ଦ୍ଦାରଙ୍କୁ ଖୋଜୁଥାଏ । କିନ୍ତୁ ସର୍ଦ୍ଦାର ଚାଲିଯାଇଥାନ୍ତି । ଉତ୍କଣ୍ଠିତ ପ୍ରାଣରେ ମମତାଦେବୀ ପ୍ରଶ୍ନ କଲେ, ''ସର୍ଦ୍ଦାରଙ୍କୁ କାହିଁକି ଖୋଜୁଛ ?''

''ସର୍କାରୀ ଦଳ ଉତ୍ତରପଟ ଜଙ୍ଗଲ ନିକଟକୁ ଆସିଗଲାଣି । ମହିଳାମାନେ ପାଟି ଚିତ୍କାର କରି ସେହି ଦିଗକୁ ଦୌଡ଼ି ଦୌଡ଼ି ଯାଉଛନ୍ତି । ସର୍ଦ୍ଦାରଙ୍କ ହୁକୁମ ପାଇଲେ ଆମେ ପୁରୁଷମାନେ ମହିଳାମାନଙ୍କ ପଛେ ପଛେ ଦୌଡ଼ିବା । ପଛରୁ ରହି ତୀର ଚଳାଇବା ।''

''ଭାଇ, ମୋତେ ସେହି ମହିଳାମାନଙ୍କ ନିକଟକୁ ନେଇଚାଲ । ମୁଁ ମଧ୍ୟ ସର୍କାରୀ ଦଳକୁ ବାଧାଦେବି ।''

''ତୁମେ ବୁଢ଼ୀ ଲୋକ । ସେତେ ଦୂର ସ୍ଥାନକୁ ଚାଲି ଯାଇପାରିବ ନାହିଁ । ସ୍ତ୍ରୀଲୋକମାନେ ଦୌଡ଼ି ଦୌଡ଼ି ପହଞ୍ଚି ପାରିବେ ।''

''ନା, ମୁଁ ତୁମ ସହିତ ଦୌଡ଼ିପାରିବି । ମୋତେ ବାଟ ଦେଖାଅ । ଦେହରେ ଏବେ ବି ବଳ ଅଛି ।''

ଲୋକଟି ଦ୍ରୁତ ଗତିରେ ଆଗେଇ ଚାଲିଲା । ପ୍ରାଣ ପଣ କଷ୍ଟକରି ମମତାଦେବୀ ତା ପଛେ ପଛେ ଦୌଡ଼ିବାକୁ ଲାଗିଲେ । ଅନେକ ରାସ୍ତା । ଗହନ ଅରଣ୍ୟ । ଅନ୍ଧକାର ମାଡ଼ି ଆସୁଥାଏ । ଗୋଟିଏ ସ୍ଥାନରେ ମମତା ହଠାତ୍ କଚାଡ଼ି ପଡ଼ିଲେ । ଲୋକଟି ତତ୍‌କ୍ଷଣାତ୍ ତାଙ୍କୁ ଉଠାଇ ଧରି କହିଲା, ‘‘ମୋ ପିଠି ଉପରେ ପଡ଼ି ରୁହ ଓ ମୋ ଗଳା ଦୁଇପାଖରେ ହାତ ଛନ୍ଦାଇ ରଖ ।’’ ମମତା ତାହାହିଁ କରିବାମାତ୍ରେ ସବଳକାୟ ବ୍ୟକ୍ତିଟି ଅତିଶୟ ବେଗରେ ଦୌଡ଼ି ଦୌଡ଼ି ବହୁତ ବାଟ ଅତିକ୍ରମ କରିଗଲା ।

ହଠାତ୍ ଶୁଭିଲା ଗୁଳି ପରେ ଗୁଳି ଚାଲିବାର ପ୍ରଚଣ୍ଡ ଆବାଜ୍ । ଲୋକଟିର ପିଠି ଉପରୁ ଓହ୍ଲାଇ ପଡ଼ି ଅସମ୍ଭାଳ ଅବସ୍ଥାରେ ମମତାଦେବୀ ପହଞ୍ଚିଗଲେ ବନବାସୀ ମହିଳାମାନଙ୍କ ନିକଟରେ । ଚିତ୍କାର କରି ଡାକୁଥାନ୍ତି, ‘‘ମା ଈଶା, ମା କରାଳୀ, କେଉଁଠି ରହିଛ ? ମୁଁ ତମ ମା’ ମମତା ଡାକୁଛି । ଉତ୍ତର ଦିଅ, କେଉଁଠି ଅଛ ।’’

ରକ୍ତାକ୍ତ ଅବସ୍ଥାରେ ଛତ୍ରଭଙ୍ଗ ଦେଉଥିବା ମହିଳାମାନଙ୍କ ମଧ୍ୟରୁ ଜଣେ କିଏ ପାଟି କଲା, ‘‘କରାଳୀ ଛାତିରେ ଗୁଳି ବାଜିଛି । ଈଶା ଛାତିରେ ବି ଗୁଳି ।’’

ପଶ୍ଚାଦ୍‌ଭାଗରୁ ଶୁଭିଲା ସାଗର ମାଝି ଓ ବନବାସୀମାନଙ୍କର ରଣହୁଙ୍କାର - ‘‘ଚଳାଅ ତୀର, ତୀର ଚଳାଅ ।’’

ରଣକ୍ଷେତ୍ରର ଗୋଟିଏ ସ୍ଥାନ ମଝେ ମଝେ ଆଲୋକିତ ହୋଇଉଠୁଥାଏ ଯେତେବେଳେ ପଡୁଥାଏ ପୁଲିସ ଦଳର ଟର୍ଚ୍ଚ ଲାଇଟ୍ । ଜଣେ ପୁଲିସ୍ କର୍ମକର୍ତ୍ତାଙ୍କ ମୁଖରୁ ବାହାରିଲା ଆଦେଶ, ‘‘ସେହି ଶବ ଦୁଇଟାକୁ ଟାଣି ଆଣି ଜିପ୍‌ରେ ରଖି ପଳାଇଯାଅ । ଗିରିଜନମାନେ ମାଡ଼ି ଆସୁଛନ୍ତି । ଶୀଘ୍ର ମୁର୍ଦ୍ଦାର ଦୁଇଟା ଉଠାଇଆଣ ।’’

ଟର୍ଚ୍ଚ ଲାଇଟ୍ ପଡ଼ିଲା ଶବ ଦୁଇଟା ଉପରେ । ପାଗଳିନୀ ଭାବରେ ଦୌଡ଼ି ଯାଇ ଦେହ ଦୁଇଟି ଉପରେ ଲୋଟି ପଡ଼ିଲେ ମମତାଦେବୀ । ‘‘ମା କରାଳୀ, ମା ଈଶା, ମୁଁ ଆସିଛି, ତୁମମାନଙ୍କ ମମତା ମା’ । ଆଖି ଫିଟାଅ । ଥରେ ମୋ ମୁହଁକୁ ଚାହିଁଦେଖ ।’’

ରକ୍ତ ମଧ୍ୟରେ ଶୋଇରହିଥିବା ଦୁଇ ମହିଳାଙ୍କ ଆଖି ମେଲା ଥାଏ । ପ୍ରାଣହୀନ ଶରୀରର ଖୋଲା ଥିବା ଆଖିଗୁଡ଼ିକ ଉପରେ ନିଜର ଦୃଷ୍ଟି ରଖି ମମତା ଉଚ୍ଚାରଣ କଲେ - ‘‘ହେ ମା’ ବସୁନ୍ଧରା, ତୁମର ସର୍ବଂସହା ନାମଟି ସାର୍ଥକ କରିପାରିଲ ଏହି ଭାରତ ଭୂମିରେ !’’

ତତ୍‌କ୍ଷଣାତ୍ ଫୁଟିଉଠିଲା ଗୁଳି । ଅରଣ୍ୟର ଗହନ ଅନ୍ଧକାର ଗର୍ଭରୁ କ୍ଷୀଣ ସ୍ୱରଟିଏ ମିଶିଗଲା ଶୂନ୍ୟ ଆକାଶରେ - ‘‘ହେ ବସୁଧା !’’

# ଉପସଂହାର

(ଉପନ୍ୟାସର ବିଷୟବସ୍ତୁ ସହିତ ଏହି ଉପସଂହାରର କୌଣସି ପ୍ରକାର ପ୍ରାସଙ୍ଗିକ ସମ୍ପର୍କ ନାହିଁ । ଅନ୍ୟପକ୍ଷରେ ଏହା ହେଉଛି ଗୋଟିଏ କାହାଣୀ ମାତ୍ର । ବିଶ୍ୱସାହିତ୍ୟର ଶ୍ରେଷ୍ଠ କାହାଣୀଗୁଡ଼ିକ ମଧ୍ୟରେ ଅନ୍ୟତମ ବୋଲି ବିବେଚିତ । ଗଳ୍ପଟି ମୋତେ ଶୁଣାଇଥିଲେ ମୋ ସାନଭାଇ ମନୋଜ ଦାସ । ଅବଶ୍ୟ ଅନେକ ବର୍ଷ ପୂର୍ବେ । ଯାହା ଯେପରି ମନେ ପଡୁଛି, ତାହାହିଁ ଲେଖୁଛି । ମୂଳ କାହାଣୀର ତାତ୍ପର୍ଯ୍ୟ ଅଥବା ମର୍ମାର୍ଥ ଅପରିବର୍ତ୍ତିତ ରହିଛି ବୋଲି ମୋର ବିଶ୍ୱାସ । ଅପ୍ରାସଙ୍ଗିକ ହେଲେ ସୁଦ୍ଧା ବିଦଗ୍ଧ ପାଠକପାଠିକାମାନେ ଲେଖକଙ୍କୁ କ୍ଷମା କରିବେ ବୋଲି ଆଶା ଓ ଅନୁରୋଧ ।)

କ୍ଷୁଦ୍ର ଗଳ୍ପଟି ନିମ୍ନରେ ବର୍ଣ୍ଣିତ ହେଲା ।

କୌଣସି ଏକ ରାଜ୍ୟର ଦୂରଦୂରାନ୍ତ ପ୍ରାନ୍ତରେ ଥାଏ କ୍ଷୁଦ୍ର ଗୋଟିଏ ପଲ୍ଲୀ ଗାଁ । ସେଥିରେ କୁଡ଼ିଆଟିରେ ବାସ କରୁଥାନ୍ତି ଜଣେ ଦୀନଦୁଃଖୀ ପଣ୍ଡିତ ଏବଂ ତାଙ୍କ ପତ୍ନୀ । ଭିକ୍ଷାବୃତ୍ତି ଅବଲମ୍ବନପୂର୍ବକ ପଣ୍ଡିତେ ଜୀବିକା ଉପାର୍ଜନ କରୁଥାନ୍ତି । କିନ୍ତୁ କ୍ରମେ କ୍ରମେ ଜରାଗ୍ରସ୍ତ ହେଲା ପରେ ଭିକ୍ଷା ପାତ୍ର ଧରି ଗାଁ ପରେ ଗାଁ ଭିକ୍ଷା ମାଗିବା ତାଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ । ଅଧିକାଂଶ ଦିନ କଟିଲା ଉପବାସରେ ।

ଦିନେ ପ୍ରଭାତରେ ପଣ୍ଡିତ ତାଙ୍କ ପତ୍ନୀଙ୍କୁ କହିଲେ, ''ଦାରିଦ୍ର୍ୟ ସହ୍ୟ କରିବା ଅପେକ୍ଷା ଆତ୍ମହତ୍ୟା କରିବି ବୋଲି ସଂକଳ୍ପ ନେଇସାରିଛି । ବଞ୍ଚିରହିବାପାଇଁ ତୁମେ ତୁମ ବାପଘରକୁ କିମ୍ବା ଭାଇମାନଙ୍କ ନିକଟକୁ ଯାଇଁ ସେମାନଙ୍କ ଆଶ୍ରୟ ଭିକ୍ଷା କର ।''

ଠିକ୍ ସେହିପରି ସମୟରେ ଘୋଡ଼ା ଉପରେ ବସି ରଜାଙ୍କର ଜନୈକ ସୈନିକ ଉଚ୍ଚସ୍ୱରରେ ଘୋଷଣା କରୁଥିବା ଶୁଣାଗଲା - ''ରଜା ଗୋଟିଏ ସ୍ୱପ୍ନ ଦେଖିଛନ୍ତି । ସେହି ସ୍ୱପ୍ନର ପ୍ରକୃତ ଅର୍ଥ ଯେଉଁ ବ୍ୟକ୍ତି ବ୍ୟାଖ୍ୟା କରିଦେଇପାରିବେ, ତାହାଙ୍କୁ ଶତ ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ମିଳିବ । ସେଥିନିମନ୍ତେ ସ୍ୱପ୍ନ ତତ୍ତ୍ୱ ଜାଣିଥିବା ବ୍ୟକ୍ତିମାନେ ହିଁ ରଜାଙ୍କୁ ସାକ୍ଷାତ୍ କରିପାରିବେ । ସ୍ୱପ୍ନର ଅର୍ଥ ଭ୍ରମପୂର୍ଣ୍ଣ ପ୍ରମାଣିତ ହେଲେ ବ୍ୟାଖ୍ୟାକାରଙ୍କୁ ମୃତ୍ୟୁଦଣ୍ଡ ଦିଆଯିବ ।''

ବାରମ୍ବାର ଏହି ପ୍ରକାର ବାକ୍ୟମାନ ଘୋଷଣାପୂର୍ବକ ଅଶ୍ୱାରୋହୀ ସୈନିକ ସେହି ଗ୍ରାମରୁ ଅନ୍ୟ ଗ୍ରାମ ଅଭିମୁଖେ ଯାତ୍ରା କଲା ।

ପଣ୍ଡିତଙ୍କ ପତ୍ନୀ ତାଙ୍କ ସ୍ୱାମୀଙ୍କୁ କହିଲେ, ''ତୁମେ ଆତ୍ମହତ୍ୟା କରିବ ବୋଲି ଠିକ୍ କରି ସାରିଲଣି । ତେବେ, ତା' ପୂର୍ବରୁ ଏପରି ଏକ ସୁବର୍ଣ୍ଣ ସୁଯୋଗ ଛାଡ଼ିବ

କାହିଁକି ? ରଜା ତାଙ୍କ ସ୍ୱପ୍ନ ବିଷୟ ଜଣାଇବେ । ବୁଦ୍ଧି ପ୍ରୟୋଗ କରି ଯାହା କିଛି ବୁଝାଇ ଦେଲେ, ସେ ବିଶ୍ୱାସ କରିବେ । ସେ କିପରି ଜାଣିବେ ଯେ ତୁମେ ଯାହା କହିଲ ତାହା ମିଥ୍ୟା ! ଅନ୍ୟପକ୍ଷରେ ଶତ ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ପାଇଲେ ଆମର ସମସ୍ତ ଦୁଃଖ ଦାରିଦ୍ର୍ୟ ସମାପ୍ତ ହେବ ଏବଂ ସାରା ଜୀବନ ସୁଖରେ ବିତିବ ।''

ବିକଳ ଭାବରେ ପଣ୍ଡିତ କହିଲେ, ''ମୋତେ ସ୍ୱପ୍ନ ବିଦ୍ୟା ଜଣା ନାହିଁ । ରଜା ଜଣେ ବିଜ୍ଞ ଓ ବିଚକ୍ଷଣ ବ୍ୟକ୍ତି । ତାଙ୍କର ଯଦି ହୃଦ୍‌ବୋଧ ହେବ ଯେ ମୁଁ ମିଥ୍ୟା ଅର୍ଥ ବ୍ୟାଖ୍ୟା କରିଛି ତେବେ ମୋ ମୁଣ୍ଡକାଟ ଲାଗି ଆଦେଶ ଦେବେ ।''

''ଯଦି ଆତ୍ମହତ୍ୟା ଲାଗି ପ୍ରସ୍ତୁତ ହେଉଛ, ତେବେ ମୁଣ୍ଡକାଟ ପାଇଁ ଭୟ କାହିଁକି ?'' ଭର୍ତ୍ସନା କଲେ ପତ୍ନୀ ।

ସ୍ତ୍ରୀଙ୍କ ତାଡ଼ନା ସହ୍ୟ କରି ନ ପାରି ପଣ୍ଡିତ ବାହାରିଲେ ରାଜପ୍ରାସାଦ ଅଭିମୁଖେ । ଅନେକ ରାସ୍ତା ଅତିକ୍ରମ କଲା ପରେ ସମ୍ମୁଖରେ ଦେଖାଗଲା ଏକ ଜନହୀନ ଘନ ଅରଣ୍ୟ । ଅରଣ୍ୟ ମଧ୍ୟରେ ରହିଥାଏ ଗୋଟିଏ ପୁରାତନ ଭଗ୍ନପ୍ରାପ୍ତ ମନ୍ଦିର । ପଥଶ୍ରାନ୍ତ ପଣ୍ଡିତ ସେହି ମନ୍ଦିର ଆଗରେ ବସିରହି ଆକୁଳ ସ୍ୱରରେ ପ୍ରାର୍ଥନା କରିବାକୁ ଲାଗିଲେ, ହେ ପ୍ରଭୁ, ମୋତେ ବିପଦରୁ ରକ୍ଷାକର, ରଜାଙ୍କ ପ୍ରଶ୍ନର ଯଥାର୍ଥ ଉତ୍ତର ଦେବାକୁ ମୋତେ ବୁଦ୍ଧି ଦିଅ ।

ମନ୍ଦିର ମଧ୍ୟରୁ ସହସା ବାହାରି ଆସିଲା ଜଣେ ଅଳ୍ପବୟସ୍କ ବାଳକ । ପଚାରିଲା, ''ବିମର୍ଷ ମନରେ ବସି ରହି କେଉଁ ବାସନା ପୂରଣ ଲାଗି ପ୍ରାର୍ଥନା କରୁଛ ?'' ଆସନ୍ନ ମୁଣ୍ଡକାଟ ଭୟରେ ଥରହର ହୋଇ ପଣ୍ଡିତ ମହୋଦୟ ବର୍ଣ୍ଣନା କରିଗଲେ ନିଜର ଦୁଃଖ ଦୈନ୍ୟ, ଆତ୍ମହତ୍ୟା ସଂକଳ୍ପ, ସୈନିକର ଆତଙ୍କପ୍ରଦ ଘୋଷଣା ସହ ପତ୍ନୀଙ୍କର ନିଷ୍ଠୁର ଭର୍ତ୍ସନା ଇତ୍ୟାଦି ଘଟଣା । ବାଳକଟି କହିଲା, ''ପଣ୍ଡିତେ, ମୋତେ ସ୍ୱପ୍ନବିଦ୍ୟା ଜଣାଅଛି । ରଜା ଯେଉଁ ସ୍ୱପ୍ନ ଦେଖିଛନ୍ତି ତାହା ମୁଁ ଦୈବୀଶକ୍ତି ବଳରେ ଜାଣିପାରିବି ଏବଂ ସେହି ସ୍ୱପ୍ନର ପ୍ରକୃତ ଉତ୍ତର ମଧ୍ୟ ଶିଖାଇ ଦେଇପାରିବି । କିନ୍ତୁ ମୋର ଗୋଟିଏ ସର୍ତ୍ତ ଆପଣଙ୍କୁ ପାଳନ କରିବାକୁ ହେବ । ସର୍ତ୍ତଟି ହେଲା, ଆପଣ ଯେଉଁ ଶତସ୍ୱର୍ଣ୍ଣମୁଦ୍ରା ପୁରସ୍କାର ପାଇବେ, ପ୍ରାସାଦରୁ ପ୍ରତ୍ୟାବର୍ତ୍ତନ ସମୟରେ ସେହି ଅର୍ଥର ଅର୍ଦ୍ଧାଂଶ ଏଠାରେ ମୋତେ ଦେଇଯିବେ । ଏହି ଧ୍ୱଂସପ୍ରାପ୍ତ ମନ୍ଦିରର ପୁନର୍ଗଠନ ନିମନ୍ତେ ମୁଁ ସେହି ଅର୍ଥ ବ୍ୟୟ କରିବି ।''

ପଣ୍ଡିତ ସତେଯେପରି ନବଜୀବନ ପାଇଗଲେ ଏବଂ ମନ୍ଦିର ସମ୍ମୁଖରେ ଶପଥ କଲେ ଯେ ପୁରସ୍କାରର ଅର୍ଦ୍ଧାଂଶ ବାଳକ ହସ୍ତରେ ସମର୍ପଣ କରିଦେବେ । ବାଳକଟି

ତାହାଙ୍କୁ ରଜାଙ୍କ ଦେଖିଥିବା ସ୍ୱପ୍ନ ଏବଂ ସେହି ସ୍ୱପ୍ନର ତାତ୍ପର୍ଯ୍ୟ ବିଷୟ ବିଶଦ ଭାବରେ ବୁଝାଇ ଦେଲା । ସାହସ ଓ ଦମ୍ଭ ସହ ପଣ୍ଡିତ ପହଞ୍ଚିଲେ ରାଜପ୍ରାସାଦରେ । ତାହାଙ୍କୁ ଏକାକୀ ନିଆଗଲା ରଜାଙ୍କ ନିଭୃତ କକ୍ଷକୁ ।

ରଜା ତାଙ୍କର ସ୍ୱପ୍ନଟି ବର୍ଣ୍ଣନା କଲେ । ''ଦେଖିଲି, ଗୋଟିଏ ଶୃଗାଳ ମୋ ସିଂହାସନକୁ ଉଠିବାକୁ ଉଦ୍ୟମ କରୁଛି, ସିଂହାସନ ଚତୁର୍ଦ୍ଦିଗରେ, ଶଯ୍ୟାକକ୍ଷର ପଲଙ୍କ ନିକଟରେ ଏବଂ ରାଜପ୍ରାସାଦର ବିଭିନ୍ନ ସ୍ଥାନରେ କୁଟିଳ ଓ ବକ୍ର ଦୃଷ୍ଟି ସହ ଭ୍ରମଣ କରୁଛି ଏବଂ ବାରମ୍ୱାର ମୋ ପ୍ରତି ବିକଟାଳ ଭଙ୍ଗୀରେ ଅନାଇ ରହୁଛି । ଏପରି ଦୁଃସ୍ୱପ୍ନ ଇତିପୂର୍ବେ କେବେହେଲେ ଦେଖି ନ ଥିଲି । ସେଥିଯୋଗୁଁ ଭୟଭୀତ ଅବସ୍ଥାରେ ରହିଛି । ଆପଣ ଯଦି ସ୍ୱପ୍ନ ବିଦ୍ୟା ଜାଣିଛନ୍ତି, ଏପରି ମନ୍ଦ ସ୍ୱପ୍ନର ଅର୍ଥ ପ୍ରକାଶ କଲେ ଆନନ୍ଦିତ ହେବି ।''

ଦୁଇ ଚକ୍ଷୁ ମୁଦ୍ରିତ ରଖି ଗମ୍ଭୀର ବଦନରେ ପଣ୍ଡିତ ମହାଶୟ ଉତ୍ତର ଦେଲେ, ''ମହାରାଜ, ଶୃଗାଳ ହେଉଛି ଶଠତା, ପ୍ରତାରଣା, ପ୍ରବଞ୍ଚନା ଏବଂ ଖଳ ବୁଦ୍ଧିର ସନ୍ତକ ସଦୃଶ ଜନ୍ତୁ । ଆପଣଙ୍କ ସ୍ୱପ୍ନର ଅର୍ଥ ହେଉଛି ଯେ ପ୍ରଜାମାନଙ୍କ ମନରେ ଦୁଷ୍ଟବୁଦ୍ଧି, ଖଳ ପ୍ରବୃତ୍ତି, ଠକାମି, କପଟତା ଓ ମିଥ୍ୟାଚାର ପ୍ରଭୃତି ମନ୍ଦ ଗୁଣମାନ ପ୍ରବେଶ କରିଯାଇଛି । ସଂକ୍ରାମକ ବ୍ୟାଧିପରି ଏହି ଦୁର୍ଗୁଣମାନ ଆପଣଙ୍କ ସଭାସଦ୍, ପାର୍ଶ୍ୱଚର, ସହାୟକ ଓ ଦରବାର ମଣ୍ଡନ କରୁଥିବା ସମ୍ଭ୍ରାନ୍ତମାନଙ୍କୁ ମଧ୍ୟ ଆକ୍ରାନ୍ତ କରିପାରେ । ସୁତରାଂ, ଆପଣ ପ୍ରଥମେ ନିଜର କର୍ମଚାରୀମାନଙ୍କ ଉପରେ ସତର୍କ ଦୃଷ୍ଟି ରଖିବେ ଏବଂ ଦ୍ୱିତୀୟରେ ପ୍ରଜାମାନଙ୍କୁ ସୁଶାସନ ପ୍ରଦାନପୂର୍ବକ ସେମାନଙ୍କ କୁ ପ୍ରବୃତ୍ତିମାନ ଉପଶମ କରିବା ଲାଗି ସଦା ଚେଷ୍ଟିତ ରହିବେ ।''

ପଣ୍ଡିତଙ୍କ ବ୍ୟାଖ୍ୟା ଶୁଣି ରଜାଙ୍କ ହୃଦ୍‌ବୋଧ ହେଲା ଯେ ଯାହା ସେ ଶୁଣିଲେ ତାହା ହେଉଛି ସତ୍ୟ । ସନ୍ତୁଷ୍ଟ ଚିତ୍ତରେ ସେ ଏକଶତ ସ୍ୱର୍ଣ୍ଣମୁଦ୍ରା ପ୍ରଦାନପୂର୍ବକ ତାଙ୍କୁ ବିଦାୟ ଦେଲେ ।

ଘରକୁ ଫେରିଲା ସମୟରେ ପଣ୍ଡିତଙ୍କ ସମ୍ମୁଖରେ ଦିଶିଗଲା ସେହି ଅରଣ୍ୟ । ମନେପଡ଼ିଗଲା, ମନ୍ଦିରର ବାଳକ ନିକଟରେ ସତ୍ୟ ବାକ୍ୟ ଦେଇଥିବା କଥାଟି ଯେ ଶତମୁଦ୍ରାର ଅର୍ଦ୍ଧାଂଶ ତା' ହାତରେ ଅର୍ପଣ କରିବେ । ହଠାତ୍ ମନରେ ବୁଦ୍ଧି ଜାତ ହେଲା ଯେ ମନ୍ଦିର ପଥରେ ନ ଯାଇ ଅନ୍ୟ ରାସ୍ତାରେ ଚାଲିଗଲେ ବାଳକଟି ସହିତ ସାକ୍ଷାତ୍ ହେବ ନାହିଁ ଏବଂ ସେ ତାହାର ପ୍ରାପ୍ୟ ମାଗିପାରିବ ନାହିଁ ।

ତେଣୁ ଅନ୍ୟ ବାଟରେ ଘରେ ପହଞ୍ଚି ସେ ପତ୍ନୀଙ୍କ ଆଗରେ ଶତ ସ୍ୱର୍ଣ୍ଣମୁଦ୍ରା ଥୋଇଦେଇ ନିଜ ବୁଦ୍ଧି ଓ ବିଜ୍ଞତାର ଭୂୟସୀ ପ୍ରଶଂସା କରିଗଲେ । ପତିପତ୍ନୀଙ୍କ ମନରେ ଆନନ୍ଦର ସୀମା ନ ଥାଏ । ଅବିଳମ୍ବେ ପକ୍କା ଘରଟିଏ ନିର୍ମିତ ହୋଇଗଲା । ଦାସଦାସୀ ନିଯୁକ୍ତ ହେଲେ । ଭୂସମ୍ପତ୍ତି କ୍ରୟ କରାଗଲା । ଦୀନଦୁଃଖୀ ଅବସ୍ଥାରୁ ଅକସ୍ମାତ୍ ଓ ଆଶ୍ଚର୍ଯ୍ୟଜନକ ଭାବେ ପଣ୍ଡିତ ମହାଶୟ ହୋଇଗଲେ ଜଣେ ଧନଶାଳୀ ତଥା ମାନ୍ୟଗଣ୍ୟ ବ୍ୟକ୍ତି ।

ଗୋଟିଏ ବର୍ଷ ବିତିଗଲା । ଅକସ୍ମାତ୍ ଦିନେ ତାଙ୍କ ବାସଭବନ ସମ୍ମୁଖରେ ଅଶ୍ୱପୃଷ୍ଠରୁ ଅବତରଣ କଲେ ରଜାଙ୍କର ସେନାପତି । କଠୋର ଭାଷାରେ ଆଦେଶ ଦେଲେ, ''ପଣ୍ଡିତେ, ବସ ମୋ ଘୋଡ଼ାରେ । ରଜା ପଠାଇଛନ୍ତି ତୁମକୁ ଏହିକ୍ଷଣି ପ୍ରାସାଦକୁ ନେଇଯିବା ପାଇଁ । ସେ ପୁଣି ଏକ ସ୍ୱପ୍ନ ଦେଖିଛନ୍ତି । ତୁମେ ତାହାର ଅର୍ଥ ବ୍ୟାଖ୍ୟା କରିବ । ପୂର୍ବପରି ପୁରସ୍କାର ପାଇବ ।''

ପଣ୍ଡିତଙ୍କର ହୃତ୍‌କମ୍ପ ଆରମ୍ଭ ହୋଇଗଲା । ଗତଥର ମନ୍ଦିରର ବାଳକଟି ସ୍ୱପ୍ନର ଅର୍ଥ କହିଦେଇଥିଲା ବୋଲି ସେ ରଜାଙ୍କୁ ସନ୍ତୁଷ୍ଟ କରିପାରିଥିଲେ । କିନ୍ତୁ ସେହି ବାଳକକୁ ଯେଉଁ ପ୍ରତିଶ୍ରୁତି ଦେଇଥିଲେ ତାହା ସେ ଭଙ୍ଗ କରିଛନ୍ତି । ସେଥିଯୋଗୁଁ ପୁନର୍ବାର ସେହି ବାଳକର ସାହାଯ୍ୟ ମାଗିବା ସମ୍ଭବ ନୁହେଁ । ଭୟରେ ଥରହର ହେଉଥିବା ଅବସ୍ଥାରେ ସେ ସେନାପତିଙ୍କ ଆଗରେ କାକୁତି ମିନତି ଜଣାଇଲେ, ''ହେ ମହାଭାଗ, ମୁଁ ସ୍ୱପ୍ନତତ୍ତ୍ୱ ସମ୍ପୂର୍ଣ୍ଣ ଭାବରେ ଭୁଲିଯାଇଛି । ତେଣୁ ରଜାଙ୍କ ସମ୍ମୁଖକୁ ଯିବି ନାହିଁ । ସେଥିପାଇଁ କ୍ଷମା ପ୍ରାର୍ଥନା କରୁଛି ।''

ସେନାପତି ତତ୍‌କ୍ଷଣାତ୍ ଶାଣିତ ତରବାରି ବାହାର କରି ଗର୍ଜନ କରି ଉଠିଲେ, ''ତୋର ଏତେଦୂର ସାହସ ହେଲାଣି, ରଜାଙ୍କ ଆଦେଶ ମାନିବୁ ନାହିଁ ? ଯଦି ମୋ ସହିତ ଯିବୁ ନାହିଁ, ଏହିକ୍ଷଣି ଏହିଠାରେ ତୋ ମୁଣ୍ଡଚ୍ଛେଦ କରିବି ।''

ନତଜାନୁ ହୋଇ ପଣ୍ଡିତ ମହାଶୟ ଗୁହାରି ଜଣାଇଲେ, ''ମୋ ମୁଣ୍ଡ କାଟନ୍ତୁ ନାହିଁ । ପ୍ରତିଜ୍ଞା କରୁଛି, ଆଗାମୀ କାଲି ନିଶ୍ଚୟ ରାଜପ୍ରାସାଦରେ ଉପସ୍ଥିତ ହେବି ।'' ସେନାପତି ବିଦାୟ ନେଲେ ।

ତହିଁ ପରଦିନ ପ୍ରଭାତ ପୂର୍ବରୁ ପଣ୍ଡିତେ ବାହାରି ଚାଲିଗଲେ ଅରଣ୍ୟ ପଥରେ । ବାଳକଟିର ପାଦଧରି କ୍ଷମା ପ୍ରାର୍ଥନା ସହ ପୁନର୍ବାର ରଜାଙ୍କର ଦ୍ୱିତୀୟ ସ୍ୱପ୍ନର ଅର୍ଥ କହିଦେବା ଲାଗି ଅନୁରୋଧ କରିବେ ବୋଲି ସ୍ଥିର କଲେ ।

ଯଥାସ୍ଥାନରେ ଦିଶିଲା ଧ୍ୱଂସପ୍ରାପ୍ତ ମନ୍ଦିରଟି । ବାଳକଟି ବସିଥାଏ ମନ୍ଦିର ସମ୍ମୁଖରେ । ତା' ନିକଟକୁ ଦୌଡ଼ିଯାଇ ପାଦ ଉପରେ ମୁଣ୍ଡ ରଖି କାନ୍ଦି କାନ୍ଦି ନିଜର ପ୍ରବଞ୍ଚନା ଲାଗି କ୍ଷମା ମାଗିଲେ ଏବଂ ରଜାଙ୍କ ପୁନର୍ବାର ଆହ୍ୱାନ ବିଷୟ ଜଣାଇଲେ । ବାଳକ କହିଲା, ''ଥରେ ମୋତେ ଠକିଦେଇଛ । ଏଥର କିନ୍ତୁ ପ୍ରତିଜ୍ଞା କର ଯେ ପୁରସ୍କାରର ଅର୍ଦ୍ଧାଂଶ ପରିବର୍ତ୍ତେ ମାତ୍ର ଏକ-ଚତୁର୍ଥାଂଶ ମୋ ହାତରେ ନିଶ୍ଚୟ ସମର୍ପଣ କରିବ । ଯଦି ତାହା ନ ଦେବ, ତାହାହେଲେ ରଜାଙ୍କ ସମ୍ମୁଖରେ ତୁମ ବିରୋଧରେ ସମସ୍ତ ସତ୍ୟ ପ୍ରକାଶ କରିଦେବି ।''

ପଣ୍ଡିତ ଈଶ୍ୱରଙ୍କ ନାମ ଉଚ୍ଚାରଣପୂର୍ବକ ଶପଥବଦ୍ଧ ହେଲା ପରେ ବାଳକଟି ସ୍ୱପ୍ନର ଅର୍ଥ ବୁଝାଇ ଦେଲା । ଉତ୍‌ଫୁଲ୍ଲିତ ଚିତ୍ତରେ ପଣ୍ଡିତ ପହଞ୍ଚିଲେ ରଜାଙ୍କ ନିକଟରେ ।

ଅନ୍ଦର ମହଲର ଏକ ଗୁପ୍ତ କକ୍ଷରେ ବସିଲେ କେବଳ ରଜା ଓ ପଣ୍ଡିତ । ରଜା ତାଙ୍କର ଭୟାବହ ସ୍ୱପ୍ନଟି ପ୍ରକାଶ କଲେ, ''ସ୍ୱପ୍ନ ଦେଖିଲି, ଏକ ପ୍ରକାଣ୍ଡକାୟ ହିଂସ୍ର ସିଂହ ମୋ ସିଂହାସନ ଉପରକୁ ଲମ୍ଫ ପ୍ରଦାନ କରୁଛି, ଶୟନ କକ୍ଷରେ ପ୍ରବେଶ କରି ମୋତେ ଆକ୍ରମଣ କରିବା ଲାଗି ଉଦ୍ୟତ ହେଉଛି ଏବଂ ରାଜ୍ୟ ଭ୍ରମଣରେ ଗଲାବେଳେ ରଥ ପଛେ ପଛେ ଦୌଡ଼ିଚାଲିଛି । ଏପରିକି ମନ୍ଦିର ମଧ୍ୟରେ ପ୍ରାର୍ଥନାରତ ଥିବା ସମୟରେ କର୍ଣ୍ଣକୁହରରେ ସିଂହର ଗର୍ଜନ ପ୍ରବେଶ କରୁଛି ।''

ପଣ୍ଡିତ ବ୍ୟାଖ୍ୟା କଲେ, ''ମହାରାଜ, ସ୍ୱପ୍ନର ଅର୍ଥ ହେଲା ସମଗ୍ର ରାଜ୍ୟରେ ହିଂସାର ବାତାବରଣ ବ୍ୟାପିଯାଇଛି । ପ୍ରଜା, ସଭାସଦ୍, ରାଜକର୍ମଚାରୀ ଏବଂ ସମ୍ଭ୍ରାନ୍ତମାନେ ସମସ୍ତେ ଆଜି ହିଂସ୍ର । ଆତତାୟୀମାନେ ଆପଣଙ୍କୁ ହତ୍ୟା କରିବା ନିମନ୍ତେ ସୁଯୋଗ ଅପେକ୍ଷାରେ ରହିଛନ୍ତି । ଏପରି ଭୟଙ୍କର ଦୁର୍ଦ୍ଦିନରେ ଆପଣଙ୍କୁ ସତତ ସାବଧାନ ଓ ସତର୍କ ରହିବାକୁ ହେବ । ରଜାଙ୍କ ପ୍ରାଣରକ୍ଷା ବିନା ପ୍ରଜାମାନେ ସୁରକ୍ଷିତ ରହିପାରିବେ ନାହିଁ । କାରଣ, ରଜାହୀନ ରାଜ୍ୟକୁ ଶତ୍ରୁରାଜ୍ୟ ଆକ୍ରମଣ କରିବା ସହଜସାଧ୍ୟ ଓ ସମ୍ଭବ । ସୁତରାଂ ନରପତିଙ୍କ ସାବଧାନତା ହେଉଛି ବର୍ତ୍ତମାନ ସମୟରେ ରାଜ୍ୟର ସର୍ବପ୍ରଧାନ ଆବଶ୍ୟକତା । ଏହାହିଁ ହେଲା ସ୍ୱପ୍ନର ସନ୍ଦେଶ ।''

ରାଜା ସନ୍ତୁଷ୍ଟ ହୋଇ ପଣ୍ଡିତଙ୍କୁ ଦୁଇଶତ ସ୍ୱର୍ଣ୍ଣମୁଦ୍ରା ପ୍ରଦାନ କଲେ । ଅରଣ୍ୟ ପଥରେ ପ୍ରତ୍ୟାବର୍ତ୍ତନ ବେଳେ ପଣ୍ଡିତ ଚିନ୍ତାକଲେ, ମନ୍ଦିରର ବାଳକଟା ଅପେକ୍ଷା କରିଥିବ । ପୁରସ୍କାରର ଏକ-ଚତୁର୍ଥାଂଶ ହେଉଛି ପଚାଶ ସ୍ୱର୍ଣ୍ଣମୁଦ୍ରା । ଏତେସଂଖ୍ୟକ ମୁଦ୍ରାର ମୂଲ୍ୟ ଅନେକ । ସେତକ ନ ଦେଲେ ରଜାଙ୍କ ନିକଟରେ ଆପତ୍ତି କରିବ ବୋଲି ଧମକ ଦେଇଛି । କିନ୍ତୁ ତାକୁ ଜୀବନରେ ମାରିଦେଲେ ମୋର ସମସ୍ତ ପୁରସ୍କାର ମୋର

ହୋଇ ରହିବ ଏବଂ ରଜାଙ୍କ ନିକଟରେ ମୋ ବିରୋଧରେ ଆପତ୍ତି ଜଣାଇବା ଲାଗି ପିଲାଟା ବଞ୍ଚି ନ ଥିବ ।

ହାତରେ ଲୁଚାଇ ଧରିଲେ ଖଣ୍ଡିଏ ତୀକ୍ଷ୍ଣ ପ୍ରସ୍ତର ଖଣ୍ଡ । ବାଳକଟି ଏକାକୀ ବସିଥିବା ଦେଖି ତା' ମୁଣ୍ଡକୁ ଲକ୍ଷ୍ୟ କରି ପଣ୍ଡିତ ମହୋଦୟ ନିଜର ସମସ୍ତ ଶକ୍ତି ପ୍ରୟୋଗପୂର୍ବକ ପଛରୁ ଯାଇ ପ୍ରସ୍ତର ଖଣ୍ଡିକ ପ୍ରହାର କଲେ । ପିଲାଟି ଚିତ୍କାର କରି ଫାଟିଯାଇଥିବା ମୁଣ୍ଡଟିର ଝର ଝର ରକ୍ତ ମଧ୍ୟରେ ମାଟି ଉପରେ ପଡ଼ିରହିଲା । ନିଶ୍ଚିତ ଭାବେ ମରିଯାଇଛି ଜାଣି ପଣ୍ଡିତ ନିଶ୍ଚିନ୍ତ ମନରେ ସ୍ୱଗୃହରେ ପହଞ୍ଚିଲେ ।

ପ୍ରାଚୁର୍ଯ୍ୟ ଓ ଭୋଗବିଳାସ ମଧ୍ୟରେ ଦିନ ବିତିଲା । ସମ୍ପତ୍ତିର ଆକାର ବହୁ ପରିମାଣରେ ବୃଦ୍ଧି ପାଇଲା । ପଣ୍ଡିତେ ରାଜକୀୟ ରୀତିରେ ଜୀବନଯାପନ କରିବାକୁ ତତ୍ପର ହୋଇଉଠିଲେ ।

ଦୁଇବର୍ଷ ପରେ ଅପ୍ରତ୍ୟାଶିତ ଭାବେ ପୁଣି ଥରେ ତାଙ୍କର ଅଟ୍ଟାଳିକା ସମ୍ମୁଖରେ ଉପସ୍ଥିତ ହେଲେ ରଜାଙ୍କର ସେନାପତି । ସଙ୍ଗେ ସଙ୍ଗେ ଆଗମନର କାରଣ ଜଣାଇଲେ ଯେ ରାଜା ପୁନର୍ବାର ଏକ ସ୍ୱପ୍ନ ଦେଖିଛନ୍ତି ଏବଂ ତାହାର ଅର୍ଥ ବ୍ୟାଖ୍ୟା କରିବା ନିମନ୍ତେ ପଣ୍ଡିତଙ୍କୁ ସାଙ୍ଗରେ ନେଇଯିବାକୁ ଆଦେଶ ଦେଇଛନ୍ତି ।

ପଣ୍ଡିତଙ୍କ ମୁଣ୍ଡରେ ବଜ୍ରାଘାତ ହେଲା । ସେ ଜାଣିଥାନ୍ତି, ସ୍ୱପ୍ନତତ୍ତ୍ୱ ବିଶେଷଜ୍ଞ ବାଳକଟି ପ୍ରାଣ ହରାଇସାରିଛି । ତେଣୁ କିଏ ଅବା କହିପାରିବ ସ୍ୱପ୍ନର ଅର୍ଥ ! ଅସହାୟ ଭାବରେ ସେନାପତିଙ୍କ ପାଦଧରି ଅନୁନୟ କଲେ, ''ଆଜ୍ଞା, ରଜାଙ୍କ ପୁରସ୍କାର ବଳରେ ଧନଶାଳୀ ହୋଇଥିବା ଯୋଗୁଁ ମୋର ଦୈବୀଶକ୍ତି ଲୋପ ପାଇଯାଇଛି । ସେହି କାରଣରୁ ସ୍ୱପ୍ନତତ୍ତ୍ୱ ମଧ୍ୟ ଭୁଲିଯାଇଛି । ତେଣୁ ରଜାଙ୍କ ସମ୍ମୁଖକୁ ଯିବା ମୋ ପକ୍ଷରେ ଉଚିତ ନୁହେଁ ।''

ସେନାପତି କ୍ରୋଧ ସମ୍ବରଣ କରି ନ ପାରି ତରବାରି ବାହାର କଲେ ଏବଂ ଧମକ ଦେଲେ, ''ତୋ ମୁଣ୍ଡ କାଟିଦେଇଥାନ୍ତି, କିନ୍ତୁ ନରହତ୍ୟା କରିବାକୁ ଇଚ୍ଛା ହେଲା ନାହିଁ । ତେଣୁ ତୋତେ ବନ୍ଦୀ ଭାବରେ ରଜାଙ୍କ ସମ୍ମୁଖକୁ ନେଇଯିବି । ସେ ତୋ'ର ବିଚାର କରିବେ ।''

ପଣ୍ଡିତ ଗୋଟିଏ ଦିନ ସମୟ ମାଗିଲେ । ସେନାପତି ତାଙ୍କ ଆବେଦନ ମଞ୍ଜୁର କରି ବିଦାୟ ନେଲେ ।

ଦାରୁଣ ଦୁଃଶ୍ଚିନ୍ତା ମଧ୍ୟରେ ପଣ୍ଡିତ ପୂର୍ବ ପାପଗୁଡ଼ିକର ପ୍ରାୟଶ୍ଚିତ୍ତ ଲାଗି ପ୍ରସ୍ତୁତ ହେଲେ । ସମଗ୍ର ଦିନ ଉପବାସ ପାଳନ ପରେ ସମସ୍ତଙ୍କ ଅଗୋଚରରେ ରାତ୍ରିକାଳରେ

ଅରଣ୍ୟ ମଧ୍ୟକୁ ପ୍ରସ୍ଥାନ କଲେ ଏବଂ ସେଠାରେ ମନ୍ଦିର ମଧ୍ୟରେ ଉପବାସ ଦ୍ୱାରା ଜୀବନ ବିସର୍ଜନ କରିବାଲାଗି ସଙ୍କଳ୍ପବଦ୍ଧ ହେଲେ ।

ଅନଶନରତ ଅବସ୍ଥାରେ ଧାରଣା ଦେଇ ଶୋଇ ରହିଥିଲା ସମୟରେ ପଣ୍ଡିତ ଦେଖିଲେ ମନ୍ଦିରର ସେହି ବାଳକଟି ତାଙ୍କ ନିକଟକୁ ଆସୁଛି । ପଣ୍ଡିତ କୌଣସି ବାକ୍ୟ ଉଚ୍ଚାରଣ କରିବା ପୂର୍ବରୁ ବାଳକ କହିଲା, ''ପ୍ରଥମଥର ଶପଥ ଭଙ୍ଗ କରି ମୋତେ ପୁରସ୍କାରର ଅର୍ଦ୍ଧାଂଶ ନ ଦେବା ଉଦ୍ଦେଶ୍ୟରେ ପ୍ରତାରଣାପୂର୍ବକ ଅନ୍ୟ ରାସ୍ତାରେ ଚାଲି ଯାଇଥିଲ । ଦ୍ୱିତୀୟଥର ପ୍ରତିଜ୍ଞା ଭଙ୍ଗ ସହ ହିଂସ୍ର ଭାବ ପୋଷଣ କରି ମୋତେ ହତ୍ୟା କରିବା ଲାଗି ଆକ୍ରମଣ କଲ । ଏଥର ଏକମାତ୍ର ସର୍ତ୍ତ ରଖି ତୁମକୁ ସ୍ୱପ୍ନର ଅର୍ଥ କହିଦେବି ଯେ ମୋର ଗୋଟିଏ ସ୍ୱର୍ଣ୍ଣମୁଦ୍ରାର ମଧ୍ୟ ଆବଶ୍ୟକତା ନାହିଁ ଏବଂ ତେଣୁ ତୁମର ସମସ୍ତ ପୁରସ୍କାର ସହ ଭିନ୍ନ ଏକ ପଥରେ ନିଜ ଘରକୁ ଫେରିଯିବ ।'' ଏହା କହି ବାଳକଟି ରଜାଙ୍କ ସ୍ୱପ୍ନର ଅର୍ଥଗୋଟିକ ବ୍ୟାଖ୍ୟା କରିଦେଲା ।

ପଣ୍ଡିତ ରାଜପ୍ରାସାଦରେ ପହଞ୍ଚିଲେ । ରଜା ଜଣାଇଲେ, ''ସ୍ୱପ୍ନ ଦେଖିଲି, ଶ୍ୱେତ କପୋତଟିଏ ମୋ ସିଂହାସନର ଚତୁର୍ଦ୍ଦିଗରେ ଉଡ଼ି ବୁଲୁଛି, ମୋ ଶଯ୍ୟା ତଳେ ଯାଇ ବସି ପଡୁଛି ଏବଂ ପ୍ରାସାଦର ତୁଙ୍ଗ ଶିଖର ଉପରେ ବସା ବାନ୍ଧି ରହିଛି । କେବଳ ସେତିକି ନୁହେଁ, ରାଜ୍ୟ ଭ୍ରମଣରେ ଗଲା ସମୟରେ ସେହି କପୋତଟି ମୋ ରଥ ସମ୍ମୁଖରେ ଆକାଶମାର୍ଗରେ ଉଡ଼ି ଉଡ଼ି ଯାଉଛି ।''

ପଣ୍ଡିତ ବ୍ୟାଖ୍ୟା କଲେ, ''ମହାରାଜ, ଶ୍ୱେତ କପୋତ ହେଉଛି ଶାନ୍ତିର ପ୍ରତୀକ । ଆପଣଙ୍କ ରାଜ୍ୟରୁ କପଟତା, ଶଠତା ଓ ହିଂସା ଲୋପ ପାଇ ବର୍ତ୍ତମାନ ଶାନ୍ତି ଓ ପବିତ୍ରତା ବିରାଜିତ । ପ୍ରଜାମାନଙ୍କ ମନରୁ କୁପ୍ରବୃତ୍ତି, ଦୁଷ୍ଟ ବୁଦ୍ଧି, ଲୋଭ, କ୍ରୋଧ ଏବଂ ହିଂସ୍ରଭାବ ସମ୍ପୂର୍ଣ୍ଣ ରୂପେ ବିଲୁପ୍ତ । ବର୍ତ୍ତମାନ ରଜାଙ୍କ କର୍ତ୍ତବ୍ୟ ହେଉଛି ଦେଶବାସୀଙ୍କୁ ପୁତ୍ରତୁଲ୍ୟ ସ୍ନେହ ଶ୍ରଦ୍ଧା ପ୍ରଦର୍ଶନସହ ସୁଶାସନ ପ୍ରଦାନ କରିବେ ।''

ରଜା ଅତ୍ୟଧିକ ପ୍ରୀତ ହୋଇ ଆନନ୍ଦ ମନରେ ପଂଣ୍ଡିତଙ୍କ ହସ୍ତରେ ଏକ ସହସ୍ର ସ୍ୱର୍ଣ୍ଣମୁଦ୍ରା ଅର୍ପଣ କଲେ ।

ପଣ୍ଡିତ ଏକାକୀ ପହଞ୍ଚିଲେ ଅରଣ୍ୟ ମଧ୍ୟସ୍ଥ ସେହି ଭଗ୍ନପ୍ରାପ୍ତ ମନ୍ଦିର ସମ୍ମୁଖରେ । ସେଠାରେ ବାଳକର ଦେଖା ନ ଥାଏ । ସ୍ଥାନଟି ଥାଏ ସମ୍ପୂର୍ଣ୍ଣ ନିର୍ଜନ । ପଣ୍ଡିତ ଟଙ୍କାଥଳିଟି ମନ୍ଦିର ପିଣ୍ଡାରେ ରଖିଦେଇ ସ୍ୱଗୃହ ଦିଗରେ ଅଗ୍ରସର ହେଲେ ।

କିଛିଦୂର ଚାଲିଗଲା ପରେ ବାଳକଟି ପଛରୁ ଡାକି କହିଲା, ''ପଣ୍ଡିତ ମହୋଦୟ, ଆପଣଙ୍କ ପୁରସ୍କାର ଥଳିଟି ଏଠାରେ ଭୁଲ୍ ବଶତଃ ରଖିଦେଇ ଚାଲିଯାଉଛନ୍ତି, ଦୟାକରି ଥଳିଟି ନେଇଯାଆନ୍ତୁ ।''

"ନା, ଭୁଲବଶତଃ ଛାଡ଼ି ଯାଇ ନାହିଁ । ମନ୍ଦିର ନିର୍ମାଣ କରିବ ବୋଲି ପୂର୍ବରୁ କହିଥିବା ହେତୁ ତୁମ ପାଇଁ ସେହି ସହସ୍ର ସ୍ୱର୍ଣ୍ଣମୁଦ୍ରା ରଖିଗଲି । ପୂର୍ବେ ଯେଉଁ ଅନ୍ୟାୟ ଅଧର୍ମ କରିଥିଲି ସେଥିପାଇଁ ମୋତେ କ୍ଷମା ପ୍ରଦାନ କର ।"

ବାଳକଟି ପାଖକୁ ଦୌଡ଼ିଆସି କୋମଳ ସ୍ୱରରେ କହିଲା, "ପଣ୍ଡିତ ମହାଶୟ, ପ୍ରତ୍ୟେକ ସମୟରେ ଗୋଟିଏ ସାମାଜିକ ପରିବେଶ ରହିଛି ଯାହାକୁ କୁହାଯାଏ ଯୁଗ ଧର୍ମ ଏବଂ ପ୍ରତ୍ୟେକ ମନୁଷ୍ୟ ହେଉଛନ୍ତି ନିଜ ନିଜ ସମୟର ସନ୍ତାନ । ସେହି ସମୟର ପ୍ରଭାବରେ ମନୁଷ୍ୟ ପରିଚାଳିତ ହେବା ସ୍ୱାଭାବିକ । ଯେଉଁ ସମୟରେ ରାଜ୍ୟରେ କପଟତା ଓ ଶଠତା ବ୍ୟାପି ଯାଇଥାଏ, ସେତେବେଳେ ଆପଣ ମଧ୍ୟ ହୋଇଥିଲେ ଜଣେ ଭଣ୍ଡ ପଣ୍ଡିତ । ସେଥିଲାଗି ମୋତେ ଠକି ଦେଇଥିଲେ । ଯେତେବେଳେ ଆସିଗଲା ହିଂସାର ପରିବେଶ, ଆପଣ ମଧ୍ୟ ହୋଇପାରିଲେ ଏକ ହିଂସ୍ର ଆତତାୟୀ । କାଳଚକ୍ରର ଗତି ପଥରେ ବର୍ତ୍ତମାନ ଦେଖାଦେଇଛି ପବିତ୍ରତା ଓ ପୁଣ୍ୟର ପ୍ରଭାବ । ସେଥି ଯୋଗୁଁ ଲୋଭ ବିସର୍ଜନପୂର୍ବକ ସ୍ୱଇଚ୍ଛାରେ ରଖିଦେଇ ଯାଉଛନ୍ତି ସହସ୍ର ସ୍ୱର୍ଣ୍ଣ ମୁଦ୍ରା ।"

କାହାଣୀଟି ଶେଷ ହେଲା ।

(ସମୟ ସ୍ରୋତରେ ମଝେ ମଝେ ଆସି ଯାଇଥାଏ ଉନ୍ନତ ଭାବଧାରା ଓ ସମୟୋଚିତ କର୍ମପ୍ରବଣତା । ପୁଣି ଆସିଥାଏ ଅବନମିତ ପରିବେଶ । କାରଣ ସମୟର ଗତିପଥ ହେଉଛି କୁଟିଳ ।

ସଂଗ୍ରାମୀ ଯୁଗର ପାରିପାର୍ଶ୍ୱିକ ଅବସ୍ଥା ମଧ୍ୟରେ ଦେଶର ଅଗଣିତ ଅସହାୟ ପରାଧୀନ ମନୁଷ୍ୟ ଅନୁଭବ କରିଥିଲେ ଏକ ଉଚ୍ଚତର ଆଦର୍ଶର ପ୍ରଖର ପ୍ରଭା । ଅନେକଙ୍କ ପ୍ରାଣ ସ୍ପର୍ଶ କରିଥିଲା ଅଦମ୍ୟ ସାହସ । ଜାତିପ୍ରାଣରେ ପ୍ରଜ୍ୱଳିତ ହୋଇଉଠିଥିଲା ନବ ଭବିଷ୍ୟର ଆଶା ।

ସ୍ୱାଧୀନତା ପ୍ରାପ୍ତିର ପରବର୍ତ୍ତୀ ଯୁଗରେ ଦେଖିବାକୁ ମିଳିଲା ଏକ ବିପରୀତମୁଖୀ ପରିସ୍ଥିତିର ଅୟମାରମ୍ଭ । ଜାତିପ୍ରାଣରେ ସଞ୍ଚାରିତ ହେଲା ଦୁଃଖ ଓ ହତାଶା ।

ବିରୋଧାଭାସ ସ୍ୱରୂପ ଯଥାସମୟରେ ଆସିଯିବ ଏକ ପରିବର୍ତ୍ତିତ ପରିବେଶ । ଅବଚେତନ ସ୍ତରରେ ସକ୍ରିୟ ଥିବା ନିମ୍ନମାନର ପ୍ରବୃତ୍ତି ବିକାଶବାଦର ସଚେତନତା ମଧ୍ୟରେ ଅବଲୁପ୍ତ ହେବା ଅବଶ୍ୟମ୍ଭାବୀ ।

ଉପରିବର୍ଣ୍ଣିତ କାହାଣୀ ଏହିପରି ଏକ ସୂଚନା ବହନ କରିଛି ।)

**ସମାପ୍ତ**



ଅଧ୍ୟାପକ ଡକ୍ଟର ମନ୍ମଥ ନାଥ ଦାସ ଜଣେ ଐତିହାସିକ ରୂପେ ପରିଚିତ । ଇଂରାଜୀରେ ଲିଖିତ 'ଜବାହରଲାଲ ନେହରୁଙ୍କ ରାଜନୈତିକ ଦର୍ଶନ', 'ବିଦ୍ରୋହ, ଦମନ ଓ ସଂସ୍କାର', 'କଂଗ୍ରେସ ବନାମ ବ୍ରିଟିଶ୍', 'ଭାରତ-ବିଭାଜନ ଓ ସ୍ୱାଧୀନତା ପ୍ରାପ୍ତି' ଇତ୍ୟାଦି ପୁସ୍ତକମାନ ଆନ୍ତର୍ଜାତିକ ସ୍ତରରେ ଅଧ୍ୟାପକ ଦାସଙ୍କୁ ଖ୍ୟାତିସମ୍ପନ୍ନ କରିଛି । ତାହାଙ୍କ ଲିଖିତ ଦୁଇଖଣ୍ଡି ପୁସ୍ତକ ଇଂଲଣ୍ଡରେ ଏବଂ ଖଣ୍ଡିଏ ପୁସ୍ତକ ଆମେରିକା ଯୁକ୍ତରାଷ୍ଟ୍ରରେ ପ୍ରକାଶିତ ହୋଇଛି । ଡକ୍ଟର ଦାସଙ୍କ ଦ୍ୱାରା ସଂକଳିତ 'ଭାରତୀୟ ଜାତୀୟ କଂଗ୍ରେସର ଶତବାର୍ଷିକୀ ଇତିହାସ' ଏବଂ 'ଓଡ଼ିଶାର ଇତିହାସ ଓ ସଂସ୍କୃତି' ତଥା ଲିଖିତ ଭାରତ ଇତିହାସମାନ ଐତିହାସିକମାନଙ୍କ ମଧ୍ୟରେ ତାହାଙ୍କୁ ସୁପରିଚିତ ରଖିଛି ।

ଅଧ୍ୟାପକ ଦାସଙ୍କ ସାହିତ୍ୟକୃତି ମଧ୍ୟ ଉଲ୍ଲେଖନୀୟ । ତାହାଙ୍କ ରଚିତ 'ସମୟ ସାଗର ତୀରେ' ଗ୍ରନ୍ଥଟି ଓଡ଼ିଆ ସାହିତ୍ୟ ପ୍ରତି ଏକ ବିଶିଷ୍ଟ ଅବଦାନ ରୂପେ ବିବେଚିତ ହୁଏ । 'ଅସ୍ତରାଗ', 'ଅସ୍ପଷ୍ଟ ଆମାନ' ଏବଂ 'ଯାତ୍ରୀ' ଉପନ୍ୟାସ ଏବଂ ତାହାଙ୍କ ଆତ୍ମଜୀବନୀ ଓ ଭ୍ରମଣ କାହାଣୀ 'ଜୀବନର ପଥପ୍ରାନ୍ତେ ଦିଗନ୍ତର ଦୃଶ୍ୟ' ଉଚ୍ଚ ପ୍ରଶଂସିତ ହୋଇଛି । ତାଙ୍କ ଲିଖିତ ଇଂରାଜୀ ଉପନ୍ୟାସ ମଧ୍ୟରେ ରହିଛି 'Keep the Story Secret' ଏବଂ 'Behind the Dark Curtain' ତାତ୍ତ୍ୱିକ ଓ ଆଧ୍ୟାତ୍ମିକ ବିଷୟକୁ କେନ୍ଦ୍ରକରି ସେ ଦୁଇଖଣ୍ଡି ପୁସ୍ତକ ଇଂରାଜୀ ଭାଷାରେ ଲେଖିଥିବା ସ୍ଥଳେ ତାହାଙ୍କ ରଚିତ ଇଂରାଜୀ ପୁସ୍ତକ 'Odyssey of Emperor Asoka Maurya : Kalinga war the Universal Peace' ଦେଶ ବିଦେଶରେ ବିଶେଷ ଆଦୃତ ହୋଇଛି ।

ଡକ୍ଟର ଦାସଙ୍କ ପ୍ରଣୀତ ଏହି ଉପନ୍ୟାସ 'ହେ ବିଧାତା, ହେ ବସୁଧା' ଧାରଣ କରିଛି ସମସାମୟିକ ରାଜନୈତିକ ଓ ସାମାଜିକ ଘଟଣାବଳିର ପ୍ରତିଛବି । ସଂଗ୍ରାମ ଯୁଗର ଲୋକାଚାର ଏବଂ ପରବର୍ତ୍ତୀ ଶାସନ ଯୁଗର ଦେଶାଚାର ମଧ୍ୟରେ ସେ ଅନୁଭବ କରିପାରିଛନ୍ତି ପାର୍ଥକ୍ୟ । କିନ୍ତୁ ପରିଶେଷରେ ଜଣେ ଶୁଭବାଦୀ ଭାବରେ ଉପସଂହାରରେ ଅବତାରଣ କରିଛନ୍ତି କ୍ଷୁଦ୍ର ଏକ ଉପାଖ୍ୟାନ - ହୁଏତ ଏକ ଆଶା-ସୂଚକ ସଙ୍କେତ ।

---

**ବିଦ୍ୟାପୁରୀ**

ବାଲୁବଜାର, କଟକ ୭୫୩୦୦୨

ISBN 81-7411-410-6